## ଚତୁର୍ଥ ହିଲ୍ଲୋଳ

ଆଗରେ ସହସା      ଉପସ୍ଥିତ ହୋଇ
ଏକ ବେଶ୍ୟା ସମାଦରେ
ହସ ହସ ମୁଖେ      ଅନାଇ ତାହାକୁ
କହିଲା ମଧୁର ସ୍ୱରେ ।
ପ୍ରାଣ ପ୍ରିୟତମ !      ଦେବ ବୋଲିଥିଲ
ମୋତେ ଯେଉଁ ସୁନାହାର
ତାହା ଏବେ ଧନ !      ପଡ଼ୋଶୀ ଘରକୁ
ଉସ୍ତବେ ନେବ ତାହାର ।
ପ୍ରକାଶ୍ୟ ପଥରେ      'ଆସନ୍ତେ ଆଦରେ
ବେଶ୍ୟାର ଏ ସମ୍ବୋଧନ
ଶୁଣିଣ ତପସ୍ୱୀ      ଜଳିଲ କିଶୋର-
ମଣି ମାନସେ ତକ୍ଷଣ ।
ରହେ ସିନା ଲଜ୍ଜା      ବଟପ ହୃଦୟ
ବଟପୀ ଶୁଷ୍କ ଆଦରେ
ବାରବୁଲ ସ୍ନାନ-      ବସନା ଯେସନ
କ୍ଷିପ୍ତ ଉଚ୍ଛିଷ୍ଟ ପତରେ ।
ମାତ୍ର ସେ ଅସାର-      ଗୀର ପ୍ରେମିକର
ନୁହେ କେବେ ଆହ୍ଲାଦକ
ଭଗୀରଥୀ ପୟ-      ପାନ୍ଥୀର ଆଶକୁ
ପୂରଇ କି କୂପୋଦକ ।
ଝପେ ଘୃଣା ସେପେ      ଆରେ ଦ୍ୱିଚାରିଣୀ
ଏ ସ୍ଥାନୁ ଦୂର ଅନ୍ତର
ରହିବ ନାହିଁ ମୋ      ଆଗେ ଧ୍ୱଂସ ହେବ
ଯେତେ ତୋ ମାୟା ମନ୍ତ୍ର ।
ଗର୍ବି ଭୁଜଙ୍ଗମ      ଇତର ବିହଙ୍ଗେ
କରେ କେତେ ଲଣ୍ଡଭଣ୍ଡ
ଗରୁଡ଼ ହାବୁଡ଼େ      ପଡ଼ିଲେ ତାହାର
ପ୍ରତାପ ହୁଅଇ ପଣ୍ଡ ।

ଉଡ଼ ଉଡ଼ କେତେ ତାରାପନ୍ତି ଆଗେ
ଜୋନାକି ଦୀପ୍ତି ଦେଖାଏ
ଉଇଁଦେଲେ ଚନ୍ଦ୍ର ଏକାବେଳେ ତାର
ତେଜଟିକି ଲୁଚିଯାଏ ।
ଦେଖି ସେ ବାଳାକୁ କରନ୍ତି ମାଧବ
ପ୍ରଭୁଙ୍କୁ ଅତି ସଭୟେ
ମାୟା ଭ୍ରାନ୍ତି ବଶେ ନ ଯାନ୍ତୁ ଯେମନ୍ତେ ସେ
ମାୟାବିନୀ ମାୟାଳୟେ ।
ଅନାଦର ବାଣୀ ଉଭୟଙ୍କ ଶୁଣି
ନ ହୋଇ ଟଳେ ବିସ୍ମିତା
ସ୍ମିତ ଆନନେ ଅଙ୍ଗନେଇ ତାଳି
କହିଲା ବାରବନିତା ।
ଆପଣେ ଯେମନ୍ତ ପରିହାସପ୍ରିୟ
ସେବକ ତା ଅନୁରୂପ
କୋକିଳର ରୁତ ରସାଣଇ ଯିନା
ରସାଳ ଡାଳେ ମଧୁପ ।
ଏ କି କଥା ଭଲ ଅଳକାଳ ହେଲା
ମୋହର ଘରେ ଭୋଜନ
କରି କେତେ ହର୍ଷ ଆମୋଦେ କଟାଇ
ନ ଥିଲ କି ? ବହୁକ୍ଷଣ ।
ଯେତେ କହୁଥିଲ ରଙ୍ଗ ପ୍ରେମାଳାପ
ଦେଲତ ସବୁ ପାଶୋରି
ନାଟଶାଳେ କିଏ ତୁଚ୍ଛ ରଙ୍ଗଭୂମି
ଦେଖଇ ଆଦର କରି ?
ନୂଆ ନୂଆ ରସେ ସକଳେ ଉଲ୍ଲସି
ପୁରୁଣାକୁ କାହା ମନ
ନବ ନୂଆ ଫୁଲ ଶୋଷିବୁ ଭ୍ରମର
କରଇ ଯିନା କୀର୍ତ୍ତନ ।
ଦୂର ଭବ ସବୁ ସୁନ୍ଦର ମଧୁର
ପାଖକୁ ପରିରେ କିଏ

ତାହାକେଡେ ହେସୁ    ନ୍ତୁହନ୍ତ ସରଳା
ସୁନ୍ଦରୀ ଗ୍ରାମ ନାରୀଏ ।
ନେଇଛ ସୋହାଗେ    ମୋର ଅଙ୍ଗୁଳିରୁ
ଫେଡ଼ି ଯା ମୁଦ୍ରିକା ସାର
ଦେବ ରମ୍ୟ ହାର    ରତନ ଭୂଷଣ
ବୋଲି ବଦଳରେ ତାର ।
ତାହିଁକି ସଡ଼ବ    ମନରେ ସେ ଭାବ
ସ୍ୱଭାବେ ପୁରୁଷ ଜାତ
ତାହାର ନ୍ତୁହନ୍ତ    ସ୍ତୁଟୁକଥା ତନ୍ତୁ
ଯୁବତୀ ମନ୍ତ୍ର ସ୍ୱେଚ୍ଛାନ୍ତ ।
ପ୍ରେମିକ ଶେଖର    ରସିକ ତିଳକ
ଚୁମ୍ବେତ ଶିରୋଭୂଷଣ
ରଙ୍ଗ ପରିହାସ    ଦିଅ ଗୁଣନିଧି
ମଞ୍ଜୁଳ ମାଳ ବନ୍ଧନ ।
ଆରେ ପାପୀୟସୀ    ଯା ଯା ମୋ ପାଖରୁ
ଜାଣିଲିଣି ତୋର ରୀତ
ସ୍ୱଜନେ କଦାପି    ଭୁଲିବେ କି ଦେଖି
ତୁଚ୍ଛସାର ବେଶ୍ୟା ପ୍ରୀତ ।
ଧୂର୍ତ୍ତ କୁହୁକିନୀ    ଅସତ୍ୟ ଭାଷିଣୀ
କେବେ ମୁଁ ତୋ ନିକେତନେ
ରହୁଥିଲି ଯାଇ    ମାଳ ଦେବା ପାଇଁ
ରହୁଥିଲି ନିକାଟନେ ।
ରନ୍ଧ୍ରେ ଯଥା ଦ୍ରବ୍ୟ    ଆଧାରେ ତାହାର
ବନ୍ଧୁବା ଯେତେ ଶକତ
ତନ୍ତୁଁ ଗଲେ ବଳ    ଅଚିରେ ଉଚ୍ଛୁଳ
ଲେଖେ ସଦା ଅନ୍ୟ ଗତ ।
କୁମ୍ଭା ତପ୍ତ ଜଳ    ବାଷ୍ପାକାରେ ଯେତେ
ଯନ୍ତ୍ରୋଦରେ ହେଲେ ସ୍ଥିର
ସହାଣେ ସଣଦେ    ରକ୍ଷକ କବାଟ†
ବାଟେ ହିଏ ସେ ଉଦ୍ଗାର ।

† Safety—valve.

ଉଡ଼ୁ ଉଡ଼ୁ କେତେ    ଡାଗପକ୍ଷ ଆଗେ
କୋନାକ ଯାଣ୍ଡି ଦେଖାଏ
ଝୁହିଦେଲେ ଗ୍ରନ୍ଥ    ଏକାବେଳେ ତାର
ତେଜଟିକି ଲଭଯାଏ ।
ଦେଖି ସେ ବାଲାକୁ    କରଇ ମାଧବ
ପ୍ରଭୁଙ୍କୁ ଅତି ସଭୟେ
ମାୟା ଭ୍ରାନ୍ତ ଜଣେ    ନ ଯାନ୍ତ ଯେଣ୍ଟେ ସେ
ମାୟାବଗୀ ମାୟାଲୟେ ।
ଅନାଦର ବାଣୀ    ଉଦ୍ଧବଙ୍କ ଶୁଣି
ନ ହୋଇ ଟଳେ ବସ୍ମିତା
ସସ୍ମିତ ଆନନେ    ଆଡ଼ନେଇ ଡ୍ୱାଳ
କହିଲ ବାରବନତା ।
ଆପଣ ଯେମନ୍ତ    ପରିହାସପ୍ରିୟ
ସେବକ ତା ଅନୁରୂପ
କୋକିଳର ରୁତ    ରସାଣର୍ଭ ସିନା
ରସାଳ ଡ଼ାଳେ ମଧୁପ ।
ଏ କି କଥା ଭଲ    ଅଲଙ୍କାର ହେଲ
ମୋହର ଘରେ ଭୋଜନ
କଣ କେତେ ହର୍ଷ    ଆମୋଦେ କଟାଇ
ନ ଥିଲ କି ? ବନ୍ଧୁଗଣ ।
ଯେତେ କଉତୁକ    ରଙ୍ଗ ପ୍ରେମାଳାପ
ଦେଲଡ ସବୁ ପାଶୋର
ନାଟଶଲେ କିଏ    ତୁଚ୍ଛ ରଙ୍ଗଭୂମି
ଦେଖଇ ଆଦର କର ?
ନୂଆ ନୂଆ ରସେ    ସକଳେ ଲାଳସୀ
ପୁରୁଣାକୁ କାହା ମନ
ନବ ନୂଆ ଫୁଲ    ଶୋଷକୁ ଭ୍ରମର
କରଇ ସିନା କାଉିନ ।
ଦୂର ଶବ ସବୁ    ସୁନ୍ଦର ମଧୁର
ପାଖକୁ ପତ୍ୟରେ କିଏ

ଯାହାନେନେ ହେସ୍ତୁ ନୁହନ୍ତି ସରଳା
ସୁନ୍ଦରୀ ଗ୍ରାମ ନାରୀଏ ।
ନେଇଛ ସୋହାଗେ ମୋର ଅଙ୍ଗୁଳିରୁ
ଫେଡ଼ି ଯା ମୁଦ୍ରିକା ସାର
ଦେବ ରମ୍ୟ ହାର ରତନ ରୁଚିର
ବୋଲି ବଦଳରେ ତାର ।
ଯାହିଁକି ପଡ଼ିବ ମନରେ ସେ ଭାବ
ସ୍ୱଭାବେ ପୁରୁଷ ଜାତି
ଯାହାର ନୁହନ୍ତି ଗ୍ରୁଠୁଁ କଥା ଭଳୁ
ଯୁବତୀ ମନ୍ତ୍ର ସ୍ୱେଗନ୍ତ ।
ପ୍ରେମିକ ଶେଖର ରସିକ ତିଳକ
ଦୁଷ୍ମନ୍ତ ଶିରୋଭୂଷଣ
ରଖି ପରିହାସ ଦିଅ ଗୁଣନିଧି
ମଞ୍ଜୁଳ ମାଳ ବନ୍ଧନ ।
ଆରେ ପାପୀୟସୀ ଯା ଯା ମୋ ପାଖରୁ
ଜାଣିଲିଣି ତୋର ଶ୍ରୀନ୍ତ
ସ୍ୱଜନେ କଦାପି ଭୁଲିବେ କି ଦେଖି
ହୃଦୟର ବେଶ୍ୟା ପ୍ରୀତି ।
ଧିକ କୁହୁକିନୀ ଅସତ୍ୟ ସ୍ୱରୂପିଣୀ
କେବେ ମୁଁ ତୋ ନିକେତନେ
ଯହୁଥିଲି ଯାଇ ମାଳ ଦେବା ପାଇଁ
ରହୁଥିଲି ନିକାଞ୍ଚନେ ।
ରନ୍ଧେ ଯଥା ଦ୍ରବ୍ୟ ଆଧାରେ ତାହାର
ବହୁବା ଯେତେ ଶକତି
ତହୁଁ ଗଲେ ବଳ ଅତରେ ଉଛୁଳ
ଲେଢ଼େ ସଦା ଅନ୍ୟ ଗତି ।
କମ୍ବା ତପ୍ତ ଜଳ ବାଷ୍ପାକାରେ ଯେଣ୍ଣେ
ଯନ୍ତ୍ରୋଦରେ ହେଲେ ସ୍ଥିର
ସହାଣେ ସଣଦେ ରକ୍ଷକ କବାଟ†
ବାଟେ ଦିଏ ସେ ଉଦ୍‌ଗାର ।

---

† Safety—valve.

ତେଣେ କୁନ୍ତସମ    ଏରୂପ ବିଷମ
ଈର୍ଷିତା ଲଭି ଗଣିକା
ପାଣ୍ଡବଯୁ ଉଗ୍ରେ    ଉଠେ ଉଦ୍ଧରଣ
ଉତ୍କଳ ବାକ୍ୟ ରଚିକା ।
ତୁମେ ମଣିଥିଲ    ଏ ଯାଏ ତୁମ୍ଭଙ୍କୁ
ମହତ ମାନବ ବୋଲି
ଯେ ଉଚ୍ଚ ମହତ୍ତ୍ୱ    ତାହା ତୁମ୍ଭ ମିତ
ବେଶ୍ୟାରୁ ହେଲଣି କଳ ।
ଦେବ ବୋଲିଛ ଯା    ନ ଦେଲେ, ମୁଁ ସୁଦ୍ଧା
ନେବାକୁ ତା ଚାହେଁ ନାହିଁ
ସଦୟରେ ଦଅ    ରତ୍ନମୁଦ ମୋର
ଅବିଲମ୍ବେ ଲେଉଟାଇ ।
ତୁମ୍ଭ ପ୍ରତାରଣା    ପ୍ରତିକାର ଭଲ
ନୁହେ ଏହୁ ଦୀନହୀନା
ଢଳ ଢଳ ନେନେ    ମଉନେ ରହିଲ
ଏତକ କହି ନବୀନା ।
ଏହା ଦେଖି କହେ    କିଙ୍କର ଏ ବଟେ
ଅନ୍ୟାନ୍ୟ ଡାକିନୀ ଗୋଷ୍ଠୀ
କୁଞ୍ଜ ସମାର୍ଜନୀ    କେଶ ନଖ ଚର୍ମ
ଲଭିଲେ ଯାନ୍ତି ଲେଉଟି ।
ଏ ଦିବ୍ୟ ରୂପିଣୀ    ଡାକିନୀର ମାନ
ବିଷମ ଲୋଭ ସମ୍ପଦ
ନ ପାଇଲେ ହାର    କିବା ଅଙ୍ଗୁରୀୟ
ନ ଛାଡ଼ିବ ଏଥୁଁ ପଦ ।
ଅବିଲମ୍ବେ ଦମ୍ଭେ    ମହେନ୍ଦ୍ର ଅବଶ
ଭରେ ଗମିଲା ତକ୍ଷଣେ
ନଗରେ ଗଣିକା    ସ୍ତମ୍ଭୀଭୂତ ହୋଇ
ଚିନ୍ତୁରଛି ମନେ ମନେ ।
ନିଃସନ୍ଦେହ ଆଜ    ରାଜ ସେନାପତି
ହେଲେଣି ଉନ୍ମାଦ ଗ୍ରସ୍ତ

ନୋହିଲେ ଖାଲିକି ଧନା ପ୍ରୟୋଜନେ
ତାହିଁକି ହୁଅନ୍ତେ ବ୍ୟସ୍ତ ।
ଖଣ୍ଡ ତାଳ ଅଷେ ହାତଏ ଦପନ୍ତ
ତାଳଗଛ ମୂଳେ ତାଳ *
ପ୍ରଚଳିତ ବାକ୍ୟ ଦେଖି ପୋତ ପାଳ
ଉଠାଏ ପିନା ଅଙ୍ଗାଳ ।
ଚୁପଚୁପପୂର୍ଣ୍ଣ ଆଷେ ପିନା ବଟ
ତୁମେ ଦୁଷ୍ଟା ଦ୍ୱାରେ ଦ୍ୱାରେ
ପ୍ରୟୋଜନ ଧନା ବୃଥାରେ ପ୍ରୟାସ
କରଇ କିଏ ସଂସାରେ ।
ଚରକାଳ ସେହି ସୁଶୀଳ ସୁବୋଧ
ଦୟାଶୀଳ ଅମାୟିକ
ବୋଲି ଖ୍ୟାତ ଲୋକେ କହିଁ । ସେ କିଂଖଙ୍କେ
ସ୍ୱପନ୍ତେ ହୁଛା ଅଳୀକ ।
କେବେ ସେତ ଧନେ ଲୋଭ କି କୋଧର
ବଶୀଭୂତ ହୋଇ ନାହିଁ
ଉନ୍ମାଦ ବ୍ୟଗତ, ଲୋକ ଚରେ ଏତେ
ସ୍ୱଭାବର ହୁଏ କାହିଁ ?
ଅସମୟେ ଧନ— ସାହାଯ୍ୟେ ସଦୟେ
ସଦା ପର ଉପକାରୀ
ସ୍ୱଦେଶ ଦୁର୍ଗତ ଦର୍ଶନେ ଏହାଙ୍କ
ହୃଦ ହେଉଥାଏ ଭାରୀ ।
ମର ଜନ୍ତୁଜନ୍ତ ନରତେ ଜଗତେ
ମୋଷର ଅସଂଖ୍ୟ ଜିବେ
ଏହାଙ୍କ ସଦୃଶ୍ୟ ନର ଜନ୍ମ ନାହିଁ
ପୁଣି କି ଆଉ ଜନ୍ମିବେ ।
ଯାଇ ସବାଧସ୍ତି । ବନ୍ଧୁଶ୍ରୀ ସମ୍ମୁଖେ
ନବେଦବ ଏହି କଥା
ପ୍ରଚାର ଧନୀ ପଚରିବେ ଶୁଣି
ଏ ଘୋର ଅଶୁଭ ବାର୍ତ୍ତା ।

* ତାଳମାନେ ଘଞ୍ଚ ଦୋହଲର ପାଚିଲା ତାଳ ଖାନ୍ତି ।

ବନ୍ଧୁଥିଲେ ଯହେଁ ସ୍ୱାମୀ ଈଶ୍ୱର
ଅସମୟେ ସୁକଲ୍ୟାଣୀ
ପୁତ୍ର ବନବାସ ବିୟୋଗ ବିଧୁରା
ଯେସନେ କୌଶଲ୍ୟା ରାଣୀ ।
ଏ ଭବେ ଭାବନା ନଗରନନ୍ଦେ ଅସି
ଅମନ୍ଦେ ମହେନ୍ଦ୍ରାଳୟେ
ଘଟିତ ବୃତ୍ତାନ୍ତ ବର୍ଣ୍ଣିଲେ ଦ୍ୱାରତ
ସ୍ତନା ଗୁପ୍ତେ ଭୟେ ଭୟେ ।

---

ଦନୁଜ ମନ୍ଦରେ ମାରୁତିକୁ ପେଷି
ଯେସନେ ରଘୁ କୁମର
ଚନ୍ଦ୍ରକୂଟେ ପ୍ରିୟା ପାଶେ ଜଳଦକୁ
ପ୍ରେରି କବି ଯକ୍ଷେଶ୍ୱର ।
ମୁଦ୍ରା ଆହରଣେ ଭୃତ୍ୟେ ପ୍ରେରି ତେଣେ
ତାର ଆଗମନ ଆଶେ
ଅଗ୍ରଜ ମହେନ୍ଦ୍ର ବନ୍ଧୁଦେଲ ଏଣେ
ଉଦ୍‌ବେଗେ ମହା ଆୟାସେ ।
ଏତେ ବିଳମ୍ବର କାରଣ ତାହାର
କରି ନ ପାରି ନିଶ୍ଚୟ
ଆଦ୍ୟ ପ୍ରାନ୍ତ କେତେ ସ୍ମରି ଅନାୟତ୍ତେ
ତେସନ ହେଲା ଅଥୟ ।
ବଣିଆର ଠଙ୍କା ପଠାଇ ଦେବାକୁ
ଦେଇ ପ୍ରତିଶ୍ରୁତ ବାଣୀ
ରକ୍ଷକଙ୍କୁ କହି ପ୍ରତ୍ୟୁଷେ ଘେନି
ସେ ସ୍ୱାନ୍ତ ହେଲା ମେଲାଣି ।
ଆସୁଁ ଆସୁଁ ବ୍ୟଗ୍ରେ ନିରେଖିଲା ଅଗ୍ରେ
ଆନନ୍ଦେ ସ୍ୱୀୟ କଙ୍କରେ
ମୁଦ୍ରା ଘେନି ସଙ୍ଗେ ଆସୁଅଛି ବୋଲି
ପତ୍ନୀରଙ୍କ ପ୍ରୀତ କରେ ।

ଦୂତ ଦରଶନେ ଖାଲକ୍ତ ଅସର
ରସାନନ୍ଦ ହୋଇ ଯାଚ
ନ ଉଠିବ ହ୍ରସି ପ୍ରାର୍ଥିତ ପଦାର୍ଥ
ଦେଖି ସେ ଅନନ୍ଦ ନାଚ ।
ମାଧବ ! ଯେ ଲାଗି ପଠାଇଥିଲ ମୁଁ
ଅଣିଚୁ କି ନା ତା କହ
ଅଣିଅଛି କହ ଦର୍ଶାଇଲ ଭୃତ୍ୟ
ଗୃହୀତ ରତ୍ନ ନିବହ ।
ଦୂତ ଯେଉଁ ପାଇଁ ଯାଇଥିଲ୍ଲ ରୁହ
ତାହି ସେହ ମୁଦ୍ରା ସ୍ରଜ
ସବୁ କାର୍ଯ୍ୟେ ହେଲା ତୋ ଦୁଷ୍କାମି ଖେଳା
ସମୂଳେ ଗ୍ରଞ୍ଜିବ ଆଜ ।
ଭୟରେ ଚକିତ ଭ୍ରାନ୍ତ ଅନୁଚର
ଷ୍ଟିଲ୍ଲ ପକାଇ ସଣ
ତୁମ୍ଭ ଆଦେଶରେ ରକ୍ଷୁ ଘେନ ଘରେ
ସତ୍ୱର କରେ ପ୍ରସ୍ଥାନ ।
ନଖଠାରୁ ଶିଖ ସାଏ ଯୁବବର
ଶୁଣି ରୋଷେ ଜଳଗଲ୍ଲ
ଜ୍ୱଳନ୍ତ ଚିତାରେ *ଭୂମୀ କୁମାଣ୍ଡର
ପନ କରେ ଜଡ଼ଗଲ୍ଲ ।
ଗଣିକା ବଞ୍ଚିତ— କାନ୍ତର—ବୃତ୍ତାନ୍ତେ
ଅଣ୍ଡ ବିଚଳିତ ଚିତ୍ତେ
ପତ୍ନିଖିଲ୍ଲ ଆସି ସେକାଳେ ବଲ୍ଲଭ
ସ୍ୱଦଳ ବଳ ସହିତେ ।
ଗୋ ପଲେ ଗୋପାଳେ ଦେଖି, ଯେପନ୍ତେ ଦୂତ
ଧେନୁ ଧର୍ଷଣେ ଧାବିତ
ଘାତକ-ଶାର୍ଦ୍ଦୂଳ ଗାଭୀ ଛାଡ଼ି ହୁଏ
୧ରକ୍ଷକ ପରେ ପତିତ ।

* କୁଇଁ କଖାରୁ, ଏହାର ଶାଖା ସପକ୍ଷର ଅଗ୍ନି ସଂଯୋଗ ହଲେ ଚଟ୍ ଚଟ୍ ଶବ୍ଦ କରି ପ୍ରଜ୍ୱଳିତ ହୁଏ ।

୧ । ମନୁଷ୍ୟଖିଆ ବାଘ (man—eater) ମନୁଷ୍ୟ ପାଇଲେ ଅନ୍ୟ ଜୀବର ମାଂସ ଖାଏ ନାହିଁ ।

ପତ୍ନୀର ବଚନର          ଜ୍ୱଙ୍କରେ ଉପେକ୍ଷି
ତେସନ ଧୈର୍ଯ୍ୟ ହରାଇ
ଭଜନଭା ଶିଖା          ·ଠେକି ସେ ଲୁପ୍ତିଲ
ଅକଥ୍ୟ ଗୀରେ ଭୁହାଇ ।
ଯାଇ ନ ଦେଲେ ସେ          କପାଟ ଘରକୁ
ମଧ୍ୟାହ୍ନ ଭୋଜନ ବେଳେ
ପୁଣି କି ସାହସେ          ନିର୍ଲ୍ଲଜେ ନିଃଶଙ୍କେ
ପର ପୁରୁଷର ମେଳେ ।
ପଭଳ ଉଲ୍ଲାସେ—          ଆହାର ରହସ୍ୟେ—
କରିଥିଲେ ବନ ଶେଷ
ଏ ପଢ ବିଷୟ          ଧରି ଧିକ୍କାରିଲ
ନିଜ ପତ୍ନୀକି ବିଶେଷ ।
ସ୍ୱାମୀର ଭାର୍ଯ୍ୟାରୁ          ସେଣେ କରବୋରୁ
ସକଳ କଳ୍ପ ପ୍ରଟାଣ
ସ୍ୱ ପ୍ରଭସ୍ୱ ବଳେ          ସହଜେ ଚତୁର
ଭୂଝିନଏ ଅନ୍ୟମନ ।
ଷାଣ୍ଡବଣ୍ଡ ପଦ          ଯେଣ୍ଟିକି ଦ୍ୱିରଦ
ଦ୍ୱୁପଭ ଝେଙ୍କି ଓଠାଇ
ବସିଯାଏ ଗଣ୍ଡି          ମୂଦ୍ରୁଢ଼େ ତେଣ୍ଡିକି
ଯଥା ରକ୍ତ ହୋଏ ସାରି ।
କୋଧ ଦ୍ୱତାଶନେ          ମହେନ୍ଦ୍ର ଯେଣ୍ଡିକି
ଜଳନ୍ତ ହୋଇ ପ୍ରଖର
ବାଲ୍ଲଣି ବିଶ୍ୱାସ          ତଥିପରେ ତଥା
ହେଲା ଦୃଢ଼ୁଁ ଦୃଢ଼ତର ।
ଉନ୍ମାଦ ଚଣ୍ଡିଏ          ଧ୍ରୁବ କଥା କମା
ନୋହିଲେ ଲୋକନେ ବସି
କୌନେ ନଗ୍ନନଦେ          ରହିଥାନ୍ତେ କି ସେ
ମୁଖେ ବୋଲି ଦୁଃଖ ମସୀ ।
ଯାନ୍ତ ସୁଖେ ଥିଲେ          କିଏ ଏ ହସାରେ
ଅମ୍ନୀସ୍ୱ ସ୍ୱଜନ ସହ

ବୃଥା ଆଳାପ ନ କର ଅକ୍ଳେଶେ
ବସି ରହେ ଅହରହ ।
ଭାଷା ନାହିଁ ମୋର ବିଦେଶୀ ଅଟେ ମୁଁ
ଏ ଅବ ପ୍ରଳାପ ବାଣୀ
ନ ଖାଇ ନ ପିଇ ଆଳାପ ନ କରି
ନଥାନ୍ତେ ଭିକ୍ଷୁ ବଖାଣି ।
ମୁଖେ ଆଣିବାକୁ ନ ଯୋଗାଏ ଯାହା
ସେ କଥା ମଞ୍ଜରୀ ଆଗେ
ଲଜ ଭୟ ତେଜି କହିଥାନ୍ତେ କିମ୍ପା
ନୋହିଲେ ସେ ଅନୁରାଗେ ।
ଜାମାତୃର କଥା ଉନ୍ମତ୍ତ ବ୍ୟତୀତ
ଅନ୍ୟରେ ଏ ଅସମ୍ଭବ
ଚଣ୍ଡ-ଭ୍ରାନ୍ତ ଜନା ଏ ସ୍ଥାନ ବାସନା
ଏହାଙ୍କ ପକ୍ଷେ ଦୁର୍ଲ୍ଲଭ ।
ପ୍ରଥମେ ପ୍ରହରୀ— କରେ କୃଶୋଦରୀ
ମୁଦ୍ରାମାନ ଦେଇ ଗଣି
ସ୍ଥଳେ ଏହା ଥିଲି ବୋଲିଣ ଜାଣିଲି
ବାନ୍ଧନ ବାନ୍ଧନ ଧନ୍ୟ ।
ସତ୍ୟ ସତ୍ୟ କାନ୍ତ ହେଲତ ଉନ୍ମତ୍ତ
ସରିଲ କରମ ମୋର
ଦାବାହତ ଦ୍ରୁମ— ସମ ଶୁଣି କମ୍ପେ
କୋପେ ଯୁବା କଳେବର ।
କହେ, ଦ୍ୱିଚାରିଣି ! ଏତେ ଦିନ ଯାଏ
କି ମନ୍ତ୍ରେ ବିମୁଗ୍ଧ କରି
ରଖିଥିଲୁ ଛଳି, ଯେଣୁ ମଣିଥିଲି
ତୋତେ ପ୍ରାଣେଶ୍ୱରୀ ସରି ।
କେତେ ପରତେମେ ଲୌହକାର ଯହେ
ନିର୍ମିଣେ ବାଣ ଫଳକ
ଦୈବ ବଶେ ଜାଲେ ହୁଏ ସିନା ତାହା
ନିଜର ପ୍ରାଣ ଘାତକ ।

ଆରେ ଅଲକ୍ଷଣି ! ସ୍ୱାମୀ ବଘାଣନ !
ଶ୍ରମ କାଳଭୁଜଙ୍ଗମା
ଦୁଷ୍ଟ ଅଭିସନ୍ଧ ପୂର୍ଣ୍ଣ ପାଇଁ ସିନା
ଛଳେ ଭୁଲ କଳଙ୍କିନୀ !
ଏ ସବୁ ଦୁର୍ବୃତ୍ତ ଧୂର୍ତ୍ତି ମାବୃଗଣସ୍ତୁ
ସନ୍ଧୁଟେ· ମନ୍ତ୍ରଣା କର
ଉନ୍ମାଦ ପ୍ରବୃର ଅବବୋଧେ ରେଖି
ଅସିବୁ ରଖିବୁ ଧର ।
ଯେଘନ ସେ ବାଞ୍ଛିତ ଦୁରଭିସନ୍ଧିର
ପ୍ରତିଫଳ ସମୁଚିତ
ବୋଲି ବଳବନ୍ତ ସୁଦଶୀକୁ ଲକ୍ଷି
ସଘନେ ହେଲେ ଧାବିତ ।
ଅସହ୍ୟ ଆତ୍ମଜ— ଶୋକେ ଲୁପ୍ତ-ଧୈର୍ଯ୍ୟ
ରାଗାନ୍ଧ ରକ୍ଷସପତି
ଧାଇଁଥିଲେ ଯଥା ଧରଣୀ ମଣ୍ଡନା-
ସତୀ ଜାନକୀର ପ୍ରତି ।
ମାତ୍ରକ ସ୍ୱାମୀର ଖେଦ ପରିପୂର୍ଣ୍ଣ
ଆଦମଣେ ନୋହି ସ୍ଥିତ
ଧରିବାକୁ ଧନା ସତ୍ୱର ସ୍ୱଜନ
ମାନଙ୍କୁ କଲେ ଇଙ୍ଗିତ ।
'ଉନ୍ମାଦ ବ୍ରହ୍ମନ୍ତ ପ୍ରଭୁ' ଏହି ରୂପ
ପକ୍ଷ କର ସମର୍ଥନ
ସଙ୍ଗେ ସଙ୍ଗେ ବନ୍ଧା ହେଲେ ସେ ସୁକେ
ମାଧବ କରଚରଣ ।
ଯେଘନ ଜାଲ-ବନ୍ଧ- ବାଘକୁ ଶବର
ଯଥା ପୂର୍ଣ୍ଣ ମନୋରଥେ
ତେଣ୍ଟେ ଉଭୟଙ୍କୁ ଅଙ୍କଟି ସକଳେ
ଗମିଲେ ବାଞ୍ଛିତ ପଥେ ।
ଏ ବିଚିତ୍ର ଦୃଶ୍ୟ ଅଚମ୍ଭିତେ ଜନେ
ଚୌଦିଗୁ ଆଣିଲା ଝିଙ୍କି

ସଜ୍ଜା, ଦର, ବାସ୍ନୀ ବଲ୍ଲେଭନେ ସ୍ନେହେ
ଲଭେ କଏ ନୁହନ୍ତଙ୍କୁ ?
ରମ୍ୟ ପଦାଘର ମଧ୍ୟେ ତାଙ୍କୁ ରଖି
ଛଟକେ ସେ ଛଟକିନୀ
ବଢ଼ଧ ଟଙ୍କାସ୍ତା- ବ୍ୟାପାରେ ବ୍ୟାପୃତ
ହୋଇଲେ ବେଜ ଭଗିନୀ ।
ଏକାଳେ ପ୍ରବେଶି ଡାକିଏ ଭ୍ରଷ୍ଟେଇ
ଆଗୋ ଅଗୋ ! ସାଆନ୍ତାଣୀ
କାହାଲଗି ଏତେ ସଶବ୍ୟସ୍ତ ହୁଅ
ଔଷଧ ସକଳ ଆଣି ।
ଗଲେଣି ସାଆନ୍ତେ- ସଙ୍ଗ ଅଲକ୍ଷିତେ
ମାଧବ ସନ୍ତ ପଳାଇ
ତାରିଣୀ ଦେବୀଙ୍କ ଶୃଙ୍ଗାଟକ ପାଖେ
ଦେଖି ମୁଁ ଆସିଛି ଧାଇଁ ।
ଶୁଣି ଆତଙ୍କରେ ନ ଖୋଜ ସ୍ତ୍ରୀ-ପୁତ୍ରେ
ପଦ୍ମାକ୍ଷୀ ମଳିନ ବେ
ପୀଠ ଅଭିମୁଖେ ହୋଇ ଧାବମାନ
ଭୂରତେ ସ୍ୱାମୀ ଉଦ୍ଦେଶେ ।
ସଚକିତେ ଦେବୀ ଗୃହ ଚତୁଷ୍ପଥ—
ଆଗେ ବଲ୍ଲେଭଙ୍କ ବାଳା
ଉଷ୍ଣଚନ୍ତ ସ୍ୱାମୀ କମଣ୍ଡଳୁ କରେ
ଶୋଭେ ହେମ ରତ୍ନମାଳା ।
ଘଟିଲା ସହସା ତହିଁ ପୁଣି ଏକ
ରହସ୍ୟମୟ ଘଟଣା
ଦୁଃଖ ପରେ ଦୁଃଖ ସର୍ବଦା ଆସଇ
ଲଭେ ଏ କି ବିଡ଼ମ୍ବନା ।
ପ୍ରବଳ ଆବର୍ତ୍ତେ ଉମ୍ଭଳ ତରଙ୍ଗ—
ବେଗେ ଅସମ୍ଭାଳ ତଣ୍ଟି
ସମ୍ଭାଳି ସମ୍ଭାଳି ପଡ଼େ ଆସି ପୁଣି
ତାପରେ ଭୃଙ୍ଗ ଲହରୀ ।

ନ ଯାଉଁ ନ ଯାଉଁ  ଦୁଃଖିନୀ ବିଧବା
ମନ୍ଦ ସ୍ୱାମୀ ଶୋକ ଖେଦ
ପ୍ରିୟତମ ସୁତ-  ବିଚ୍ଛେଦ ବିରହ
ତା ହୃଦୟ କରେ ଭେଦ ।
ନ ଶୁଖୁ ନ ଶୁଖୁ  ଦୁର୍ଭିକ୍ଷ ପୀଡ଼ିତ
କୃଷକ ନେତ୍ର ଲୋତକ
ଦଶା ବିପର୍ଯ୍ୟେ  ଧାଇଁ ଆସେ ସିନା
ଭୀଷଣ ଗୋରୁ ମଡ଼କ ।
ନଶ୍ୱରର ଗତି-  ବାରଣେ ଜଗତୀ
ଭିତରେ କାହା ଶକତି
ତା କ୍ରୀଡ଼ାରେ ନଷ୍ଟ  ପ୍ରାଣୀଏ କନ୍ଦୁକ—
ବତ ଉଠନ୍ତି ପଡ଼ନ୍ତି ।
ଆଚମ୍ବିତେ ତହିଁ  ପ୍ରବେଶି ବଣିଆ
ଯୁବାକୁ କହିଲା ରାଗେ
ମିଥ୍ୟାବାଦୀ ବୋଲି  କହୁ ନ ଥିଲି କି
ମୋତେ କିଛିକ୍ଷଣ ଆଗେ ।
ସେ ହାର ଲମ୍ବାଇ  ହେଉଛ ଦେଖାଇ
ଲାଜ ମାଡ଼ୁନାହିଁ ପରା
ଶ୍ୱଶୁର ସମ୍ପତ୍ତି—  ପ୍ରଭବେ ଏବେତ
ଧରାକୁ ମଣୁଛ ସରା ।
ଭାର୍ଯ୍ୟାର ସମ୍ପଦେ—  ବଡ଼ଲୋକ କାହୁଁ
ରହିବ ଚିର ଦିବସ
ଏ ଛଳନା ସବୁ  ପ୍ରକାଶିତ ହେଲେ
ବୁଡ଼ିବ ସକଳ ଯଶ ।
* ନୀଳବୋଲା ହୋଇ  ଗୋମାୟୁ ପ୍ରକାଶୁ
ଥିଲା କେତେ ବାହାଦୁରୀ
ବୋବାଇ ଦେବାରୁ  ଧରା ପଡ଼ିଗଲା
ସିନା ତା ଯେତେ ଚତୁରୀ ।

* ହିତୋପଦେଶର ନୀଳବର୍ଣ୍ଣ ଶୃଗାଳ କଥା ଦ୍ରଷ୍ଟବ୍ୟ ।

ଉଦ୍‌ବେଳ ସୁଧା ସତ୍ୟସ୍ୱପ୍ନେ ଏ କି
ବାତୁଳ ପ୍ରଳାପ କଥା
ମିଥ୍ୟା ନରକରେ ଥରଥର ତୃଷ୍ଣା
କେତେ ଡୁବାଉଛ ମଥା ।
ଗ୍ରନ୍ଥେ ମୁଁ ନଥିଲି, ଅଯାଚିତ ଭାବେ
ଦେଲ ମାଳ ବଳାତ୍କାରେ
ନିଜେ ହଠହଠା ହୋଇ ମୋତେ କିଆଁ
ପକାଅ ହଠହଠାରେ ।
ମଞ୍ଜୁମନ୍ଦ ଛଳ ମଉଳେ କଣ୍ଠାଗ୍ର
ରଜନୀ ଭ୍ରମରଘଟା
ପ୍ରାତେ କଣ୍ଟେକଣ୍ଟେ ଉଠାନ୍ତି ଯେସନ
କୈରବ କୁଳଠା ହଠା ।
ନୀଚ ଲୋକଙ୍କର ତେଣୁ ନୀଚଭାବ
ସ୍ୱକୀୟ କୁକର୍ମଫଳେ
ନିଜେ ଡୁବି ତାର ସନ୍ଧତେ ଅପରେ
ଡୁବାନ୍ତି ଦୁଷ୍କୃତ ଜଳେ ।
ହାର ଦେଲ ପରେ କେବେ କାହିଁ ଦେଖା
ହୋଇଥିଲି ତୁମ୍ଭସହ
ଅସ୍ୱୀକାର କଲି କେବେ ବା ଏମାନ
ପାଇ ନାହିଁ ବୋଲି କହ ।
ଦେଖୁଛ ତ ସଙ୍ଗ ସମକ୍ଷେ ରୁଚିର—
ହାର ମୋର ବକ୍ଷସ୍ଥଳେ
ପ୍ରକାଶ କମ୍ପାଇ ଅଳୀକ ବୁଦ୍‌ବୁଦ
ତା ହେଲେ ଜନତାକଳେ ।
ଘୋର ବନେ ତରୁ ତୃଣ ପୂର୍ଣ୍ଣ କରି
ପ୍ରକରେ ତ୍ରିକୋଣାକାରେ
ବାନର ଜିବାଏ ପକାନ୍ତି ବାନରେ
ଘେରି ଯଥା ଜାଲି ଦ୍ୱାରେ । †

† ମାଙ୍କଡ଼ଧରିଆମାନେ ଚତୁର୍ଦ୍ଦିଗସ୍ଥ ଗଛରେ ନ ଔଷଧ ଲଗାଇ ଦେଲେ ବାନରମାନେ ସେ ବଣକୁ ନ ଯାଇ ତାଙ୍କ ଅଭିଳଷିତ ବାଟେ ଯାଆନ୍ତି ।

ତେଡ଼େ କପିଳାସ— ବାସୀ ପତେ ବସ୍ତେ
ନାହିଁ କିଛି ଚମତ୍କାରି
ବିଦେଶୀଙ୍କ ନାନା କପଟ ଜାଲରେ
ବେଢ଼ିବା ତାଙ୍କୁ ବେଭାର ।
ଏ ଅଦ୍ଭୁତ ବିତଣ୍ଡା ବାଦେ ବେନଙ୍କର
ବଢ଼ିଲା ବିଶେଷ କ୍ରୋଧ
ପ୍ରତାପ ଶିଖାରେ ଛୁଇଁହେଲା କରେ
କମଳା ରୈପାର ରସ
ଦ୍ୱନ୍ଦ୍ୱ ତାମ୍ର ସ୍ୱତ ଉତ୍ତେଜନା ତାପେ
ଆବା ଘନ ଘନ ଫୁଙ୍କେ
ଉଦ୍ରେକ ଦେଲାକି ଉଦରସ୍ଥ ଜଳେ
‡ ଉଦ୍ଦାମ କ୍ରୋଧ ବହ୍ନିକି ।
ଗର୍ଜିଲେ ଜୀମୂତ ପ୍ରତିଧ୍ୱନି ମାଳ
ଯେମନ୍ତ ହୁଅନ୍ତ ତୁଳ
ତେସନ କଳହ— କାଦମ୍ବିନୀ ତାକେ
ଜନତାର ହେଲା ଗୋଳ ।
ସ୍ୱଷ୍କପୀ କେହି ସମର୍ଥନ କରି
କହେ ସ୍ୱର୍ଣ୍ଣକାର ପକ୍ଷ
ଘଡ଼ଘଡ଼ି କଥା ଛଳବାକୁ ଏକା
ଦେଖିଲି ଏ ଯୁବା ଦକ୍ଷ ।
କି ଆଶ୍ଚର୍ଯ୍ୟ କଥା ସାମାନ୍ୟ ଏ ମାଳ
ଗୋଟି ଉପଲକ୍ଷ କରି

‡ ସ୍ୱର୍ଣ୍ଣକାରମାନେ ଏକ ସୂକ୍ଷ୍ମ ଛିଦ୍ରଯୁକ୍ତ ଶୂନ୍ୟଗର୍ଭକ ଗୋଟିଏ ତାମ୍ର ଗୋଳକ ଅଗ୍ନିରେ ନିକ୍ଷେପ କରନ୍ତି, ତଦ୍ୱାରା ଗୋଳକ ଅଭ୍ୟନ୍ତରସ୍ଥ ବାୟୁ ଉତ୍ତପ୍ତ ହୋଇ ବାହାରିଯିବା ଦ୍ୱାରା ଗୋଳକ ଭିତର ବାୟୁ ଶୂନ୍ୟ ହୁଏ ତହିଁରେ ତାହା ପାଣିରେ ନିକ୍ଷେପ କଲାପରେ ଭିତରେ ପାଣି ପୂର୍ଣ୍ଣ ହୁଏ ଏବଂ ଉକ୍ତ ଗୋଳକ ଅଗ୍ନିରେ ସ୍ଥାପନ କଲେ ଉତ୍ତପ୍ତ ବାଷ୍ପ ଉତ୍ପାଦକ ହୋଇ ମୁହୂର୍ତ୍ତକରେ 'ସ୍ୱଁତ' ଶବ୍ଦ ବାହାରି କରି ଅଗ୍ନିକୁ ପ୍ରଜ୍ୱଳିତ କରେ । ସେହି ପ୍ରଜ୍ୱଳିତ ଅଗ୍ନିରେ ସ୍ୱର୍ଣ୍ଣକାରମାନେ ସ୍ୱର୍ଣ୍ଣ ରୌପ୍ୟାଦ କାର୍ଯ୍ୟ କରନ୍ତି । (Steam power) ବାଷ୍ପ ଶକ୍ତି ଦ୍ୱାରା ଯେ କାର୍ଯ୍ୟ କରାଯାଏ ଏହା ଅଧୁନିକ ନୁହେ ଏ ଦେଶରେ ବହୁ ପ୍ରାଚୀନକାଳରୁ ମଧ୍ୟ ଏହା ଜଣାଅଛି ।

ଏ ପୁଣି ଏ ରୂପ     ସ୍ବହସ୍ତ'ଖେଳବ
ସ୍ବପ୍ନେ ନ ଥିଲି ସୁମରି ।
ବାହାରେ ସକଳେ     ହୋଇଥାନ୍ତି ସିନା
ଭଦ୍ର ସମାଜରେ ଗଣା
ମୃଦା ମହାଶୟ     ଆଗରେ ପଡ଼ିଲେ
ସବୁଗୁଣ ଯାଏ ଜଣା ।
କଠୋକ୍ତି କୁଳିଶ     ଦୃଢ଼ ତାଡ଼ନରେ
ମହେନ୍ଦ୍ର ଦମ୍ଭ ଭୂଧର
ଚୂର୍ଣ୍ଣହୋଇ ମହା     କ୍ରୋଧରେ କମ୍ପିତ
ହେଲା ତନୁ ଥର ଥର ।
ଶିର ପ୍ରତିବାଦ     ଆସ୍ଫାଳନ ନାଦ
ନ ସହୁ ଯେସନ ଘନ
ଉତ୍କଟ ଚଳାରେ     ଅବଲମ୍ବେ କରେ
ତା ଶିରେ ବଜ୍ର ତାଡ଼ନ ।
ତେସନ କହିଲି     ଆରେରେ ବର୍ବର
ଏତେ ବଡ଼ ତୋର ବଳ
ପ୍ରତାରକ ମୋତେ     କହୁଛୁ ଏକ୍ଷଣି
ଘେନ ତାର ପ୍ରତିଫଳ ।
ଏରୂପେ କ୍ରମଶଃ     ବଢ଼ି ବେନିଙ୍କର
ବିଷମ କଳହ ବାତ
ଉଦ୍‌ବେଗ ଲହରୀ     ଜନତା ଜଳଧି
ଜଳରେ କରିଲା ଜାତ ।
ଭଗ୍ନୀସହ ଭୟେ     ପ୍ରବେଶି ବକ୍ଷସୀ
ଏ ସମୟେ ଦୃଢ଼ପଦେ
ସମ୍ବୋଧି ତନୟେ     କହିଲା ସଭୟେ
ବ୍ୟାକୁଳେ ବାଷ୍ପ ଗଦ୍‌ଗଦେ ।
ସାନ୍ତ୍ବସ୍ଥ ଲଭେ     ଧୈର୍ଯ୍ୟଧର ସର୍ବେ
ଦୁଃଖିନୀ ଯୋଡ଼ୁଛି ହାତ
କପାଳ ଦୋଷକେ     ସହସା ଉନ୍ମାଦ
ହୋଇଛନ୍ତି ମୋରନାଥ ।

ରଖିଥିଲ ତାଙ୍କୁ    ବହୁ ଶ୍ରମେ ନେଇ
ଗୃହେ ସଯତନ କରି
ମାତ୍ର ଅଲକ୍ଷିତେ    ସମସ୍ତଙ୍କୁ ଛଳି
ଆସିଲେ ତହୁଁ କପରି ।
ଅନୁଚରଗଣେ    ଇଙ୍ଗିତ କରନ୍ତି
ଏତେବୋଲି କୃଶୋଦରୀ
ଆସ ଅବଲମ୍ବେ    ସତର୍କେ ସୁଦୃଢ଼େ
ସକଳେ ସ୍ୱାମୀଙ୍କୁ ଧରି ।
କନିଷ୍ଠ ମହେନ୍ଦ୍ର    ନିରୁପାୟେ ଧାଇଁ
ତା ଶୁଣି ଅତି ବିସ୍ମୟରେ
ଆସିଲେ ତ୍ୱରିତ    ସମ୍ମୁଖସ୍ଥ ପୂତ
ମନ୍ଦିର ପୁର ଉଦରେ ।
ବାଳକ ଯେମନ୍ତ    ଦାଣ୍ଡେ କ୍ରୀଡ଼ାଖେଳ
ସଙ୍ଗୀଙ୍କ ତାଡ଼ନ ପାଇ
ପ୍ରବେଶେ ମାତାର    ଚିର ଶାନ୍ତିପୂର୍ଣ୍ଣ
ସ୍ନେହମୟ କୋଡ଼େ ଧାଇଁ
ଦୟାର୍ଦ୍ର ହୃଦୟା    ଶାନ୍ତି ସ୍ୱରୂପିଣୀ
ପ୍ରାଚୀନା କରୁଣା ଧାଇ ।
ତେଣ୍ଟେ ଦୁଃଖେକାନ୍ଦି    ଗଦଗଦ ସ୍ୱରେ
ଚରଣେ ପଡ଼ିଲା ଯାଇ ।
ସସ୍ନେହେ ଅଭୟ    ଦେଇ ସେ ଦୟାର୍ଦ୍ର-
ଅଣ୍ଡଥିକ ମହାଦରେ
ପ୍ରକୃତ ବିଷୟ    ବୁଝିବାକୁ ବୃଦ୍ଧା
ବାହାରେ ଆସି ସତ୍ୱରେ— ।
ଦେଖିଲେ, ଆଗେ    ପରିଜନସହ
ବେନି ଅନିନ୍ଦ୍ୟ ସୁନ୍ଦରୀ
ଉଭ ଶୋକାକୁଳେ    ପ୍ରତ୍ୟୂଷେ ମଳିନ
ଯୁଗଳ ତାରକା ପରି ।
ବିଷାଦେ ବିଧୁରା    ଧୂଳିରେ ଧୂସରା
ଦିଶନ୍ତି ଯୁଗ୍ମ ଅବଳା

ସନ୍ଧ୍ୟାମୁଖ ଶଶି— ପିଣ୍ଡରୁ ଛିଡ଼ିକି
ପଡ଼ିଛି କି ବେଳକଳା ?
ଶିରଚ୍ୟୁତ ହୋଇ ପିଠିରେ ଦୋଳଇ
ରୁକ୍ଷ ବିମୁକ୍ତ କୁନ୍ତଳ
ପ୍ରଦୀପ ଶିଖାର ପୃଷ୍ଠେ ରଙ୍ଗେ କମ୍ପେ
ବହ୍ନିଲ ଛାୟା ତରଳ ।
ଧନସାଜ ଚୁଲି— ଚୁଲି ରୌଦ୍ର ତେଜେ
ଦେହଗୋଟି ହୁଏ ଖର
ମନ୍ଦାନିଲେ ଆହା ପାଦପ ବର୍ଣ୍ଣିତା
କମ୍ପେକି ହେମ ବଲ୍ଲରୀ ?
କ୍ଷୁଧା ତୃଷାସ୍ରବେ ଅବସନ୍ନ ତନୁ
ଆହା ଦେଖ କୃଶୋଦରୀ
ଦଶନ୍ତ ସ୍ୱସ୍ଥର— କରେ ପର୍ଯ୍ୟୁଷିତା
ମୃଣାଳର ନାଡ଼ ପରି ।
ସହସା ସମ୍ମୁଖେ ଅଶ୍ରମୁଁ ଆଗତା
ବୃଦ୍ଧାଙ୍କୁ ହେର ପାଖରେ
ଶୋକ ଆବେଗରେ କ୍ଷିପିଲି ତରୁଣୀ
କରୁଣ କୋମଳ ସ୍ୱରେ ।
ମୂର୍ତ୍ତିମତୀ ଶାନ୍ତ ଆଗେ କି ସ୍ୱରଣୀ
ବିପଞ୍ଚୀ ବାଜି ଉଠିଲି ?
ନଶ୍ୱର ଜଗତ ମୂର୍ତ୍ତିକୁ ବନ୍ଦେକି
ପଞ୍ଚମ ତାନେ କୋକିଳା ?
ଜନନୀ ଗୋ ସ୍ୱାମୀ ହୋଇଛନ୍ତି କ୍ଷିପ୍ତ
ଦୁର୍ଭାଗ୍ୟ ଏ ଅଧିନୀର
ସୁତକନ୍ୟା ଲାଗି ଘେନପିବ ଗୃହେ
ମନେ କରିଅଛି ସ୍ଥିର ।
କହ ମାତଃ କିପାଁ ? ପ୍ରଦାନ କରିଲ
ତାଙ୍କୁ ଆଶ୍ରମେ ଆଶ୍ରୟ
କି ହେବ ଅବଧି ? ଚିକିତ୍ସା କରୁବେ
ରୋଗିଙ୍କୁ ଦେବା ପ୍ରଶସ୍ତ ।

କହିଲେ ସସ୍ନେହେ ପୀଠାଧିକାରଣୀ
ଅଶ୍ୱାସି ମନ ବାଳାର
ତହୁ ସୁଲକ୍ଷଣୀ ମୂଳରୁ ସମସ୍ତ
ତବ ସ୍ୱାମୀ ସମାଗ୍ଭର ।
ପ୍ରକୃତ ବ୍ୟାପାର ଘଟିଛି ଏଥି ଯା
ଅକପଟେ ସ୍ନେହାଧୀନା
ଶୁଣିଲେ ସକଳ ଯା ହେବ କର୍ତ୍ତବ୍ୟ
ନିଶ୍ଚୟ କରିବ ସିନା ।
ଏତେ ବୋଲି ବୃଦ୍ଧା ପୁରୌଗଣେ ଆଜ୍ଞା
ବିବିଧ ପ୍ରଶ୍ନ ପତ୍ରର
ଘଟିଥିଲା ଯେତେ ବୃତ୍ତାନ୍ତ ବାଳୀର
ବଦନୁ ନେଲେ ଓଠାଇ ।
ପାଣିଟିକ ଠାଣି— ନଅଇ ଥାଳରୁ
ଯଥା-ଦୀପ-ଗର୍ଭୀଝବା (୧)
କିବା ଉଷାଯଥା ପ୍ରକଟେ ପ୍ରକାଶ—
ତାରକା ଚନ୍ଦ୍ରମା-ପ୍ରଭା ।
ଯେମନ୍ତ ସେ ସ୍ତ୍ରୀୟୁ— ବାଳୀର ଚରିତେ
ସର୍ବଦା ସନ୍ଦେହମନା
ସେପାଇଁ ଯେମନ୍ତ— ସବୁ ସମକ୍ଷରେ
ତାହାଙ୍କୁ ଦଏ ଗଞ୍ଜନା ।
ଅପର ପ୍ରୀତିରୁ ନବୃତ୍ତି ନମନ୍ତେ
ଯେମନ୍ତ ଅତି କଠୋର
ପୁରୁଷ ବଚନେ ଶାସନା କରଇ
ସମକ୍ଷେ ସେ ଯୋଷିତର ।

---

(୧) ବସ୍ତୁତ ମୂଲ୍ୟକ୍ଷମ୍ ବଶେଷ । ଥାଳିରେ କଞ୍ଚିତ ପାଣି ଦେଇ ତହିଁରେ ସାପଟିଏ ଜାଳି ଦେଇ ତା ଉପରେ ଗୋଟିଏ ଶବ୍ଦଂଗର୍ଭ କୁମ୍ଭ ଛାଙ୍କି ଦେଲେ ପ୍ରଦୀପର ଶିଖା ଦ୍ୱାରା କୁମ୍ଭସ୍ଥ ଅମ୍ଳଯାନ (Oxygen) ପୋଡ଼ିଯାଏ ଏବଂ ଥାଳିର ଜଳ ଲୁବାଯ୍ୱର ଚାପ ଦ୍ୱାରା ଥାଳି ଘୂର୍ବ କରି ଅମ୍ଳଯାନ ଶୂନ୍ୟ ସ୍ଥାନକୁ ଉଠେଯାଏ । ବାୟୁରେ କେତେ ପରିମାଣ ଅମ୍ଳଯାନ ଅଛି ତାହା ନିରୂପଣ କରିବାର ଏହା ଗୋଟିଏ ସହଜ ଉପାୟ ।

ଏ ଅଦ ସାବତ ଘଟଣା ସକଳ
ମୀନାକ୍ଷୀ ମୃଦୁଳଗୀରେ
କହ ନ ଲୁଚିଲ ଅକପଟ ଚିତ୍ତେ
ନିବେଦିଲ ଧୀରେ ଧୀରେ ।
ସହାନୁଭୂତିରେ ସଙ୍କୁଳ ସାଦରେ
ଦୁଃଖରେ ସେ କଏ ଯୋଗ
ତା ପାଖେ କେ କହ ନ ଫେଡ଼ ହୃଦୟ
କରଇ ଛଳ ପ୍ରୟୋଗ ?
ସ୍ୱାମୀ ସୁହାଗୀର ନିଜ ମୁଖୁ ଶୁଣି
ଏସନ ପଣ୍ଡ ଲକଣ
ଟାଣ୍ଡ ବୃନ୍ଦମଣି— ବୁଦ୍ଧା ବୁଝି ନେଲେ
ପଲକେ ସବୁ ସ୍ୱରଗ ।
ଗୋଟିଏ କଥାକୁ କେ ଟିଏ ପ୍ରକାରେ
ମୂର୍ଖ ହେଉଥାଏ ଘୋଟେ
ନା ପିନା ନଏ କଥାକେ କାର୍ଯ୍ୟରୁ
ଅସଲ କଥାଟି ଶୋଷ ।
ସ୍ୱପେଲେ ପ୍ରାଚୀନା ମନ୍ଦହାସ୍ୟେ ଧୀରେ
ସ୍ନେହ ମଧୁର ବଚନେ
କର୍ଣ୍ଣ ରସାୟନ ବୀଣାତାର ଯଥା
ଅଙ୍ଗୁଳର ସ୍ପର୍ଶନେ ।
ଦେଖୁଛ ସୁଶୀଲେ ରୂଢ଼ ବ୍ୟବହାର
ସହୁ ନ ପାରୁ ହୃମ୍ଭର
ପ୍ରିୟତମ ପଣ୍ଡ କ୍ଷିପ୍ର ହୋଇଛନ୍ତି
ନରୂପାୟେ କୃଶୋଦରୀ ।
ଅପ୍ରିୟ ବାଡନା ମୁଖସ୍ଥ ପହୀର
ନିର୍ଦ୍ଦୟ କଣ୍ଠୁ ସ୍ୱରଗ
ବାତ୍ୟା କୁକ୍କୁରର ଦଂଶନ କ୍ଷତରୁ
କଳ ଦୁର୍ବିସହ ଅତି ।
ଖର ସୌରକର— ପାତେ ମ୍ଲାନ ହେଲେ
କୁଅଳ ଗନ୍ଧକ୍ଷିକଳ

ପ୍ରଣୟୀ ଦମ୍ପତି—    ତେଜେ ଚେତନ୍ତେ ପ୍ରେମ
ପ୍ରସୂନ ଯାଏ ମଉଳି ।
ପ୍ରେମ ପବନରେ    ଉଠେ ପୁଂସହୃଦ
ସାଗରେ ଭାବ ଜୁଆର
ବଶେ ସେ ଭାବ    ଭଙ୍ଗା ଲଜ୍ଜା ଦ୍ୱାର
ହୁଏ ସିନା ନାରଖାର ।

ନିଜେତ କନ୍ଦୁଛ    ଭୋଜନେ ଶୟନେ
ଗମନେ ସକଳଠାରେ
ସନ୍ଦେହ ନୟନେ    ନିରେଖି ନାୟକେ
ଗଞ୍ଜିଅଛ ବାରେ ବାରେ ।
ଭାବ ଗୋ ଭାବିନି !    ଏରୂପ ବେଶରେ
କିଏସେ ନୋହିବ କ୍ଷିପ୍ତ
ବୃଥା ଦୋଷୀ କର    ପ୍ରିୟତମେ ନିଜେ
ଅକର୍ମ୍ମରେ ହୋଇ ଲିପ୍ତ ?
ନିଜ ଦୋଷ କଥା    ବୁଝିଲେ ହେଁ ସୁଦ୍ଧା
ଅଗ୍ରହେ ଦମ୍ଭେ ବଳ୍ପସୀ
ନାନାମତେ ଅଳି    କଲ୍ପି ସ୍ୱାମୀ ପାଇଁ
ପ୍ରାଚୀନାର ପଦ ଧର ।
କେତେଲୋକ ହବେ    ସ୍ୱଦୋଷ ଆଲୋଚ
କରନ୍ତି ତା'ପ୍ରତିକାର
ପର ଉପଦେଶେ—    ବ୍ୟସ୍ତ ନିଜ ଦୃଷ୍ଟି
ଥାଉପଛେ ସ୍ୱର ସ୍ୱର ।
ନୂପୁର କ୍ଷିପିଣୀ    ଏ ବାମା ସମ୍ମୁଖେ
ସମର୍ପି ଦେଲେ ତରୁଣ ।
ଆମ୍ଭବଶେ ତାକୁ    ଆଣିବାକୁ ଯାଇ
ଅଭିମାନିନୀ ନିପୁଣ ।
ବିପରୀତ ପଥେ—    ନେଇ ଅସଂଯତେ
ଅଧିକ ଉନ୍ନତ କରେ
ଏ ଦମ୍ଭେ ପ୍ରାଚୀନା    ସମର୍ପିଲେ ତାହିଁ
ଯୁବାକୁ ବାଳାହସ୍ତରେ ।

ବକ୍ଷସ୍ଥ ଉତ୍ତରୀର ତେଜସ୍ଥାନ ଅଷ୍ଟ
ପ୍ରତିଷ୍ଠା ପାଇଁ କି ଜନ,
ଶୀଘ୍ର କାର୍ଯ୍ୟଲମ୍ବୁ ଉଦ୍ଧତ ଗ୍ଳାନ
ହସ୍ତେ କରେ କି ଅର୍ପଣ ?
“ତପସ୍ୟାରେ ତୁଟି ହେବ ନାହିଁ କେବେ
ଏପୁରେ” ଭାବି ଏସନ
ଗୃହ ଦେଖିବାକୁ ଆଦେଶି ପ୍ରାଚୀନା
ଆଶ୍ରମେ କଲେ ଗମନ ।
ହତବୁଦ୍ଧି ହୋଇ ସେ ମଠ ଅଳନ୍ଦେ
ବସିବେକ ସୁକୁମାରୀ
ଢଣାଦେ ମଣ୍ଡନେ ଚକ୍ରାକୁଳ ମନେ
ନରୁପାୟେ ହେଲେ ଧୀର ।
ଅନୁରୁ ସହିତେ ବାରୁଣୀ ତୋରଣେ
ପଶିଲେ ବାସର ମଣି
ଝୁରି ହୁଏ ଫୁଲ— ଗୁଣୀ କମଳିନୀ
ସ୍ୱିନା ରଥାଙ୍ଗୀ ସଜନି ।

# ପଞ୍ଚମ ହିଲ୍ଲୋଳ

ପ୍ରତୀଚୀ ଲଲାଟ ଲଲାଟିକା ପ୍ରାୟେ
ଆଶ୍ୱସିଲେ ଛାୟାସାଇଁ
ବହୁଗୁଣ ବଢ଼ି ପାତାଳ ଭେଦଇ
ପୁଟ ଖଟୋଠିଳ ଛବି ।
ଫଗୁ ପୁଣ୍ଡ ଥାଳୀ ପର ରଙ୍ଗ ବମ୍ବ
ଦେଖି ହେଉ ମନେ ପଡେ
ମାଣିକ୍ୟ ପୁଟରେ ମଞ୍ଜୁ ବ୍ୟୋମଯାନ
ବୋଲା ହୋଇଛି କି ସତେ ?
ବାରୁଣୀ ଅଞ୍ଚଳେ ମନ ମୋହୁନେଇ
ସ୍ୱପ୍ନର ବମ୍ବ ବଉଳ
ହୁଲ ତାର ସିନା ହୁଅନ୍ତା ପ୍ରବାଳ—
ବଲ୍ଲୀରେ ଫୁଟିଲେ ଫୁଲ ।
ପାଖେ ସନ୍ଧ୍ୟାରୁଣ ପାଖେ ଛାୟା ଶ୍ୟାମ
ମାଲ୍ୟଗିର ଦୂରୁଁ ଦିଶେ
ରଜ ତମ ବେନ ପ୍ରକୃତ ଏକଦେ
ମିଶି ଯାଉଛନ୍ତି କି ସେ ?
କୁଙ୍କୁମରେ ବୋଳା ହେଲା ପ୍ରାୟେ ଦିଶେ
ସାନ୍ଧ୍ୟ ସ୍ୱଚ୍ଛ ନଭସ୍ଥଳ
ପ୍ରବଳ ମାରୁତେ ଉଡ଼ଇ କି ସତେ
ଗୈରିକ ରେଣୁ ପଟଳ ।
ଦୂର ଦିଗ୍‌ବଳୟେ ପୁଞ୍ଜିତ ହେଲା କି ?
ସହସା ପଲାଶ ବନ
ଭ୍ରମରଙ୍କ ଡୋଳ କି ଅବା ଲୋହିତ
ସିନ୍ଧୁ ଭରିଲା ନଳିନ ?
ସେ ଅରୁଣ ଜଳେ ନାନା ବର୍ଣ୍ଣୋଜ୍ଜ୍ୱଳ
ବୋଇତ ଭାସିଲା ପର
ବିବିଧ ଅଦ୍ଭୁତ ଚଳ ଘନ ପନ୍ତି
ଲାଗିଲେ ଧୀରେ ସଞ୍ଚରି ।

ବର୍ତ୍ତୁଳ ମଞ୍ଜୁଳ          ମିହର ପରିଧି
ଜଳ୍ ଜଳ୍ ଡହ୍ଳ ଦଶେ
ସନ୍ଧ୍ୟା ସାଧବାଣୀ—          ଅର୍ଚ୍ଚିତ ସୁପୁଷ୍ପ
ସିନ୍ଦୂର ମଣ୍ଡଳ ବ ସେ ।
କଳା ସନ୍ଦୂରର          ସାରସ୍ୱତ ସ୍ୱଚ୍ଛେ
ସୁଢ଼ଳ ଗୋଲ ମିହରେ
ଲଳନା ଲଜ୍ଜା          ସୂର୍ଯ୍ୟମୁଖୀ ଏକା
ବୋଳହେଲେ ବର୍ତ୍ତମନରେ ।
ଶାଶୁ ନଣନ୍ଦଙ୍କ          ନିଷ୍ଠୁର ବାକ୍ୟରେ
ଦହିହୋଇ ଅହରହ
ବଳାତ୍କାର ବ୍ରତ—          ଫଳାହାରେ ଶୀର୍ଣ୍ଣା
ବୈଧବ୍ୟ ଦୁଃଖେ ଅଥୟ ।
ଏବ ନଗଣ୍ୟା          କୋଟି କୋଟି ଘନା
ଭାରତ ଲଳନାଙ୍କର.
-ମଧ୍ୟାହ୍ନ—          ତପ୍ତବାୟୁ ସମ
ଦୁଃସହ ଶ୍ୱାସେ-ଜର୍ଜ୍ଜର ।
କର୍ମକାଣ୍ଡେ ବ୍ୟସ୍ତ          ହୋଇ ଧସ ଘଡ଼
ଅଥୟେ ହିନ୍ଦୁ ଧରମ
ପଳାଇବା ବେଳେ          ଉଦବ୍ୟାକେ ରହି—
ଥିଲ୍ଲ କି ନିଶଙ୍କୁ ସମ ?
କପିଳାସ ପୁରେ          ଏକାଳେ ସବେଗେ
ନବଘନ-ଘୋଷ ଜିଣି
ଶୁଭଇ ଅଦ୍ଭୁତେ          ଚୌଦଗେ କମ୍ପାଇ
ସଙ୍କେତ-ଦମାମା ଧ୍ୱନି ।
ବତ୍ମେ, ଶୃଙ୍ଗାଟକେ,          ଘାଟେ, ଘରେ ଦ୍ୱାରେ
ସେ ରବ ହୋଇ ବିସ୍ତାର
ପୁର୍ବାଶଙ୍କ ଜନେ          ବୃଦ୍ଧ ପଣ୍ଡଶର
ବଧ ଦଣ୍ଡ ସମାଚ୍ଚର ।
ଛନକା ପଡ଼ଇ          ନାଗରିକ ମନେ
ଦମା ମା ନାଦ ଶ୍ରବଣେ

ଉତ୍ସୁକେ ସଭିଏ ଚାଲିଲେ ଶୂନ୍ୟ—
ପଦାକୁ ଦ୍ରୁତ ଚରଣେ ।
ଜନସ୍ତ ମହେନ୍ଦ୍ର ଆତ୍ମରକ୍ଷା ଅର୍ଥେ
ଯେ ଆଶ୍ରମେ ଲୁକ୍କାୟିତ
ତାର ସନ୍ନିଧାନେ ପୂର୍ବ୍ବେ ବଧଭୂମି
ହୋଇଥିଲା ନିରୂପିତ ।
ଦେବତ୍ୱ ଧର୍ଷିତ ଅଜା ପୁତ୍ର ଯଥା
ମହା ନବମୀ ଦିନରେ
ଉପସ୍ଥିତ ହୁଏ ବଳି ହେବ ପାଇଁ
ମେଣ୍ଢଆ ପୀଠ ପାଖରେ ।
ପ୍ରହରୀ ବେଷ୍ଟିତ— ହତଭାଗ୍ୟ ବୃନ୍ଦ
ଦେଖନ୍ତେ ଘାତକ ସନ୍ଧୃତ
ଦେଖୁ ଦେଖୁ ଆହା ଅଲକ୍ଷଣେ ହେଲେ
ମୃତ୍ୟୁ ଭୂମିକୁ ଆନୀତ ।
ବଷଣ୍ଡ ହୃଦୟେ ପାତ୍ର ମିତ୍ର ସହ
କପିଳାସ ପୁର ରାଜା
ବଜେ ହେଲେ ଉଭେ ସାଟୋପେ ବାଜିଲ
ସଘନେ ଢୋଲଙ୍ଗି ବାଜା ।
ସ୍ତୁତି ପାଠକର ସ୍ୱର୍ଣ୍ଣଦଣ୍ଡ ଧରି
ଚାଲିଲେ ଉଚ୍ଚାଟେ ଛୁଟି
ଭଗ୍ନକଣ୍ଠସ୍ୱର ବେନପାଖୁ ଭଙ୍ଗେ
ପଡ଼ିଲା ସ୍ୱର୍ଣ୍ଣ ଆଲଟ ।
ଜାହ୍ନବୀ ଯମୁନା— ସଂଯୋଗ ରୂପର
ବୀଚିକି ହେଲେ ଧିକାର
କୃଷ୍ଣଶୁକ୍ଳବେଶ ଚାମର ନାଚିଲେ
ବଧ୍ୟ ଶୋଭା ବିସ୍ତାରି ।
ପ୍ରବଳ ବାତେ ତରଣୀ ଉପରେ
ପଟ୍ଟିକା ଯଥା ଦିଶଇ
ଏ ଜନସମୁଦ୍ରେ ଧବଳ ବରଣ
ରାଜଛତ୍ର ବିରାଜଇ ।

ସମାଗତ ସର୍ବ    ଦର୍ଶକେ ଯେ ମହା—
ସ୍ଥାପଣ ମୁହୂର୍ତ୍ତ ଆଶେ
କୌତୂହଳସହ    ନିର୍ନିମେଷ ନେତ୍ରେ
ଉଷାଦ ବସ୍ତୁ ହାସେ ।
ନବ ସ୍ୱର୍ଗ୍ୟଚ୍ୟୁତ    ପତ୍ରଶର ଘର୍ଷ
ଶିବଲୀଳା ନାଟକର—
ଶେଷ ମହାଦୃଶ୍ୟ—    ଲଗି ହେଉଥିଲେ
ଗୃହାଗୃହି ପରସ୍ପର ।
ନୀରବ ଗମ୍ଭୀର    ସକଳ ପ୍ରାଣୀଏ
ନୀରବ ପ୍ରକୃତି ସଙ୍ଗୀ
ନୀରବ ଗଗନେ    ନୀରବେ ଯେ ଚାଲେ
ବହୁଥିଲା ସଦାଗତି ।
ନୀରବେ ଜୀବନ    ସ୍ରୋତ ଚଳୁଥିଲା
ନୀରବ ଜୀବନ ବ୍ରତ
ଯାଉଥିଲେ ଧୀରେ    ନୀରବେ ତପନ
ଆରୋହି କନକ ରଥ ।
ଜନସଙ୍ଘ ଭେଦି    ସହସା ସେକାଳେ
ନୀରବତା ଭଙ୍ଗ କରି
ନୃପ ଅଗ୍ରେ ଆସି    ଉଭା ହେଲା ଏକ
ଶୋକ ବିଧୁରା ସୁନ୍ଦରୀ ।
ଅକସ୍ମାତେ ଆହା    ସାନ୍ଧ୍ୟ-ମେଘ-ରନ୍ଧ୍ରେ
ଶୋଭିଲା କି କ୍ଷଣପ୍ରଭା
ଅଥବା ସେ ମେଘ—    ରନ୍ଧ୍ରେ ପଶିଲା କି
ବିମଳ କୌମୁଦୀ ପ୍ରଭା ?
‡ ଡିଣ୍ଡୀର ମଣ୍ଡିତ    ଅର୍ଣ୍ଣବ ବକ୍ଷେ କି
ଭାସି ଉଠିଲା ହଂସିନୀ
ଗ୍ରୀଷ୍ମବନେ ଅବା    ସ୍ଫୁରିଲେ କି ସ୍ୱାହା
ହେମ ସ୍ଫୁଲିଙ୍ଗମାଳିନୀ ?

‡ ଫେନ ।

କହନ୍ତି ସୁକେଶୀ          ହେ ଦେବ ଉନ୍ମାଦ
ହୋଇ ମୋର ପ୍ରାଣଧନ
ସମ୍ପୂର୍ଣ୍ଣ ଏହି          ଯତ୍ନେ ଅଶ୍ରୁ
କରିଅଛନ୍ତି ଗ୍ରହଣ ।
ସୁଶ୍ରୁଷା ନିମନ୍ତେ          ତାଙ୍କୁ ନେବା ପାଇଁ
କଲେହେଁ ବହୁ ଯତନ
ଯତ୍ନ ନ ନିଅନ୍ତି          କଦାପି ମୋ ସଙ୍ଗେ
ମଠବାସିନୀ ଜରତୀ ।
ଆଶ୍ରମ ଭିତରୁ          ବୃଦ୍ଧା ଯୋଷିତରୁ
ଯତ୍ନରୁ ଏବେ ହକାର
ଯତ୍ନଦେବା ଲାଗି          ଆଜ୍ଞା ହେଉ ଦେବ
ଏତକ୍କ ପାଦେ ତୁମ୍ହାର ।
ଯତ୍ନରେ ରୂପସୀ          ଏରୂପେ ବଚନେ
ଅଭିଯୋଗ କଲବେଳେ
ତା ପ୍ରକୃତ ବର          ଅଗ୍ରଜ ମହେନ୍ଦ୍ର
ତଥାସ୍ତୁ କ୍କର ମେଲେ ।
ଉପସ୍ଥିତ ହୋଇ          ସବେଗେ ବଚନେ
ଭୂପଙ୍କୁ ନୁଆଁଇ ଶିର
ଶୋକ ଅସମ୍ଭାଳେ          ତୁଷଶ୍ୱାସ ହୋଇ
ଭଣିଲ ଏସନ ଗୀର ।
ହେନାଥ ମୋର ଏ          ଦୁର୍ବିନୀତା ଦୁଷ୍ଟା
ସ୍ୱେଚ୍ଛାଚାରିଣୀ ଯୋଷିତ
ବହୁରୂପେ ଜନ          ସମାଜେ କଲଣି
ଲଜ୍ଜିତ ଅପମାନତ ।
ଏହା ଲାଗି ମୋର          ସୁଖ୍ୟାତ ବଡମା
ହେଲାସବୁ ଛାରଖାର
ଏହାଲାଗି ଦେବ !          କହୁଲଣି ଅଛ
ସ୍ୱଜେ ଦୁଃଖ ସ୍ୱର ଭର ।
ଯତ୍ନରେ ତୁମ୍ହାର          କରୁଛି ଏଥର
ବଧି ପ୍ରତୀକାର ହେଉ

ଏହା ଲାଗି ସଦା ପ୍ରାଣସ୍ରୋତେ ମୋର
ଉଠୁଛି ଯାତନା ଢେଉ ।
ବକ୍ଷସି ପୂଜସି ସ୍ୱାମୀଙ୍କୁ ସହସା
ଘରେ ଦେଖି ଉପସ୍ଥିତ
ସଂଶୟ ଆକୁଳ— ତତେ ଉତ୍ତରଲ
ଯଥିରେ ହୋଇ ଉଦ୍ଭୂତ ।
ଏକ ଅଦ୍ଭୁତ ସୁଦୃଢ଼ ପ୍ରାଚୀର
ବେଷ୍ଟିତ ଏ ଅନ୍ତରରେ
ଥିଲେ ଏତକ୍ଷଣି ପ୍ରଭୁ ଭୃତ୍ୟ ବେନି
ପ୍ରାଚୀନାର ଅନ୍ତସ୍ଥରେ ।
ନିରନ୍ତ୍ର ନୀରବ ପୁଟପର ଦ୍ୱାର
ହୋଇଥିବ ଅର୍ଗଳିତ
ଏତକ ପରେ ଶୂନ୍ୟ ପଶିଲେ କି ?
ଉଡ଼ ବଡ଼ ଆଚମ୍ବିତ ।
ମହେନ୍ଦ୍ରଙ୍କୁ ଦେଖି ସଗ୍ରଣର ହେଲ
ଅସ୍ପଷ୍ଟେ ହୃଦୟେ ବଣ
ହୃଦ ସରୋବରେ ଫୁଟିଗଲ କ୍ଷଣେ
ବାତ୍ସଲ୍ୟ ସ୍ନେହ-ସାରସ । (୨)
ଚିନ୍ତା ପ୍ରସ୍ତର— ଭରେ ହୋଇଥିଲ
ଜୀବନ ତଟିନୀ କ୍ଷୀଣ
ବହିଲ ଏବେ ସେ ସୁତ ଦରଶନ—
ପ୍ରାବୃଟେ ହୋଇ ନବୀନ ।
ଯନ୍ତ୍ର କରିଥିଲ ନୟନେ ତନୟ
ଦରଶନ ଆଶା ଦୂର
ଜନମିଲ ଏବେ ଶୋକଦଗ୍ଧ ସେଥେ
ନବ ନବ ସ୍ନେହାଙ୍କୁର ।
ସ୍ୱଜଲ ସ୍ନେହର ସ୍ୱଗତେ ଉଧାତା
ଆଜି ମୋ ମଙ୍ଗଳ ଆସେ

(୨) ସଦ୍ ।

ବନ୍ଧୁଜନପଦେ ଭୁଲାଇ ଏ ପୁରେ
ରଖିଛନ୍ତି କାରାବାସେ ।
ନୋହୁଲେ ଯାଇଛି ଦୁଃଖେ ଆଈଯାଏ
ଥିବଥିଲି ଭୁଲି ଭୁଲି
ଧନା ପତନରେ ପୁଲଭେ ମିଳନ୍ତା
କପାଁ ସେ ପ୍ରାଣ ପିଳୁଳ ।
କର୍କଶ ଶିଳାରେ ଯିନା ନର୍ଦ୍ଦମ୍ବରେ
ମର୍ଦ୍ଦିତ ହେବାରୁ ଶେଷେ
ଲଭଇ ହରଦା ଆଲିଙ୍ଗନ ସୁଖ
ସୁନ୍ଦରୀ ଶ୍ରୀଅଙ୍ଗ ଦେଶେ ।
କଠିନ ଚରଖି କାଷ୍ଟ ଯନ୍ତ୍ରେ ଦୃଢ଼େ
ନୋହୁଥାନ୍ତା ଯେବେ ଦଳ
ଦେବତା ଭୋଗରେ ଲଗୁଥାନ୍ତା କରେ
ସ୍ୱାଦୁ ଇକ୍ଷୁ ରସାବଳ ।
ସୁଦୂର ବଦେଶେ ଆଶ୍ରିତ ବାଳୁତ
ଅଧ୍ୟବସାୟ ବଳରେ
ଦେଖୁଛ ହୋଇଛ ସମ୍ଭ୍ରାନ୍ତ ଧନାଢ୍ୟ
ସୁକୃତବନ୍ତ ଲୋକରେ ।
ଦୁଃଖିର ସନ୍ତାନ ! ଦରିଦ୍ର ରତନ !
ଅସ ଆସ ବାପଧନ
ବୃଦ୍ଧ ଜନକଙ୍କୁ ଶୀଘ୍ର ଗୋଷ୍ଟ ଶୃଙ୍ଖ
ବିମୁକ୍ତ କର ବହନ ।
ଏହା କ୍ଷବ ମନେ ପ୍ରକାଶ୍ୟେ ଯୁବାକୁ
ତନୟ କ୍ଷେବେ ସମ୍ବୋଧି
ପାରହେଲି ବୋଲି ଦୁଃଖାର୍ଣ୍ଣବୁଁ ହେଲ
ନଜକୁ ନଜେ ପ୍ରବୋଧି ।
ସ୍ନିଗ୍ଧବେ ବଦେଶେ ଦେଖିଲେ ସ୍ୱଦେଶୀ
ମଣ୍ଡଇ ଆନନ୍ଦେ ମନ
କ ବୁଝଇ ତବେ ? ଦୁଃଖେ ପଡ଼ ତହିଁ
ଭେଟିଲେ ଆତ୍ମୀୟଜନ ।

ବୃଷର ଆରତ ପ୍ରାର୍ଥନା ଆକର୍ଣ୍ଣି
ଯୁବା ହେଲ ଚମତ୍କୃତ
ସ୍ୱପ୍ନ ସଂସାର— ଲୀଳା କି ବଚନ ?—
କି ଅଲୀକ ଆଚମ୍ବିତ ।
ଜଳମଗ୍ନ ଜନ ଯାହା ପାଏ ତାହା
କରେ ଧରି ଲୋଡେ ଯଥା
ଏ ଦୁର୍ଦ୍ଦଶାଗ୍ରସ୍ତ ବୃଷ ରକ୍ଷା ଅପେକ୍ଷେ
ଅଣ୍ଡାଳ ହୁଅଇ ତଥା ।
ନୋହିଲେ ଯାହାର— ଏହ ପୂର୍ବେ କେବେ
ମୋର ଦେଖା ଶୁଣା ନାହିଁ
ସେ ସ୍ନେହେ ସଗେ କେତେ ଯତ୍ନେ ପୁତ୍ର-
ବୋଲି ଡାକନ୍ତା କିପାଇଁ ।
ମାଲକଣ୍ଠ ସିନା ପ୍ରିୟତମ ବୋଲି
ସମ୍ବୋଧଇ ନୀରଧରେ
ବରଷା କାଳକୁ ଆବାହନ ପିକ
ନ କରେ କେବେ ସାଦରେ ।
ଆଶ୍ରୟ ଲୋଡଇ ଝନା ଏ ପ୍ରାଚୀନ
ବିପଦ ହାବୁଡ଼େ ପଡ଼ି
କ୍ଷିପ୍ର ଗଜ ତେଜେ ଯଥା ନରେ ଯାନ୍ତ
ଭୟେ ତରୁ ଲତା ଚଢ଼ି ।
ଉତ୍ତରିଲ ତୁମ୍ଭେ କିଏ ? କି ଆଶୟେ ?
କି ଉଦ୍ଦେଶ୍ୟ ପୂର୍ଣ୍ଣ ଆଶେ ?
ଅଚିହ୍ନା ମାନବେ ସୁଦୃଢ଼ ସମ୍ବନ୍ଧ
ସମ୍ପାଦୁଛ ଅନାୟାସେ ।
ମନେ ଜାଣେ ସ୍ୱପ୍ନେ ସୁଦ୍ଧା ତୁମ୍ଭସହ
ନାହିଁ ଭେଟ ପରିଚୟ
ତୁମ୍ଭ ବାକ୍ୟ ଯେତେ ମୁଦ୍ରା ନେବା ପାଇଁ
କୌଶଳ ଅଟେ ନିଶ୍ଚୟ ।
ଜଗତ କାହାଣୀ— ଚକ୍ଷୁ ବ୍ୟକ୍ତ କର
ବନ୍ଧୁବଧ ସ୍ନେହ ଗୀତେ

ପୂର୍ବସ୍ମୃତ ଜାତ  ପାର୍ଶ୍ୱ ସ୍ଥିତ ମନେ
ଯତ୍ନ କଲେହେଁ ଅଧୀରେ ।
ବନ୍ଧୁ-ବୀଜାଙ୍କୁର  ତାର ହୃଦକ୍ଷେତ୍ରେ
ହେଲ ନାହିଁ ଅଙ୍କୁରିତ
ବସ୍ତୁତ ସକଳେ  ଯେଣୁ ସେ ସମ୍ପୂର୍ଣ୍ଣ
ହୋଇଥିଲ ପ୍ରପୂରିତ ।
ସ-ଛିଦ୍ର ଦୁକୂଳ  ଆବୃତ୍ତ ଦ୍ୱପର
ସିନା ଓଢାଇଲେ ତାଲ
ଯୁକ୍ତବନ୍ଧ ଜୀର୍ଣ୍ଣ—  ବସ୍ତ୍ର ଚଉପାଏ
ଧରି ଦେଉଥିଲେ ଖାଲି ।
ଭଲବେ ସେକାଳେ  ସଂଘଟିତ ହେଲ
ଏକ ଅପୂର୍ବ ଘଟଣା
ପ୍ରବେଶିଲେ ତହିଁ  ସେ ବେଣଙ୍କସହ
ମଠବାସିନୀ ଅଙ୍ଗନା ।
ଉଦେହେଲେ କରେ  ବେଣଚନ୍ଦ୍ର ଲେନ
ପ୍ରାଚୀରେ ସନ୍ଧ୍ୟା ସୁନ୍ଦରୀ
ଉଷା ସୀମନ୍ତିନୀ  ଅଥବା ପ୍ରଭାତେ
ଯୁଗ୍ମ ରବି ବମ୍ବଧର ।
ଉଡ଼ି ପଡ଼ିଲ କି  ରାଜହଂସୀ ଅବା
ଥଣ୍ଟେ ବେଣି ପଦ୍ମ ନେଇ
ବେଣି ସୁତସହ  ସ୍ୱାମୀଆଗେ ଉଭା
ଅବା ସୁସଙ୍ଗି ବୈଦେହୀ ।
ଯୁଗଳ ମହେନ୍ଦ୍ର,  ଯୁଗଳ ମାଧବ
ସଂହୃଷା ଭରି ଲୋଚନ
ଲଟିଲ ଚୌଦିଗେ  ଆନନ୍ଦ ମିଶ୍ରିତ
ଧନ୍ୟସ୍ତୁ ସୂଚକ ସ୍ୱନ ।
ସର୍ବାପେକ୍ଷା ଅଧି  ଉତ୍ତମ ବସ୍ତ୍ରସ୍ତୁ
ଅବଶ ହେଲ ରସିକା
ସଙ୍କେତ ସ୍ଥଳେ କି ?  ଜାରସହ ଧବେ *
ଭେଟିଲ ଅଭିସାରିକା ।

* ସ୍ୱାମୀ

ଦସ୍ତୁସ୍ତ ବହଳ ଚଟ୍ଟେ ସଙ୍କାତରେ
ରହିଲ ବାଲା ଅନାଇଁ
ସ୍ତବ୍ଧତର ନେତ୍ର— ବେଣକୁ ଅଲଗ
ପଲକ ପଡ଼ୁନି ନାହିଁ ।
ଲଙ୍ଘି ଗଲେ କଟେ ଭ୍ରମର ଯୁଗଳ
ମଞ୍ଜୁ କମଳ କଳରେ
ଅଥବା ରହିଲ ସ୍ଥିର ମୃଗୀନେତ୍ର
ଅଟକି ଡାଳ ବନ୍ଧରେ ।
ସମଜ ସୋଦର ଭୃତ୍ୟସହ ଏବେ
ଯା ଲାଗି ବିପଦଗ୍ରସ୍ତ
ଯନ୍ତୁ ଖାଇ ଏବେ ଗଣିକା, ବଣିକ
ଅଧୀର, ଅଶ୍ରୁର୍ଯ୍ୟ ବ୍ୟସ୍ତ ।
ଦଣ୍ଡସ୍ତ୍ର ମଞ୍ଜିସ୍ତ ବେନ ଭଗିନୀର
ଯେ ଲାଗି ଏବେ ନିଗ୍ରହ
ସାନ ମହେନ୍ଦ୍ରକୁ ନଗର ବାହିକ
ଯା ପାଇଁ ଏବେ ଆଗ୍ରହ ।
ଏ ସବୁ ରହସ୍ୟ ପଲକେ ପ୍ରକାଶ
ହେଲା ସମବେତ ଜନେ
ମାୟା ଆବରଣ ଫିଟିଗଲା କି ସେ
ସ୍ୱଦଗ୍ଧ ତପି ନୟନେ ।
ଅଥବା ନିଶୀଥ— ନିବିଡ଼ ତମିରେ
ବାଟବଣା ପାନ୍ଥ ଅଗ୍ରେ
ସ୍ଫୁର ଉଠିଲା କି ଉଷାର ଉଜ୍ଜ୍ୱଳ
ଆଲୋକ ପାଟଳ ରାଗେ ?
ଉତ୍କଟ ନିନାଦେ ଚମକାଇ ପୁଣି
ଶୂନ୍ୟକୁ ଉତ୍କଟତର—
ଶବଦେ, ଆକାଶ—(୧) ମଲ୍ଲିକା ନେତ୍ରକୁ
ଠାଣେ ଯଥା ଥର ଥର ।

୧—ଏକ ପ୍ରକାର ବାଣ ।

ଏ ଅସ୍ୱଦର୍ଶୀୟ ଅପୂର୍ବ ଆନନ୍ଦ
ମିଳନର ସହଚର
ବର୍ଣ୍ଣିତ ଦର୍ଶକ— ବୃନ୍ଦଙ୍କୁ ବସ୍ତୁସ୍ୱ
କରଣ ଅଧିକତର ।
ପୁଣ୍ୟବନ୍ତ ବୃଦ୍ଧା ସମ୍ବୋଧି ତେସନେ
ରକ୍ଷିବୃନ୍ଦ ସରଣରେ
ଅଶ୍ରୁପୂର୍ଣ୍ଣ ନେନେ କରୁଣେ କୋମଳେ
କହିଲେ ଗଦ୍‌ଗଦ ସ୍ୱରେ ।
ଶୀତ ଭୃଷ୍ଣ କ୍ଷିସ୍ତ ପୁଷ୍କରଣୀ ସିନା
ହିମାନ୍ତେ ମଗ୍ନ ସ୍ୱନେ
ନଜ ଦୁରବସ୍ଥା କହଇ ଉଚ୍ଛ୍ୱାସେ
ଅଧୀରେ ବସନ୍ତ କର୍ଣ୍ଣେ ।
ବଲ୍ଲେଦ ବୋଲି ଅଜାତନ୍ତ ରୂପେ
ନାଥ ! ଆଜ ଏ ସ୍ଥଳରେ
ବେକ ହସ୍ତ ନଧି ସହିତେ ତୁମ୍ଭଙ୍କୁ
ଭ୍ରବ ନ ଥିଲି ସ୍ୱପ୍ନରେ ।
ଧନ୍ୟ ଭଗବାନ ମହିମା ତୁମ୍ଭର
ଅନନ୍ତ ଅଚନ୍ତ୍ୟନୀୟ
ଦୁଃଖଦ ହେଲେହେଁ ଶେଷ ଫଳ ତାର
ଦଏ ମଙ୍ଗଳ ଅମୀୟ ।
ପ୍ରବଳ ପ୍ଲାବନ ଛେନ ବନ ଭଙ୍ଗି
କରଲେହେଁ ଅନ୍ତ କ୍ଷମ
କରଇ ନାହିଁକି ? ପରେ ଦ୍ୱରେ ତାକୁ
ଶସ୍ୟ ଉତ୍ପାଦନକ୍ଷମ ।
ବାଷ୍ପରୋଧ କରେ ଆନନ୍ଦ ବହଳ
ପ୍ରାଣେ କହେ ଫଗ୍ୱଣର
ପ୍ରାଣେଶ୍ୱରୀ ! ଆଜ ସୁ ପ୍ରଭାତ, ଆଜ—
ଜୀବନ ପ୍ରଭାତ ମୋର ।
ଧନ୍ୟ ଆଜଦନ ଧନ୍ୟ ମୋ ଜୀବନ
ଧନ୍ୟ ଧନ୍ୟ ବଧୂଲ୍ଲଳା

ସୁଦୀର୍ଘ ଜୀବନ— ସଂଗ୍ରାମ-ସୁଫଳ
ଫଳିଲା ଆଜ ପୁଣିଲା ।
କେତେ ଜନପଦ କେତେ ଅରଣ୍ୟାନ
କେତେ ତଟିନୀ ପ୍ରାନ୍ତର
ବୁଲି ବୁଲି ଯେତେ ଦୁଃଖ ଲଭିଥିଲି
ଅନ୍ତର୍ଯ୍ୟାମୀଙ୍କି ଗୋଚର ।
ସାର୍ଥକ ହେଲାରେ ଆଜ ମୋ ଜୀବନ
ବ୍ୟାପିନା ଅନୁସନ୍ଧାନ
କିଛି ଚିନ୍ତା ନାହିଁ ବଧ ମଣେ ଏବେ
ବିନାଶ ହେଲେ ମୋ ପ୍ରାଣ ।
ଏ ପୁର ନିଷ୍ଠୁର ଅବରୋଧ କଷ୍ଟ
ହେଲାରେ ଏବେ ସଫଳ
ସଫଳ ସନ୍ଧାନ ହେଲା ସାନୁଜର
ଭ୍ରାତୃ ପ୍ରେମ ରସେ ଭୋଳ ।
ଭଲଗିବା ହୋଇ ଜଗତେ କେ କାହିଁ
ଚିରଦିନ ରହି ନାହିଁ
କର୍ତ୍ତବ୍ୟ ଶେଷରେ ନିଜ ନିଜ ବାଟ
ସମସ୍ତେ ଚଳନ୍ତି ଯାଇ ।
ବିଶାଳ ଜଗତେ ସ୍ୱ କାର୍ଯ୍ୟ ସମାଧି
ସହସ୍ର କର ଭାସ୍କର
ଯଥାକାଳେ ସିନା ସକଳ ଉପେକ୍ଷି
ବିମୁଞ୍ଚନ୍ତି କଳେବର ।
ପିତା ପୁତ୍ରେ ପୁଣି କୋଳରେ କୋଳରେ
ହେଲା ସ୍ନେହ ଆଲିଙ୍ଗନ
ସୁଦୀର୍ଘ ବିରହେ ହୁଏ ଶତ ଗୁଣେ
ମଧୁର ସିନା ମିଳନ ।
ସ୍ୱର ଧିଗେ ପୁନଃ— ପୁନଃ ପଡ଼ିଗଲା
ମହୋଲ୍ଲାସ କୋଳାହଳ
କରତାଳି ସହ ଶୁଭିଲା ସଘନେ
ଶ୍ରୁତି ମଞ୍ଜୁ ଜୟରୋଳ ।

ଉପସ୍ଥିତ ବନ୍ଧୁ    କପିଳାସ ବାସୀ
ମହେନ୍ଦ୍ର ତହୁଁ ଅଟଳରେ
କନକ ଦଣ୍ଡର    ସମଗ୍ର ସୁବର୍ଣ୍ଣ—
ମୁଦ୍ରା ନୃପ ସନ୍ନିଧିରେ ।
ମାତ୍ର ନରମଣି    ତା ସ୍ପର୍ଶ ନ କରି
ବିଗତ ଘଟନା ସ୍ମରି
ହର୍ଷୋତ୍ଫୁଲ୍ଲଚିତ୍ତେ    କହିଲେ ଏମନ୍ତ
ସଦୟ ଭାବ ଆଚରି ।
ବଧୂର ଅପୂର୍ବ    ଆନନ୍ଦ ଦାୟକ
ବିଧାନ ଅବଲୋକନେ
ଦୁଃଖ, ଶୋକ, ହର୍ଷ    ଅଭିମାନ ମିଶା
ଅଭାବନୀୟ ମିଳନେ ।
ଯେ ଗୌରବମୟ    ମହା ଉଚ୍ଚଶିକ୍ଷା
ଲାଭ ହେଲା ଆଜି ମୋର
ତାର ବିନିମୟେ    "ଚିର ପ୍ରଚଳିତ
ଦଣ୍ଡ ବିଧାନ କଠୋର ।
ଚିରଦିନ ପାଇଁ    ବହିଷ୍କୃତ ହେଉ
କପିଳାସ ବାସୀ ମନ୍ତୁ
ସ୍ୱର୍ଣ୍ଣକୂଟ ସହ    ଭ୍ରାତୃସ୍ନେହ ଭାବ
ବଢିଯାଉ ଦିନୁ ଦିନୁ ।
ବାଜୁରେ ମଧୁର    ମିଳନର ଶଙ୍ଖ
ବାଜୁ ସୁମଧୁର ରବେ
ଦୂର ହେଉ ଜୀର୍ଣ୍ଣ—    କୁତ୍ତ ଘନାଚ୍ଛନ୍ନ—
କିରଣ ଏ ସୂର୍ଯ୍ୟ ଜବେ; *
ମରୁ ଗତ ଚିନ୍ତା    କ୍ରୂର ନୀତି ସହ,
ଆସୁ ନବୀନ ଜୀବନ
ଯାଉ ଦୁଃଖ କ୍ଲାନ୍ତି    ତହୁଁ ସ୍ନିଗ୍ଧ-ଶାନ୍ତ
ସଦ୍ଭିର ନବ ତପନ;

* ଜବେ—ଚଞ୍ଚଳେ ।

ମାନସ-କୁସୁମ  ଶୋଭମୟ କଣ୍ଠ
ଅକଠାରୁ ଯାଉ ଦୂରେ
ଧର୍ମ ନର୍ତ୍ତନର  ଦ୍ୱନ୍ଦ୍ୱ ଘୁଞ୍ଚିଯାଉ;
ବାଜୁ ମଙ୍ଗଳ ମଧୁରେ—
ଗମ୍ଭୀର ମଧୁର  ନିର୍ଘୋଷରେ ପୁଣ
ମହାବିଶ୍ୱ ଚରାଚରେ
ବାଜୁ ବାଜୁ ଶଙ୍ଖ  ସୁଧାଂଶୁ ଶୀତଳ—
ସ୍ୱର୍ଗ ସୁଧାମୟ ସ୍ୱରେ ।
ମୁମୂର୍ଷୁ ପ୍ରାଚୀନ—  ଫନ୍ଦା ଛିନ୍ନ ହେଉ
ବିଚ୍ଛେଦର ଜୀର୍ଣ୍ଣ ଗାଣ୍ଠି—
ଯାଉ ଯାଉ ସ୍ଥାନ  ସଂକୀର୍ଣ୍ଣ କୁତ୍ସିତ,
ଆସୁ ନବ ଭ୍ରାତୃ ପ୍ରୀତି,
ସମୁନ୍ନତ ପୂତ—  ନବ ଜୀବନର
ମହା ଆଦର୍ଶ ଉଦାର
ଆସୁ ଆସୁ ଦ୍ରୁତ  ଗୀର୍ବାଣ ଗୌରବ
ନବ ମିଷ୍ଟ ବ୍ୟବହାର,
ହୋଇଯାଉ ଦୂର  ଦୁରିତ ଦୁଶ୍ଚିନ୍ତା
ଦୁଃଖ-ବିଷାଦ ଅବଳା,
ନିର୍ମମ ବିରୋଧ—  ଶିଳା ଦ୍ରବିଯାଉ
ଜାଗୁ ଜାଗୁ ପ୍ରେମ ଲୀଳା ।
ଘୃଣ୍ୟାରେ ସୁନ୍ଦର  ତଟିନୀର ଧାର
ସମ ଶୀତଳ ମଧୁର
ଶାନ୍ତ ଉଦକରେ  କରୁ ହେ ପ୍ରାଣର
ଜ୍ୱାଳା ଶାନ୍ତ କ୍ଲାନ୍ତ ଦୂର,
ତୁଟିଯାଉ ମହା  ମୋହ ଅହଂକାର
ଦାମ୍ଭିକର ଅବଳମ୍ବେ
ଦ୍ୱେଷ, ହିଂସା ଯାଉ  ନୋହୁ ସ୍ୱଳ୍ପ ସ୍ୱଳ୍ପ
ମଧ୍ୟେ ଭଲା ଭଲ ଦମ୍ଭେ,
ସମ ଅଧିକାର  ଦେଇରେ ମାନବେ
ମାନବ କରୁ ସମ୍ମାନ,

ବିଶ୍ୱର ମଙ୍ଗଳ ହେଉ ମାନବର
ବ୍ରତ ସାଧନାର ଧ୍ୟାନ,
ବିକଟ ଆକାର ଘୃଣ୍ୟ ପୁରାତନ
ସଙ୍କୀର୍ଣ୍ଣ ବିଷୟାଶକ୍ତି,
ହୀନ ରକ୍ତାରକ୍ତି ଦୂର ହେଉ ଉଠ
ବିଶ୍ୱେ ଏକତାର ଶକ୍ତି,
ବାଜ ଆଜ ଥରେ ସୁମଙ୍ଗଳ ଶଙ୍ଖ
ବାଜ ବାଜ ସୁମଧୁର
ସୁଗ୍ରତନ କର ନୀଚତା ହୀନତା
ଦୈନ୍ୟ ହୋଇଯାଉ ଦୂର”
ତହୁଁ ନରଗଣ ନିଜେ ନିମନ୍ତ୍ରଣ
ବହୁ ପ୍ରୀତ ଫୁଲ୍ଲ ମନେ
ସେମାନଙ୍କ ସହ ବିଜେ ହେଲେ ସେହୁ
ପୁଣ୍ୟମୟ ନିକେତନେ ।
ଏକାକିନୀ କରି ଯେମନ୍ତ ସାଗର—
ତଟେ ମତ୍ସ୍ୟଜୀବୀଗଣ
ଯେ ରୂପ ତା କୋଳୁ ଟାଣି ନେଇଥିଲେ
ଯୁଗଳ ଜୀବନ ଧନ ।
ପଥେ ପଥେ ଭ୍ରମି ନିରୁପାୟେ ଦୁଃଖେ
ଅସହାୟେ ଝୁରୁଣୀଳା
ଯେମନ୍ତ ଶେଷରେ ଏ ପୁତ ଆଶ୍ରମେ
ଉପନୀତ ହୋଇଥିଲ ।
ସ୍ୱରାଜ୍ୟ ଦାକ୍ଷିଣ୍ୟ ବିନୟାଦ ଗୁଣ
ମାନ କରି ପ୍ରଦର୍ଶନ
ସେ ରୂପ ମଠର ଶ୍ଳାଘ୍ୟନୀୟା କର୍ତ୍ତ୍ରୀ—
ପଦ କରିଲ ଗ୍ରହଣ ।
ଏକ ଏକ କରୁ ଅମ୍ବବାର୍ଦ୍ଧ କନ୍ଥୁ
ପକ୍ଷର ସହଚରୀ
ନୃପ ସହ ସ୍ତ୍ରୀୟ ତନୟ କାନ୍ତୁ
ଦେଖି ଚମତ୍କୃତ କରି ।

ଏହିରୂପେ ସର୍ବେ ସ୍ୱସ୍ୱାର୍ଥ କାହାଣୀ
ଓଲଟାଇ ପାଲଟାଇ
କହୁ କହୁ ହର୍ଷେ ଅସର୍ଗା ଦୃଶ୍ୟନ୍ତ
ରଜନୀ ହେଲେ ପ୍ରହାର ।
ଯଥା ସମୟରେ ମହା ସମାରୋହେ
ସୁଶୀଳା ବାଳା ମଞ୍ଜରୀ
ସୁଖେ ବନ ନେଇ ଇଚ୍ଛା ଅନୁରୂପ
ସଙ୍ଘାତକୁ ବର ବର ।
ମାତ୍ର ନାଗରଙ୍କେ ଦୋହଲ୍କୁ ଥିଲେଟି
ସେ ଭ୍ରାନ୍ତ ହିନ୍ଦୋଳେ ଓଢ଼
ଭ୍ରମ ହୁଟିଲେହେଁ ଅମୋଦ କରନ୍ତ
ବେଳେ ବେଳେ ଉଢ଼ି ଚଢ଼ି ।

ସମାପ୍ତ



# ଉତ୍ସର୍ଗପତ୍ର



ପୁଣ୍ୟଶ୍ଳୋକ

କବିବର ରାଧାନାଥ ରାୟ ବାହାଦୂର

ଭକ୍ତିଭାଜନେଷୁ,

ଦେବ !

ଗଙ୍ଗାକୁ ଅର୍ଚ୍ଚନା କରନ୍ତି ଯେସନ
ଭକ୍ତମାନେ ଗଙ୍ଗାଜଳେ
ଅଥବା ଯେସନ ତୁଳସୀର ପୂଜା
ହୁଏଇ ତୁଳସୀ ଦଳେ ।

ତବ ବିରଚିତ କାବ୍ୟ ଉପବନୁଁ
ତୋଳି ଏ ସୁମନ ରାଜି
ଗ୍ରନ୍ଥକାର ତଥା ତୁମ୍ଭଙ୍କୁ ତଦ୍ଭବ—
ହୃଦୟେ ପୂଜଇ ଆଜି ।

# ପାର୍ବତୀ

( ଉତ୍ତରାର୍ଦ୍ଧ )



ରାଗ ବଙ୍ଗଳାଶ୍ରୀ

"ଏହିରୂପେ ଦେବ, ପ୍ରଚଣ୍ଡ ସମର
ହେଉଥିଲା ଅନୁକ୍ଷଣେ,
ଯୁଝୁଥିଲେ ଦୃଢ଼େ ଉଭୟ ପକ୍ଷର
ବୀରମାନେ ପ୍ରାଣ ପଣେ ।
ପର୍ଯ୍ୟାୟ କ୍ରମରେ ବଢ଼ଇ ଛାଡ଼ଇ
ସାଗର ଊର୍ମି ଯେସନ,
ଆଗକୁ ପଛକୁ ହେଉଥିଲେ ଦେହେ
ସମ୍ରାଟଙ୍କ ସୈନ୍ୟଗଣ ।
ବିପକ୍ଷ ଚଢାଉ କରୁଥିଲେ ଦୃଢେ
ପଶିବାକୁ ବାର ବାର,
ଦୁର୍ଗ ରକ୍ଷିମାନେ ମହାଦମ୍ଭେ ଯୁଝି
ରକ୍ଷୁଥିଲେ ପୁର ଦ୍ୱାର ।
ଦୁର୍ଭେଦ୍ୟ ସେ ଦୁର୍ଗ— ପୃଷ୍ଠେ ଦୃଶ୍ୟସେହି
ମହା ଉନ୍ନତ ଶିଖର,
ମେଘକୁ ଆଲିଙ୍ଗି ଉଚ୍ଚ ହୋଇଅଛି
ମେଘାସନ ମହୀଧର ।
ଘନ ନୀଳବର୍ଣ୍ଣ ଅଟବୀ—ଅର୍ଣ୍ଣବେ
ଭୀମ ତିମିଙ୍ଗିଳ ପରି,
ବହୁ ଦୂର ବ୍ୟାପି ରହିଛି ପ୍ରକାଣ୍ଡ
ଭୂମି ଖଣ୍ଡକୁ ଆବରି ।

ଭୂଗୁମ୍ଫରେ ଯାର          ମସୃଣ ପାଷାଣେ
ଲତା ଗୁଳ୍ମ ଚେର ବିଛି ।
ଶିଖର ବିଶାଳ          ବକ୍ଷରେ ଧମନୀ—
ଜାଲ ପରି ଅଛି ଜଡ଼ି ।
ଅନନ୍ତ ପ୍ରକୃତି          ବିଚିତ୍ର ଚରିତ
ଚିନ୍ତି ଚିନ୍ତି ନିରନ୍ତର
ବହୁ କାଳ ବ୍ୟାପି          ଘୋର ଧ୍ୟାନେ ମଗ୍ନ
ଅବା ମହାକବି ବର ।
ବନ୍ଧୁର ପାଷାଣ—          ସ୍ଖଳିତ ବିମଳ
ପ୍ରସ୍ରବଣ ସ୍ରୋତ ଛଳେ
ଢାଳି ଦେଉଛି କି          କବିତା ପ୍ରବାହ
ଅବିରଳ ଭୂମଣ୍ଡଳେ ।
କି ଅବା ପ୍ରକୃତି          ବସାଇ କଳ୍ପିତ
ଦୃଢ଼ ଶିଳା ପରେ ଶିଳା
ଶତ୍ରୁ ଭୟୁଁ ପୁର          ବଞ୍ଚାଇବା ପାଇଁ
ସେ ପ୍ରାଚୀର ରଚିଥିଲା ।
ଦୁର୍ଗ ଦେହପାର୍ଶ୍ୱ          ମହାଦ୍ରୁମପୂର୍ଣ୍ଣ
ନିବିଡ଼ ବନ ସଂକୁଳ,
ଲଗାଲଗି ହୋଇ          ବଢ଼ିଥିଲେ ତହିଁ
ନିରନ୍ତ୍ର କୀଚକକୁଳ ।
ବାଉଁଶ କଣ୍ଟାରେ          ଅଗମ୍ୟ ସର୍ବଦା
ଦିବସେ ଅନ୍ଧାର ଦିଶେ,
ରବିଙ୍କ ଭୟରେ          ଅନ୍ଧକାର ମାଳ
ତହିଁ ଲୁଚୁଥିଲେ କି ସେ !
ସମ୍ମୁଖରେ ତାର          ବିଶାଳ ପ୍ରାନ୍ତର
ବିସ୍ତୃତ ବହୁ ଯୋଜନ,
ସୁଦୃଢ଼ ପ୍ରାଚୀର          ଲଙ୍ଘି ଆସିବାକୁ
କିଏଁ ସେ ହେବ ସୁଜନ ।
ଅନ୍ୟ କଥା ଥାଉ          ଅଣ୍ଡଜମି ସର୍ବ
ପ୍ରହରୀଙ୍କ ନେତ୍ରସ୍ପର୍ଶି

ଗୁପତରେ କେବେ ସେ ଦୁର୍ଗୁଁ ମାର୍ଜାର
ଧୃଷ୍ଟା ନ ପାରବ ଆସି ।
କାଳା ହୋଇଥିଲା ବିଶାଳ କବାଟେ
ସିଂହଦ୍ୱାର ଅବିରତ,
ଯଗୁଥିଲେ ସୈନ ଆୟୁଧ ଆସ୍ଫାଳି
ପ୍ରହରିଏ ତା ସତତ ।
ଗଙ୍ଗେଶ୍ୱର ସହ ସାମନ୍ତ ରାଜାଙ୍କ
ସେ ପାଶେ ରଣନିବାସ
ହୋଇଥିଲା ଶୁଭ୍ର କୁସୁମିତ ଲୋଧ୍ର
କାନନ ସମ ପ୍ରକାଶ ।
ଅସଂଖ୍ୟ ଧବଳ ଦୁକୂଳେ ମଣ୍ଡିତ
ସେ ଦୀର୍ଘ ଶିବିର ଘଟା
ବହୁଥିଲେ ଯିନା ରଣ-ସାଗରର
ତରଙ୍ଗିତ ତଟ ଛଟା ।
ପଶ୍ଚିମେ ସମ୍ମୁଖେ ·ଅମନ୍ଦ ଗଣ୍ଡରେ
ଢେଉଁ ଢେଉଁ ଆଡ଼ମ୍ବରେ
ପରିଖା ପରାଏ ସାଲନ୍ଦୀ ତଟିନୀ
ବହୁଅଛି ଝର ଝରେ ।
ବନ ଫୁଲ ରେଣୁ ବହୁ ତହିଁ ସଦା
ଖେଳୁଥାଏ ସମୀରଣ,
ଘନ ପର୍ଣ୍ଣେ ପୂର୍ଣ୍ଣ ତରୁ ଲତା ତଳେ
ନ ପଡ଼େ ସୂର୍ଯ୍ୟ କିରଣ ।
ଜଳୀୟ ଶୀକରେ ସିକ୍ତ ସେହୁ ସ୍ଥାନ
କେବେ ନ ବାହାରେ ଝାଳ,
ଠାବେ ଠାବେ ରବି— କରେ ଖସୁଥାନ୍ତି
ଇନ୍ଦ୍ରଧନୁ ମାଳ ମାଳ ।
କାକଚକ୍ଷୁ ପରି ନିର୍ମଳ ଗଭୀର
ଜଳ କାହିଁ ଢଳ ଢଳ,
ଖଣ୍ଡ ହ୍ରଦପାଇଁ ଏକାନ୍ତ ଠୁଳ କା
ଛଣଙ୍କ ଦସ୍ତା ସକଳ ।

ପ୍ରଚଣ୍ଡ ଗ୍ରୀଷ୍ମରେ ସୁଦ୍ଧା ସୁଶୀତଳ
ଶିକ୍ତ ତହିଁ ଶିଳାରାଜି
ଅବିରତ ଜଳ ନାଦ କରୁଥାଏ
ବକ୍ଷର ଉପଲେ ବାଜି ।
ଝିଙ୍କାର ଝଙ୍କାରେ ମୁଖରିତ ସେହି
ରମ୍ୟ ନିକାଞ୍ଚନ ସ୍ଥାନ,
ନାନାଜାତି ପକ୍ଷୀ କରୁଥାନ୍ତି ସୁଖେ
ସୁଲଳିତ ସ୍ୱରେ ଗାନ ।
ପ୍ରସ୍ତୁତ-ଅରୁଣ— କିରଣ—ପରଶେ
ଲଜ୍ଜାରେ ଧୀରେ ମଉଳି
ଥପ ଥପ ଥୋପି ପଡୁଥାଏ ଶଶି-
ସଙ୍ଗିନୀ ଗଙ୍ଗଶିଉଳୀ ।
ମନ୍ଦ ସମୀରଣ ଲହରେ ସବେଗେ
ପଲ୍ଲବିତ କର ଡୋଳି
ଜଳ ଦେବତାଙ୍କୁ କି ଅବା କାନନ
ଦେଉଥିଲା ଲାଜାଞ୍ଜଳି !
ନ ଥିବାରୁ ତହିଁ ପ୍ରବେଶିବା ପାଇଁ
ସୁବିଧା କେବେ କାହାର
ଗଣା ହେଉଥିଲା ଅନ୍ତଃପୁର ସୀମା
ଭିତରେ ସେହି କାନ୍ତାର ।
ବେଳେ ବେଳେ ଏଣୁ ବାହାରିବା ପାଇଁ
ରାଜପୁର—ନାରୀଗଣ
ସେ ବିଜନ ସ୍ଥାନେ ପ୍ରବେଶି ସେବନ୍ତି
ନିର୍ମଳ ମୃଦୁ ପବନ ।
ସୁରମ୍ୟ କାନନ— ବେଷ୍ଟିତ ତଟିନୀ—
ତଟରେ ଶିଳା-ଉତ୍ସଙ୍ଗେ
ତରୁଚ୍ଛାୟା ତଳେ ହେ ଦେବ, ମୁଁ ଦିନେ
ବୁଲୁଥିଲି ସଖୀ ସଙ୍ଗେ ।
ଶରତ କାଳର ନବଜ ଶ୍ୟାମଳ
ଶୋଭରେ ରୁଚିରତର

ନବଘନ କାନ୍ତ　　ବୋଲା ହୋଇ ଆଗେ
ଗରଜୁଥିଲା ଭୂଧର ।
ଶାନ୍ତରସେ ପୂର୍ଣ୍ଣ　　ପ୍ରକୃତିର ମହା—
ମୂରତି ମନମୋହନ
ଦେଖି ଦେଖି ବେନି　　କରୁଥିଲୁଁ ସୁଖେ
ସାଦରେ ବନଭ୍ରମଣ ।
ଯେ ଯାହା କାର୍ଯ୍ୟରେ　　ରତଥିଲେ ବନେ
ବନଚର ପ୍ରାଣୀକୁଳ
ଗୋଟି ଗୋଟି ବାଛି　　ବେନିଏ ଲତାରୁ
ତୋଳୁଥିଲୁ ବନଫୁଲ ।
ପଡ଼ୁଥିଲେ ଯଥା　　ହେତାରେ ଦୁଃଖରେ
ଅଧୀର କ୍ରୌଞ୍ଚ ମିଥୁନ
ବ୍ୟାଧ କରକର　　ବାଲ୍ମୀକିର ଆଗେ
ଖର ଶରେ ହୋଇ ଲୂନ, *
ବାଣରେ ଆହତ　　ଏକାଳେ ଗୋଟିଏ
କପୋତ ରକ୍ତ ରଞ୍ଜିତ
ଆଚମ୍ବିତେ କାହୁଁ　　ଆମ୍ଭ ଆଗେ ତେଣେ
ଶୂନ୍ୟରୁ ହେଲା ପତିତ ।
ହେଉଥିଲା ଘୋର-　　ତୀବ୍ର-ଯାତନାରେ
ବିହଙ୍ଗମ କଲବଲ,
ସ୍ନେହେ କୋଳେ ଧରି　　ତେଣାରୁ ବାହାର
କଲି ତାର ଶରଫଳ ।
ବହଲ ପ୍ରଖରେ　　ରୁଧିର ତାହାର
ଭିଜିଗଲା ଦେହଯାକ,
ଥରି ଥରି ଅଙ୍କ　　ଅଧୀରେ ସେ ପକ୍ଷୀ
ଭୟେ ଦେଉଥିଲା ଡାକ ।
ଧୀରେ ଧରି ତାକୁ　　ସ୍ନେହେ ବିନ୍ଦୁ ବିନ୍ଦୁ
ଚଞ୍ଚୁପୁଟେ ଦେଲି ଜଳ,

* ଛିନ୍ନ ।

ଶୀତଳ ପବନ          ହୋଇ ସେ କପୋତ
ମେଲିଲ୍ଲ ଚକ୍ଷୁଯୁଗଳ ।
ଦୁଃଖିନୀର ଯତ୍ନ          ଆଦରେ ଆହ୍ଲାଦେ
ପୁଙ୍ଖପଶିଚାତ ପର
ନିର୍ଭୟେ କୋଳରେ          ବସିଲ୍ଲ ଘଡ଼ିଏ
ସକଳ କଷ୍ଟ ବିସ୍ମରି ।
ସ୍ନେହେ ଯତନେ          ସେବିଲେ ଦେବି ଗୋ,
ପଥର ହୁଏ ପ୍ରସନ୍ନ,
କହିବା ଆଶ୍ଚର୍ଯ୍ୟ          ସେ ଯତନ ଲଭି
ବଶ ହେବା ପକ୍ଷି-ମନ ।
ଦ୍ୱାପରେ ଦ୍ୱାରକା—          ପୁରେ ରୈବତକ
ଗିରିକକ୍ଷେ ଭଦ୍ରା ଆଗେ
ହୋଇଥିଲେ ଯଥା          ଧନୁର୍ଦ୍ଧାରୀ ପାର୍ଥ
ପରବେଶ ଅନୁରାଗେ,
ତାର ଶୁଶ୍ରୂଷାରେ          ବ୍ୟସ୍ତ ଥିବା କାଳେ
ତେସନ ସମ୍ମୁଖଦେଶେ
ଉଭା ହେଲେ ଆସି          ଏକ ସୌମ୍ୟମୂର୍ତ୍ତି
ଯୁବା ମୃଗୟାର ବେଶେ ।
ଉନ୍ନତ ଲଲାଟ          ଆଜାନୁଲମ୍ବିତ
ପରିମିତ କର ବେନି,
ସୁବିଶାଳ ବକ୍ଷ          ଶୋଭା ପାଉଥିଲ୍ଲ
ଉଚ୍ଚ ସ୍କନ୍ଧଦ୍ୱୟ ଘେନି ।
ବନ ପଶୁମନ          ଭୁମାଇବା ଆଶେ
ହରିତ ପୀତ ବସନେ
ଯୁବାମଣି ନିଜ          ସୁକୁମାର ତନୁ
ଘୋଡ଼ାଇଥିଲେ ଯତନେ ।
ମୃଗୟାର ବେଶ          କିଶୋରଙ୍କ ଗୌର
ଶ୍ରୀଅଙ୍ଗଦେଶରେ ଜଡ଼ି
ମନେ ହେଉଥିଲ୍ଲ          କେତକୀଦଳେ କି
ବାଲାତପ ଥିଲ୍ଲ ପଡ଼ି !

ପାଶେ ଦେଖି ତାଙ୍କୁ ଲଳନା ସୁଲଭ
ଲଜ୍ଜା ଭୟରେ ଉଭୟେ
ଶ୍ରୀହଂସପୁର ମୁଖେ ଅସ୍ତବ୍ୟସ୍ତେ
ପଳାଉଥିଲ୍ଲ ଅଥୟେ ।
ନିକାଞ୍ଚନ ସ୍ଥାନେ ଯୁବା ପୁରୁଷଙ୍କୁ
ଦେଖି କେ ହିନ୍ଦୁ ଅଙ୍ଗନା
କଳଙ୍କ-ରଟନା ପଠଙ୍କ ଭୟରେ
ନୋହିବ ଚଞ୍ଚଳମନା ?
ଦୁଗ୍ଧଫେନ ଗୌର ଗଜଦନ୍ତ କାନ୍ତ
ସୌମ୍ୟମୂର୍ତ୍ତି ଯୁବାବର
ଆମ୍ଭ ଦୁହିଁଙ୍କର ବ୍ୟସ୍ତତା ବିଲୋକି
ସଦୟେ କଲେ ଉତ୍ତର ।
ସହାସ୍ୟେ କହିଲେ କିଏ ତୁମ୍ଭେମାନେ,
ଅଟ କାହାର ନନ୍ଦନୀ ?
କାହିଁପାଇଁ ଏଥି ନିର୍ଜନ ବନରେ
ବୁଲୁଅଛ ଏକାକିନୀ ?
କେ ଗୋ ତୁମ୍ଭେ ଏଥି ରତ୍ନ ଅଟବୀର
ଅଟ କି ଅଧିକାରିଣୀ
ଅବା ମର୍ତ୍ତ୍ୟପୁରେ ବିହରୁଛ ଆସି
କେନ ସ୍ୱର୍ଗ ସୀମନ୍ତିନୀ ?
କି ଲାଭ ଆଶାରେ ନିକାଞ୍ଚନେ ଦୁହେଁ
କରୁଛ କାହା ସାଧନା
କେଉଁ ଭାଗ୍ୟଧର ଭାଗ୍ୟ ମଣ୍ଡିବାକୁ
ବଢ଼ାଇଅଛ ବାସନା ?
ଏଥି ସ୍ନେହମୟୀ କିଏ—ଯେ ପକ୍ଷୀଟି
ଧରି ସ୍ନେହାର୍ଦ୍ର ଚକ୍ଷୁରେ
ଚମ୍ପା—ଅଙ୍ଗୁଳିରେ ବିନ୍ଦୁ ବିନ୍ଦୁ ବାରି
ଦିଅନ୍ତି ତାର ଚଞ୍ଚୁରେ ?
କପୋତର ଦୁଃଖେ ନେତ୍ରୁ ନୀର ଝରେ
ସ୍ଥୂଳ ମୁକ୍ତାଫଳ ଜିଣି,

ମୂର୍ତ୍ତିମତୀ ଦୟା ପଗ୍ଵଏ ଦଶନ୍ତ
କଏ ଏ ମଞ୍ଜୁକାଷିଣୀ ?'
ଲଜ୍ଜାରେ ରହିଲି କିଶୋରଙ୍କ ପ୍ରଶ୍ନେ
ନ ଦେଇ କିଛି ଉତ୍ତର
ନରୂତ୍ତରେ ସିନା ପୁଲକେ ; ଧରଣୀ
ଶ୍ଵାସ ଲଭି ମଳୟର ।
ଅଜାଣତେ ମୋର ମନ-ପକ୍ଷୀ ଲକ୍ଷି
ଗଲା ଯୁବା ରୂପ ଡୋରେ,
ସଲିଳବିହାରୀ ରାଜହଂସ-ଚଞ୍ଚୁ
ଯଥା ମୃଣାଳସୂତ୍ରରେ ।
ସମରପ୍ରାଙ୍ଗଣେ ଦେଖିଥିଲା ସଖୀ,
ଏଣୁ ତାଙ୍କୁ ଚିହ୍ନି କ୍ଷଣେ
ଯୁବତୀସୁଲଭ ଲଜ୍ଜା ଏଡ଼ି ଆଗୁ
କହିଲା ସ୍ପଷ୍ଟ ବଚନେ—
ଅନ୍ତଃପୁର ସୀମା ଏ ସ୍ଥାନ ଅଟଇ
ପଶିବାକୁ ଏଥି ମନା
ସାଧିବାକୁ କେଉଁ ମନ୍ଦ ଅଭିସନ୍ଧି
ଆସିଛ ନଯାଏ ଜଣା,
ଚିହ୍ନିଛି ମୂର୍ତ୍ତିରୁ ଶତ୍ରୁପକ୍ଷ ତୁମ୍ଭେ
ଉତ୍କଳ ରାଜତନୟ
ବୁଡ଼ିଆଣୀ ଜାଲେ ମକ୍ଷି ସମ ହେବ
କହିଦେଲେ ପରିଚୟ ।'
ଏହା କହି ସଖୀ ଏକାନ୍ତେ ରହିଲା
ମୋର ଆଦେଶକୁ ଚାହିଁ,
ନତମୁଖେ ଥିଲି— ରକ୍ଷ ଥାନ୍ତି ଯଥା
ମେଘନାଦକୁ ଅନାଇ ।
କୁମୁଦିନୀ ପରି ମୁଗ୍ଧ ହୋଇଥିଲି
କୁମାର-ରୂପ ଚନ୍ଦ୍ରରେ,
ଠେଲି ଦଅନ୍ତି ମୁଁ କେମନ୍ତେ ନିର୍ଦ୍ଦୟେ
ବିପକ୍ଷ ରାହୁମୁଖରେ ।

ମନା କର ଦେବ ! କହିଲ ସଖୀକୁ
ରାଜପୁତ୍ରଙ୍କୁ ଶୁଣାଇ,
କାନନେ ମୟୂରୀ ଡାକ ଦିଏ ଯଥା
ନବଘନକୁ ଅନାଇ ।
'ସତ୍ୱରେ ଶିବିରେ ଯିବାକୁ ସଜନ,
ତାହାଙ୍କୁ ବୁଝାଇ କହ,
ବିପକ୍ଷ-କୁମ୍ଭୀର— କୂଳରେ ଏ ବନ-
ସିନ୍ଧୁ ସଦା ଭୟାବହ ।'
ଶୁଣି ମୃଦୁ ଗିରେ ଉତ୍ତରିଲେ ଯୁବା,
ଅଗୋ ସ୍ବରୁ ଚନ୍ଦ୍ରହାସି,
ମୃଗୟା ଉଦ୍ଦେଶେ ବୁଲି ବୁଲି ଭ୍ରମେ
ଏଥି ପ୍ରବେଶିଛୁ ଆସି ।
ଦୀର୍ଘଶୃଙ୍ଗ ଏକ ଚଞ୍ଚଳ କୁରଙ୍ଗ
ପଛରେ ଗୋଡ଼ାଇ ମୁହିଁ
ବଣା ହେଲି, ଭାଗ୍ୟ ଦେଖାଇଲା ଏଥି
ଅକଳଙ୍କ ଚନ୍ଦ୍ର ଉଇଁ
ସମୁଜ୍ଜ୍ୱଳ ରୂପ— ପ୍ରଭାରେ କରୁଛି
ବନସ୍ଥଳୀକୁ ଧଉତ,
ପ୍ରତି ପଦକ୍ଷେପେ ହେଉଛି ଯାହାର
ଏହୁ ଧରାତଳ ପୂତ ।
ଦର୍ଶେ ଶୋଭାସାର ସୌନ୍ଦର୍ଯ୍ୟ ବିଲୋକି
ନୟନ ହେଲା ସଫଳ,
ଅନୁକୂଳ ଭାଗ୍ୟ ଆଣିଦିଏ ସିନା
ପୂର୍ବ ସୁକୃତର ଫଳ ।
ଭବେ ଅତୁଳନ ଏ ରୂପ-ସମ୍ପଦ
ଦେଖି ଭାବ ହୁଏ ମନେ,
ନନ୍ଦନ ବନର ଫୁଲ ଫୁଟିଛି କି
ଆସି ମର୍ତ୍ତ୍ୟ-ଉପବନେ !
ଯାଉଛି ଶିବିରେ ତୁମ୍ଭ ସଜନୀର
ଆଜ୍ଞା ଶିରୋଧାର୍ଯ୍ୟ କରି

ଶୀଘ୍ରରେ ମନ ଥୋଇ, ଅଥୟରେ
ଏକା ଶୂନ୍ୟ ଦେହ ଧରି ।
ଶରରେ ଆହତ କୋଳରେ ଶାୟିତ
ଏହି ବିହଙ୍ଗମ ପରି
ତୁମ୍ଭ ସଖୀ—ତୀକ୍ଷ୍ଣ— କଟାକ୍ଷ ବାଣରେ
ହୃଦୟ ଯାଉଛି ସରି ।
ଦେଇ ଯାଉଅଛି ମୋ ପ୍ରାଣପକ୍ଷୀଟି
ଏହି ଦୟାଶୀଳା—କରେ,
ଦୁଃଖି ହୃଦବନ ଶୀତଳ ହୁଅଇ
ଯିନା କରୁଣା ନିର୍ଝରେ ।
ବଞ୍ଚାଇଲେ ସ୍ନେହେ ଯତ୍ନେ କପୋତକୁ
ଆହା ଯେ କରୁଣାମୟୀ,
ମୋ ପ୍ରାଣପକ୍ଷୀଟି ପ୍ରତି ଯେସନ୍ତେ ତାଙ୍କ
କରୁଣା ଜଣା ନୁହଇ ।'
ଅନିଚ୍ଛାରେ ଏହା କହି ଯୁବାମଣି
ଗମିଲେ ଶିବିରମୁଖେ,
ଥରେ ଥରେ ଫେରି ଦେଖୁଥିଲେ ମୋତେ
ରହି ରହି ମନଦୁଃଖେ ।
ଯିବାକାଳେ ତାଙ୍କ ଚୁହିଁବା ଭଙ୍ଗୀରୁ
ସ୍ପଷ୍ଟ ଯାଉଥିଲା ଜଣା,
ବଳକାରେ ଯାଉ- ଥିଲେ ସେ କିଶୋର
ଅନାୟତ୍ତେ ହୋଇ ଠଣା ।
କୁମାର ଗମନ୍ତେ ଏକଦୃଷ୍ଟେ ମାତ୍ର
ରହିଲି ତାଙ୍କୁ ଅନାଇ,
ବହୁତ ଯତନେ ସେ ଦିଗରୁ ଆଉ
ମନ ତ ଫେରିଲା ନାହିଁ ।
ନ ଚଳିଲା କର ଚରଣ ଘଡ଼ିଏ
ରହିଲି ପ୍ରତିମା ପରି,
ଦେଖୁ ଦେଖୁଁ ଅଶ୍ରୁ— ଜଳେ ମୋର ଦୋନି
ବିଲୋଚନ ଗଲା ଭରି ।

ଝିପି ଝିପି ଝାଳ ବହିଲା ସଘନେ
ଦେହ ହେଲା ଜରଜର,
ମନ୍ଦବାତେ ଲତା ପରାୟେ ହୃଦୟ
କମ୍ପିଲା ଥରକୁ ଥର ।
କେତେ କ୍ଷଣେ ଦେବୀ ଫେରିଲେ ଗୃହକୁ
ଅଥୟେ ସଜନୀ ସହ,
ଅବ୍ୟକ୍ତ ଉଦାସ ପ୍ରାଣେ ଘରଦ୍ୱାର
ଦିଶିଗଲା ଶୂନ୍ୟମୟ ।
ସେ ଦିନୁଁ ଆକୃଷ୍ଟ ହୋଇ ମୁଁ ଜନନୀ,
ଯୁବରାଜଙ୍କ ପ୍ରେମରେ
ଦିନୁ ଦିନୁ କ୍ଷୀଣ ହେଲି କଳାକର
ଯେମନ୍ତ କୃଷ୍ଣ ପକ୍ଷରେ ।
ଏରୂପେ ନଭୃତେ ଆଶ୍ରମରେ ମହି
ଦୁଷ୍ମନ୍ତଙ୍କ ପ୍ରେମେ ପିନା
ଦ୍ୱାପରେ ଦୁଃଖରେ ଶକୁନ୍ତଳା
ହୋଇଥିଲେ ବାଳା ଦୀନା ।
ଫିକା ହୋଇ ଦେହ— କାନ୍ତି କ୍ରମେ କ୍ରମେ
ହେଲା ପାରଦ ପ୍ରକାର,
ପ୍ରତ୍ୟୁଷେ ମଳିନ ଦିଶଇ ଯେମନ୍ତ
ମୂର୍ତ୍ତି ପୂର୍ଣ୍ଣ ଚନ୍ଦ୍ରମାର ।
ଭାବନା-ସାଗର- ତରଙ୍ଗେ ଅଥୟେ
ଦୋଳିଲା ହୃଦୟ-ତରୀ,
ମନ ଇନ୍ଦ୍ରିକୁ ଧରି ଖେଳାକଲେ
ସଦା କଳନା ସୁନ୍ଦରୀ ।
କ୍ଷୁଧା ତୃଷା ମନୁ ଘୁଞ୍ଚିଗଲା ସଦା
ଦିଶିଲା କୁମାର ଛବି,
ଘୁମରି ଘୁମରି କରବା ପରିଏ
ଦୁଃଖେ ମନ ଗଲା ଦ୍ରବି ।
ଉପାୟ ନ ଦେଖି ଭୟେ ପରିଶେଷେ
ଜଗଣ ସଖୀ ମୋହର

ବ୍ୟାଧିର ଯାବତ    ବୃତ୍ତାନ୍ତ କଲ୍ଲ ସେ
ପିତାଙ୍କ କର୍ଣ୍ଣଗୋଚର ।
ଶୁଣିଅଛ ଦେବ,    ଭାଗ୍ୟଦୋଷେ ମୁଁ ତ
ହୋଇଥିଲେ ମାତୃହୀନ,
ଦୁଃଖି ଇଚ୍ଛା ପର    ହୃଦେ ମାତୃସ୍ନେହ
ଉଠି ହେଉଥିଲ୍ଲ ଲୀନ ।
ମଧୁମୟୀ ମାତା—    ସ୍ନେହ ଭାବ ଭାବ
ଯାଉଥିଲେ ଦ୍ରବ ସୁଖେ
କଳନାରେ କେବେ    ଦେଖୁଥିଲି ମାତା
ପ୍ରେମପ୍ରତିମା ସମ୍ମୁଖେ ।
ବାଲ୍ୟରୁ କେବଳ    ବଢ଼ିଥିଲି ମୁହ
ଜନକ ଯତ୍ନ ଆଦରେ,
ମାତୃନାଶ ଦୁଃଖ    ବୁଝି ପାରି ନାହିଁ
ରହୁ ସେ ସୁଖ-ସ୍ୱର୍ଗରେ ।
(ହାସୁରେ ଅକାଳେ    ସ୍ନେହମୟ ସେହି
ପିତା ପାଶୁଁ ଦୂର ହୋଇ
ଅବରତ ଘୋର    ଶୋକ ହୁତାଶନ
ହୁତାଶେ ହେଉଛ ଦହି ।)
ହୋଇଥିଲେ ଅନ୍ୟ    କେହି ସେ ସୁତଳ
ଯୁବକ ରତନ ଜନନ !,
ଦେଇଥାନ୍ତା ଧବ    ପକାଇ ପ୍ରଥମ
ପ୍ରହସି କରେ ଜନନୀ ।
ହୋଇଥାନ୍ତା ଆଜି    ଏ ପାପ ଯୁବର
ଭିନ୍ନରୂପ ପରିଣାମ,
ରହପୁର ଭାଗ୍ୟେ    ନୋହିଥାନ୍ତେ କେବେ
ବିଧାତା ଏଭଳ ବାମ ।
ଧବ ପଡ଼ିଥିଲେ    କୁମାର ମୋ ପିତା
ଗଙ୍ଗେଶ୍ୱରଙ୍କୁ ଆୟତ୍ତେ
ଆଣିଥାନ୍ତେ, କଷ୍ଟେ    ସନ୍ଧି କରିଥାନ୍ତେ
ପୁତ୍ର ସ୍ନେହରେ ସେ ବ୍ୟସ୍ତେ ।

ମାତ୍ର ସେ ସଙ୍କଳ୍ପ ଭାସି ଯାଇଅଛି
ଭିନ୍ନ ଘଟଣାର ସ୍ରୋତେ,
ଭବିତବ୍ୟ କରେ କନ୍ଦୁକ ସମାନ
ପ୍ରାଣୀ ନାଚେ ଅବିରତେ ।
ଶୁଣିଲେ ଜନକ ସଖୀଠାରୁ ମୋର
ରୋଗବୃତ୍ତାନ୍ତ ଯେମନ୍ତ,
ସନ୍ଧିର ପ୍ରସ୍ତାବ କରି ସେହିକ୍ଷଣି
ପେଶିଲେ ଏକ ଉଦନ୍ତ ।
ଲେଖିଥିଲେ ପିତା, ଯୁବରାଜଙ୍କର
କରେ ଛନ୍ଦମୋର କର
ସାମନ୍ତ ପରାଏ ଉତ୍କଳ ପତିଙ୍କୁ
ଭରି ଦେଉଥିବେ କର ।
ଫଠା କପାଳକୁ ମୋର ମହାଦେବ !
ଫଳ ହେଲା ବିପରୀତ,
ଉଲଟ ଉତ୍ତର ଦେଲେ ଗଙ୍ଗେଶ୍ୱର
କ୍ରୋଧରେ ଜ୍ୱଳି ତ୍ୱରିତ ।
‘ରତ୍ନପୁର ନାହା ଭାବୁଛି ଯା ମୋତେ
ଅକର୍ମଣ୍ୟ ବୋଲି ଦମ୍ଭେ,
ଭୋଗିବ ତାହାର ପ୍ରତିଫଳ ଏହୁ
ରଣସ୍ଥଳେ ଅବିଳମ୍ବେ ।’
ଦୁଃଖିତ କରୁଣ ଭିକ୍ଷାକୁ ପୂରନ୍ତ
ଭବେ ଯିନା ସାଧୁଜନ
ମାତ୍ର ଥରେ ଥରେ କ୍ରୂର କାର୍ଯ୍ୟାନଳେ
ହୁଅଇ ତାହା ଇନ୍ଧନ ।
ଶୁଣି ସେ ଉତ୍ତର ମନଦୁଃଖେ ମାତଃ,
ରହିଲେ ପିତା ମଉନେ;
ପୂର୍ବପର ଯୁଦ୍ଧ ଚଳିଲା ପ୍ରଚଣ୍ଡେ
ଚମୂଚୟ ମଲେ ରଣେ ।
ପାଞ୍ଚ ବର୍ଷଯାଏ ଲଗିଲା ଏରୂପେ
ଦେବ ! ଭୀଷଣ ସମର,

ଶୁଭୁଥିଲା ଘୋର ମାର ମାର ଶବ୍ଦ
ରଣେ ବୀରମାନଙ୍କର
ବାରଣଙ୍କ ଚିତ୍କ ବୃଂହିତ, ତୁରଙ୍ଗ
କୁଳର ହ୍ରେଷା ଚହଳ,
ଧନୁର ଟଙ୍କାରେ ରଣବାଦ୍ୟ ନାଦେ
କମ୍ପୁଥିଲା ଧରାତଳ ।
ଶେଷେ ଯେବେ ତୁମ୍ଭ ସୁତ 'ଏକଜାତ'
ନୃପଦେ ନାଷ୍ଟମଚାନ୍ଦ୍ର
ପିତାଙ୍କ ଆଦେଶେ ମହା ଉତ୍ସାହରେ
ରଣେ ହୋଇ ଉପସ୍ଥିତ
ସେନାପତିରୂପେ ଘେନଲେ ସତେଜେ
ବାହିନୀ ଶୃଙ୍ଖଳା ଭାର,
ତେତେବେଳେ ଯୁଦ୍ଧ ଧଇଲା ଦେବ ଗୋ,
ଅତି ଭୀଷଣ ଆକାର ।
ଲୁଚ୍ଛ ଲୁଚ୍ଛ ହୋଇ ଅସଂଖ୍ୟ ସେନାନୀ
ମଲେ ଉଭୟ ପକ୍ଷର,
ଅଶେଷରେ ଆମ୍ଭ ପକ୍ଷ ସେନାମାନେ
ହତହେଲେ ବହୁତର ।
କମେ କମେ ଆମ୍ଭ ଦୁର୍ଗରୁ ଆହାର
ମାନ ଶେଷହେଲା ଆସି,
ଦୁର୍ଭିକ୍ଷ ପଡ଼ିଲା ଆହାର ଅଭାବେ
ଶୀର୍ଣ୍ଣ ହେଲେ ଦୁର୍ଗବାସୀ ।
କ୍ଷୀଣ ହୋଇଗଲା ଶରୀର, ଛନ୍ଦର
ହାଡ଼ମାନ ହେଲା ଗଣି,
ପୁର ହେଲା ନର କନ୍ଦର୍ପ ଦେହର
ଅସ୍ଥି କଙ୍କାଳର ଖଣି,
ପଶିଗଲା ତୋଳା କୋଠର ଭିତରେ
ଶୁଖିଗଲା ଗଣ୍ଡସ୍ଥଳ ;
କୋଠରସ୍ଥ ଜୀବ ପରାଏ ବାହାସ୍ଥ
ଦଶିଲା ନେତ୍ରଯୁଗଳ ।

ଥରଥର ହେଲ ଶୀର୍ଣ୍ଣ ଗୋଡ଼ ଦୁଇ
ଶୁଷ୍କ ଜଡ଼ାଗଛ ସମ,
ଚରଣ ଦେହର ଭର ବୋହିବାକୁ
କ୍ରମରେ ହେଲା ଅକ୍ଷମ ।
ଲାଗିଗଲା ପେଟ ଅଣ୍ଟାରେ ପିଠିରେ
ମେରୁହାଡ଼ ହେଲା ବାର,
ବେକ ସ୍କନ୍ଧ ପରେ ଆବୃତ୍ତ ହେଲ
ଅସ୍ଥି ପଡ଼ିଲା ବାହାର ।
ଆହାର ଅଭାବେ ମାତାର ସ୍ତନରୁ
ଦୁଗ୍ଧଧାର ଗଲା ଛାଡ଼ି,
ଅକାଳେ ସନ୍ତାନ— ମାନଙ୍କର ପ୍ରାଣ
ଯମ ନେଲା ଝିଙ୍କି କାଢ଼ି ।
ଅସ୍ଥିମଜ୍ଜ ମାତା— କୋଳେ ତନୟର
କଙ୍କାଳ ମୂରତି ଚୁହିଁ
ପାଷାଣ ତରଳ— ଯିବ, ନୟନେ ଅଶ୍ରୁ
ରହି ତ ପାରିବ ନାହିଁ ।
ଭଣ—ହୁହୁଙ୍କାର ବଦନେ ଉଠିଲ
ଚୌଦିଗୁଁ କ୍ଷୁଧାର ରୋଳ,
ସାମାନ୍ୟ ଆହାର ଲାଗି ଶତ ଶତ
ଲୋକ କରୁଥିଲେ ଗୋଳ ।
ପଯୃଦଧିଯୁକ୍ତ ଦ୍ରବ୍ୟ ଅନ୍ନ ଥିଲ
ଯାହାଙ୍କ ଆହାର ନିତ୍ୟ
କ୍ଷୁଧା ତାଡ଼ନାରେ କନ୍ଦନ୍ତେ ସେମାନେ
ବଳାଇଲେ ସିନା ପ୍ରୀତି ।
ଅନାହାରେ କାନ୍ଦି କାନ୍ଦି ଗଡ଼ୁଥିବା
ଶିଶୁ ସନ୍ତାନଙ୍କୁ ଚାହିଁ,
ବୃଦ୍ଧିଆଣି ଜାଲେ ବଦନ ତାହାର
ମହାଲଜ୍ଜାରେ ଘୋଡ଼ାଇ
ଗୃହିଣୀ ସହିତେ ବିଷାଦରେ ଚୂର୍ଣ୍ଣ
ସର୍ବଦା ଝିଙ୍କି ରହିରେ

କାନ୍ଦଇ ହେ ଦେବ, ହାହାରେ ଉଠରେ
ସମସ୍ତଙ୍କ ଘରେ ଘରେ ।
ପରଶେଷେ ପୁରେ ଅନ୍ତଃପୁର ପାଇଁ
ଥିଲା ଯେତେ ଖାଦ୍ୟମାନ
ଅଧିକାଂଶ ତହୁଁ ସେନାଙ୍କ ସକାଶେ
ସମର୍ପିଲେ ନରତ୍ରାଣ ।
କରୁଥିଲେ ନିଜେ ଖାଦ୍ୟ ବଣ୍ଟନର
ଜନକ ପର୍ଯ୍ୟବେକ୍ଷଣ,
ମୋ ଅଂଶ ବଢ଼ାଇ ଦେଉଥିଲେ ତାଙ୍କ
ଅଂଶରୁ କରି କର୍ତ୍ତନ ।
ନିଜେ କ୍ଷୁଧା ତୃଷା ସହି ସୁଦ୍ଧା ବ୍ୟସ୍ତ
ହେଉଥିଲେ ମୋର ପାଇଁ,
ଆରେ କ୍ରୂର କାଳ ! ତାଙ୍କୁ ନେଇ କିପାଁ
ରଖିଛୁ ମୋତେ ଜୀଆଇ ।
ଦେଖୁଁ ଦେଖୁଁ ଆମ୍ଭ ଦୁର୍ଗବାସ କାଳ
ହୋଇଗଲା ଅବସାନ,
ଆହାର ଅଭାବେ ଯୋଦ୍ଧାମାନେ ଆଉ
ମାରି ନ ପାରିଲେ ବାଣ ।
ଠିଆହୋଇ ଯୁଦ୍ଧ କରୁଁ କରୁଁ ସୈନ୍ୟ—
ମାନେ ପ୍ରାଚୀର ଉପରେ
ଖସି ପଡ଼ୁଥିଲେ ମଗ୍ନ ହେଲାପରି
ଗଭୀର ଜଳ ଭିତରେ ।
ହତ ସୈନ୍ୟସ୍ଥାନ ପୂର୍ଣ୍ଣ ହେଲା ନାହିଁ
ପ୍ରାଚୀର ଦିଶିଲା ଖାଲି,
ଆସୁ ନୋହୁ ଏକା ବ୍ୟସ୍ତ ହେଉଥିଲେ
ସରେ ସିନା ନିଦା ବାଲି ।
ଦେଖି ଗାଢ଼ତର ଚିନ୍ତାରେ ଜର୍ଜର
ହୃଷଣ୍ଡି ବଦନ ମୋର,
ସେ ଚିନ୍ତାର ଘୋର କିବା ମନ୍ଦ ଫଳ
ଆଶଙ୍କା କରି ପିଅର

ପ୍ରସ୍ଫୁରିଲେ ଅଙ୍ଗ— ସମରକ୍ଷେତ୍ରରେ
କୁମାରଙ୍କ ବକ୍ଷ ଲକ୍ଷୀ
ପେଷି ନ ପାରବେ ପ୍ରାଣନାଶକାରୀ
ବିଶିଖ ଯେମନ୍ତ ଯୋଖି
ଆକ୍ରମଣକାରୀ ବୀରଙ୍କ ମଧ୍ୟରେ
ଯୁବରାଜହିଁ ପ୍ରବଳ,
ଯୂଥ ମଧ୍ୟେ ଯଥା ବିକ୍ରମେ ସାହସେ
ଶ୍ରେଷ୍ଠ ମତ୍ତ ଦନ୍ତାବଳ ।
ତାଙ୍କୁ ନ ପ୍ରହାର ନିରୁତ୍ସାହ କ୍ରମେ
ହୋଇଲେ ସେନାନୀଗଣ,
ପ୍ରବଳ ବାତ୍ୟାର ଗଣ୍ଡ ଦ୍ରୁମ ଯଥା
ମହାଗିରିବରେ ବାଜ୍ଞ ।
ଶେଷ ଦିନ ହେଲା ନିକଟ, ଦୁର୍ଗରେ
ବୀର ନ ରହିଲେ କେହି,
ଦିନେ ଶତ୍ରୁମାନେ ଚକିତେ ପଶିଲେ
ଦୁର୍ଗର ପାଚେରୀ ଡେଇଁ ।
ଭୀଷଣ ତେଜରେ ଆକ୍ରମିଲେ ଗଡ଼
ବିପକ୍ଷ ପ୍ରଚଣ୍ଡ ଦଳ,
ଉଠିଲା ନଗରେ କ୍ଷଣେ ଭୀତିପ୍ରଦ
ମହାଘୋର କୋଳାହଳ ।
କାହିଁ ଗୃହ ଦଗ୍ଧ ହେଲା ସବେଗରେ
ଉଜ୍ଜ୍ୱଳ ନଭ ଉତ୍ତୁଙ୍ଗ,
ଚଟ ଚଟ ଶବ୍ଦେ ପହଁର ଲଗିଲା
ବାୟୁରେ ବହ୍ନି ତରଙ୍ଗ ।
ସବେଗେ ବଢିଲା ଜ୍ୱାଳାମୟୀ ଜିହ୍ୱା
ବହ୍ନି କର ପ୍ରସାରଣ
ଏକ ଘରୁ ନଇଁ କରୁଥିଲେ ଅନ୍ୟ
ଘରମାନଙ୍କୁ ଲେହନ ।
ଦୁଇପାଖେ ଅଗ୍ନି ବିଷମ ତେଜରେ
ଜଳୁଥିଲା ଦାଉ ଦାଉ,

ଘନ ଧୂମେ ପୂର୍ଣ୍ଣ ପଥେ ମାତଃ, ଯାଇ
ହେଉତ ନଥିଲା ଆଉ ।
ଘୃତ ଦୁଗ୍ଧ ତୈଳ ଶସ୍ୟ ଚର୍ମ ଶିଙ୍ଗ
ପୁରୀଷ ଲୋମବସନ
ଦଗ୍ଧ ହୋଇ ମହା— ଦୁର୍ଗନ୍ଧେ ସେ ପୁର
କଲା କ୍ଷୋଭ ଉତ୍ପାଦନ ।
ଖରେ ଜଳବାରୁ ଆଠୁଘରେ ବହ୍ନି
ଗବାକ୍ଷ ମାର୍ଗରେ ପଶି
ଝଚ କାନ୍ଥମାନ ଫାଲ ଫାଲ ଫାଟି
ସବେଗେ ପଡ଼ିଲା ଖସି ।
ସହାସେ ପଳାଇ ପୋଡ଼ିବା ଭୟରେ
ମୂଷିକ ପଲ ବଳରେ
ଶ୍ୱାସରୁଦ୍ଧ ହୋଇ ପରାଣ ତେଜିଲେ
ଘନ ଧୂମପଟଳରେ ।
ଲଗିବାରୁ ଅଗ୍ନି ଗୁହାଳମାନଙ୍କେ
ହାସେ ଘୋର ରଡ଼ି ଛାଡ଼ି
ଛାଗ ମେଷ ଗାଈ ଡେଇଁ ଡେଇଁ ଅହା
ଅଥୟେ ହେଲେ କରୁଡ଼ି ।
ଧୂମଜଳଦରେ ଗଗନେ ତାରକା-
ଗଣ ହେଲେ ହୀନପ୍ରଭ,
ନବୀନ ଘନରେ ଢାଙ୍କି ହେଲା ପର
ଦର୍ଶିଲା ନିର୍ମଳ ନଭ ।
ଅନଳ ତ୍ରାସରେ ନିଜ ସ୍ଥାନ ଛାଡ଼ି
ଗୃହ ପାରାବତଗଣ
ଉଡ଼ ଉଡ଼ ନଭେ ପୁଣି ସେ ବହ୍ନିରେ
ପଡ଼ିଲେ ଆସି ତକ୍ଷଣ
ହାଣ୍ଡଶାଳେ ଅଗ୍ନି· ଧରିବାରୁ ଗଜେ
ଛିଣ୍ଡାଇ ଶିକୁଳି ଭୟେ ଯେ
ଘୋର ରଡ଼ ଛାଡ଼ି ଧାଇଁଲେ ଜୀବନ-
ରକ୍ଷଣେ ମାର୍ଗେ ଅଥୟେ,

ଆଗରେ ପଡ଼ିତ ପ୍ରାଣୀଙ୍କୁ ଅଧୀରେ
କର୍କଶ ପାଦରେ ମନ୍ଥି,
କାହାକୁ କସୃଡ଼ ଶୁଣ୍ଢରେ କାହାକୁ
ଦନ୍ତଯୁଗଳରେ କନ୍ତି ।
ଗଜରଥେ ସ୍ୱତ ତୁରଙ୍ଗ ଶାଳରୁ
ସହାସେ ରସି ଛଣ୍ଡାଇ
ଡ଼ଆଁ ମାରି ପଛ ଗୋଡ଼ ଫିଙ୍ଗି ଫିଙ୍ଗି
ଚୌଦଗେ ବୁଲିଲେ ଧାଇଁ ।
ବାରଣ ବୃଂହିତ ଅଶ୍ୱ-ଖୁରଶବ୍ଦ
ଯୋଦ୍ଧାନାଦସହ ମିଳି
ପ୍ରଚଣ୍ଡନାଦେ ପୁର ଝଙ୍କୃତି ଉଠିଲି
କାନ ହୋଇଗଲା କାଲା ।
କାହିଁ ହୁଏ ରଣ କାହିଁ ବା ଶୁଭଇ
ଘାତକ ଭୀମ ତର୍ଜନ,
କାହିଁ ଅହତର ଆର୍ତ୍ତିନାଦ କାହିଁ
ଶିଶୁମାନଙ୍କ ରୋଦନ ।
ଏରୂପେ ପ୍ରଳୟ— କାଳର ଦେବ ଗୋ,
ଭୟଙ୍କର ମହାମାରି
ଉପୁଜାଇ କ୍ଷଣେ ଯୋଦ୍ଧାଏ ପୁରର
ସୌଭାଗ୍ୟକୁ ଦେଲେ ସାରି ।
କେତେ ପତିବ୍ରତା ରମଣୀରତନ
କ୍ଷଣେ ହେଲେ ଅନାଥିନୀ,
ଶିଶୁପୁତ୍ର କୋଳେ ଧରି କେତେ ମାତା
ହୋଇଲେ ଧରଣୀଶାୟିନୀ ।
କେତେ ବୃଦ୍ଧ ପିତା ତଳେ ପଡ଼ିଥିଲେ
ପୁତ୍ରକୁ ହୃଦରେ ବାନ୍ଧି,
ରହିଥିଲା ତାଙ୍କ ପୁତ୍ରସହ ତନୁ
ଖଡ୍ଗରେ ଦ୍ୱିଖଣ୍ଡ ହୋଇ ।
ଉଦରେ ଅସ୍ତ୍ରଧ ଭୁଷ ହୋଇ କାହିଁ
ଗର୍ଭବତୀ ରମଣୀର

ଫୁଟି ବଗୁଥିଲା ନାଡସହ ଛିନ୍ନ
ମୃତ ତନୟର ଶିର ।
କାହି ଛିନ୍ନପଦ ଅଶ୍ରିର ପୃଷ୍ଠରେ
ଘାତ୍ର ଅଗ୍ନି ଖଣ୍ଡ ପଡ ।
ଦନ୍ତ ଦେଖି ତାର ଜୀବନ୍ତ ତନୁକୁ
ହାସେ ଛଡ଼ୁଥିଲା ରଡ ।
ନବୀନ ଦମ୍ପତୀ ଶଯ୍ୟାପରେ କାହିଁ
ଶୂଳମୂନେ ଗୁନ୍ଥାହୋଇ
ବେନିଏ ବେନିଙ୍କୁ ଗାଢ଼ ଆଲିଙ୍ଗନ
କରିପ୍ରାଏ ଥିଲେ ରହି ।
କାହିଁ ଅଗ୍ନିଝାସେ କାଠ କଳା ହୋଇ
ସ୍ୱାମି ମୁଖରୁ ସ୍ମରି
ଅତି ରଡ ରଡ ପୁତ୍ର କନ୍ୟାସହ
ରମଣୀଏ ଗଲେ ମରି ।
ହାସେ ରାଜପଥେ ଦଉଡି ଆସନ୍ତି—
ପ୍ରସବା କେତେ ବନ୍ଧୁଖି
ଅସମୟେ ହା ହା ଅଧୟେ ଆଗୁରେ
ସହାୟ ବିନା ପ୍ରସବ ।
ଧାବତ ହସ୍ତିର ସ୍ଥୂଳ ପଦଭରେ
ଦଳି ହେବାରୁ ବିଷମ
ମାତା ମାଂସସହ ଶିଶୁ ଶିର ହେଲା
ବାଟିଲା କେସରସମ ।
ଭୀଷଣ ବିପଦ— ଭୟେ ଆମ୍ଭେମାନେ
ଥିଲୁଁ ସର୍ବେ ଏକ ଘରେ,
ଦଳେ ସୈନ୍ୟ ଆସି ବଳେ ଘେନଗଲେ
ଧରି ଜନକ କେଶରେ ।
ହାହାକାର କରି ତଳେ ମୁଣ୍ଡ କୋଡ
ହୃଦୟରେ କର ମାରି
ବିଳାପ କଲେ ସେ ବିକଳେ ବିଷାଦେ
ସେତେ ଅନ୍ତଃପୁର-ନାରୀ ।

ଯେତେ ମୁଁ କରିଲି      କାକୁତି ମିନତି
କରି ପାଦ ଧରି ମାତ !
ବୃଥା ହେଲା ସବୁ,      ମୋ କଥାରେ କେହୁ
କଲେ ନାହିଁ କର୍ଣ୍ଣପାତ ।
ଘୋର ପ୍ରଭଞ୍ଜନେ      ତରୁ ଲତା ସବୁ
କମ୍ପଇ ଯେବେ ଅବନୀ,
କେ ଶୁଣେ ସେ କାଳେ      ବନସ୍ପତି ଡାକେ
କରୁଣ କୁରରୀ ଧ୍ୱନି ?
ଅସମ୍ଭାଳ ହୋଇ      ତାଙ୍କ ସବୁ ଶେଷେ
ମୁକୁଳିତ କେଶପାଶେ
କାନ୍ଦି କାନ୍ଦି ହୋଇ,      ଗମିଲି ଦଉଡ଼ି
ପିତାଙ୍କ ମୁକୁଟ ଆଣେ ।
ଗଙ୍ଗେଶ୍ୱରଙ୍କର      ସନ୍ନିକଟେ ଯାଏ
ସବଳେ ନେଇ ଘୋଷାଡ଼ି
ପଦ ତଳେ ତାଙ୍କ      ମୋ ବୃଦ୍ଧ ପିତାଙ୍କୁ
ଦେଲେ ସେ ଦୁଷ୍ଟେ କଚାଡ଼ି ।
ପିତାଙ୍କ ସ୍ଥବିର      ଅବସ୍ଥା ଦେହର
କଙ୍କାଳ ମାତ୍ର ଥିଲେକ
ରାଜପାର୍ଶ୍ୱଚରେ      ନୀରବେ ଦୁଃଖରେ
ମୂର୍ଚ୍ଛା ହେଲେ ଅତି ଶୋକେ ।
ଦୁଃଖୀ-ଦୁଃଖେ ଯିନା      ଦୁଃଖୀର ହୃଦୟ
ସଂସାରେ ହୁଏ ଅସ୍ଥିର,
ସନ୍ତ୍ରାସେ ଦେଖି      ବଧୂଙ୍କୁ ହୃଦୟୁଁ
ଫାଟଇ କୁମୁଦନୀର ।
ରକ୍ତାକ୍ତ ନୟନରେ      ଗଙ୍ଗେଶ୍ୱର ଦେବ
ପ୍ରବଳ କ୍ରୋଧେ ଅନାଇ
ଆଜ୍ଞା ଦେଲେ ସର୍ବ—      ସମକ୍ଷେ ପିତାଙ୍କ
ଶିରଚ୍ଛେଦ ହେବା ପାଇଁ ।
ପିତାଙ୍କ ପରାଣ      ଲାଗି ଯୁବରାଜ
ପ୍ରାର୍ଥନା କଲେ ବହୁତ,

କଛ ହେଲ ନାହିଁ ଗଙ୍ଗେଶ୍ବର ପାଖେ,
ତୃଷ୍ଣା ହେଲେ ଉରସ୍ଥିତ ।
ଯେନ୍ତୁକୁ ଯାଚିଲେ ପିନା ମହାଦେବ,
ଦୁଗ୍ଧ ଧାର କରେ ଜାତ,
ସେ ଦୁଗ୍ଧର ପାଇଁ ଘୋଡ଼ା ପାଶେ ଗଲେ
ବାଜଇ କେବଳ ଲତ ।
ପିତାଙ୍କର ପ୍ରାଣ— ଭିକ୍ଷା ମୁଁ ମାଗିଲି
ପଡ଼ି ଗଙ୍ଗେଶ୍ବର ପଦେ,
କଲେ ଶୂନ୍ୟ ଦେବ ଦୟା ହେଲ ନାହିଁ
ତାହାଙ୍କ କଠୋର ହୃଦେ ।
ଜୀବ ମାର ମାର ଅତ୍ୟନ୍ତ ନିଷ୍ଠୁର
ବଜ୍ରଠାରୁ ସୁକଠିନ
ହାୟୁରେ କର୍କଶ ସୈନିକ ହୃଦୟ
ନାହିଁ ତହିଁ ଦୟା ଚିହ୍ନ ।
ଅଚେତନ ହୋଇ ଦେବ ଗୋ. ଅସହ୍ୟ
ପିତାଙ୍କ ପ୍ରାଣଦଣ୍ଡରେ
କେତେକ୍ଷଣ ମୁହିଁ ମୂର୍ଚ୍ଛା ଅବସ୍ଥାରେ
ରହିଥିଲି ନିଦ୍ରିତରେ ।
ଚେତନା ହେବାରୁ ଦେଖି ଶୁଣି କମେ
ବୁଝିଲି ମୁଁ ଅନାଥିନୀ,
ଅବରୋଧ ସେନା— ବାସେ ନୃପଙ୍କର
ରହିଛ ହୋଇ ବନ୍ଦିନୀ ।
ସ୍ଥାବାର ସହ ପର ଧନ ଲୁଟ
ଉପେକ୍ଷିଲେ ହେମପୁର
ରାଜ ବଳେ ଲଗି ବାଇବା ସଘନେ
ଅଗେ ଅଗେ ବୀରଭୂର ।
ଛେଦ ବୃକ୍ଷରାଜି ଉଚ୍ଚ ନୀଚ ଭୂମି-
ଖଣ୍ଡ କର ସମତଳ
ଗ୍ଭଲିଲେ ବବଧ ଲୌହ ଅସ୍ତ୍ର ଧର
ସର୍ବାଗ୍ରେ ଖନକଦଳ ।

ସୁବାସିତ ନାନା— ଋଧ ଧୂପ-ଧୂମ
    କରବର-ସ୍ତମ୍ଭେ ଲଘ
ବାହାରଲେ ତନ୍ତୁଁ ସେବକେ କାନନ
    ତଟିନୀ ଗ୍ରାମ ଅମୋଦ ।
ଭୁଜଙ୍ଗ ପରାଏ ଶ୍ରେଣୀବଦ୍ଧ ହୋଇ
    ଗମିଲେ ସୈନିକଗଣ
ଶୁଭିଲ ସାପୁଅ— ମନ୍ଥପର ସେନା—
    ପଣ୍ଡଙ୍କ ସଙ୍କେତ ସ୍ୱନ ।
ତା ପରେ ଯାବନ୍ତ ବଙ୍ଗତ ସାମନ୍ତ
    ଭୂପେ ଭୂଷଣେ ସ୍ୱସ୍ୱର
ଯେ ଯାହା ଯାନରେ ସମ୍ରାଟଙ୍କ ପଛେ
    ପଛେ ହେଲେ ଅଗ୍ରସର
ପ୍ରହସ୍ତି ବେଷ୍ଟିତ ହୋଇ ସବା ପଛେ
    ବସି ହେମ ତାମଯାନେ
ଯାଉଥିଲେ ଜର ଆସ୍ତରଣ ତଳେ
    ଅନ୍ତଃପୁର ନାରୀମାନେ ।
ଜୀବନ୍ମୁକ୍ତ ହୋଇ ଏସ୍ୱବେ ସେବନ୍ତୁ
    ସଙ୍ଗତରେ ଶିଖରର
ରହୁଛି ଦେବ ଗୋ, ଧିକ ଶତ ଧିକ
    ନ ଯାଏ ଯା ପ୍ରାଣ ମୋର !
ଘୋର ନଦାରୁଣ ଦୁଃଖ—ବଣିଷରେ
    ଦହୁଛି ହୃଦୟସ୍ଥଳ,
ଶ୍ମଶାନର ଚତା ପର ଜଳୁଅଛି
    ସଦା ସେ ଖ୍ରମ ଅନଳ ।
ଅସହ୍ୟ ସେ ତୀବ୍ର ଯାତନାର ବେଗ
    ବଜ୍ରଜ୍ୱାଳାଠାରୁ ବଳ,
ଦିବସ ରଜନୀ ସଦା ମୋର ମନ—
    ବନ ଯାଉଅଛି ଜଳ ।
ଦରିଦ୍ର-କୁଟୀରେ ଜନ୍ମ ହେଉ ପଛେ
    ନ ମିଳୁ ଅନ୍ନ ବସନ,

ବନବାସ ହେଉ ପଛେ ନରସ୍ୱର୍ଗେ
ନ ପଡୁ ଏତେ କଷଣ !
ଦୟାମୟି, ଏବେ ଶରଣ ପଶିଲି
ଚରଣେ ଆଶ୍ରୟ ଦିଅ,
ଘୋର ଦୁଃଖେ ମା ଗୋ, ଭାସୁଛି ଅଥୟେ
ତୁମ୍ଭ ଅନାଥିନୀ ଝିଅ !
ଆଜଠାରୁ ମୁହିଁ ଶୁଣିଲି ନୃପଙ୍କ
ଭୋଗିନୀ ହୋଇବ ଯାଇ,
ତାହାଠାରୁ ସିନା ଶତଗୁଣେ ଶ୍ରେୟ
ମରିବାର ବିଷଖାଇ ।
ହେ କରୁଣାମୟି, ଏ ଅଭାଗିନୀର
ସହାୟ ତୁମ୍ଭେ କେବଳ,
ରକ୍ଷାକର ତାର ପ୍ରାଣ ପ୍ରିୟତର
ଧର୍ମ ଦେଇ ନବ ବଳ ।
ରଖ ଶ୍ରୀ ଚରଣ ତଳେ ଅଭାଗୀର
କେହି ନାହିଁ ତୁମ୍ଭ ବିନା,
ତୁମ୍ଭରି ଆଶାରେ ଏତେବେଳ ଯାଏ
ପରାଣ ରଖିଛି ସିନା ।
ତୁମ୍ଭେ ଅଟ ଦେବ, ଭବେ ଭାଗ୍ୟବତୀ
ଦୁଃଖୀର ଆଶ୍ରୟସ୍ଥଳ,
ବିଧାତା ମୋ ଭଲ ଅଭାଗିନୀ ପାଇଁ
ସୃଜିଛନ୍ତି ଅଶ୍ରୁଜଳ ।
ଆଶୈଶବ ଦେବ, କେବେହେଁ କାହାର
ପାଞ୍ଚିନାହିଁ ମନେ ମନ୍ଦ,
କି ଦୋଷେ ବିଧାତା ଅଭାଗିନୀ ପ୍ରତି
ଆଚରିଲେ ଏତେ ଛନ୍ଦ !
ଦୁଃଖୀ ଦରିଦ୍ରଙ୍କ ସେବାରେ ସର୍ବଦା
ରତ ଥିଲା ଏହି ପ୍ରାଣ,
କହ କହ ବିଧି କିପାଇଁ ତୁ ଆଜ
କଲୁ ଏତେ ଅପମାନ ।"

ଏହା କହି ବାଳା          ଭୂତଳେ ପଡ଼ିଲ
ଦେବୀଙ୍କ ପାଦରେ ଲୋଟି,
ସୁକଣ୍ଠୀର କଣ୍ଠୁ          ଛିଡ଼ି କଣ୍ଠି ମାଳ
ପଡ଼ି, ହେଲା ଗୋଟି ଗୋଟି ।
ସସ୍ନେହେ ମହେଷୀ          ତୋଳି ରୂପସୀକି
ନିଜ ପଣେନ୍ଦ୍ରାନରେ
ଧୂଳି ଝାଡ଼ି ଦେଇ          ପୋଛି ଦେଇ ଲୁହ
ବୋଧିଲେ ମଧୁର ଗିରେ ।
ପ୍ରିୟ ତନୟାର          ବୃତ୍ତାନ୍ତ ଆବର୍ଣ୍ଣି
ଘାଣ୍ଟି ହେଉଥିଲା ମନ,
ଜଳି ଉଠୁଥିଲା          ସର୍ବାଙ୍ଗ ତାହାଙ୍କ
ଲବଣ ଷଟେ ଯେସନ ।
ଶୁଶ୍ରୂଷା ପାଇଁ କି          ସେବାକାରୀ ଖଞ୍ଜି
ବାଳାକୁ ପ୍ରବୋଧ ଦେଇ
ନିଭୃତ କକ୍ଷରେ          ଏକାକିନୀ ଶୋଇ
ଭାଳିଲେ ସେ ମହାଦେଈ ।
ଏହାଙ୍କୁ ଦେଖିଲି          ବେଳୁ କାହିଁ ପାଇଁ
ନ ଜାଣଇ ଅନୁକ୍ଷଣେ
ଆହା ମୋ ଦୁଃଖିନୀ          କୌଶଲ୍ୟାର ଚନ୍ଦ୍ର-
ମୁଖ ପଡ଼ୁଅଛି ମନେ ।
ସ୍ୱପ୍ନେ ଆସି ଧନ          କହୁଛି ଯେମନ୍ତ
ଅକଥ୍ୟ ତାର କାହାଣୀ,
ଥର ଥର ନେତ୍ରେ          ଦଶୁଛି ସେ ମୂର୍ତ୍ତି
ଶୁଭୁଅଛି ସେହି ବାଣୀ ।
ସମର୍ପି ଆଦରେ          ସ୍ନେହମୟ ମୋର
ପୁତ୍ରକୁ ହୃଦୟ ମନ,
ହୋଇଛନ୍ତି ବଧୂ          ପୁଣି କନ୍ୟା ଏହି
ଧନ୍ୟା ରମଣୀରତନ ।
କି ବୟସରେ ବଧୂ,          ସୁକୁମାରୀ ଏହି
ବାଳାକୁ ଦେଉ କଷଣ,

ଘୋରେ ଦାବାନଳେ , ଦହୁଛୁ କପାଳେ
ସୁରମ୍ୟ ପୁଷ୍ପିତ ବନ
ପୂର୍ବଜନ୍ମକୃତ କି ଦାରୁଣ ଦୋଷେ
କହ କହ ଧାତା ଥରେ,
ଏଡ଼େ ନରାଧମ ପାପୀକୁ ପୋଷିଲୁ
ଆଣି ମୋ ସ୍ୱାମୀରୂପରେ ।
ଏମନ୍ତ ଦୁର୍ଦ୍ଦାନ୍ତ ନରରାକ୍ଷସକୁ
ପୃଥ୍ୱୀଦେବୀ ପଷ୍ଠ ସ୍ଥଳ
ସମ୍ଭାଳି ପାରନ୍ତି, ମାତ୍ର ମୁଁ କଦାପି
ପାରିବି ନାହିଁ ସମ୍ଭାଳି ।
ଏହା କହୁଁ କହୁଁ ଦେବୀଙ୍କ ନାସାରୁ
ବହିଲା ଖର ପବନ,
ବହ୍ନି-ଉତ୍ତାପିତ କମାର ଭସ୍ତ୍ରରୁ
ଉତ୍ତପ୍ତ ବାତ ଯେସନ ।
କ୍ରୋଧେ ନେତ୍ର ଅଗ୍ନି— କଣା ବାହାରିଲା
ବଦନ ହୋଇଲା ଆରକ୍ତ,
ନବୋଦିତ ରବି ପ୍ରାଏ ପଦ୍ମମୁଖୀ=
ମୁଖଛବି ହୋଇଲା ବ୍ୟକ୍ତ ।
ସ୍ଫୁରିଲା ଅଧର କାଳ ଚନ୍ଦ୍ରପରି
ଘୂରିଲା ଡୋଳା ପ୍ରଖର,
ଶିଶୁହରା ବ୍ୟାଘ୍ରୀ ପରାଏ ଦିଶିଲା
ମୂର୍ତ୍ତିମନ୍ତ ଭୟଙ୍କର ।
କାନ୍ତେ ଝୁଲୁଥିବା ସୁତୀକ୍ଷ୍ଣ କଠାର
ସତ୍ୱର ସହସା ଟାଣି
ନିଷ୍କୋଷେ ସବଳେ କ୍ରୋଧେ ମର୍ମସ୍ପର୍ଶୀ
କହିଲେ ଏମନ୍ତ ବାଣୀ—
'ଆଜ କେଉଁ କାର୍ଯ୍ୟ ନ କରନ୍ତି ଏହି
କଳିଯୁଗେ ଦେବତାଏ,
ନିଜ ଅଭିଳାଷ ଅପର ହସ୍ତରେ
ସମାଧିବା ଦେଖାଯାଏ ।

ଏ ଭବେ ପ୍ରାଣିଏ ପରସ୍ପରେ ଯାହା
କରୁଛନ୍ତି ମାଡ଼ଗୋଳ,
ଦ୍ୱନ୍ଦ୍ୱରୂପେ ଯିନା ଦେବକୋପ ତାଙ୍କୁ
ଦେଉଛି ପାପର ଫଳ ।
ଅଛ ଏ କଠାରେ ମୋର ହସ୍ତେ ଲଘୁ
ହେବ ପୃଥିବୀର ଭର,
ମହାଘୋର ପାପ— ପଙ୍କରୁ ଆଜହେ
ଉଦ୍ଧାର ହେବ ସଂସାର ।
କୌଶଲ୍ୟାର ସଙ୍ଗ— ଯାତନାର ଅନ୍ତ
ମିଳବରେ ପ୍ରତିଶୋଧ
ଧ୍ୱଂସହେବ ଯେତେ ଦୁର୍ବଳ—ଧର୍ଷଣ—
ପାର୍ଥିଙ୍କ ଅଯଥା କ୍ରୋଧ ।
ସତୀର ସତୀତ୍ୱ ରକ୍ଷା ହେବ ଏଥୁ
ସୁତୀକ୍ଷ୍ଣ କଠାରେ ଆଜି,
ଚୂନା ହୋଇଯିବ ଲମ୍ପଟର ଦୁଷ୍ଟ
ଅଦମ୍ୟ ବାସନାରାଜି ।
ପାଷଣ୍ଡମର୍ଦ୍ଦନ ଦେବ ସୁଦର୍ଶନ
ତୁଅ ଏଥି ଆବିର୍ଭୂତ,
ଅସାଧ୍ୟ ସାଧନ ସାଧିବା ପାର୍ଥିଙ୍କ
ଅବଳା ତୁଏ ପ୍ରସ୍ତୁତ ।”
ଏହା କହିଁ କହିଁ ଅନ୍ତରୀକ୍ଷ ଦେଶେ
ଦେଖିଲେ ରାଣୀ ଚକିତେ,
ଘୂର୍ ଘୂର୍ ମହା— ତ୍ରିଶୂଳର ଜ୍ୟୋତି
ଦ୍ରୁତ ବେଗେ ଆଚମ୍ବିତେ ।
ଦେଉଳ ଦେହାରୁ ବାହାରି ପଲକେ
ମିଶିଗଲା କଠାରରେ,
ସାଷ୍ଟାଙ୍ଗେ ନମିଲେ ପାଟମହାଦେବୀ
ସେ ଜ୍ୟୋତିକୁ ଭକ୍ତିଭରେ ।
ଦଗ୍‌ବଳସ୍ତ ପାରେ ଉଚ୍ଛୁଳିତ ଜଳ
ରବରଷ ସ୍ପର୍ଶି ସୂତ,

ସିନ୍ଧୁ ତରଙ୍ଗରେ        ରକ୍ତ ରବି ବିମ୍ବ
    ସଧୀରେ ହେଲା ଧଉତ ।
ଅଭିନବ ବେଶେ        ବିମଣ୍ଡିତ ହୋଇ
    ସଗର୍ବେ ସନ୍ଧ୍ୟା ତରୁଣୀ,
ପଶ୍ଚିମ ଗଗନେ        ଦେଖା କରେ ଗୁଞ୍ଜା —
    ଫଳର ରକ୍ତିମା ଚୁଣି ।
ପୁଷ୍ପିତ ରଙ୍ଗଣୀ—        କାନନ ପର୍ବଏ
    ଦର୍ଶିଲା ସାନ୍ଧ୍ୟ ଆଲୋକ,
ସେ ଆଲୋକ ବୋଲା        ହୋଇ ବେନତଟେ
    ଗମିଲେ ବଣାଦେ ଲୋକ ।
ପଶ୍ଚିମ ଗଗନୁ        ଶ୍ୱେତ ଯବନିକା
    ଠେକି ପ୍ରଦୋଷ ବହ୍ନନ,
ଉଜ୍ଜ୍ୱଳ ପାଟଳ        ମହନୀୟ ପଟ
    କରିଲା ପରିବର୍ତ୍ତନ ।
ଦୂରେ ଦିଗ୍‌ବଳୟେ        ଉଡ଼ିଲା ସହସା
    କି ଅବା ଗୈରିକ ଧୂଳି,
ଅଭ୍ର ଗଜାନନ        ପିଣ୍ଡ ଉଗ୍ର ହେଲେ
    କିବା ଦିଗମ୍ବର ଶୂଳୀ !
ଅରୁଣ-ସାରଥି        ଏକଚକ ରଥେ
    ସାଗରେ ଡୁବିଲେ ହରି,
ପ୍ରବାଳ-ପାହାଡ଼—        ଶୃଙ୍ଗ ଉଠିଲା କି
    ଉଦାର ସିନ୍ଧୁ ଲହରୀ !
ନାଚିଲେ ସଧୀରେ        ରକ୍ତ ସନ୍ଧ୍ୟାତପେ
    ବୋଲା ହୋଇ ବୀଚିମାଳ,
ସେ ବୀଚି ଉପରେ        ରକ୍ତ ବର୍ଣ୍ଣ ଧରି
    ଭାସିଲେ ଶଫରୀମାଳ ।
ବହୁଲ ମଧ୍ୟରେ        ଲୁଣା ଜଳସିକ୍ତ
    ସୁଖସେବ୍ୟ ସିନ୍ଧୁ-ବାତ,
ଜଳଧି ଜୀବନ        ସ୍ୱର୍ଣ୍ଣ ଅସ୍ତରଣ—
    ସମ ହେଲା ପ୍ରଶସ୍ତ ।

ଲଗାଲଗି ହୋଇ ଇନ୍ଦ୍ରଦ୍ୟୁମ୍ନ ଜଳେ
ଅସଂଖ୍ୟ କୂର୍ମ ଭାସିଲେ,
ଲଂଘି ଖାଇବାକୁ ତେଣୁଁ ତହିଁ ପରେ
ବାନରଦଳ ବସିଲେ ।
ଅସିତ ଉପଳ ସମ କୂର୍ମପୃଷ୍ଠେ
ବସି ବୃଦ୍ଧ କପିରାଜ,
ନଳେ * ଭାସମାନ ଶିଳେ ଆରୋହଣ—
ସୁଖକୁ ସ୍ମରିଲେ ଆଜ ।
ସମଗର ଦହେ କମଳ-ଗରଭେ
ପଶିଲେ ଅଳିମଣ୍ଡଳ,
ପଶ୍ଚିମାଶା କୋଳେ ପ୍ରିୟକୁ ବଳେଇ
ମୁଦ ହେଲେ ଶତଦଳ ।
ପଦ୍ମନାଡ଼ ଧରି ପହଁରି ପହଁରି
ରାଜହଂସ ସଲିଳରେ,
ଖଣ୍ଡେ ଖାଇ ଖଣ୍ଡେ ଅନୁରାଗ ଭରେ
ଦେଇ ପ୍ରିୟା ବଦନରେ ।
କୀଡ଼ୁଥିଲ ଯାହା, ଏବେ ମିହିରଙ୍କୁ
ପଶ୍ଚିମ ଶିଖରେ ହେରି
ବିଶ୍ରାମ ପାଇଁକି ବଧୂ ସଙ୍ଗ ତାର
ତଟେ ଆସିଲାଣି ଫେରି ।
କାନନ କେଦାରୁ ଖରମାନଙ୍କରୁ
ଉଡ଼ି ବିହଙ୍ଗମ ପନ୍ତି
ସେ ଯାହାର ନୀଡ଼— ପାଦପମାନଙ୍କୁ
ଖରେ ବାହୁଡ଼ୁଅଛନ୍ତି ।
ପୁଣ୍ଡରୀକ ମାଳା ସମ କେହୁ କେବା
ରକ୍ତ କୋକନଦ ପରି,
ନୀଳୋତ୍ପଳନିଭ କେବା ସବେଁ ନଭ
ଜଳରେ ଯାନ୍ତି ସନ୍ତରି ।

* ରାମାୟଣବର୍ଣ୍ଣିତ ସେତୁବନ୍ଧ ନିର୍ମାଣ ବିଷୟ ଦ୍ରଷ୍ଟବ୍ୟ ।

ଦେଖୁ ଦେଖୁଁ ସିନ୍ଧୁ—　　　　ଅନନ୍ତ ଜଳରେ
ମିଶିଗଲେ ଛାୟାବର,
ଦଶିଲ ବ୍ରହ୍ମାଣ୍ଡ　　　　କ୍ଷଣକେ ଗର୍ଦ୍ଦଭ—
ରୋମ ସମ ଏ ଧୂସର ।
ଭଟିଏ ବାହାଳ　　　　ପତ୍ର ପରିପୂର୍ଣ୍ଣ
ବୃକ୍ଷେ ହୋଇ ଏକତ୍ରିତ
ଅବ୍ୟକ୍ତ କରୁଣ　　　　ସ୍ୱରେ କରିଲେଣି
ସେ ତରୁକୁ ମୁଖରିତ ।
ତେଜି ବସିବାରୁ　　　　ସ୍ୱଚ୍ଛବେ ଦୋହଲ
ଯାଉଥିଲା ବୃକ୍ଷଡାଳ,
ତଥାପି ଏକତ୍ରେ　　　　ଶୋଇବାକୁ ତହିଁ
ଉଠୁଥିଲେ କପିମାଳ ।
ପ୍ରାଚୀନ ଦେଉଳ—　　　　ସନ୍ଧମାନଙ୍କରୁ
ବାହାର ବଦ୍ଧ ବାଦୁଡ଼ି
ଚଞ୍ଚଳ ଗତିରେ　　　　ରଜନୀର ଧ୍ୱଜ
ସମାନ ବୁଲିଲେ ଉଡ଼ି ।
ସାଗର ଗର୍ଜ୍ଜନ—　　　　ନାଦକୁ ସଘନେ
କରଣ ଅନୁକରଣ
ରାଜ ପ୍ରାସାଦରୁ　　　　ଶୁଭିଲା ଅକାଳେ
ପ୍ରଦୋଷ ଦାମାମା ସ୍ୱନ ।
ଘଣ୍ଟାନାଦ ସହ　　　　ମନ୍ଦିରମାନଙ୍କେ
ଉଠିଲା ସନ୍ଧ୍ୟା ଆଳତି,
ଅସ୍ତ୍ରଧନା ଲଗି　　　　ଏକତ୍ରିତ ହେଲେ
ପଣ୍ଡା ପଡ଼ିଆରି ପନ୍ତି ।
ପରିଷ୍କୃତ ହେଲା　　　　ସୁବିସ୍ତୃତ ମାର୍ଗ
ରାଜପଥମାନ ଖରେ,
ନଗରରକ୍ଷକେ　　　　ଧୂଳିନାଶ ପାଇଁ
ସିଞ୍ଚିଲେ ସଲିଳରେ
ମନେ ହେଲା ଦେଖି　　　　ସେ ମାର୍ଗ ପାର୍ଶ୍ୱରେ
ଗୃହମାଳ ଧାଡ଼ ଧାଡ଼ ।

ଓଡ଼ଅଛ କବା ଶ୍ୱରୁ ତାରାପଥ
ସ୍ୱର୍ଗରୁ ଭୂମିରେ ମାଡ଼ ।
ଅଥବା ପର୍ବତେ ଦାବାନଳ ପରି
ଯାଉଥିଲା ତାହା ଜଣା,
ସାନ୍ଧ୍ୟ ମେଘରନ୍ଧ୍ରେ ଅଥବା ରବିଙ୍କର
କର ହୋଇଥିଲା ଠଣା ।
ଜବା ଅନୁସରି- ଥିଲା ହଳ ହଳ
ବାଟେ ସେ ପ୍ରଦୀପଘଟା
ଚଳନ୍ତା-ତରଙ୍ଗେ ଧୀବରମାନଙ୍କ
ଅସଂଖ୍ୟ ମଶାଲ ଛଟା ।
ନାନା ବର୍ଣ୍ଣେ ଚନ୍ଦ- ଛଟନ୍ତ ବଳରେ
ଧବଳ ତୋରଣାବଳୀ
ପ୍ରତି ଶୃଙ୍ଗାଟକେ ଶତ ଶରାସନ
ସୁଷମାକୁ ଦେଉଥିଲା ।
ମୃଦୁଳ ପବନେ ନୀଳ ଜଳଧିରେ
ଫେନଳେ ଲହରୀ ପରି
ଦୋହଲୁଥିଲେ ଧ୍ୱଜେ ଗୁନ୍ଥା ହୋଇଥିବା
ସୁଦୃଢ଼ ସୂତ୍ରକୁ ଧରି ।
ପ୍ରତି ଦେଉଳର ସୋପାନେ ଶୋଭିଲା
ଆଲୋକର ଦୀପମାଳା,
ଅର୍ଚ୍ଚନା କଳସେ ସ୍ୱର୍ଣ୍ଣ ଚମ୍ପାକଢ଼ି
ଦେଇ ଦେଇ ସନ୍ଧ୍ୟାବାଳା !
ଶୁଭିଲା ଦୂରରୁ ରାଜ ତୋରଣର
ସୁଗମ୍ଭୀର ବାଦ୍ୟନାଦ,
ଦୁର୍ଗର ପାଚେରି ପ୍ରତିଧ୍ୱନି ଛଳେ
କରୁଥିଲା ତାର ବାଦ ।
ସାନ୍ଦ୍ର କୋଳାହଳେ ଭରିଗଲା ପୁର
ବହୁତ ଲୋକ ତୁଣ୍ଡରେ,
ପଥ ଘାଟ ଘର ପରିପୂର୍ଣ୍ଣ ହେଲା
ଅସଂଖ୍ୟ ନରମୁଣ୍ଡରେ ।

ଚଞ୍ଚଳେ ନାଗ୍ୟଏ          ଉଠିଲେ ନୂପୁର
ନାଦେ ଜମାଇ ସୋପାନ,
ପ୍ରାସାଦ ଉପରେ          ତିଳ ଗୁଞ୍ଜିବାକୁ
ନ ରହିଲା ଆଉ ସ୍ଥାନ
ଗଜଦନ୍ତ-ଶୁଭ୍ର          ଗବାକ୍ଷେ ବଦନ—
ଶଶୀ ନବେଶି ସୁନ୍ଦରୀ
ଦେଉଥିଲେ ଆହା          ବିଦ୍ୟୁଦ୍‌ବିଲସିତ
ଚନ୍ଦ୍ରବିମ୍ବ ତୁଚ୍ଛ କରି ।
ଠିଆ ହୋଇ ବୃଦ୍ଧ          କଞ୍ଚୁକି ସହିତ
ମହିଷୀ ଉଚ୍ଚ ପ୍ରାସାଦେ
ବାତାୟନ ପାଖେଁ          ଦେଖୁଥିଲେ ପୁର-
ସୁଷମା ମହାବିଷାଦେ ।
ଧୂଳିରାଶି ଭେଦ          ଯେତେଦୂର ଦୃଷ୍ଟି
ଯାଉଥିଲା ତାହାଙ୍କର
ପତାକା ପ୍ରଦୀପ          ନରମୁଣ୍ଡ ହିଁଏ
କେବଳ ଦୃଷ୍ଟି ଗୋଚର ।
ବୀରମାନଙ୍କର          ମହୋତ୍ଫୁଲ୍ଲାମୟ
ସୁବର୍ଣ୍ଣ ବର୍ମ ଚାଲରେ
ଚନ୍ଦ୍ର ତାରଯୁକ୍ତ          ଚଳ ବ୍ୟୋମସମ
ବହ୍ମାଣ୍ଡ ମନ ହରେ ।
ଆଜି ଗଜେଶ୍ୱର          ଦିଗ୍‌ବିଜୟୀ ଆଜି
ଚକ୍ରବର୍ତ୍ତୀ ଉତ୍କଳର,
ଚଉଦଗେ ପ୍ରକ୍ଷ          ଉଡୁଛି ତାହାଙ୍କ
କାଳାନଳ ପ୍ରତାପର ।
ସ୍ୱୋପାର୍ଜିତ ମହା-          ମହିମା ଯଶରେ
ଦେଶ ଯାଉଅଛି ପୂରି ।
ବିଖ୍ୟାତ ବିଜୟୀ          ଉତ୍କଳ ସମ୍ରାଟ
ବୋଲି ପଡ଼ିଅଛି ହୁରି ।
କିଏ ଅଛି ଆଉ          ତାହାଙ୍କ ସମାନ
ଭାଗ୍ୟବାନ ସଂସାରରେ,

ଯେବା ଏତେ ଯଶ ଲଭଇ ଜଗତେ
ଜନ୍ମ ଲଭି ରାଜଘରେ ।
ଅକ୍ଷୟ ବିଭବ ଦେଖି ଧନପତି
ନିଶ୍ଚୟ କରିବ ହିଂସା,
ଦୁର୍ଲଭ ବୀରତ୍ୱେ କେଉଁ କ୍ଷିତୀଶ୍ୱର
ମନେ ନୋହିବ ଜିଗୀଷା ।
ଉଚ୍ଚ ପ୍ରାସାଦର ଗବାକ୍ଷୁ ଅଙ୍ଗୁଳି
ଦେଖାଇ ବୃଦ୍ଧ କଞ୍ଚୁକି
ପଛର ସାମନ୍ତ ନୃପଙ୍କୁ ଚହାଇ
ଦେଉଛି ରାଜରାଣୀଙ୍କି—
"ଦେବ, ଯେ ସୁବର୍ଣ୍ଣ ଝୁଲେ ବିମଣ୍ଡିତ
ରଦନ ଶୁଣ୍ଡ ହାତୀରେ
ଅଶ୍ୱବୃନ୍ଦ ଆଗେ ଆଗେ ହେମକୁମ୍ଭେ
ମନୋହର ଅମାରୀରେ,
ଧାର୍ମିକ ବତ୍ସଳ— ରାଜ ସେ ଅଟନ୍ତି
ଦେବ ଦ୍ୱିଜେ ସମାଦର,
ମହାନଦୀ ତୀର ବାଉଁଶ ଗଡ଼ରେ
ବିରାଜେ ତାଙ୍କ ନଗର ।
ପ୍ରାବୃଟେ ସେ ନଦୀ ଜଳ ଦୃଢ଼େ ବାନ୍ଧି
ନତାନତ ଶୈଳାମାଳେ
ଘୋର ଘନଘୋଷେ ସପ୍ତକୋଶୀ ଗର୍ଭେ
ଗର୍ଜେ ମହା ଅସମ୍ଭାଳେ ।
ସେ ଜଳ ସଘର ଭୀଷଣ ନିସ୍ୱନେ
ଏହାଙ୍କ ପୁର ମୁଖର,
ଗମ୍ଭୀର ଓଁକାର ଧ୍ୱନି ପ୍ରାୟେ ଦୂରୁ
ଶୁଭୁଥାଇ ନିରନ୍ତର ।
ମହାରଣ୍ୟମୟ ଦୁର୍ଗମ ବିଷମ
ଗିରିମାନଙ୍କ ଉପରେ
ଖାଟିକା ନର୍ବାହୁ ଭରନ୍ତି ବରଗା (୧)
ଯୋଡ଼ ଯେ ତାର ରୂପରେ ।

୧—ଜାଣ୍ଟ ରୂପ

ଏକମ୍ରନାଧାଶ୍ରୀ      କନ୍ଧ ସୈନ୍ୟଗଣ
    କଙ୍କଣ୍ଡକା ଯୁକ୍ତ ଗଣ୍ଡ,
ନାକେ ସିନ୍ଦୂରର      କଲ୍, ପୃଷ୍ଠଦେଶ
    ତୂଣୀରେ ପାଉଛି ଶୋଭା ।
ବାଦ୍ୟ ତାଳେ ତାଳେ      ବାମହସ୍ତେ ଧନୁ,
    ଟାଙ୍ଗିଆ ଦକ୍ଷିଣ ହସ୍ତେ
ଅସ୍ଫାଳି ସଦମ୍ଭେ      ଦେଖ ମହାଦେବ !
    ଆସନ୍ତି ରଙ୍ଗେ କେମନ୍ତେ ?
ସୁକାନ୍ତ ସୂତାର      ଗମ୍ଭୀର କନ୍ଦର—
    ମଧ୍ୟବର୍ତ୍ତୀ ଭୂଖଣ୍ଡରେ
ବାସ କରନ୍ତି ଯେ      ବନ୍ୟ କନ୍ଧଯୂଥ—
    ସେବନ୍ତି ଗିରିଦୁର୍ଗରେ ।
ସୁଖ ଯାତ୍ରାକାଳେ      ଯାହାର ପଛରେ
    ଅଶ୍ୱାରୋହୀ ସୈନ୍ୟଗଣ
ଘୋଡ଼ାଇ ଦଅନ୍ତି      ଶିକ୍ଷିତ ତୁରଙ୍ଗ
    ଖୁର-ଧୂଳିରେ ଗଗନ ।
ସୁନ୍ଦର ଅଙ୍ଗଣ      ଘୋଡ଼ା ପାଇଁ ଯାଙ୍କ
    ନଗର ପ୍ରସିଦ୍ଧ ଅଣ୍ଡ,
ବହୁଇ ଲିଙ୍ଗସ (୧)      ରାଜ୍ୟ ଯା ଭୂଟରେ
    ଭରଟ ମନ୍ତୁର ଗଣ୍ଡ ।
ବୋଦନାଥ ପାଖେ      ସେହୁ ଅନୁଗୋଳ
    ନୃପ ଏ ଧୀର ମୂରତି,
ଚୌଦଗେ ଉଡ଼ୁଛି      ଏହାଙ୍କ ବିମଳ
    ଶୁଭ୍ର ଯଶ-ବୈଜୟନ୍ତୀ ।
ସଙ୍ଗଦା ମଧୁର—      ନାଦ୍ୱା ରୁରୁ ଚନ୍ଦ—
    ବାକଳା ବ୍ରାହ୍ମଣୀ ନୀର
ପଦ ଧୋଉଅଛି      କାନନ ବେଷ୍ଟିତ
    ଯାହାଙ୍କ ରାଜଧାନୀର ।

୧—ଅନୁଗୋଳର ଉପନାମ ।

ଦେଖ ଦେବ, ଆଗେ ଶୃଙ୍ଖଳ ପଦାନ୍ତ
ସୈନକେ ବଲମଧାସ୍ତ୍ର,
ଅସନ୍ତ ଯା ସଙ୍ଗେ ନର୍ଭୟ ହୃଦୟେ
ପାଖେ ପାଖେ ବୁଦାମାର୍ ।
ବଜ୍ର ଓର୍ ଯାର ବଜ୍ରକୋଠ ଦୁର୍ଗ
ପ୍ରାଚୀରରେ ମନୋରମ,
ଗଭୀର ଖାଇରେ ବେଷ୍ଟିତ ସର୍ବଦା
ବିପକ୍ଷ ପକ୍ଷେ ଦୁର୍ଗମ ।
ଚୌପାଶେ ବାଉଁଶ— ବନ ଭେଦିବାକୁ
ଶଳକ୍ଷ ନାହିଁ କୁମ୍ଭୀର (୧),
ଯମର କଙ୍କର ପର୍ ଗଣ୍ଡା ଗଣ୍ଡା
ଭ୍ରସନ୍ତ ତହିଁ କୁମ୍ଭୀର ।
(୨) ମଣିଶିଳା ଶଯ୍ୟା— ବାନ୍ଧନା ଯା ସ୍ୱଜେ୍ୟ
ହୋଇଛି ବ୍ରାହ୍ମଣୀ ନଈ,
ହିଙ୍ଗୁଳା ପୀଠରୁ ଅଙ୍ଗାର ବହନ୍ତ
ସିଙ୍ଗଡ଼ା ଯହିଁ ମିଶଇ ।
ସେ ଅଙ୍ଗାର ଜଳେ ମିଶି ଯେ ନିର୍ମଳ
ବ୍ରାହ୍ମୀ ତଟିନୀର ନୀର,
ପ୍ରୟାଗେ ଜାହ୍ନବୀ— ଯମୁନା—ସଙ୍ଗମ
ପରାଏ ଦିଶେ ରୁଚିର ।
ବ୍ୟାଘ୍ର ଝାର ସ୍ୱରୁ ଝର-ଶିର ସ୍ୱଶ୍ୱ
ମୃଗ ମାଂସ ଲୋଭ ଛାଡ଼ି
ଯାହାଙ୍କ ବୈଠକେ ଚନ୍ଦ୍ରାଙ୍ଗ ଶାର୍ଦ୍ଦୂଳେ
ପଡ଼ିଛନ୍ତ ଧାଡ଼ି ଧାଡ଼ି ।
ପ୍ରକଟି ଦଶନ ପାଣ୍ଟି କେହି କେବା
ବେନ ଚକ୍ଷୁକୁ ଘୂଳନ୍ତ,
ଢାଳ ପଥରଠାଇ କେହୁବା ଆଗକୁ
ଡେଇଁଲ୍ଲ ପ୍ରାଏ ଦିଶନ୍ତ ।

୧—ହାଙ୍ଗର । ୨—ବାହୁଅଁ ନାଶରେ ମାଙ୍ଗଲ ପ୍ରସ୍ତର ଦେଶାଧାଏ ।

ସେହି ଏ ଭୂଚର ତାଳଚେରେଶ୍ବର
ସଦା ମୃଗୟା ରସିକ,
ଚଳ ଲକ୍ଷ୍ୟଭେଦେ ନ ହୁଅଇ ଭ୍ରଷ୍ଟ
କେବେ ତାହାଙ୍କ ବିଶିଖ ।
ପିଙ୍ଗଳ ବରଣ ଜ୍ବାଳାମୟୀ ସ୍ପପ୍ତ
ହିଙ୍ଗୁଳାଙ୍କର ଛନ୍ଦରେ,
ଅଙ୍କିତ ପତାକା ଉଡ଼ୁଛି କପଟ
ସମୀରେ ଭୂପଙ୍କ ଶିରେ !
ଯେ ଦେଶର ଗଡ଼ ମାଲ୍ୟଗିରି ପଦେ
ମାଜଡ଼ା ନଦୀ ତଟରେ,
ଜୟ ପାଇଁ ତହିଁ ଯାଇଥିଲୁଁ ଯେବେ
ଅମ୍ଭେମାନେ ସସୈନ୍ୟରେ ।
ଶ୍ରୀଶ୍ବେତ—ନାଥଙ୍କ ବିଜୟ ସେନାଙ୍ଗ
ପ୍ରହାରେ ହୋଇ ଅଥୟ,
ନେଇଥିଲେ ଭୟେ ମେଘାବୃତ ମାଲ୍ୟ-
ଗିରି-ଶିରେ ଯେ ଆଶ୍ରୟ ।
ଗଡ଼ ନିକଟରେ ବହୁ କୋଶ ବ୍ୟାପୀ
ରମ୍ୟ ନାଗେଶ୍ବର ବନ,
ସବୁଗେ ଯାହାର ମଧୁମାସେ ହୁଏ
ନଗର ପୀତବରଣ ।
ଶାଲଦ୍ରୁମ ପୂର୍ଣ୍ଣ ମଗର ମୁହାଣ
ଉଷ୍ଣ ଜଳସ୍ରୋତ ଯହିଁ
ଝର ଝର ହୋଇ ଶ୍ୟାମଳ ପାଦପ
ଲତା ତଳରେ ଝରଇ,
ମୃଗମାଂସ ଲୋଭୀ ହସ୍ତୀପକ-ପ୍ରିୟ
ଜୁଆଙ୍ଗ ବାରେ ବୁଙ୍ଗାର,
ଅସନ୍ତ ଯାହାଙ୍କ ପାଶେ ଥରେ ଥରେ
ଧନୁରେ ଦେଇ ଟଙ୍କାର ।
ଦେଖ ଦେଖ ଏହି ସେହି ଭୁଙ୍ଗତମ
ମାଲ୍ୟଗିରି ଅଧୀଶ୍ବର,

ଗିରିବର ସମ ମହାଗଜେ ବସି
ଦଶନ୍ତି କେଡ଼େ ସୁନ୍ଦର !
ଦୁର ଗଡ଼ଜାତେ ଯିବା ପାଇଁ ଯେଉଁ
ଭୂଖଣ୍ଡ ଦ୍ୱାର ସ୍ୱରୂପ
ଯଜ୍ଞ କରି କରି ରାଜ୍ୟ ସେମାନଙ୍କ
ଭରିଲେ ଅସଂଖ୍ୟ ଯୂପ * ।
ଜଳ ପରିପୂର୍ଣ୍ଣ ଜଟିଆ ଘାଟିରୁ
ବଲଦଆବନ୍ଧ ଯାଏ,
କାନନେ କେଦାରେ ଶୈଳେ ସରେ ସ୍ରୋତେ
ଯେଉଁ ରାଜ୍ୟ ଶୋଭାପାଏ ।
ସୁତୀକ୍ଷ୍ଣ ପରଶୁ— ପାଣି ମହାଦମ୍ଭୀ
ଏହାଙ୍କ ସେନାନୀଗଣ
କୋପନ ସ୍ୱଭାବ ଦ୍ୱନ୍ଦ୍ୱପ୍ରିୟ ସଦା
ଖୋଜି ବୁଲୁଥାନ୍ତି ରଣ ।
କପିଳାସ ଗିରି ନିବାସୀ ଶବର—
ବୀରଙ୍କୁ ଧରି ଗହଣେ
ଢେଙ୍କାନାଳ-ପଥ ଛାଡ଼ ନାହିଁ ଦେବ,
ଆସିବାକୁ ଏ ମିଳନେ ।
ନୀଳ ଚଳଙ୍କାର ତରଙ୍ଗ କାଟଇ
ଅସଂଖ୍ୟ ତରୀ ଯାହାର
ଶୈଳର ଶିଖର— ଉଡ଼େ ଭଗବତୀ
କରନ୍ତି ଯହିଁ ବିହାର ।
କେବେ ଗିରିଦୁର୍ଗେ କେବେ ବା ଚିଲିକା-
ବେଷ୍ଟିତ ଜଳଦୁର୍ଗରେ,
ବିହରନ୍ତି ଯେହ୍ନ ଅସଂଖ୍ୟ ଅଜସ୍ର
ସେନାନୀ ଘେନି ସଙ୍ଗରେ ।
ଯାହାଙ୍କ ଶଂ ନକେ ମଣ୍ଡିଛନ୍ତି ଅଙ୍ଗ
ଚନ୍ଦ ବଚନ କବଚେ,

* ଯଜ୍ଞବେଦ

ଏଣୁପଛି ଷଷ୍ଠ— ଚୂଡ଼ା ଯା ଉନ୍ନତ
ମସ୍ତକେ ତାଣ୍ଡବ ରଚେ ।
ଖାରବୁଦବାସୀ ଏହୁ ମସ୍ତ୍ୟମୟୀ
ସ୍କୁରୁ ଛଲ୍କାର ସାର୍ଦ୍ଧ
ଯୁଝୁଥିଲେ ଶନ୍ ସହ ଦମ୍ଭେ ସୈନ୍ୟ
ନିଜ ବାହୁନୀ ମିଶାଇ ।
ସୁଦର ହେଲେହେଁ କେମନ୍ତ ତେଜସ୍ୱୀ
ଅଶ୍ୱେ ବସିଛନ୍ତି ମାଢ଼ି
ଅର୍ଦ୍ଧଚନ୍ଦ୍ର ପର ଦଶଇ ସୁନ୍ଦର
ଶ୍ରୀମୁଖେ ସୁପକ୍ୱ ଦାଢ଼ି ।
ବ୍ୟାଘ୍ର ଚର୍ମାବୃତ ପଦାଶଏ ବର୍ଚ୍ଛା
ବନ୍ଧୁ ଯାହାଙ୍କର ସଙ୍ଗେ
ଘାଗୁଡ଼ି ମାଳରେ କଟିଦେଶ ମଣ୍ଡି
ଝୁଲନ୍ତି ବଚନ ରଙ୍ଗେ ।
ଚନ୍ଦୋପୂଳା—ଗାର ଗିରି ନିବାସିନୀ
ଚର୍ଚ୍ଚିକା ଦେବୀଙ୍କୁ ତୋଷି
ଅପସ୍ତୁ ବଇବ ଶୋଭୁଛନ୍ତି ଯେହ୍ନେ
ନିର୍ବିବାଦେ ଗୃହେ ବସି ।
ବାଙ୍କୀର ସେ ନବ ନରେଶ ଅସନ୍ତି
ସମ୍ରାଟଙ୍କର ଗହଣେ,
ରଣେ ପିତା ହତ ହେବାରୁ ସେ ଏବେ
ବସିଛନ୍ତି ସିଂହାସନେ ।
ନାଏକ ଅର୍ଚ୍ଚିତା ଦେବୀ ଭଟ୍ଟାରିକା—
ପାଦ ସିନ୍ଦୁରେ ରୁଚିର
ସର୍ବଦା ଆରକ୍ତ ବର୍ଣ୍ଣ ଦଶୁଥାଏ
ଯାହାଙ୍କ ବାରଣ ଶିର ।
ଉତ୍କଳ ବରଣ ତୀନାଶୁଂକେ ଶିରେ
ଉଡ଼େ ଫରଫର ଧ୍ୱଜା
ମହାନଦୀ ଜଳେ ବହାର ଖଳସୀ
ବଡ଼ମ୍ବା ରାଜ୍ୟର ରଜା ।

ବସିଛନ୍ତି ଅଶ୍ୱେ ସ୍ୱର୍ଣ୍ଣ ଅଙ୍ଗତ୍ରେ
ଶରୀର ଶୋଭେ ସୁନ୍ଦର,
ଜୟବାଦ୍ୟ ନାଦେ କି ରଙ୍ଗେ ଉଲ୍ଲାସେ
ନାଚୁଛି ତୁରଙ୍ଗବର ।
ବନାସ୍ତୃକ ଶିର— କନ୍ଦର ପାଷାଣ—
ପ୍ରବଠରୁ ଝର ନୀର
ଶତ ଶତ ତଳେ ସୃଜିଛି ଯହିଁରେ
ପ୍ରପାତ ଅତି ରୁଚିର ।
ବନ୍ଧୁର ସେ ଶୈଳ ଶିଖରେ ଯେ ସଦା
ଭଲ୍ଲୁକ ଉଚ୍ଛରେ ଧାଇଁ
ପ୍ରଚଣ୍ଡ ମାର୍ତ୍ତଣ୍ଡ କରଇ ତାଙ୍କୁ
ମନରେ ଅଶନ୍ତ ନାହିଁ ।
ସଦା ପ୍ରଜାପୁଞ୍ଜ ପାଳନରେ ବ୍ରତ
ଶାସ୍ତ୍ରାଲାପୀ ନରପତି
ଦରପଣି ଗଡ଼ ଘଣ୍ଡ ମହାଦେବ
ଆମ୍ଭ ସେନ୍ୟ ବରଜନ୍ତି ।
ବ୍ରାହ୍ମଣୀ ବୈତରଣୀ ଖରସ୍ରୋତା ଯହିଁ
ଏକତ୍ର ମିଳିତ ହୋଇ
ସାମାନ୍ୟ ପବନେ ତୁମୁଳ ଉତ୍ତାଳ—
ତରଙ୍ଗମାଳ ସୃଜଇ ।
ସିନ୍ଧୁଜଳେ ଯଣା ଭୟରେ ଅସ୍ଥିର
ଯହିଁ ପୋତପାଳପନ୍ତି
ବରାଭୟଦାୟୀ ଧାମସ୍ରୀ ଦେବୀଙ୍କ
ପଦେ ଶରଣ ପଶନ୍ତି ।
ବହୁତ ବିଭବ— ଶାଳୀ ଏହୁ ଦେଶ,
ଯାହାଙ୍କ ଭଣ୍ଡାରେ ସଦା
ବିଦେଶୁଁ ଆଗତ ।ମଣିମୁକ୍ତାମାନ
ପଡ଼ିଅଛି ଗଦା ଗଦା,
ପାଲଙ୍କୀରେ ବସି ମୃଗୟା ବିନୋଦ
ଯହିଁ ବୀର ଯୁବାଗଣ

ବୁଲ୍ ବୁଲ୍ ବାଜ— ଟିଆ ହରିଣର
କରନ୍ତି ଅନୁସରଣ ।
ସ୍ୱପନ ଦର୍ଶନ ନଦେଖିଲ ଯହିଁ
ଗୁମ୍ଫେ ରହିଥାନ୍ତି ଠାକ,
ଜଳେ ପାଦ ଦେଲେ ତତକ୍ଷଣେ ଜୀବଙ୍କୁ
କଳରେ ଦଅନ୍ତି ଜାକ,
ଯହିଁ ବାଳାମଣି ତଅପୋଇ ପୂର୍ବେ
ଖୁଦୁରୁଣୀ ଓଷା କରି *
ଦେବୀଙ୍କ ପ୍ରସାଦେ ସାତ ବହୂଙ୍କର
ନାକଶିଖ ଥିଲା ହରି
ଶୁଭ୍ରମୂର୍ତ୍ତି ଏହି ଯୁବକ ଅଟନ୍ତି
ନରପତ୍ତ କନକାର,
ତାଳୀବନାକୀର୍ଣ୍ଣ ନଦତଟଯୁକ୍ତ
ଜଳ ଦୁର୍ଗେ ବାସ ଯାର ।
ବଷମ ବଳଷ୍ଠ କଦାପି ସମରେ
ନୁହନ୍ତି ଯେମାନେ କ୍ଲାନ୍ତ,
ମଲ୍ଲଯୁଦ୍ଧେ ଯେହ୍ନ ବ୍ୟାଘ୍ର ଭଲ୍ଲୁକଙ୍କୁ
କରନ୍ତି ସଦା ପରାସ୍ତ,
ବରୁଣର ମାଲ ରାଜ୍ୟକୁ ଯାହାଙ୍କ
ପୋତମାଳ ଥରେ ଥରେ
ମଣ୍ଡଳ ଆକାରେ ଛନ୍ଦ ନାଚ ନାଚ
ଅନାୟାସେ ଶୂନ୍ୟ କରେ,
ବରାହନାଥଙ୍କୁ ଘୋର ତପେ ତୋଷି
ତାହାଙ୍କ ପ୍ରସାଦବଳେ
ଯେମାନଙ୍କ ତେଜ ଦୁଃସହ ହୋଇଛି
ରଣେ ଅରାତମଣ୍ଡଳେ,
ଧାନ୍ୟଶାଳୀ ଆଳ ଦେଶର ଭୂପ ଏ
ଅସନ୍ତି ଅପି ଅସ୍ଥାଣ

* —ବନବା ଉଷା ଗଢ଼ରେ ଖୁଦୁରୁଣୀର ଜନ୍ମ ହୋଇଥିବା ଜନଶ୍ରୁତି ।

ବିମଳ କାନ୍ତିରେ ଶତ୍ରୁ ବଦନରେ
ବୋଲହେଉଛନ୍ତି କାଳି
ଚୌଦ୍ୱାର ଦୁର୍ଗର ପରିଖାକୁ ବେଢ଼ି
ବହୁଛି ବିରୂପା ଯହିଁ,
ପୂର ରମ୍ୟ ଛବି ଯା ବିମଳ ନୀଳ
ଜଳେ ବିମ୍ବିତ ହୁଅଇ
ଯେମାନଙ୍କ ଜନ୍ମେ ପବିତ୍ର ହୋଇଛି
ଜନ୍ମେଜୟଙ୍କର ବଂଶ,
ଉତ୍କଳ ଭାରତ— ମାଳ ହୋଇଅଛି
ଅବନୀର ଅବତଂସ,
ସେହି ଏ ସଞ୍ଜୟ ଭୂପତି ମହିଷି !
ଚଉଦ୍ୱାର ଗଡ ଛାଡ଼ି ।
ଦେଖୁଥିଲେ ସେହି ଦନ୍ତୁ ଆମ୍ଭ ସୈନ୍ୟ
ସହି ରହୁପୁର ଧାଡ଼ି ।
ପବିତ୍ର ସଲିଳା ବୈତରଣୀ ଯାର
ରାଜ୍ୟପଦ ଧୌତ କରେ,
ଜ୍ୟୋତିର୍ମୟ ସିଂହ ଭସ୍ୱଲ ମୂରତି
ରାଜେ ଯାହାଙ୍କ ଧ୍ୱଜରେ,
ବିରଜା ଦେବୀଙ୍କ ବରେ ଅବହେଳେ
ଅସହ୍ୟ ତେଜ ଯାହାର
ଶତ୍ରୁ-ସିମନ୍ତନୀ- ଶିରରୁ ନାଶଇ
ଦେଉଛି ସିନ୍ଦୁରଗାର,
ଯଯାତି ଲଲାଟ ମରକତ ଭୂପ
ଜନ୍ମ ଲଭି ଯେଉଁ ବଂଶେ
ମଣ୍ଡି ଦେଇଛନ୍ତି ଉତ୍କଳ ଧରାକୁ
ସମୁଜ୍ଜ୍ୱଳ ଶୁଭ୍ର ଯଶେ,
ସେହି ଏ କେଶରୀ- ବଂଶଧର ନର—
ନାୟକ ଯାଜପୁରର
କେଶରୀ ପରାଏ ଦଶନ୍ତ ବିଶାଳ—
ତ୍ରିଶୂଳ ଅଙ୍କିତ-କର ।

ବନ୍ଧେ ଋଷିକୁଲ୍ୟା     ନଦୀ ଯେମାନଙ୍କ
ରାଜ୍ୟସୀମା କରି ସ୍ପର୍ଶ,
ଝଞ୍ଜନାଭ ଜନ୍ମ—     ପାଇକେ ଯାହାଙ୍କ
ରଣପ୍ରାଙ୍ଗଣେ ଦୁର୍ଦ୍ଧର୍ଷ,
ଘୁମୁସର ଭଞ୍ଜ     ଭୂପ ଏ ଅଠନ୍ତି
ଦେବଦ୍ୱିଜ ପରାୟଣ,
ଏହାଙ୍କ ନବରେ     ସ୍ୱରସତୀଙ୍କର
ସର୍ବଦା ଦୃଢ଼ ଆସନ ।
ପୋଡବାଯ୍ଯାଙ୍କର     ଦାର୍ଦ୍ଧାରଣରୂପୀ
ଯେ ମହା ମହେନ୍ଦ୍ର ଗିରି,
ଦାଗ୍‌ବଧୂର ଷ୍ଟଳେ     କଳା ଟୀକା ସମ
ଦିଶେ ଦୂରୁ ଯାର ଶିରି,
ପ୍ରତ୍ୟୁଷେ ଅରୁଣ—     ରାଗେ ବୋଲା ହୋଇ
କମଳନୀ—ପ୍ରାଣଧନ
କରନ୍ତି ଯାହାଙ୍କୁ     ଆସୁ ଆସୁ ମାର୍ଗେ
ପ୍ରେମଭରେ ଆଲିଙ୍ଗନ,
ଭୂଚର ଗଞ୍ଜାମ     ପାଖରୁ ଦକ୍ଷିଣା—
ପଥ ବନ୍ଧୁଦୂରପାଏ
ଫଳେ ପୁଷ୍ପେ ମଞ୍ଜୁ     ଉଦ୍ୟାନ ଖଣ୍ଡର
ବକ୍ଷେ ଯାହା ଶୋଭପାଏ,
ଦାଗ୍‌ବିଜୟକାଳେ     ମହେନ୍ଦ୍ର ଅଚଳ-
ଶୃଙ୍ଗ ଗଜସେନାପନ୍ତି
ଘେନ ମହାଦମ୍ଭେ     ବେଧ କରିଥିଲେ
ଯେମାନେ ରଘୁଙ୍କ ଗଣ୍ଡ, *
ସେ ମଞ୍ଜୁ ମଞ୍ଜୁଷା     ମହାନାୟକ ଏ
ଉକ୍ତ ବଚନ ବରଣେ,
ମହେନ୍ଦ୍ର ତନୟା-     ତୋୟପାନେ ପୁଷ୍ଟ
ଯୋଦ୍ଧାଏ ଛନ୍ତି ଗହଣେ ।"

* ରଘୁବଂଶ ଯନୁସନ୍ଧେୟ ।

ଗୋଟି ଗୋଟି କରି          ଏରୂପେ ସୁନ୍ଦର
    କଞ୍ଚୁକି କରି ବଢ଼ାଇ
ଦେଉଥିଲେ ମହା—          ଦେବୀଙ୍କୁ ଆଗତ
    ରାଜାମାନଙ୍କୁ ଚହ୍ନାଇ ।
ନାନା ବେଶଧାରୀ          ନାନା ଜାତି ଯୋଦ୍ଧା
    ଅସ୍ତ୍ରେଶସ୍ତ୍ରେ ଭୟଙ୍କର
ହେଉଥିଲେ ଧୀରେ          ଧୀରେ ସୁସଜ୍ଜିତ
    ବଢ଼ଦାଣ୍ଡେ ଅଗ୍ରସର ।
ରଥର ଘର୍ଘର          ଶବ୍ଦ, ଗତିଶୀଳ
    ତୁରଙ୍ଗର ହ୍ରେଷା ସ୍ୱର,
ହସ୍ତିପାଳ ତୀବ୍ର—          ପ୍ରହାରେ ଉତ୍କଟ
    ନାଦ ଗଜମାନଙ୍କର,
ତୁରୀ ଭେରୀ ଶଙ୍ଖ          ଦାମାମାର ଧ୍ୱନି
    ଜନତା ମହାଚହଳ,
ତରଙ୍ଗ ସଙ୍କୁଳ          ଫେନିଳ ସିନ୍ଧୁର
    ସୁଗମ୍ଭୀର କୋଳାହଳ,
ଭଟଙ୍କ ଚିତ୍କାର          ପାଇକ କୁହାଟ
    ଚମୂରକ୍ଷର ହୁଙ୍କାର
ପୁଷ୍ପଲତା ଭଜି          ପ୍ରତିଧ୍ୱନିବଶେ
    କମ୍ପୁଥିଲା ସିଂହଦ୍ୱାର ।
ସୌଧ—ବାତାୟନ          ପାଖେ ପୁରବାଳା
    ଚଞ୍ଚଳ ବିଦ୍ୟୁବରଣୀ
ହୁଳହୁଳି ସହ          ସଘନରେ ଉଚ୍ଚେ
    କରୁଥିଲେ ଶଙ୍ଖଧ୍ୱନି ।
ଦିଶୁଥିଲେ ଶଶି—          ମୁଖୀ ଲଳନାଏ
    ଅଧରୋଷ୍ଠେ ଶଙ୍ଖ ଧରି
ପ୍ରିୟତମଙ୍କର          ଅନୁରାଗଯୁକ୍ତ
    ହାସ୍ୟ ପାନ କଲେ ପରି,
ଅବା ରତ୍ନପୁର—          ଜୟୀ ଗଙ୍ଗେଶ୍ୱର
    ନୃପଙ୍କର ଯଶୋରାଶି

ପୀୟୂଷ ପରଶେ   ଆନନ୍ଦେ ବାଳାଏ
ପିଉଥିଲେ ହସି ହସି ।
ଶଙ୍ଖ ମୁଖେ ଶତ   ଶତ ମହଲାଙ୍କ
ପ୍ରାସାଦ ଉପରେ ମେଳା
ଦେଖି ମନେ ପଡ଼େ   କମଳ-କାନନେ
ରାଜହଂସୀଙ୍କର ଖେଳା ।
କ୍ରମେ ରାଜେଶ୍ୱର   ପଶିଲେ ନଗରେ
ଡେଇଁ ତୋରଣ-ଦେହଳୀ,
କର ତୋଳ କଳା—   କରମୁଖୀମାନେ
ବୃଷ୍ଟି କଲେ ପୁଷ୍ପାଞ୍ଜଳ ।
ପଦାତରେ ପ୍ରାତଃ—   ପବନେ ଚନ୍ଦନ
ପଡୁଥିଲା କିବା ଖସି,
ଅବା ଯାଉଥିଲା   ଚନ୍ଦ୍ରମା ମଣ୍ଡଳୁ
ଧବଳ ସୁଧା ବରଷି ।
ଗହ ଗହ ହେଲା   ନଗରେ ଶୁଭିଲା
ଶଙ୍ଖ ଘଣ୍ଟା ହୁଳ ହୁଳ,
ପୁର ଗ୍ରାସିବାକୁ   ଉଡ଼ିଲା କି ଅବା
ଦ୍ୱିତୀୟ ସିନ୍ଧୁ ଉଚ୍ଛୁଳ ।
ସାମନ୍ତ ରାଜାଏ   ପାତ୍ର ମନ୍ତ୍ରୀ ଆଦି
ଅପେକ୍ଷା କଲେ ମାର୍ଗରେ,
ବନ୍ଦାପନା ପାଇଁ   ଏକା ରାଜେଶ୍ୱର
ପ୍ରବେଶ ହେଲେ ନଗରେ ।
ପୂର୍ବ ଦିଗ୍‌ବଳୟେ   ଦିଗ୍‌ବାଳା ଏଣେ
ପୂର୍ଣ୍ଣେନ୍ଦୁ-ଆରକ୍ତ-ଛବି,
ଓଢ଼ଣା ଉଠାଇ   ଉଭା ହେଲା କିବା
ଅନୁରାଗେ ପ୍ରାଚୀ ତନ୍ୱୀ !
ସାଗର ବକ୍ଷରେ   ଦିଶୁଥିଲା ରମ୍ୟ
ତରଙ୍ଗ ମରକତର,
ପଦ୍ମରାଗ ଜ୍ୟୋତି   ବୁଣିଦେଲା ତହିଁ
ଉଇଁ ନବ ସୁଧାକର ।

ଫେନ୍ନରାଗ ରାଗେ    କମନୀୟ ସେତୁ
ମର୍କତ ଜ୍ୟୋତି ମିଶାଇ
ଅନନ୍ତ ଜଳଧି—    ଜଳର ଉପରେ
ମଞ୍ଜୁ ମୂର୍ତ୍ତି ଚନ୍ଦ୍ରମାର
ପ୍ରତି ଲହରୀରେ    ଟାଣି ଦେଲା କିବା
ଉଜ୍ଜ୍ୱଳ ରଜତତାର ।
ଦେଖୁଁ ଦେଖୁଁ ବଧୂ    ଉଠିଲେ ଆକାଶେ,
ରଜତ ଜ୍ୟୋତ୍ସ୍ନା ଧବଳ
ସାଗରରେ ଢାଳି    କଲେ ପାଣ୍ଡୁ ବର୍ଣ୍ଣ
ଚଞ୍ଚଳ ସମୁଜ୍ଜ୍ୱଳ ।
ଅନ୍ଧାର ସାରିକା    ସରିଗେ ଗଗନ—
ପିଞ୍ଜର ଗର୍ଭେ ବସିଛି
ଚନ୍ଦ୍ରମା-କାନ୍ତିରୁ    ଖୁଣ୍ଟି ଖାଇଲା କି
ଚନ୍ଦ୍ରିକା ତଣ୍ଡୁଳ ରାଜି !
ବିସ୍ତୀର୍ଣ୍ଣ ଅର୍ଣ୍ଣବ    ଉପରେ ଲାଗିଲା
ବିମଳ କୌମୁଦୀ ସ୍ପର୍ଶି,
ମନମୁଗ୍ଧକର    ଚନ୍ଦ୍ରବିମ୍ବ ଜଳ
ବର୍ଷିଲା କି ସୁଧାରାଶି !
ଇନ୍ଦ୍ରଦ୍ୟୁମ୍ନ ସର—    ନୀରେ ଚନ୍ଦ୍ରିକାର
କ୍ରୀଡ଼ା ଦେଖି ହୋଇ ପ୍ରୀତେ,
କମଠକୁ ଲଥା    କୌତୁକେ ଯାତ୍ରିଏ
ଫିଙ୍ଗି ଦେଇଛନ୍ତି ସତେ ।
ଶୁଭ୍ର ଜ୍ୟୋତ୍ସ୍ନା ଲେଖ    ପଡ଼ି ବିମାନର
ହେମମୟ କଳସରେ
ଶତ ଶତ ନବ    ସ୍ୱର୍ଗୀୟ ସୌନ୍ଦର୍ଯ୍ୟ
ସୃଷ୍ଟିକଲା କି ମର୍ତ୍ତ୍ୟରେ !
ଜଣା ଯାଉଥିଲା    ଅସଂଖ୍ୟ ପତାକା
ଆକାଶେ ଦୋହଲିବାରୁ,
ଖଣ୍ଡେ ଖଣ୍ଡେ ଛିଣ୍ଡି    ଉଡୁଥିଲା ପରା
ଧବଳ ଚନ୍ଦ୍ର ଜ୍ୟୋତ୍ସ୍ନାରୁ !

ସେନାଙ୍କ ସାଜରେ  ଅସ୍ତ୍ରେ ଶସ୍ତ୍ରେ ଭାଲେ
କବଚେ ଶରେ ତୂଣୀରେ
ମନ୍ଦର—ଚତ୍ୱରେ  ପ୍ରାଚୀରେ ଚନ୍ଦ୍ରମା-
କର କ୍ରୀଡୁଥିଲା ଧୀରେ ।
ଗଜଦନ୍ତ—ଶୁଭ୍ର  ସିକତା—ସ୍ତୂପରେ
କୌମୁଦୀ ଉଠେ ଝଟକି,
ସେ ଶୋଭାରେ ମୁଗ୍ଧ  ହୋଇ ନ ରହିବ
କାହାର ନେତ୍ର ଅଟକି ?
ଦେଖିଲେହେଁ ରାଣୀ  ସ୍ୱାମୀଙ୍କର ଏହି
ବିପୁଳ ବିଭବ-ଉତ୍ସ,
ସାମାନ୍ୟ କୃଷକ—  ପତ୍ନୀଠାରୁ ମନେ
ମଣିଲେ ନିଜକୁ ତୁଚ୍ଛ ।
ବୀର ଗଙ୍ଗେଶ୍ୱର  ହେବାରୁ ରୁଚିର
ନଗରର ସମ୍ମୁଖୀନ
ସିଂହଦ୍ୱାର ସହିତ  ପ୍ରାସାଦରୁ ଦେବୀ
ତଳେ ହେଲେ ଅବତୀର୍ଣ୍ଣ ।
ଅର୍ଘ୍ୟଥାଳି ଘେନି  ଅନ୍ୟାନ୍ୟ ସକଳ
ପୁରକାମିନୀଙ୍କ ମେଳେ
ରାଜ ବନ୍ଦାପନା  କରି ମହାଦେବୀ
ନୀରବରେ ବିଜେ ହେଲେ ।
ଏକମେଳ ହୋଇ  ଝୁଲିଲେ କି ଅବା
ପୁଷ୍ପିତା ହେମ-ବଲ୍ଲରୀ,
ସାନ୍ଧ୍ୟ ରବି ଛବି  ବହି ଆସିଲା କି
ବେଳା ମୁଖକୁ ଲହରୀ ।
ଅର୍ଘ୍ୟଥାଳି ହସ୍ତେ  ବନ୍ଦାପନା କାଲେ
ଶୋଭିଲେ ସେ ବାମାଗଣ
ସ୍ୱପଦଣ୍ଡି ପାଖେ  ରବି ରଶ୍ମି ଯୋଗେ
ଯେସନ କମଳ ବନ ।
କହିଲେ ପ୍ରଫୁଲ୍ଲ  ମାନସେ ନରେଶ
ମହାଦେବୀଙ୍କୁ ସୁମୁଖି !

ଫଗୁଣ ଶୀତଳ ହେଲା ବସନ୍ତରୁ
ତୁମ୍ଭର ମୁଖ ଝଲକେ ।
ଗ୍ରୀଷ୍ମକାଳଯାକ ଖର ସୌରକରେ
ଜଳ ହୋଇ ଯିନା ଢେଙ୍କ
ଶୀତଳ ହୁଅଇ ପରଶତ ତାର
ନବଘନ ମୂର୍ତ୍ତି ଦେଖି ।
ଶ୍ରୀକ୍ଷେତ୍ରନାଥଙ୍କ କୃପାରୁ ସୁନ୍ଦର,
ଦିଗ୍ୱିଜୟ ହେଲା ଶେଷ,
ବଶୀଭୂତ ଅଛି ଗଙ୍ଗେଶ୍ୱର ପାଦେ
ସମସ୍ତ ଉତ୍କଳ ଦେଶ ।
ହେମପୁରପତି ପାଉଅଛି ତାର
ଦୁଃସାହସ ପ୍ରତିଫଳ,
ଏତେଦିନେ ଦେଖ ! ବୁଝିଛନ୍ତି ସର୍ବେ
ଗଙ୍ଗେଶ୍ୱର ନୃପବଳ ।
ତାହା ସାଧ ହବେ ଉତ୍କଳପତିର
କରିବାକୁ ରୋଧ ଗତି,
ସମ୍ଭାଳି ପାରିବେ କାହ୍ନୁଁ ଖରଗତି
ଦାବାଗ୍ନିର ତୃଣପନ୍ତି !
ଦମି ପାରିବେ କି କେଶରୀ ବଳକୁ
ମିଳି ବନ୍ଧ କୃଷ୍ଣସାର,
କି ଅବା ପ୍ରବଳ ପ୍ରେମକୁ ବାରିବ
ଆତ୍ମୀୟ-ପକ୍ଷି ପ୍ରହାର ।
କେ ସହି ପାରିବ ଦୁର୍ନିବାର ଘୋର
ଉଗ୍ର ସେନାନୀଙ୍କ ବଳ,
କଳସୀ-ଜଳରେ ନିଭାଇବ କିଏ
ଦୁଃସହ ବାଡ଼ବାନଳ ?
ସକଳ ପ୍ରକାରେ ଆଜଠାରୁ ସେବା
କରିବେ ଆଗୋ ସୁନ୍ଦର !
ହେମପୁର ରାଜ- ଜେମା ଅନ୍ନପୂର୍ଣ୍ଣା
ତୁମ୍ଭ ପଦେ ଦାସୀ ପରି ।

ଦୋଳୋତ୍ସବ ଆଜ, ଶ୍ରୀକ୍ଷେତ୍ର ବସୁଛି
ଅବିରେ ପାଟଳମୟ,
ଫଗୁ ଖେଳିବାରେ ମତ୍ତ ହୋଇଛନ୍ତି
ନୀଳାଚଳବାସୀଚୟ ।
ଉଡ୍ଡୀନ ଅବିର- ଗୁଣ୍ଡିମାନ ଶୁଭ୍ର
ଚନ୍ଦ୍ରିକାରେ ବୋଳାହୋଇ
ଉଷାର ଅସ୍ପଷ୍ଟ ରକ୍ତିମା ପରି
ଗଗନ ଶୋଭା ଦିଶଇ ।
ମହାନନ୍ଦମୟ ଏ ଉତ୍ସବେ ଯୋଗ
ଦେବାକୁ ତୁମ୍ଭ ସହିତ
ହେଉଁ ହେଉଁ ଜୟ ହେମପୁର, ପୁରେ,
ଫେରି ଆସିଛି ତ୍ୱରିତ ।
ସଖୀଗଣ ସହ ମକର ଉଦ୍ୟାନେ
ଏବେ ଉପସ୍ଥିତ ହୋଇ
ରଙ୍ଗରସେ ଯୋଗ ଦିଅ ମୋ ସହିତେ
ନିଷ୍କଳଙ୍କ ଚନ୍ଦ୍ରମୁହିଁ !
ବନ୍ଧୁଦନ୍ତ ହେଲେ ସମରେ କୁଶଳ
କରବାଳ ବନ୍ଧୁ ସଙ୍ଗି
ଶତ୍ରୁମାନଙ୍କର ଶିର ହାଣି ହାଣି
ରହିଲେଣି ଏବେ ଥକି ।
ଆଜି ଏ ନୂତନ ରଣେ ଯୁଦ୍ଧସ୍ଥଳ
ହେବ ମକର ଉଦ୍ୟାନ,
ପିଚକାରୀମାନ କରିବେ ପୂରଣ
ତହିଁ ତରବାରି ସ୍ଥାନ ।
ରୁଧିର ପ୍ରବାହ ପରି ବହିବ
ଖରେ ଅବିରର ଜଳ,
ଭ୍ରୂଲତା-ଧନୁରୁ ଛୁଟିବ ଅବ୍ୟର୍ଥ
କଟାକ୍ଷ-ଶର ସକଳ,
ରଣବାଦ୍ୟ ହେବ ନୂପୁର, ହୋଇବେ
ରଥ-କଳସ ଉରଜ ;

ବିଜୟ କେତନ ପରିଏ ଉଡ଼ିବ
ଭୂଷିତ ଭୂତଳବ୍ରଜ ।
ଜଣାପିବ ଏହୁ ସମରେ ସୁମୁଖି,
ବାମାବୃନ୍ଦ କେଡ଼େ ଦକ୍ଷ,
ଏକାବେଳେ ସର୍ବେ ହେବ ଦିଗ୍ବିଜୟୀ
ଗଙ୍ଗେଶ୍ବର ପ୍ରତିପକ୍ଷ ।"
କହିଲେ ମହିଷୀ, "ବହୁଦିନୁ ଆଜ
ଦେଖି ମନ ହୁଏ ଯାହା,
କେହି ନ ବୁଝିବେ ପ୍ରଭୁ ଜଗନ୍ନାଥ
କେବଳ ଜାଣନ୍ତି ତାହା ।
ମନ୍ଦିର ଉଦ୍ୟାନେ ପୂର୍ବରୁ ହୋଇଛି
ଉତ୍ସବର ଆୟୋଜନ,
ନର୍ତ୍ତେ ତୁମ୍ଭ ସହ କାମିନୀଙ୍କ ଆଜ
ହୋଇବ ଅପୂର୍ବ ରଣ ।
ବହୁଦିନୁ ବୁଲି ବୁଲି ବିଦେଶରେ
ହୋଇଲଣି ନାଥ କ୍ଲାନ୍ତ,
ଦେବେ ନାହିଁ ଆଉ ଗୃହରୁ ବାହାର
ହେବାଲାଗି ଜଗନ୍ନାଥ ।
ଆଜଠାରୁ ଗୃହେ ବିଶ୍ରାମ କରିବ
ନାଥ, ଚରଣାନ୍ତି ପାଇ,
ତୁମ୍ଭର କଠୋର ତପସ୍ୟାର ଫଳ
ଦେବେ ନୀଳାଚଳସାଈଁ ।
କର୍ମଫଳଦାତା ଭବେ ଏକା ସେହି,
ନୁହଇ ଏହା ଅନ୍ୟଥା,
ସବୁକାଳେ ସବୁ ପାତ୍ରରେ ଅଟଳ
ତାହାଙ୍କ ବିଶ୍ବର ପ୍ରଥା ।
ସରସୀ ନିର୍ମଳ— ଜଳପରେ ବସି
ପଦ୍ମିନୀ ଏକାନ୍ତ ମନେ
ରହିଥାଏ ଯଥା ଊଷାର ମୋହନ
ରକ୍ତଛବି ଦରଶନେ,

ନନ୍ଦନ କାନନ ସମାନ ମନ୍ଦର
ଉଦ୍ୟାନେ ଭୂଷିତ ହୁଦେ
ତୁମ୍ଭ ଅପେକ୍ଷାରେ ଠାକ ରହୁଥିବେ
ଦେଖେ ତରୁଣୀଏ ମୋଦେ ।”
ଗଙ୍ଗେଶ୍ୱରଙ୍କର ପ୍ରତୀକ୍ଷାରେ ଦାଣ୍ଡେ
ଥିଲେ ସାମନ୍ତ ରାଜନେ,
ଆସିବା ମାତ୍ର ସେ ଗହଣେ ଗମିଲେ
ଜଗନ୍ନାଥ ଦରଶନେ ।
ବଥିରେ କମଳ— ପଯ୍ନର ପଖାଳ
ଅରୁଣସ୍ତମ୍ଭ ପାଖରେ
ଦେଉଳର ବେଢ଼ା ଭିତରେ ପ୍ରବେଶ
କଲେ ଧୀର ଭକ୍ତଭରେ ।
ଗୌରୀଗୁରୁ—ଶୃଙ୍ଗ ପରାଏ ଉନ୍ନତ
ଦେଉଳରାଜ ଦିଶଇ,
ମନ୍ଦାକିନୀ—ବୀଚ ପରି ତା ଉପରେ
ଧବଳ ଧ୍ୱଜ ରାଜଇ ।
ଗଗନର ସୀମା ଅଣ୍ଡେମି ଅବା
ସ୍ୱର୍ଗସୁଖେ ଅଛି ଧାଇଁ,
ଖସିପଡ଼େ ଟୋକା ଦେଖ ହୁଏ ଉଙ୍କା
ତାହାର ଉଚ୍ଚତା ଚାହିଁ ।
କେତେ ଶିଳାମୟ ପ୍ରେମିକ ପ୍ରେମିକା
ପ୍ରଣୟରସରେ ଜଡ଼
ଛୁଇପାଷେ ଶିଳ୍ପ ଘୃର୍ଣ୍ଣି ବଢ଼ାନ୍ତ
ତା ମହାଚଗହେ ପଡ଼ ।
କ୍ରୂରକର୍ମୀ ସଦା ପର—ଅପକାରୀ
ନରଙ୍କ ପକ୍ଷରେ ଯମ
ଶୁଭାଚାରୀ ଧୀର ବିମଳ ହୃଦୟ—
କମଳକୁ ସୂର୍ଯ୍ୟ ସମ ।
କଳକାଳ ଘୋର— ତର ଖାଗିଦୁର
ଚରମୁକୁନ୍ଦର ଦ୍ୱାର,

ପ୍ରଦକ୍ଷିଣ କଲେ ସେ ଦେଉଳ ଘେରେ
ଭୂପମାନେ ଧନବାର ।
ଭେଟ କରୁକରୁ ଉତ୍ତମ ସୁଯୋଗ
ପଣ୍ଡାଏ ଏକାଳେ ଗୃହି
ନାନା ଦେବ ଦେବୀ ମୂର୍ତ୍ତି ଦେଖାଇଲେ
ତାଙ୍କୁ ଘୂରାଇ ଘୂରାଇ ।
ବଟେକୃଷ୍ଣ ବଟ ମାର୍କଣ୍ଡେୟ ବଟ
ଗଣେଶ ବଟମଙ୍ଗଳା,
ନୃସିଂହ ଅକ୍ଷୟ— ବଟ ବଟେଶ୍ୱର
ରୋହଣୀକୁଣ୍ଡ ବିମଳା,
ଶୀତଳା ଈଶାନେ— ଶ୍ୱର କାଳୀ ଲକ୍ଷ୍ମୀ
ମହାବୀର ସରସ୍ୱତୀ
ଆଦି ଦେବତାଙ୍କୁ ପ୍ରଣମିଲେ ଭୂପେ
ଜଣାଇ ହୃଦ-ଆରତି ।
ପୁଚ୍ଛାଇ ସଧୀରେ ଆଦରେ ଗରୁଡ଼—
ସ୍ତମ୍ଭ ମୂଳ କଟିଦେଶ
ଧର୍ମବେଡ ଖାଇ ଚନ୍ଦନ ଅଗର
ସନ୍ନିଧେ ହେଲେ ପ୍ରବେଶ ।
ହୃଦୟ—କନ୍ଦର ଦୂର ହେଲା, ମନ
ଦିବ୍ୟଭାବେ ହେଲା ସ୍ଫୁର୍ତ୍ତି,
ଦେଖିଲେ ମହାର୍ହ ରତ୍ନ ସିଂହାସନେ
ଦୁର୍ଲ୍ଲଭ ଚତୁର୍ଦ୍ଧା ମୂର୍ତ୍ତି ।
ମାର୍ଜ୍ଜିତ—ରଜତ— କାନ୍ତି ବଳଦେବ
ମନ୍ଦାର-ରକ୍ତ-ଲୋଚନ,
ହେମାଙ୍ଗୀ ସୁଭଦ୍ରା, ଜଗନ୍ନାଥ ଦେବ
ତମାଳ—ଶ୍ୟାମ—ବରଣ
ବର୍ଣ୍ଣେ ଅତୁଳନ, ସୁଦର୍ଶନେ ଜଣି
ଉଜ୍ଜ୍ୱଳ ଶୁକ୍ର ତାରକ
ଚୌରଙ୍ଗଦଣ୍ଡ ଦିବ୍ୟ ମଣି ସଙ୍ଗେ
କରୁଥିଲା ଜକଜକ ।

ସୁରଭି କୁସୁମ— ଦାମେ ସାଉଥିଲେ
ସେ ଘନ ଚିଗନ୍ଧ ଶୋଭା,
ବହୁମୂଲ୍ୟ ରତ୍ନ- ଆଭରଣ ଜାଲେ
ହୋଇଥିଲେ ମନୋଲ୍ଲେଭା ।
ମନୋହାଜ୍ଜ୍ୱଳ ମୟୂ ବିଶାଖା ନକ୍ଷତ୍ର
ତୁଲ୍ୟ, ତୋରଣ ସମାନ
ହେଉଥିଲା ରତ୍ନ- ମୁକୁଟେ ତାହାଙ୍କ
ମସ୍ତକ ଦେଦୀପ୍ୟମାନ ।
ଊର୍ଦ୍ଧ୍ୱେ ଚନ୍ଦ୍ରାତପ ତଳେ ହେମମୟ
ଝାଲର ଝଟକି ଦଶେ,
ଅଶ୍ୱିନୀ ନକ୍ଷତ୍ର କେଶର ଗୁଣ୍ଡରେ
ଗଢ଼ା ହୋଇଥିଲା କି ସେ !
ଭବ ମୁକ୍ତିଦାତା ସ୍ୱବଗ୍ରାହ୍ୟ କରେ
ପାପଦ୍ରୋହୀ ସୁଦର୍ଶନ
ଦଶନ୍ତ ଉଜ୍ଜ୍ୱଳ ଧୂମକେତୁ ପୁଚ୍ଛ
ସମାନ ଲୋହିତ ବର୍ଣ୍ଣ ।
ଜ୍ୟୋତିର୍ମୟ ସେହି ଅସହ୍ୟ ପ୍ରଭାରେ
ନୟନ ପଡ଼େ ଟିକିର
ମହାଭୟେ ସଦା ମହା ଦାମ୍ଭିକର
ହୃଦୟ ଉଠଇ ଥରି ।
ସାମନ୍ତ ରାଜାଏ ସମର୍ପି ପ୍ରଭୁଙ୍କୁ
ନାନାବିଧ ଉପାୟନ
ସାଷ୍ଟାଙ୍ଗେ ପ୍ରଣମି ଅଭୟ ଚରଣ—
ପିଞ୍ଜରେ ନେଲେ ଶରଣ ।
ଯଥାକାଳେ ସର୍ବେ ଦେଉତ୍ତ୍ରି ବାହାର
ଗଲେ ଯେ ଯାହା ଶିବିର,
ରଣବେଶ ଛାଡ଼ି ନିତ୍ୟକାର୍ଯ୍ୟ ସାରି
ଏଣେ ଗଙ୍ଗେଶ୍ୱର ବୀର ।
ସିଂହାରିମାନଙ୍କ କରେ ଧରଚଲେ
ଫଗୁଖେଳ ଯୋଗ୍ୟ ବେଶ,

କୁଙ୍କୁମ ବସନ ପିନ୍ଧି ପୁଷ୍ପମାଳେ
ମଣ୍ଡିଲେ ଫୁଲବ କେଶ ।
କମଳ—କାନନେ ସଞ୍ଚରଣଶୀଳା
କରଣୀକୁଳ ଭିତରେ
ସଧୀରେ ଯେମନ୍ତ ମତ୍ତ ଦନ୍ତାବଳ
ପ୍ରବେଶଇ ଉଲ୍ଲାସରେ ।
ପଶିଲେ ତେସନ ସଜ୍ଜିତ ସୁନ୍ଦର
ମନ୍ଦର ଉଦ୍ୟାନେ ସ୍ୱୟେ,
ବାଳାଏ ବିଳାସ କରୁଥିଲେ ଯହିଁ
ପୁଷ୍ପବତୀ ଲତା ପ୍ରାୟେ ।
ସନ୍ଧ୍ୟାକାଶ ସମ ହୋଇଥିଲା ତହିଁ
ଚନ୍ଦ୍ରାତପ ବିଲମ୍ବିତ
କଳା ଧଳା ପୀତ ଲୋହିତ ହରିତ
ବିବିଧ ବର୍ଣ୍ଣେ ରଚିତ ।
ଧାଡ଼ି ଧାଡ଼ି ହୋଇ ରୁଚିର ସାରକା—
ଚନ୍ଦ୍ର ସମ ସୁଶୋଭନ
ଦୀପ ବୃକ୍ଷମାନ ମନୋଜ୍ଞ ଆଲୋକ
କରୁଥିଲେ ବିକୀରଣ ।
ବିବିଧ ଦେଶର ନର୍ତ୍ତନ କଳାରେ
ପଟୁ ନର୍ତ୍ତକୀ ମଣ୍ଡଳ
ବିଚିତ୍ର ଭୂଷାରେ ଦେଉଥିଲେ ନବ—
ରଙ୍ଗସ୍ଥଳୀକି ଉଜ୍ଜ୍ୱଳ ।
ଛୁଟୁଥିଲା କଣ୍ଠୁ ବାଦ୍ୟ ତାନେ ତାନେ
ଲଳିତ ଗୀତ ଲହରୀ,
ବସନ୍ତେ ବିହଙ୍ଗ— କାକଳୀରେ ଯଥା
ଉପବନ ଯାଏ ଭରି ।
ଯାଉଥିଲା ତାହା ସେତାର ମୁରଜ
ବୀଣା ଶବଦେ ଉଚ୍ଛୁଳି,
ସେ ସ୍ୱରରେ ଯୋଗ ଦେଇ, ଖେଳୁଥିଲେ
ରସିକାଏ ଲତାଦୋଳି ।

ସୁବର୍ଣ୍ଣ ଥାଳରେ ଗ୍ରଥି ଗ୍ରଥି ପୁଣ୍ଣ
ହୋଇ କୁଙ୍କୁମ ଅବର
କରୁଥିଲ ଉଷା— ଯୋଷା—ପ୍ରତ୍ୟୁଷେ
ମୂରଣ୍ଡ ବାଳରବିର ।
ତ୍ରମ୍ବମାନଙ୍କରେ ଜଡ଼ିତ କୋମଳ
ସପଲ୍ଲବ ପୁଷ୍ପମାଳା
ଦଶୁଥିଲେ ସ୍ତମ୍ଭୁ ଭୂଷଣେ ଭୂଷିତ
ହୋଇ ପର ନବ ବାଳା ।
ଲକ୍ଷ୍ମୀ ସରସ୍ୱତୀ ସହ ସିନ୍ଧୁଜାମ୍ବୀ
ରତନ ପଲଙ୍କେ ବର—
ସ୍ତରପାଶେ ନାଚ ବୁଲଇ ଯେମନ୍ତ
କ୍ଷୀରସାଗର ଲହରୀ,
ସ୍ତମ୍ଭ ଚୌଦଗେ ଦେସନ ସୈକତ—
ସ୍ତୂପେ ପାଦପ—ପର୍ଣ୍ଣରେ
ଖେଳୁଥିଲ ସ୍ତମ୍ଭୁ ପୂର୍ଣ୍ଣ ଚନ୍ଦ୍ରମାର
ରଜତ ଜ୍ୟୋସ୍ନା ଅଭ୍ରରେ ।
ବସୁଥିଲେ ଗ୍ରଜ— ସୀମନ୍ତିମାଗଣ
ଉତ୍ସବ—ତରଙ୍ଗ ରଙ୍ଗେ,
ଫଗୁ ପରିପୂର୍ଣ୍ଣ ଶୃଙ୍ଗକୋଷମାନ
ଘେନିଥିଲେ ସଙ୍ଗେ ସଙ୍ଗେ ।
ତାଙ୍କ ସହ ଯେବେ ଗଙ୍ଗେଶ୍ୱର ମଞ୍ଚ
ହେଲେ ପିଚକାରୀ ଖେଳେ
ଉତ୍ସବ—ତରଙ୍ଗେ ଗୌଣ୍ଡର ତରଙ୍ଗ
ମିଶିଗଲ ସେତେବେଳେ ।
କୁଙ୍କୁମ—ପରାଗ— ପ୍ରବାହେ କି ଅବା
ଅସଂଖ୍ୟ ଅଶୋକଲତା
ପ୍ରବାଳ—ପାଠଳ ସହକାର ସହ
ନୃତ୍ୟାମୋଦେ ହେଲେ ରତା ।
ଦୋଳଲେ କି ବାତେ କମଳମାଗଣ
ସହିତେ ପଦ୍ମ କୋରକ,

ଅଥବା ଚନ୍ଦ୍ରମା    ସହ ତାରାମାନେ
ବିରଚିଲେ ହଲ୍ଲୀସକ !
ଅତିର ଖେଳରେ    .ଧାଇଁ ବୁଲୁଥିଲେ
ଚଉପାଶେ ବାମାଗଣ,
ଶୁଭ୍ରଳ ବକୁଳ—    ବେଗେ ଯାଉଥିଲ
ସରୋଜ ବଦନେ ବାଳ ।
ଫଗୁଖେଳେ ଜର—    ଜର ହୋଇଥିଲେ
ସୁନ୍ଦରୀ ଲଳନା କୁଳ,
ଫୁଟିଥିଲ କିବା    ବସନ୍ତେ ବଲ୍ଲୀରେ
ଅନୁରାଗଭରେ ଫୁଲ ।
ରଙ୍ଗସ୍ଥଳ ପାଶେ    ମଞ୍ଜୁଳ—ମାଧବୀ—
ମଣ୍ଡପ—ଲତା ଦୋଳରେ
ନୃପଙ୍କୁ ବସାଇ    ମହିଷୀ ସେ ଦୋଳା
ଚଳାଇଲେ ଧୀରେ ଧୀରେ ।
ଦୋଳାରେ ଦୋଳାଇ    ଦୋଳାଇ ହୃଦେମ
ସୁହାଗଭରେ ସୁନ୍ଦରୀ
କହିଲେ ମଧୁର    ସ୍ୱରେ ଧୀରେ ଧୀରେ
ନରବର କର ଧରି—
"ଆମ୍ଭଙ୍କୁ ମନରୁ    ଦୂର କରି ସଦା
ରଣମଦେ ହୋଇ ମତ୍ତ
ସୁଦୂର ବିଦେଶେ    ନାଥ ହେ, ଏକାକୀ
ଭ୍ରମୁଁ ଅଛ ଅବିରତ ।
ପାଇଛ ଏଣିକି    ପାଖେ ରଖିଥିବ
କରିବ ନାହିଁ ଅନ୍ତର,!
ସୁରଭି କୁସୁମ—    ମାଳେ ନାଥ, ଦୃଢ଼େ
ବାନ୍ଧିବ କର ପଞ୍ଜୁର ।"
ହସି ହସି ରାଏ    ସମ୍ମତ ହୁଅନ୍ତେ
ହସି ହସି ମହାଦେଈ
ଝୁଲାଇ ଝୁଲାଇ    ବାନ୍ଧିଲେ ହସ୍ତ
ତଦ ଫୁଲମାଳ ଦେଇ ।

ସହସା ନୃପତ 'ମଲ୍, ମଲ୍' ବୋଲି
ଉଠେ କଲେ ଆର୍ତ୍ତନାଦ,
ଦେଖି ଦୁଷ୍ଟ ଈର୍ଷା ବହ୍ନି ଏ ଦଇବେ
ଆଜି ବିରଚିଲା ବାଦ ।
ଦଉଡ଼ିଲେ ସଙ୍ଗେ ଅସ୍ତବ୍ୟସ୍ତ ହୋଇ
'କି ହେଲା, କି ହେଲା' ବୋଲି
ତୁମୁଳ କନ୍ଦନ— ଗେଲେ ଦେଖୁଁ ଦେଖୁଁ
ପୂରିଗଲା ରଙ୍ଗସ୍ଥଳୀ ।
ବାହାରରୁ ଧାଇଁ ଭିତରେ ପଶିଲେ
ରାଜ-ଅନୁଚରବାର,
ଉତ୍ସବ ଚଞ୍ଚଳ ବଦଳେ ଉଠିଲା
ବିଷାଦର ହାହାକାର ।
ମଶାଲ-ଆଲୋକେ ଦେଖିଲେ ସକଳେ
ମଣ୍ଡପ ସନ୍ନିଧେ ଯାଇ,
ହୋଇଛନ୍ତି ଆହା ଉତ୍କଳ-ନରେଶ
ଉତ୍ତାନେ ଅବନୀଶାୟୀ ।
ଫଗୁଜଳ ସହ ପ୍ରବଳ ଶୋଣିତ—
ସୋତେ ଭସେ କଲେବର,
ପୁଷ୍ପିତ ଅଶୋକ ତରୁ ଛିନ୍ନ ହୋଇ
ପଡ଼ିଛି କି ଭୂମି ପର !
ସରଳ ସୁଠାମ ତନୁ ତାହାଙ୍କର
ପଡ଼ି ଆବୋରିଛି ମାଟି
ଗ୍ଲାନି ଯାଇଛନ୍ତି ଏକାବେଳେ ଏହି
ମେଦନୀର ମାୟା କାଟି ।
ଜ୍ୱାଳାମୟୀ—ବହ୍ନି— ବହ୍ନିସ୍ୱରୂପିଣୀ
ଶଙ୍କରୀ ତେଜେ ପ୍ରବଳା
ପରମା ସୁନ୍ଦରୀ ମହିଷୀ ପାର୍ବତୀ
ଆଲୁଲାୟିତ କୁନ୍ତଳା ।
ଆରକ୍ତ ନୟନେ ବକ୍ର ବଦନରେ
କଠାର ହସ୍ତରେ ଧରି

ରହୁଛନ୍ତି ଶବ     ଅଡ଼କୁ ଅନାଇ
ଉଦ୍‌ଗ୍ରୀବେ ଶ୍ୟାମା ସୁନ୍ଦରୀ ।
ଆଉଚି ମୁଣ୍ଡ କୋଡ଼     ଧୂଳିରେ ସଖୀଏ
ପୂର କଲେ ମୁଖରତ,
ବକ୍ଷୋଦକେ ରାଜ—     ରକ୍ତେ ଅଶ୍ରୁଜଳେ
ସ୍ନାନ ହୋଇଗଲା ସିକ୍ତ ।
ବାହାରୁ ଦଉଡ଼ି     ନକେ ଯୁବରାଜ
ରାଜମନ୍ତ୍ରୀ ରାଜଗୁରୁ
ବିସ୍ମିତ ତଟସ୍ଥ     ହୋଇ ଠିଆ ହେଲେ
ଦେଖି ଏ ଘଟଣା ଦୂରୁଁ ।
ଉଗ୍ର ହୋଇଥିଲେ     ମାହେଶ୍ୱରୀ ସମ
ରାଣୀ ସଂହାରରୂପିଣୀ,
ନୀଳ ନଳିନାଭ     ନେତ୍ର ଦିଶୁଥିଲା
ରକ୍ତ କୋକନଦ ଜିଣି ।
ଅନ୍ତଶସ୍ତ୍ର ରେଖେ     ଥର ଯାଉଥିଲା
ଦେବୀଙ୍କ ଆରକ୍ତ ମୂର୍ତ୍ତି
ସ୍ଫୁରୁଥିଲା କିବା     ବିଦ୍ୟୁତ-ବଲ୍ଲୀରୁ
ଅସହ୍ୟ ଅନଳଦ୍ୟୁତି ।
ଶବାରୂଢ଼ା ଶ୍ୟାମା     ଚାମୁଣ୍ଡା ପ୍ରବଳ
ରକ୍ତବୀର୍ଯ୍ୟ ବିନାଶିନୀ—
ସମ ଶବ ପାଶେ     ରାଜୁଥିଲେ ରାଣୀ
ରକ୍ତାମ୍ବର ତେଜସ୍ୱିନୀ ।
ଖର୍ପର ପରାଏ     ସଦ୍ୟ ରକ୍ତବାହୀ
ମୁଷ୍ଟିରେ ବଦ୍ଧ କଟାର,
ସେ ପ୍ରଚଣ୍ଡ ମୂର୍ତ୍ତି     ଦେଖି ବାକ୍ୟ ସ୍ଫୂର୍ତ୍ତି
ନ ହେଲା ମୁଖୁଁ କାହାର ।
ପ୍ରିୟତମ ପୁତ୍ର     ପ୍ରତି ପଙ୍କଜାକ୍ଷୀ
ଲକ୍ଷ୍ୟ କରି ବାର ବାର,
ଘୋର ଘନ ଘୋଷେ     ଗମ୍ଭୀର ସ୍ୱରରେ
କହିଲେ "ଦେଖ କୁମାର !

ଯାହାର ଦୁରନ୍ତ ପ୍ରତାପ—ବହ୍ନିରେ
ଶୁଷ୍କ ଯାଉଥିଲା ଜଳ,
ନଶ୍ୱର ପ୍ରାଣୀଙ୍କ ପ୍ରାଣ ହେଉଥିଲା
ଯା ଜଗୀଷା—ଯଜ୍ଞେ ବଳ ।
ସର୍ବଦା ଧରଣୀ କାନ୍ଦୁଥିଲା ଦୁଃଖେ
ମହା ଉତ୍ପୀଡ଼ନେ ଯାର,
ଯାହାର ଅନନ୍ତ ତୃଷା ମେଣ୍ଟିବାକୁ
ଅନ୍ତ ନ ଥିଲା ସଂସାର ।
ଅସାର ଆମୋଦ ଅଭିଳାଷେ ଯେହୁ
ରଖିବାକୁ ନିଜ ଠେକ,
କଥାକେ କଥାକେ ନିର୍ଦ୍ଦୋଷୀ ଜନର
ମୋଡ଼ି ଦେଉଥିଲେ ବେକ ।
ପ୍ରଭୂତ ସମ୍ପଦ ଅହଙ୍କାର ମଦେ
ସର୍ବସ୍ୱ ମଣି ନିଜକୁ
ବୀଜନଙ୍କ ପରି ତୁଚ୍ଛ କରୁଥିଲେ
ଯେହୁ ନର ପରାଣକୁ ।
ତାଙ୍କ ଇଚ୍ଛାମତେ ମରିବା ଜୀଇବା
ପାଇଁକି ମନୁଷ୍ୟ ଗୋଷ୍ଠୀ
ବଳମଦେ ମାତ ଭାବୁଥିଲେ ଯେହୁ
ହୋଇଛନ୍ତି ବୋଲି ସୃଷ୍ଟି ।
ପତିପ୍ରାଣା ସତୀ— ସତୀତ୍ୱ-ରତ୍ନକୁ
ଯେ କ୍ରୂର କାମନାନଳେ,
ପିଶାଚ ପରିଏ ଭସ୍ମ କରୁଥିଲେ
ନିଷ୍ଠୁର ହୃଦୟେ ବଳେ ।
ଅସହ୍ୟ କଦର୍ଯ୍ୟ କଳୁଷ କର୍ଦ୍ଦମେ
ଲିପ୍ତ ସଦା ଯାର ଗାତ୍ର,
ଯୁବରାଜ ! ଆଗେ ଦେଖ ସେ ପ୍ରତାପ
ଏବେ ମାଂସପିଣ୍ଡ ମାତ୍ର !
ସ୍ୱାମୀହତ୍ୟା କଲି ବୋଲି ମୁଁ କଦାପି
ଲଭୁ ନାହିଁ ମନସ୍ତାପ,

ବଧିଛି ପ୍ରସନ୍ନ— ମନେ, ସେଥିପାଇଁ
ନାହିଁ ମୋ ଶୋକ ବିଳାପ ।
ଯେ ଘୋର ନରକେ ଯିବା ପାଇଁ ହେବ
ଏ ପାପ ପ୍ରାୟଶ୍ଚିତ୍ତରେ
ସେହୁ ନରକର କ୍ଲେଶକୁ ଆନନ୍ଦେ
ସହିବି ମୁଁ ଅକାତରେ ।
ଏତେ ସ୍ୱାର୍ଥପର ନୁହେ ମୁଁ ମୋହର
ହେବା ଲାଗି ସ୍ୱର୍ଗଗତି,
ଏଭଳି ଦୁରନ୍ତ ନର ରାକ୍ଷସକୁ
ଅରପିବ ସ୍ୱାମୀ-ଭକ୍ତି ।
ଏକମାତ୍ର ରମ୍ୟ ତଡ଼ିତର ରେଖା
ବଜ୍ରାନଳେ ହୋଇ ପୂର୍ଣ୍ଣ,
କରେ ଯଥା ଉଚ୍ଚ ପର୍ବତମାନଙ୍କ
ଶତ ଶତ ଶୃଙ୍ଗ ଚୂର୍ଣ୍ଣ ।
ତେସନ ଥାଆନ୍ତା ଯେବେ ଏ ନାରଙ୍କ
ପାଷାଣ୍ଡର ଶତ ପ୍ରାଣ,
ଅବଳା ହେଲେହେଁ ଧ୍ୱଂସିଥାନ୍ତି ମୁହିଁ
ନଷ୍ଟେ ତା ତୃଣ ସମାନ ।
ଏ ରାକ୍ଷସ ନିଜ ରୋପିତ ବୃକ୍ଷର
ଫଳଭୋଗ ଯୁକ୍ତ କରୁ,
ଅକଥ୍ୟ ଅଶ୍ରାବ୍ୟ ମହା ଘୋରତର
ପାତକ ଅଛି ଆଚରି ।
ଯୁବରାଜ, ଶୁଣି ବିସ୍ମିତ ନ ହୁଅ,
ଏ ପଶୁ ପ୍ରବୃତ୍ତି ଧରି
ତାର ସ୍ନେହମୟୀ ତନୟା ବାଳିକା
କୌଶଲ୍ୟାକୁ ଭ୍ରଷ୍ଟ କରି,
ଆଚରି ନିଷ୍ଠୁର ମନେ ସେ ପାଙ୍କର
ଦୂର ପ୍ରାୟଶ୍ଚିତ୍ତ ବ୍ରତ,
ଅନାହାରେ ଆହା ଅନାଥା ବାଳାକୁ
ଶିଶୁ ସହ କଲା ହତ ।

ତୁମ୍ଭର ସେ ପ୍ରାଣ— ଭଗିନୀ ମୋହର
ପ୍ରାଣର ସେହି ଦୁହିତା
ଦୁଃଖିନୀ କୌଶଲ୍ୟା କୁମାରୀ, ହା ହା ରେ
ନାହିଁତ ଆଉ ଜୀବିତା ।
କର୍ମାର୍ଜିତ ପାପ—. ଫଳ ଦେବାଲାଗି
ଭୂ-ଭାର ହରଣ ପାଇଁ,
ପ୍ରେରିଥିଲେ ମୋତେ ତା ମୃତ୍ୟୁରୂପିଣୀ
କରି ବ୍ରହ୍ମାଣ୍ଡର ସାଇଁ ।
ଏହି ମୁହୂର୍ତ୍ତିରେ ଅନ୍ୟ ଏକ କ୍ରୂର
ପାପ ସଙ୍କଳ୍ପ ମନାସି,
ଉତ୍ସବରେ ଯୋଗ ଦେବାକୁ ମନ୍ଦିର—
ଉଦ୍ୟାନକୁ ଥିଲି ଆସି ।
ଅନ୍ତଃପୁରେ ଦେଖ ହେମପୁର-ଜେମା
ହୋଇ କପର ଅନାସ୍ଥା
ଭୋଗୁଛନ୍ତି ଘୋର ମନକଷ୍ଟେ ଆହା
କି ଭୀଷଣ ଦୁରବସ୍ଥା !
ମୋହର ପ୍ରାଣର ବନ୍ଧୁ ସେ ଦୁଃଖିନୀ
ତୁମ୍ଭଙ୍କୁ ହୃଦୟ ଦେଇ,
ଦେଖୁଛ କି କଷ୍ଟ ପାଉଛନ୍ତି, ଭୟେ
ଆହା ନ ବୋଲନ୍ତି କେହି ।
ଏ ମରି ନଥିଲେ ଯେଉଁ ଦଶା ହୋଇ—
ଥିଲା ଭଗ୍ନୀ କୌଶଲ୍ୟାର,
ହୋଇଥାନ୍ତା ସେହି ହୀନଦଶା ହେମ—
ପୁର-ରାଜତନୟାର ।
ବଧି ନାହିଁ ତୁମ୍ଭ ପିତାଙ୍କୁ କେବଳ
ମୁହିଁ ମାତ୍ର ଉପଲକ୍ଷ,
ନିଜେ ସୁଦର୍ଶନ ସିନା ଏ ପାପର
ଫଳ ଦେବାପାଇଁ ଦକ୍ଷ ।”
ଏହା କହୁଁ କହୁଁ ସେ କଣ୍ଠାରୁ ଏକ
ଜ୍ୟୋତି ଉଠିଣ ଗଗନେ

ଦେଉଳ ଅଙ୍ଗରୁ ଚାଲିଯାଇ ନଭେ
ହେଲ ଅନ୍ତର୍ହିତ କ୍ଷଣେ ।
ଅନ୍ତଃପୁର ମୁଖେ ଶୁଭିଲ ଏକାଳେ
କୋଳାହଳ ରୋଦନର,
ଶୁଣି ଦଉଡ଼ିଲେ ଚହଲେ ସେ ଦଗେ
ଯେତେ ସମବେତ ନର ।
ଦେଖିଲେ ଚକିତେ ଅନ୍ନପୂର୍ଣ୍ଣା କେମା
ହେଉଛନ୍ତ ଆଥୈ ଘାରୁ,
ପ୍ରାଣ ନାଶକାରୀ ମହା ଭୟଙ୍କର
ବିଷ ଭକ୍ଷି ସୁକୁମାରୀ ।
ବିଷମ ବିଷର ଜ୍ୱାଳାରେ ଚନ୍ଦ୍ରମା
ମୁଖ ଦିଶୁଅଛି କଳା,
ସଜ-ସରସିଜ— ଦଳେ କି ହୋଇଛି
ଇନ୍ଦୀବର-ରସ ବୋଳା !
କୁମାରଙ୍କୁ ଦେଖି କହିଲେ କୁମାରୀ,
"ଆସ ଆସ ପ୍ରାଣଧନ,
ଅନ୍ତିମ କାଳରେ ମୋ ଶିରେ ତୁମ୍ଭର
ସଦୟେ ଦିଅ ଚରଣ ।
ଦେଖ ଦେଖ ସନ୍ଧ୍ୟା— ତାରକୁ ପଶ୍ଚିମେ
ସନ୍ଧ୍ୟା ବୁଡ଼ଇ ଯେସନ,
ତେସନ ତୁମ୍ଭଙ୍କୁ ଚାହିଁ ଚାହିଁ ମୋର
ଅନ୍ତର ହେଉ ଜୀବନ ।
ଆଉ କି କହିବି, ମନେ ରଖିଥିବ,
ଚାଲିଲି ପ୍ରେତ ବସନ୍ତ,
ମାଗୁଣୀ ଏତିକି ଯୁଗେ ଯୁଗେ ମିଳୁ
ତୁମ୍ଭପର ପ୍ରାଣପତି ।"
ଏହା କହୁଁ କହୁଁ ହୋଇଲା ବାହାର
ପ୍ରାଣବାୟୁ ବନିତାର,
ମୃଦୁନାଦୀ ବୀଣା ନୀରବ ହେଲାକି
ଛିଣ୍ଡିବାରୁ ତାର ତାର !

ବିଷମ ଶୋକର ଆବେଗେ ଅତ୍ୟନ୍ତ
ଅଧୀର ହୋଇ କୁମାର,
ଆଦେଶ ବହିଲେ ସଚବେ ହେବାକୁ
ବେନ ପିଣ୍ଡର ସତ୍କାର ।
ଅତର ମଖାଇ ମଣ୍ଡି ନାନାମତେ
ସୁରଭି ପୁଷ୍ପ ଚନ୍ଦନେ,
ଗୋଲାପ ଜଳରେ ପଖାଳିଲେ ମୃତ-
ପିଣ୍ଡ ପାରିଷଦଗଣେ ।
ବହୁମୂଲ୍ୟ ଦ୍ରବ୍ୟ ଭୂଷଣରେ ଭୂଷି
ପ୍ରାଣଶୂନ୍ୟ ଅପଘନ,
ପିନ୍ଧାଇଲେ ନେଇ ବେନିଙ୍କ ତନୁରେ
ଉତ୍କୃଷ୍ଟ ପଟ୍ଟ ବସନ ।
ଏ ଭାବେ ଯୁଗଳ ଶବକୁ ସଧୀରେ
ସ୍ୱର୍ଣ୍ଣ ଦୋଳାସନେ ଭରି
ଚଳିଲେ କରଣ ସାମନ୍ତେ ଅଧୀରେ
ତାହା ସ୍କନ୍ଧରେ ଧରି ।
ନଗ୍ନ ପଦବ୍ରଜେ ନାଗରିକ ଦଳ
କରି ଉଚ୍ଚେ ହରିଧ୍ୱନି,
ରଜତ କଉଡ଼ି ଲାଜାଞ୍ଜଳି ଯୋଗେ
ଧବଳ କଲେ ସରଣି ।
ସଙ୍କୀର୍ତ୍ତନ ସହ ବାଜିଲା ଉଚ୍ଚରେ
ଶୋକବାଦ୍ୟ ଘନ ଘନ,
ଚଳିଲେ ସ୍ୱଜନେ ସଙ୍ଗେ ସଙ୍ଗେ ଘେନି
ଅନ୍ତ୍ୟେଷ୍ଟି—ଉପକରଣ ।
ଯଥା ସମୟରେ ସ୍ୱର୍ଗଦ୍ୱାରେ ଆସି
ଶୋକେ ପାରିଷଦ ଦଳ,
ସୁଗନ୍ଧ ଚନ୍ଦନ— କାଷ୍ଠେ ବିଧିମତେ
ସାଜିଲେ ଚିତାଯୁଗଳ ।
ତହିଁପରେ ବେନି ଶବକୁ କରଣ-
ସାମନ୍ତମାନେ ଶୁଆଇ,

ତିନ ବାର 'ହରି- ବୋଲ୍' ଡାକ ଦେଲେ
ବେଣଙ୍କ ସଦ୍‌ଗତି ପାଇଁ ।
ଶେଷେ ଉଷ୍ଣ ହେଲେ ସଜ୍ଜିତ ଚିତାକୁ
ଶୋକାର୍ତ୍ତ ଜନମଣ୍ଡଳ,
କେହି ନ ଜାଣିଲେ ପାଷଣ୍ଡୀ ସେ ସ୍ଥାନେ
ଛଦ୍ମ ବେଶେ ଥିଲେ ବୋଲି ।
ଗଣେଶ୍ବର-ହୃଦେ ଚରମ ଆବେଗେ
ବସାଇ ତୀକ୍ଷ୍ଣ କଟାର,
ତନୁଜା-ଦ୍ରୋହୀର ପକ୍ଷେ ଜନନୀର
ପ୍ରତିହିଂସା ବ୍ରତ ସାର ।
ଧର୍ମପ୍ରାଣା ନାରୀ ପାପ ପ୍ରତିକୂଳେ
ଦେଇ ଆତ୍ମବଳିଦାନ ।
ପିତୃହନ୍ତୀ ପୁତ୍ରା ହୁଅନ୍ତି ଏକଥା
ଜଗତେ କରି ପ୍ରମାଣ,
ଦର୍ଶକମାନଙ୍କୁ ଚମକାଇ ମହା—
ପ୍ରବଳ ପ୍ରଜ୍ଜଳନ୍ତ ଗିରେ,
ନିଜ ପୂର୍ବ ବେଶ ଯଥାବିଧି କରି
ପରିବର୍ତ୍ତିତ ଅଚିରେ ।
ସାଧିବା ପାଇଁକି ସତୀର ପବିତ୍ର
କର୍ତ୍ତବ୍ୟ କର୍ମ ବସକା,
ଚିତାପାର୍ଶ୍ୱେ ରହି ନିରୁଦ୍‌ବେଗେ ଶେଷ
ମୁହୂର୍ତ୍ତକୁ ଥିଲେ ଠାକ ।
ସର୍ବ ଅସାକ୍ଷାତେ ଆସିଥିଲେ ରାଣୀ,
କେବଳ ପ୍ରିୟ ସିଂହାସୀ,
ଅନୁସର ପଛେ ମାର୍ଗେ କୂପେ ଛନ୍ଦ
ହୋଇଲା ଅତଳସ୍ପର୍ଶୀ ।
ଠିଆ ହୋଇ ଦମ୍ଭେ ନରେନ୍ଦ୍ର ଶବକୁ
ଚୁମ୍ବୁଥିଲେ ବାରବାର,
ଏ ମହାଯାତ୍ରାର ରଙ୍ଗରସେ ସିନା
କରିବେ ସେ ଅଭିସାର ।

ବଢ଼ ଦେଉଳରୁ ଆସୀତ ପବନ
ଅନଳ ଏକାଳେ ଘେନ
ଘୃତସ୍ନାତ ସେହ୍ନ ଚତାରେ ଅନଳ
ନହିଲେ କିରଣ ଶ୍ରେଣୀ ।
ଏକାଳେ ଶୋକାର୍ତ୍ତି ଜନତାରେ ଜନ୍ମ
ମହାଘୋର ନୀରବତା
ସ୍ମରଣ କରାଇ ଦେଲା କ୍ଷଣକାଳ ପାଇଁ
ହୃଦେ ଭବ ଭଙ୍ଗୁରତା ।
ସହସା ଆକାଶ ଆଲୋକିତ ହେଲା
ସ୍ୱର୍ଗୀୟ ପ୍ରଭା ଗୌରବେ,
ଆମୋଦିତ ହେଲା ଚୌଦିଗ ସ୍ୱର୍ଗୀୟ
କୁସୁମରାଜ ସୌରଭେ,
ବହିଲା ସ୍ୱର୍ଣ୍ଣଦୀ— ଶୀକର-ଶୀତଳ
ମୃଦୁଳ ବାୟୁ-ହିଲ୍ଲୋଳ,
ସ୍ୱର୍ଗୀୟ ଆଲୋକେ କ୍ଷଣେ ଦଶଦିଗ
ହୋଇଗଲା ସମୁଜ୍ଜ୍ୱଳ ।
ମହାଦେବୀ ସହ ଦେଖିଲେ ଉପରେ
ସର୍ବେ ଚମକି ଚକିତେ,
ଏକ ଦିବ୍ୟମୂର୍ତ୍ତି ପୁରୁଷଙ୍କ ମୂର୍ତ୍ତି
ଉଦେ ତହିଁ ଆଚମ୍ବିତେ ।
ଭକ୍ତବତ୍ସଳ ଚିଦାନନ୍ଦମୟ
ସର୍ବ ସମଦର ସଦ୍
ଶ୍ରୀବତ୍ସବକ୍ଷାଶ୍ରୀ ଚତୁର୍ଭୁଜେ ରାଜେ
ଶଙ୍ଖ ଚକ୍ର ଗଦା ପଦ୍ମ ।
ନବ ଜଳଧର ସମାନ ବରଣ
ତମାଳ ଶ୍ୟାମ ସୁନ୍ଦର,
ଅପରାଜିତାର ନୀଳିମାରେ ବୋଳା
ହେଲା କିବା ଧରାଧର !
ପୀତାମ୍ବର ଦେହେ ଜଡ଼ିଥିଲା ଘନ-
କୋଳରେ ବିଜୁଳି ପରି,

ଯମୁନା-ଜଳରେ ଦିଶଇ ଯେମନ୍ତ
ଭାଗୀରଥୀର ଲହରୀ ।
ଅବା ମଣିଶୈଳେ ଯଥା ସେହି ସ୍ୱଚ୍ଛ—
ତନୟାର ନୀରବେଣୀ,
କିବା ସେ ବେଣୀରେ ଯେସନ କେଶର—
ବୋଳା ହଂସାଳୀ ଶ୍ରେଣୀ ।
ରବିଚ୍ଛବି ସମ ରାଜୁଥିଲା କର୍ଣ୍ଣ—
ଯୁଗେ ମକରକୁଣ୍ଡଳ,
ଦାଉ ଦାଉ ଜଳୁ— ଥିଲା ହୃଦୟରେ
କୌସ୍ତୁଭମାଳ ଉଜ୍ଜ୍ୱଳ ।
ଷରିଧି ଷରିଏ କରେ ଶୋଭୁଥିଲା
ଜ୍ୟୋତିର୍ମୟ ସୁଦର୍ଶନ
ଅବନୀ-ଅନର୍ଥ— କାରୀ ବଳଦୃପ୍ତ
ଦନୁଜ-କୁଳ-ଧର୍ଷଣ ।
ଦୋହୁଥିଲା ନଭେ ରତ୍ନସିଂହାସନ
ସ୍ୱର୍ଣ୍ଣଦୀ ଲହରୀ ପରି,
ବାମେ ବସିଥିଲେ କମଳା କମଳ-
ମୁଖୀ ସର୍ବାଙ୍ଗସୁନ୍ଦରୀ ।
କହିଲେ ଶ୍ରୀସେନ— ନାଥ, ''ମନ ଦେଇ
ଶୁଣ ଆଶ୍ଚର୍ଯ୍ୟ ବୃତ୍ତାନ୍ତ,
ଯହିଁରୁ ସକଳେ ସହଜେ ହୋଇବ
ଏ ଗୁପ୍ତ ରହସ୍ୟ ଜ୍ଞାତ ।
ଅଜ୍ଞେୟ ଅଦୃଷ୍ଟ ଦେବମାୟା ତହିଁ
ସେମାନେ କୁଅନ୍ତି ଧନ୍ଦ,
ସେ ମାୟାଜାଲରେ କ୍ଷୁଦ୍ର ନର ମନ
କିପାଇଁ ନୋହିବ ଛନ୍ଦ ?
ଦିଗଜନ୍ତ ବଢ଼— ଦେଉଳର ବେଢ଼ା
ଭିତରେ ବେଢ଼ା କାଳିକା ※

※ ପୁରୀ ଦେଉଳବେଢ଼ା ଭିତରେ ବେଢ଼ାକାଳିକାଙ୍କ ମନ୍ଦିର ଦ୍ୱାର ଯଦ୍ୟାପି ବନ୍ଦହୋଇ ଦେଖାଯାଏ ।

ଗୁଞ୍ଜାମାଳ ପରି ବକ୍ଷରେ ଲମ୍ବିତ
ମାନବ ମୁଣ୍ଡମାଳିକା ।
ରକ୍ତେ ପୂର୍ଣ୍ଣ ତାଙ୍କ ଉଦର-କାନ୍ତାର
ଦାବାନଳ-ଶିଖା ପ୍ରାୟେ,
ଲହ ଲହ ଘୋର କରାଳ ରସନା
ସଦାବେଳେ ଦୋହୁଥାଏ ।
ଦଳାଞ୍ଜନ ବୋଲା ହୋଇଥିଲା ସମ
ଦିଶଇ ଦେହର କାନ୍ତି,
ଶୁକ୍ଳପକ୍ଷ ଭୟେ ପଳାଇ ତାଙ୍କୁ
ଲୁଚଛନ୍ତି ଯେତେ ଗ୍ରନ୍ଥି ।
ବଳି-ଶୋଣିତରେ ପୂର୍ଣ୍ଣ ହୋଇଥାଏ
ଦେବୀଙ୍କ କର-ଖର୍ପର,
ସେ ରୁଧିର ପାନେ ବଦନ ଦିଶଇ
ଖିପଣୁ ଖିପଣତର ।
ମହାଭୟଙ୍କରୀ ଶବାରୂଢ଼ା କାଳୀ
ପରହିଂସା ପରାୟଣା,
ନିର୍ଜନେ ପାଇଲେ ମାନବେ ଲୋକଙ୍କୁ
କରୁଥିଲେ ସେ ପାରଣା ।
ତାହାଙ୍କ ଭୟରେ ଏକା ହୋଇ କେହି
ବଡ଼ ଦେଉଳକୁ ଆଉ
ଗଲେ ନାହିଁ, ମହା— ବିପଦ ଘଟିଲା
ଦିନେ ସୁଦ୍ଧା ଯାଉ ଯାଉ ।
ସଦା ଅବାରିତ ଭକ୍ତ-ଗ୍ରାହକଙ୍କୁ
ଦେଉଳର ଦ୍ୱାର ଯିନା
ଭକ୍ତି-ମୂଲ୍ୟ ଦେଇ ତହିଁରେ ହୁଅଇ
ଧର୍ମର ସମ୍ପଦ କିଣା
ଏମନ୍ତ ପୀଡ଼ନେ ସେ ପୁଣ୍ୟାଶ୍ରମରେ
ଉଠିବାରୁ ହାହାକାର,
ମୋର ଇଚ୍ଛାମତେ ଗଙ୍ଗେଶ୍ୱର ରୁଦ୍ଧ
କଲେ ତାଙ୍କ ପୁରଦ୍ୱାର ।

ଉଠିଗଲା ପୂଜା ନଜଳିଲା ସନ୍ଧ୍ୟା—
ଆଳୟର ଦୀପାବଳି,
ଥରେ ଥରେ ବେଢ଼ା ବାହାରୁ କେବଳ
ଦିଆହେଲା ଛଗବଳି ।
ଦେବତା-ସମାଜେ ଧିକ୍କୃତ ହୋଇ ସେ
ନୃପଙ୍କୁ ବିଷମ ଚଳି,
ଘୃତାହୁତପୂର୍ଣ୍ଣ ହୋମକୁଣ୍ଡ-ବହ୍ନି
ପରାଏ ଉଠିଲେ ଜଳି ।
ନିଜ ଦୋଷ ଦେଖି କିଏ ବା ଜଗତେ
କରେ ତାହା ସଂଶୋଧନ,
ହାରିଲେ ଅଧିକ ଦ୍ୱେଷରେ ଜଳନ୍ତି
ସିନା ବଡ଼ଲୋକ ଗଣ ।
ଛଳେ ନ ବସୁର ଚଣ୍ଡିକା ସ୍ୱକୃତ
କ୍ରୂର ଚରିତକୁ ଥରେ
ଅପମାନ ଲଭି ଅଧଣସ୍ଥ ରୁଷ୍ଟ
ହେଲେ ଉତ୍କଳେଶ ପରେ ।
ଶୌର୍ଯ୍ୟେ ପରାକ୍ରମେ ସମୁଜ୍ଜ୍ୱଳ ନୃପ—
କୀର୍ତ୍ତିରେ କଳଙ୍କ ଜାଳି,
ଚୋଳ ଦେବାଳଙ୍ଗେ ଅନୁକ୍ଷଣ ମନେ
ପାଞ୍ଚିଲେ ସେ ଦନ୍ତୁ କାଳୀ ।
କେମନ୍ତେ କଳୁଷ— କଳଙ୍କେ ବୁଡ଼ାଇ
କରିବେ ତା ବଂଶ ଧ୍ୱଂସ,
ବିଟମଙ୍ଗଳାଙ୍କ ସଙ୍ଗ ସଦା ବସି
କଲେ ଏହି ପରାମର୍ଶ ।
ମାତୃହୀନା ବାଳୀ ଆଦରେ ଲଳିତା
ସୁକୁମାରୀ ଅନ୍ନପୂର୍ଣ୍ଣା
ବାଲ୍ୟ ଅତିକ୍ରମି ସ୍ୱର୍ଣ୍ଣ କରିବାରୁ
ଯୌବନ ସୀମା ଅଧୁନା,
ପରିଣୟଯୋଗ୍ୟ ବୟଃ ଦେଖି ତାର
ରତ୍ନପୁର ଅଧୀଶ୍ୱର

ଯୋଗ୍ୟପାତ୍ରହସ୍ତେ    ସମର୍ପିବା ପାଇଁ
ଆଚରିଲେ ସ୍ୱୟମ୍ବର ।
ସେ କାଳେ ସମସ୍ତ    ଉତ୍କଳଦେଶର
ଦିଗ୍‌ବିଜୟୀ କରି ଶେଷ
ଦାସପୁର ଦୁର୍ଗ    ଅବରୋଧେ ବ୍ୟସ୍ତ
ଥିଲେ ବିଜୟୀ ନରେଶ ।
ଥିବାରୁ ତା ସଙ୍ଗ    ବିଜିତ ଯାବତ
ସାମନ୍ତ ନୃପକୁମାର
ନିମନ୍ତ୍ରଣ ପତ୍ର    ଘେନି ରଘୁପୁରୁ
ଗଲେ ତହିଁ ଏକ ଚର ।
ନୃପ ପ୍ରତି ପ୍ରତି—    ଫଳ ଦେବାର ଏ
ଉତ୍ତମ ସୁଯୋଗ ବୁଝି
କଳନ୍ତର ସଙ୍ଗ    ଯେତେ ଅପମାନ
ଖ୍ୱଧଲେ ସେ ଦେବେ ଯୁଝି ।
ଭଲ କାର୍ଯ୍ୟେ ସୁଦ୍ଧା    ଦୁଷ୍ଟ ତାର ମନ୍ଦ
ଫନ୍ଦ କରେ ଉଦ୍ଭାବନ,
ଉତ୍ତମ ଶରୀର    ପାଇଲେ ସେଥିରେ
ମକ୍ଷିକା ଖୋଜଇ ବ୍ରଣ ।
ଭୟଙ୍କରୀ ମାର୍ଗେ    କେଶରୀ ରୂପରେ
ବାଗୁରାବଦ୍ଧ ମୃଗଟିକୁ
ଜାଣି ଖରବେଗେ    ସ୍ୱକାର୍ଯ୍ୟ ସାଧନେ
ଧାଇଁଲେ ଦାସ ପୁରୀକୁ ।
ସ୍ୱରରୂପ ଧରି    ଉପସ୍ଥିତ ହେଲେ
ଗଙ୍ଗେଶ୍ୱର ଭୂପଠାରେ,
ମାୟାମୃଗରୂପୀ    ମାରୀଚ ଯେସନ
ଶ୍ରୀରାମ ଆଗେ କେତାରେ ।
ରଘୁପୁରେଶଙ୍କ    ପ୍ରଭୁତ୍ୱ ଗାରିମା
ବଖାଣି ବହୁତମତେ
ତୁଚ୍ଛିଲେ ଉତ୍କଳ—    ଗୌରବ ସମ୍ପଦ—
ଶିରୀ ନରେଶ ଅଗ୍ରତେ ।

୧ ଯେ କ୍ଷତ୍ରିୟକୁଳ    କଥାରେ କଥାରେ
ନଅନ୍ତି ଦଅନ୍ତି ମଥା,
ସେ କାହିଁ ରହିବେ    ତୁନ ହୋଇ ଶୁଣି
ନଜର ଅବଜ୍ଞା କଥା ।
କେ ଅଛି କ୍ଷତ୍ରିୟ—    ସମାଜେ ଏମନ୍ତ
ପ୍ରାଣରଙ୍କ କୁଳାଙ୍ଗାର,
ଶତ୍ରୁର ଆହ୍ୱାନ    ଶୁଣି ଯେ ନୋହିବ
ରଣସ୍ଥଳୀକୁ ବାହାର ।
ଦ୍ୱୈପାୟନ ହ୍ରଦେ    ଗଙ୍ଗାର ସଲିଳ
ଗର୍ଭେ କୁରୁକୁଳମଣି,
ରଣେ ହାରିଲେହେଁ    ଧାଇଁଲେ ସମର
ଧିକ୍କାର ଶବ୍ଦ ଆକର୍ଣ୍ଣି ।
ମୋର ସଦା ଭକ୍ତ    ଗଙ୍ଗେଶ୍ୱର ଅଟେ
ବୀରେନ୍ଦ୍ରକୁଳ ମଣ୍ଡଳ,
ଏମନ୍ତ ଅଶିଷ୍ଟ    ବ୍ୟବହାର ଦେଖି
କ୍ରୋଧରେ ଉଠିଲା ଜଳ ।
ତୁଚ୍ଛା ଅପମାନ    ସହିବ ଏମନ୍ତ
କଦାପି ନୁହେଁ ସେ ଜଡ଼,
ଉଠି ସେହିକ୍ଷଣି    ଉଠାଇ ଖଣ୍ଡଣି
ଗଲା ରଙ୍ଗପୁର ଗଡ଼ ।
ଦୂତକୁ ପ୍ରଶସ୍ତ    ଦେବା ସବୁକାଳେ
ରାଜନୀତି ପ୍ରଚଳିତ,
ସେହି ଦୋଷ ଶେଷେ    ହୁଏ ଅସମ୍ଭାଳ
ଦନ୍ତ ଫନ୍ଦ ହୋଇ ଠୁଳ ।
ପ୍ରଶସ୍ତ ପ୍ରଦାନ    ନ ଥିଲେ ସଂଯୁକ୍ତା—
କଥାରେ ଦିଲ୍ଲୀ ରାଜନ,
ଭଟମେ ଆର୍ଯ୍ୟଙ୍କୁ    ଜିଣି ଏ ଭାରତେ
ଆସି ନ ଥାନ୍ତା ଯବନ ।
ହୋଇଥାନ୍ତା କିବା    ପୁଣ୍ୟଧାମ ଆର୍ଯ୍ୟା—
ବର୍ତ୍ତିର ଏ ରୂପାନ୍ତର,

ଅର୍ଦ୍ଧପୀଠରେ କି ?    ଗଢ଼ା ହୋଇଥାନ୍ତା
ଯବନଙ୍କର କବର !
ସବୁ ସମୟରେ    କୂଟ ରାଜନୀତି
ବୁଝିବା ବଡ଼ କଠିନ,
ଅବମିଳ ହେମ—    ପୁର ଗଙ୍ଗେଶ୍ୱର
ହୋଇ ସେ ମନ୍ତ୍ର ଅଧୀନ ।
ନଜର ସଙ୍କଳ୍ପ    ସମ୍ପଦ ଚନ୍ଦ୍ରିକା
ଏରୂପେ ସେନାନୀବେଶେ,
ଫେରିଗଲେ ରତ୍ନ—    ପୁରେ ତାଙ୍କ ଆଗୁଁ
ପୁଙ୍ଖ ବାର୍ତ୍ତାବହ-ବେଶେ ।
ରତ୍ନପୁରେଶଙ୍କୁ    ଉତ୍କଳ ପଣ୍ଡିତ
ଦେଇ ଓଲଟା ସନ୍ଦେଶ,
ଅଚିରେ ସମର    ଆୟୋଜନ ପାଇଁ
ବତଇଲେ ଉପଦେଶ ।
ବହୁ ବର୍ଷଯାଏ    ଲାଗିଲା ସମର
ସେନାକୁଳ ପ୍ରାଣଖଣ୍ଡି,
ଘୋର ଅଟ୍ଟହାସ୍ୟେ    ଆନନ୍ଦେ ରୁଧିର
ପାନ କଲେ ରଣଚଣ୍ଡୀ ।
ଏହି ଅବସରେ    କୌଶଲ୍ୟାର ମିଥ୍ୟା
ଗୁପ୍ତ ପ୍ରେମ ସମାଚାର,
ନାନା ବେଶ ଧରି    ନାନାରୂପେ ନାନା
ସ୍ଥାନେ ସେ କଲେ ପ୍ରଚାର ।
ଜେମା ସଖୀ ବେଶେ    ଗୁପ୍ତ ପ୍ରେମ ପୁଞ୍ଜି
ଅନ୍ତଃସତ୍ତ୍ୱା କଥାମାନ
କହିବାରୁ ଭୁଲେ    କଳଙ୍କ ଭୟରେ
ତ୍ୟଜିଗଲା ନୃପସ୍ଥାନ ।
ଲୋହିବାକୁ ଏହି    ଦାରୁଣ କଳଙ୍କ
ଦେଶ ବିଦେଶେ ପ୍ରଚାର,
ଜେମା ବାସ ପାଇଁ    ପ୍ରଚ୍ଛନ୍ନେ ନିଷ୍ଠୁର
ଭଲ୍ଲ ସେ ନର୍କନାଗାର ।

ଏ କହୁଛ ଆତ୍ମା — ସେ କାଳେ ଲଭିଲ
ବାଳାମଣି ଯେତେ କ୍ଳେଶ,
ଭକ୍ତି ନଥିଲେ ମୁଁ ବୈଷ୍ଣବୀ ଶକ୍ତିରେ
ପ୍ରାଣ ହୋଇଥାନ୍ତା ଶେଷ ।
ଶାଳୀଙ୍କ ତା ପ୍ରତି ମନ୍ଦଭାବ ଦେଖି
ନେଇ ତନ୍ତୁଁ ମାୟାବଳେ,
ଛଦ୍ମବେଶେ ତାକୁ ରଖିଲ ଶୁଶ୍ରୂଷା—
କାରଣୀ କୁମାରୀଦଳେ ।
ନାନାଭ କୌଶଳ ପଣ୍ଡ ଦେଖି ଚଣ୍ଡୀ
ଏକ ଯୋଗିନୀଙ୍କ ବଶ
ମାୟାଗର୍ଭ ରଚ କେମାରୂପେ ସେହୁ
ସଦନରେ ଦେଲେ ଭର !
ହୋଇଥିଲ ସ୍ତବ ସ୍ତବ ସେ କାଳରେ
ନୃପ ବାତୁଳ ପ୍ରକାର,
କଳଙ୍କରେ ବୁଡ଼ି ଛାଡ଼ିଥିଲ ଧନ
ପ୍ରାଣ ପ୍ରତି ମାୟା ତାର ।
କେ ଅଛି ଜଗତେ ସର୍ବସ୍ୱ ନ ଦେବ
କୁଳର ଅଖ୍ୟାତି ପାଇଁ,
କଳଙ୍କ ଭୟରେ ସୀତା ସମ ସ୍ୱର୍ଣ୍ଣା
ଛାଡ଼ିଦେଲେ ରଘୁସାଇଁ ।
ସେ କଳଙ୍କ ଲାଗି ଗୌତମ-ପ୍ରେୟସୀ
ଅହଲ୍ୟା ହେଲେ ପାଷାଣ,
ଛିଣ୍ଡାଇଲ ମାତା— ମୁଣ୍ଡକୁ ସେ ଲାଗି
ପରଶୁରାମଙ୍କ ବାଣ ।
ଛଦ୍ମ କପ୍ରବେଶେ ବ୍ୟବସ୍ଥା ଭିତର
କଲେ ଯା ଚଣ୍ଡୀ ନିର୍ଣ୍ଣୟ,
ଦୁଃଖେ ଅନିଚ୍ଛାରେ ଆଚରିଲ ଭୂପ
ପୂର୍ବ ବର୍ଣ୍ଣିତ ବିଷୟ ।
ଏଣେ କେମାବେଶେ ପ୍ରବେଶି ବାଳକା
ମହର୍ଷି ! ତୁମ୍ଭର ଠାରେ

ସେ ଘନେ କହିଲେ ଏ ମିଥ୍ୟା ଚରିତ
ଯେତେକ ବାଲ୍ୟକାଳରେ ।
କୌଶଲ୍ୟା ଉପରେ କାନ୍ଦି କାନ୍ଦି ଦୁଃଖ
ପିତାର କୁତ୍ସିତ କଥା,
ଘୃଣା ଦୁଃଖେ କୋଧେ ଯା ଶୁଣି ତୁମ୍ଭର
ଢଳି ଯାଉଥିଲା ମଥା ।
ପାଞ୍ଚ ବର୍ଷ ପରେ ଶେଷ ହେଲା ଏହି
ଭୀଷଣ ସମରସଜ୍ଜା,
ରତ୍ନପୁରଶିରେ ଉଠିଲା ବିଜୟୀ
ଗଙ୍ଗେଶ୍ୱର—ଜୟଧ୍ୱଜା ।
ଉପନୀତ ହେଲା ଅନ୍ନପୂର୍ଣ୍ଣା ଆସି
ଆଜି ଏ ରାଜନଗରେ,
ସେ ଦୁଃଖଚନ୍ଦନକୁ ବିକୃତ ଆକାରେ
ଚିହ୍ନିଲା କରୁଣସ୍ୱରେ ।
ଶୁଣିଥିଲା ବାଳା ଚଣ୍ଡୀଙ୍କ ଭଚତ
ଯେ ସବୁ ମିଥ୍ୟା ଚରିତ,
ସରଳ ମନରେ ନିବେଦିଲା ତାହା
ନୃପତି ଅନ୍ତରଞ୍ଜିତ ।
ତୁମ୍ଭର ହୃଦୟେ ଜଳୁଥିଲା ଯେଉଁ
କୌଶଲ୍ୟା ଶତ୍ରୁ ଅନଳ,
ସେ ଅନଳେ ହେଲା ଅନ୍ନପୂର୍ଣ୍ଣା କଥା
ଘୃତ ଆହୁତି କେବଳ ।
ତଥିପରେ ପୁଣି ମାହେଶ୍ୱରୀ ମାୟା
ବଳେ ସେ ଚଣ୍ଡୀ ଅଚିରେ,
ଫହାରଣୀ ମୂର୍ତ୍ତି ଭୂପେ ଅଧିଷ୍ଠିତ
ହୋଇଲେ ତୁମ୍ଭ ଶରୀରେ ।
କଳଙ୍କିତ କରି ପତ୍ନୀର ହସ୍ତରେ
ଗଙ୍ଗେଶ୍ୱରକୁ ମରାଇ,
ଅନ୍ତର୍ହିତ ହୋଇ ଗଲେଣି ଚଣ୍ଡିକା
ସ୍ୱପ୍ନଚରିତ୍ରହଂସା ପୁରାଇ ।

ମର ନାହିଁ କେମା, ଯେମନ୍ତ ସୁଖରେ
ଥିଲ ତା ଜନନୀ ବାସେ,
ତହୁଁ ଶତ ଗୁଣେ ଆନନ୍ଦେ ରହୁଛ
ସେବାକାରିଣୀଙ୍କ ପାଶେ ।
ସର୍ବଦା କରୁଣା ବିଗଳନ୍ତି ତହିଁ
ପରଦୁଃଖରେ କାତର,
ପ୍ରାଣୀମାନଙ୍କର ଯାତନାରେ ଅଶ୍ରୁ—
ଧାରା ବହେ ନିରନ୍ତର ।
ପୀଡ଼ିତ ଅନାଥ ରୋଗୀଙ୍କ ମୁଖରେ
ଅନ୍ନ ଜଳ କର ଦାନ
ସେବା ଶୁଶ୍ରୂଷାରେ ବଞ୍ଚାଇବା ପାଇଁ
ଉତ୍ସର୍ଗିତ ତାଙ୍କ ପ୍ରାଣ ।
ତାଙ୍କ ବିନା ଯୁଦ୍ଧେ ଆହତ ସୈନିକ—
ଯାତନା ହରିବ କିଏ ?
ଘରେ ଘରେ ଯାଇ ଖୋଜିଲେ ସଂସାରେ
ମିଳିବେ ନାହିଁ ଗୋଟିଏ ।
ସେହି ପୁଣ୍ୟ ପୁରେ ପୁଣ୍ୟ କାର୍ଯ୍ୟେ ରତା
ଥିଲ ତୁମ୍ଭ କେମାମଣୀ,
ଆଣି ଦେଇଅଛି ଧେନ ଏବେ ତାକୁ
ସାଦରେ ନୃପ-ଘରଣୀ !
ସ୍ୱାମୀହନ୍ତୀ ବୋଲି ମନରେ ନ ଭାବ
ଏ ମୂର୍ତ୍ତି ଅଟେ ଛଦ୍ମର,
ମାୟାଦଳେ ପୁରେ ଶୋଇଥିଲେ ଦେଖ
ଆସୁଛନ୍ତି ତୁମ୍ଭ ବର ।
କୁଶଳେ ଅଛନ୍ତି ତୁମ୍ଭ ପୁଜା ଘରେ
ଅନ୍ନପୂର୍ଣ୍ଣା କେମାମଣୀ
ହେମପୁର ନୃପ— ନୟନ ଶଙ୍ଖାଳ
ପ୍ରଫୁଲ୍ଲକଞ୍ଜବଦନୀ ।
କାଳିକା କୂଠରେ ଅନାୟୁଦ୍ଧେ ହୋଇ
ନିଜ ନିଜ ସ୍ଥାନଭ୍ରଷ୍ଟ

ବନ୍ଧୁ ବର୍ଷ ହେଲା ଅହା ଲଳନାଙ୍କେ,
ଲଭିଅଛ କେତେ କଷ୍ଟ !
ସ୍ୱପନ ପରାଏ ପାଶୋର ସେ କଥା
ଯଶସ୍ୱୀ ସ୍ୱାମୀ ସହିତ
ପୁତ୍ର ପୁତ୍ରବଧୂ ଘେନି ସୁଖେ ହେଲା
ଜୀବନ କର ଅତୀତ ।
ଭୟ ନାହିଁ ଅଉ ଏ କାର୍ଯ୍ୟେ ଯେଣ୍ଟବେ
ହୋଇଛନ୍ତି ଅପ୍ରସ୍ତୁତ,
ବନ୍ଧୁ ବର୍ଷଯାଏ କାଲକା ସେ କଥା
ନୋହିବେ ମନ୍ଦୁ ବିସ୍ମୃତ ।"
ଏହା ଭଣି ଦେବ ସିଂହାସନ ସହ
ମିଶିଗଲେ ନଭଃସ୍ଥଳେ,
ମନୋମୋହକର ହର୍ଯ୍ୟବିମ୍ବ ଯଥା
ବୁଡ଼ଇ ସାଗର ଜଳେ ।
ଭାଗୀରଥୀ ତଟେ ମୂର୍ତ୍ତିମତୀ ଆହା
ପୁଣ୍ୟତୋୟା ଗଙ୍ଗା ପର
ଓହ୍ଲାଇ ଆସିଲା ଉପରୁ ତଳକୁ
ଧୀରେ କୌଶଲ୍ୟା ସୁନ୍ଦରୀ ।
ସଲିଳଗର୍ଭକୁ ସମୁଜ୍ଜ୍ୱଳ କରି
ସ୍ୱାହ୍ନବୀକ ପ୍ରକାନ୍ତରେ
ସୁଗଠିତ ରମ୍ୟ କାଞ୍ଚନ ପ୍ରତିମା
ଜଳେମଗ୍ନ ହେଲା କରେ !
ଶୁଭ୍ରାଙ୍ଗୀ ସୁଶୁଭ୍ର— ବାସନା ସୁକଣ୍ଠୀ
ସୁଧାହାସୀ ସୁକୁମାରୀ
ସମୁଦ୍ରମନ୍ଥନ— ସମୟେ ଯେସନ
ମୋହନବେଶୀ ମୁରାରି ।
ମଦନର ଜୈତ୍ର— କେତନ ପରାଏ
ପୃଷ୍ଠେ ଲୋଟୁଥିଲା ବେଣୀ
ସ୍ୱର୍ଣ୍ଣଦୀ—ସଲିଳେ ଖେଳୁଥିଲେ କିବା
ରଙ୍ଗେ ଭୁଜଙ୍ଗ ଶ୍ରେଣୀ ।

ବଶୁଥିଲ୍ଲ ବର—                    ସ୍ଫୁଟ ଶତଦଳ
ସମାନ ବରବ୍ୱଦନ,
କୃଷ୍ଣତନ ତଣ୍ଡି                    ଶୋଭୁଥିଲା ରମ୍ୟ
ଭ୍ରମରପନ୍ତି ଯେସନ ।
ଗୌର ଗ୍ରୀବା ରଞ୍ଜି                    ବକ୍ଷେ ଗଜୁଥିଲ୍ଲ
ସ୍ଥୂଳ ମୁକ୍ତାର ହାର,
ସ୍ୱର୍ଣ୍ଣବର୍ଣ୍ଣ ଘଣ୍ଟ                    କାଷ୍ଟନ୍ଦରେ ଉଚ୍ଚ
ବଶୁଥିଲ ଉର ତାର ।
କଟୀରେ କମର—                    ବନ୍ଧ ଶୋଭୁଥିଲ୍ଲ
ନତମ୍ବେ ରମ୍ୟ ମେଖଳା,
କରେ କମଣ୍ଡଳୁ                    ରତନର ଚୂଡ଼୍ଲ
ପଦେ କଲନାଦୀ ବଳା ।
ସଭିଙ୍କି ଚକ୍ତିତ                    କର୍ ସେ ହିନ୍ଦବ୍ୱ—
ଭୂଷଣରେ ମନୋଲ୍ଲେଖ୍ୟ
ମୂର୍ତ୍ତିମତୀ ଲକ୍ଷ୍ମୀ—                    ପ୍ରାୟ୍ ପଙ୍କଜାକ୍ଷୀ
ଭୂମି ପରେ ହେଲ୍ଲ ଉଚ୍ଚ ।
ବାଜଲ୍ଲ ମଙ୍ଗଳ                    ବାଜଣା, ଆନନ୍ଦେ
ଗାଇଲେ ଦର୍ଶକଚୟ୍
ମହୋଲ୍ଲାସେ ମାତ                    ଉଚ୍ଚେ ଏକସ୍ୱରେ
'ଜୟ୍ ଜଗନ୍ନାଥ ଜୟ୍'
'ଜୟ୍ ଏ ଉତ୍କଳ'                    'ଜୟୀ ଗଙ୍ଗେଶ୍ୱର'
'ଜୟ୍ ପାଟଣା ସୁନ୍ଦରୀ,
ତୁମ୍ଭ ଯୋଗୁଁ ଆଜ                    ଚତୁର୍ଭୁଜମୂର୍ତ୍ତି
ଦେଖିଲ୍ଲୁ ନୟ୍ନ ଭର୍ ।
ଜୟ୍ ଯୁବରାଜ                    ଜୟ୍ ଅନ୍ନପୂର୍ଣ୍ଣା
ହେମପୁର ଜେମାମଣି,
ଧନ୍ୟ ତୁମ୍ଭ ପ୍ରେମ,                    ନଜେ ନୀଳାମ୍ବର
ଦେଲେ ଶ୍ରୀମୁଖରେ ଭଣି ।
ଜୟ୍ ଜୟ୍ ରାଜ—                    କୁମାରୀ କୌଶଲ୍ୟା
ରମଣୀଲଲାମଭୂତା,

ପରମ ଭକତ ପୁଣ୍ୟଶ୍ଳୋକ ସାଧୁ
ଗଙ୍ଗେଶ୍ୱର ନୃପସୁତା ।
ଧନ୍ୟ ଧନ୍ୟ ତୁହ୍ନ ପୁଣ୍ୟମୟୀ ପୁଣ୍ଡି
ହେଲା ତପସ୍ୟା ତୋହର,
ଚଣ୍ଡୀ ଶସ୍ତ୍ର ଖଣ୍ଡି ସମର୍ପିଲେ ଆଣି
ପ୍ରକାଶେ ନଜେ ଶ୍ରୀହର ।
ପଲକେ ବଶାଦ— କାଲମା ଲୁଥିଲା
ଆନନ୍ଦତ ହେଲେ ସବ,
ବଜୟ-ଉତ୍ସବ ଦୋଳୋତ୍ସବ ସହ
ମିଶିଲା ମିଲନୋତ୍ସବ ।
କହଲେ ନରେଶ ନତମୁଖୀ ପ୍ରିୟା—
କର ଧର ମନ୍ଦେ ହସି,
'ମତେ ମାଗଥିଲ ବୋଲି ଅନୁତପ୍ତ
ହେଉଛ କି ମଦାଳସି !
ସ୍ୱବତ ନ ହୁଅ, ସ୍ୱାମୀର ଏମନ୍ତ
କୃର ବ୍ୟବହାର ଶୁଣି
ତୁନ ହୋଇ ଧୈର୍ଯ୍ୟ ଧରଣ ରହବ
କେବଳ ସାଧ୍ୱୀ ତରୁଣୀ ।
ଧର୍ମଗ୍ଳାନ ଦେଖି ଧାର୍ମିକ-ହୃଦୟ
ଉତ୍ତେଜତ ହୋଇ ଉଠେ;
ତୀବ୍ର ଅଗ୍ନି ତାପ ଲଭି ସିନା ପଦ୍ମ
ଉଜ୍ଜ୍ୱଳ ଦ୍ୱିଗୁଣେ ଫୁଟେ ।
ତୁମ୍ଭ ପର ସତୀ— ପତ୍ନୀ—ପଣ ଭବେ
ଅଟେ ଦେବୀ ଭଗ୍ୟବାନ,
ତୁଳସୀ ସହତ ଗୁନ୍ଥାହୋଇ ବଢ଼େ
କଦଳୀପତ୍ରର ମାନ ।
ମୂର୍ତ୍ତିମାନ ଧର୍ମ ପଗ୍ରଏ ଗ୍ରଜବ
ଘରେ ଘରେ ତୁମ୍ଭ ଛବ;
ଶ୍ଳାଘ୍ୟ ମଣୁଛ ମୁଁ ପ୍ରାଣକୁ ପ୍ରେୟସୀ
ଏମନ୍ତ ସୁପତ୍ନୀ ଲଭି ।

ତୁମ୍ଭ ପରି ନାଶ୍ଚି- ରହୁ ଗର୍ବେ ଧରି
ଧନ୍ୟ ଆଜ ଏ ଉତ୍କଳ,
ଅସାଧ୍ୟକୁ ସାଧି ପ୍ରିୟତମେ କଲ
ଆମ୍ଭ ବଂଶ ସମୁଜ୍ଜ୍ୱଳ ।
ବଧି ନାହିଁ ମତେ, ଘୃଣା ଦୁଃଖେ ତୋଧେ
ସ୍ୱହସ୍ତେ କଠୋର ମାର ।
ଘୋର ପାପଭୟେ ଅଧୀରେ ନିଜକୁ
ବଧିଥିଲ ସୁକୁମାର !
କୁତ୍ସିତ କାର୍ଯ୍ୟରେ ମହାଘୃଣା ପୁଣି
ସେ କାର୍ଯ୍ୟର ପ୍ରତିକାର,
ତୋପରି ତେଜସ୍ୱୀ ରମଣୀ ରତନ
ମିଳିବେ ନାହିଁ ସଂସାରେ ।
ପଣ୍ଡିତ ପଣ୍ଡ- ସେବାରେ ପୂର୍ବରୁ
ହୋଇଥିଲି ବିମୋହିତ
ଧର୍ମବଳ ଦେଖି ହୋଇଛି ମୁଁ ଏବେ
ଦ୍ୱିଗୁଣରେ ଆହ୍ଲାଦିତ ।
ଆସ ପିବା ପୁତ୍ରେ, ସ୍ୱକାର୍ଯ୍ୟକୁ ସଖି,
କଦାପି ନ କର ହେୟ,
ମୂର୍ଖର ପ୍ରଶଂସା- ଠାରୁ ଶତଗୁଣେ
ପଣ୍ଡିତ ଭର୍ତ୍ସନା ଶ୍ରେୟ ।'
ଏତେ ବୋଲି ଭୂପ ପୁତ୍ର କନ୍ୟା ସଙ୍ଗେ
ପ୍ରିୟତମା କର ଧରି
ଜୟ ଶବ୍ଦ ମଧ୍ୟେ ଗମିଲେ ନବରେ
ସକଳ ଦୁଃଖ ବିସ୍ମରି ।
ପତ୍ନୀ ପୁତ୍ର ସହ ସୁଖେ ନେଲେ କାଳ
ଉତ୍କଳ-ପଦ୍ମ-ମିହିର,
ଶତ୍ରୁକୁଳ ଭୟେ ନତ ହେଲେ ଆଉ
କେବେହେଁ ନ ଟେକିଲେ ଶିର ।
ପାବଣ୍ଡ ସତୀଙ୍କ ବାକ୍ୟ ସତ ହେଲା,
ଗଙ୍ଗେଶ୍ୱର ନରସାଇଁ

ତର ଶାନ୍ତି ସୁଖେ ରହିଲେ ପୁରରୁ
ଅଉ ବାହାରିଲେ ନାହିଁ ।
ତାହାଙ୍କ କଠୋର ତପସ୍ୟାର ଫଳ
ଦେଲେ ପ୍ରଭୁ ଭଗବାନ୍,
ସବୁ ପାତ୍ରେ ସବୁ କାଳେ ତାହାଙ୍କର
ନ୍ୟାୟ ଅଟଇ ସମାନ ।
ଯଥାକାଳେ ହେଲେ ଯୁବରାଜ ଧନ୍ୟା
ହେମପୁର-ଜେମା କର,
କୌଶଲ୍ୟା ଧରିଲେ ଯଥାକାଳେ ଯୋଗ୍ୟ
ରାଜକୁମାରଙ୍କ କର ।

ସମାପ୍ତ ।

# ଉତ୍ସର୍ଗପତ୍ର



"ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ"

ଏହି କାବ୍ୟ

ମୋର ସ୍ନେହମୟୀ ଜନନୀଙ୍କ

ଗୌରବମୟ ନାମକୁ ଶିରୋଭୂଷଣ କରି

ଭକ୍ତିର ଚିହ୍ନସ୍ୱରୂପ ତାହାଙ୍କ

ପବିତ୍ର ପାଦପଦ୍ମରେ

ଉତ୍ସୃଷ୍ଟ ହେଲା ।

ଇତି ।

ଦେବଗଡ଼
ତା ୨୨-୧୧-୨୯



ବିନୀତ
ପ୍ରଣେତା

# ବନ୍ଦୀର ଲାଞ୍ଛନା



ରାଗ—ଲଳିତକାମୋଦୀ

(୧)

ଅଇଲା ବିଷମ ହେମନ୍ତ କାଳ
ବହିଲା ଉତ୍ତର ବାତ ପ୍ରବଳ
ଶୀତରେ ଆତୁର ଦେବ ଦିବାକର
ସେବିଲେ ଅନଳ କୋଣ କେବଳ
ବିସ୍ତରି ଦେଲା ଅନ୍ଧ ବିଶାଳ ।

(୨)

ତଳପ ତେଜିଲେ କମଳାକାନ୍ତ
ଅଳପ ହୋଇଲା ଦିନ ନିତାନ୍ତ
ଗଳପ କରିଲେ ଉଠି ନିଶାନ୍ତରେ
ପାବକକୁ ବେଢି ବାଟୋଇବ୍ରାତ
ସହି ଶିଶିରର ପ୍ରଚଣ୍ଡବାତ ।

(୩)

ସଲିଳକୁ ମନ ନୋହିଲା ରାଜି
ଦନ୍ତେ ଦନ୍ତ ଗଣ୍ଠି ଜାଡ଼ରେ ବାଜି
କଳାକରଙ୍କର ସମ ସୁଖକର
ସର୍ବଦା ଦେହକୁ ଲାଗିଲା ଝାଞ୍ଜି
ଅମଲେ ଲାଗିଲେ କୁଟକ ରାଜି ।

(୪)

ମହାଦରେ ଅବଲମ୍ବି ହୟନ୍ତ (୧)
ଦୁର୍ଭର ବସନେ ଚଳାଇ ପ୍ରୀତ
ବାତରୁଦ୍ଧପୁରେ ନରେ ରଙ୍ଗରେ
ବସି ସୁଖେ ଗଳାମୋଦେ ହସନ୍ତ
ଯାଏ ହସ୍ତେ କାହିଁ ଅଜାର ଶୀତ ?

---

ଦେବଗଡ଼ରେ ଲକ୍ଷ୍ମୀପ୍ରସାଦ ହାତୀକୁ ଧରିବା ଉପଲକ୍ଷେ ରଚିତ । ସନ ୧୯୦୬ ଏପ୍ରେଲ ମାସ ତା ୪ ରିଖ ।

(୧) ସର୍ବ୍ବଦା ।

(୫)

ତରୁଏ ଶିଶିରଅଶ୍ରୁ ମୁଞ୍ଚିଲେ
ଦଗ୍ଧହେଲେ ପଦ୍ମ ବନା ଅନଳେ
ବଣଦ୍ରେଶିଖୀଙ୍କ ପିଠିପାଖେ ରଖି
ଜାନୁ ଆଲିଙ୍ଗନେ ଶୋଇଲେ ସ୍ନେହେ
ସୁଖଦୁଃଖ ଫଳେ କରମଫଳେ ।

(୬)

ପାବକୁ କାକର ଦେଇ ନିତାନ୍ତ
ପୀଡାଦାନେ ପଛୁ ପ୍ରବଳ ଶୀତ
ଶୋଇବା ବେଳରେ ସମୁନ୍ନତ ନରେ—
ସୁଦ୍ଧା ବଦସ୍ତ୍ରେ ରଖି ସନ୍ତତ
ଭଲେ ଅଚଳନ୍ତ ବସ୍ତୁଙ୍କ ବତ ।

(୭)

ସମ୍ଭାଳି ନ ପାରି ଶୀତର ତେଜ
ଶଇଲେ ଆଶ୍ରିଲେ ବୁଦ୍ଧଡ଼ ଶେଜ
ଜନ ମଧ୍ୟଗତେ ଶରଣ ଆରତେ
ପକ୍ଷିଙ୍କ ପାବକ ଉପେକ୍ଷି ଲାଜ
ପେଟଲାଗି ଯଥା ନବ୍ୟସମାଜ ।

(୮)

ଖାରୁଆ ଧଇଲା ନର ଶରୀରଂ
ସ୍ନିଗ୍ଧକାନ୍ତି ନେଲେ କୁକ୍କୁଟ ବାର
ପକ୍ଷୀ ଭଅଁଲାଇ ଦେହ ପୁଷ୍ଟହେଇ
ପ୍ରତ୍ୟୁଷରୁ ତୋଳି ଉଲ୍ଲାସ ସ୍ୱର
ଉଦ୍‌ବୋଧନ କଲେ ଶୀତକାଳର ।

(୯)

ସରସୀର ଜଳ-ଦକ୍ଷରେ ପ୍ରାତେ
ବାଷ୍ପମାଳ ଦେଖି ହୁଅଇ ପ୍ରତେ
ଜାତେ ଅସମ୍ଭାଳ ଜଳଦେବୀକୁଳ
ତାପନ୍ତି ଜ୍ୱଳନ ଜାଳି ଅଗ୍ରତେ
ସେ ଧୂମରାଶି କି ? ଉଠେ ବାଯୁତେ ?

(୧୦)
ବିନଷ୍ଟ ହେବାରୁ ତା ପଞ୍ଚଶର (୧)
ଛନ୍ଦଭଙ୍ଗ ଦେଇ ପଳାଇ ମାର
ଲଜେ ଅଭ୍ରମାନେ    ଲୁଚ ସାବଧାନେ
ଆଶ୍ରିଲେ କାମିନୀମାନଙ୍କ ଉର
ଯହିଁରେ ପ୍ରକୋପ ନାହିଁ ଶୀତର ।

(୧୧)
ସଙ୍ଗାଡ଼ଣ ଗୁଚ୍ଛଗୁଚ୍ଛ କଳିକା
ଫୁଟିଲେ ଉଲ୍ଲାସେ ଚନ୍ଦ୍ରମଲ୍ଲିକା
ଶୀତଳ ସମୀରେ    ନର୍ତ୍ତନ ସ୍ୱଚ୍ଛିରେ
ତହିଁ ସୁଖେ କ୍ରୀଡା କଲେ ଚନ୍ଦ୍ରିକା
ପ୍ରେମିକକୁ ଲଭି ଯଥା ପ୍ରେମିକା

(୧୨)
ବୁଲଆଙ୍କ ଗୀତ ଶୁଭିଲା ସଦା
ଖଳାରେ ପୁରିଲା କଲେଇ ଗଦା
ସମସ୍ତେ ହରଷି    ଶିରଭୁଷ୍ଟ ହୋଇ
କେଦାରଜନକର ଦର୍ଶିଲେ ପଦା
ଯେସନ ବିଧବା ନବପ୍ରମଦା ।

(୧୩)
ନ ମିଳିଲା ଆଉ ମୃଦୁପଲ୍ଲବ
ଲତାଏ ଧରିଲେ ଜରଠଭାବ
ତୃଣଗୁଳ୍ମବାର    ଦିଶିଲା ପାଣ୍ଡୁର
ଖାଇବାକୁ ବନେ ହେଲା ଅଭାବ
ବୁଲିଲେ ଚୌଦିଗେ ପଶୁ ସରବ ।

(୧୪)
ବିକଳ ହେବାରୁ ଜଠରାନଳେ
ଗ୍ରାମକୁ ଧାଇଁଲେ ଦଳ କୁ ଦଳେ
ଦନ୍ତାବଳଯୂଥ    ଶୁଣ୍ଡ ଯୋଡହସ୍ତ
ଉପାଡ଼ି କଦଳୀ କାନନ ବଳେ
ଭଣା ଦେଲେ ବୁଢ଼ୁହଲେ କବଳେ ।

(୧) ଶୀତଋତୁରେ କନ୍ଦର୍ପର ପରାକ୍ରମ ସଞ୍ଚାର ନ ଥାଏ ।

(୧୫)

ନବବସ୍ତ୍ର ଲଭି ଏକ ମାଖିନା
କରଣୀଙ୍କସଙ୍ଗ କଲାପ୍ରାର୍ଥନା
ଏଣୁ ବନ୍ଧାବଳ ମାରବାରୁ ତାଳ
ଅନାୟତ୍ତେ ହୋଇ ହତଚେତନା
ଅସ୍ତବ୍ୟସ୍ତେ ଲାଗି ହୋଇଲା ବଣା

(୧୬)

ମୃତ୍ତିମେସ୍ତୁ ଲୁଚି ଅନଳ ପୀଡ଼ା
ନ ସହ୍ଣ ତେଜନ୍ତ ମାନବକ୍ରୀଡ଼ା
ଶିଖାକ୍ର ଗହ୍ବର ପ୍ରଚ୍ଛନ୍ନ ଯାହାର
ଜଠରେ ଯାତନା କରୁଛି କୀଡ଼ା
ନରୁଦ୍ୟମେ କାହୁଁ ହେବ ସେ ଛଡ଼ା ।

(୧୭)

ଗ୍ରନ୍ଥ ଆସୁ ଆସୁ ହାଟ ଲୋକରେ
ଦେବଗଡ ହାଟଶାଳ ପାଖରେ
ମିଳଗଲା ଯଥା ବନବହ୍ନି ବ୍ୟଥା
ଭସ୍ମେଭଲାସ୍ପି ତ କେଶରୀ ଖରେ
ପଶିଯାଏ ବ୍ୟାଧ ଯନ୍ତ୍ରାମୁଖରେ ।

(୧୮)

ଶାଳେ ଦନ୍ତାହାଟ ଦେଖି ଭୟରେ
ଖଣ୍ଡେଦୂରେ ରହି ଥୋଡ଼ହସ୍ତରେ
ଦରଡାଳ ଧରି ଓଠାଣ୍ଡ ଓଠାଣ୍ଡ
ଆନନ୍ଦେ ମାଖନା ଭରେ ଭୁଣ୍ଡରେ
କାଛ ଶବ୍ଦ ହେଲେ ପଳାଏ ଖରେ ।

(୧୯)

ଧୀରେ ବୁଲୁବୁଲୁ ଖଣ୍ଡିଏ ଛାଲ
ଶବ୍ଦକଲା ପାଇ ଡାଗୋଜ ତାଳ
ନନ୍ଦ ଲୁଞ୍ଚିଗଲା ଜଗୁଆ ଉଠିଲା
ଗ୍ଭହିଁଲା ହାଟଏ ଯାଉଛି ଗ୍ଭଲି
ଗଡଶୀଳ ଗଣ୍ଡଗଇଲ ଭଲ ।

(୨୦)
ଝିଲ୍ଲୀ ନ ଦେଖି ତାର ପଦରେ
ବୁଲ୍‌ବୁଲ୍ ପ୍ରଭୁ ଗାଳେ ଅଧୀରେ
ନିରେଖିଲ ଘର    ତାରଣ ନଗର
ଯେଉଁ ସ୍ଥାନେ ଶୋଇଛନ୍ତି ନନ୍ଦରେ
ବୀର ଗୋଡ ମେଲ ନିଶବଦରେ ।

(୨୧)
ଶୁଣ୍ଡାଗ୍ର କେବଳ ହୁଏ ସ୍ଫୁରିତ
ଧୀରେ ଧୀରେ ବହେ ନିଶ୍ୱାସ ବାତ
ପ୍ରତେ ହୁଏ ମନେ    ସତେକି ନିର୍ଜନେ
ଅନ୍ଧବ୍ରଜ ଫଣୀ ଫଣାମଣ୍ଡିତ
ମୁଖ ଗହ୍ୱରରୁ ହୁଏ ନିର୍ଗତ ।

(୨୨)
ଝିଲ୍ଲୀ ମେଣ୍ଠ ଏ ବିପିନହାଗୀ
ଏକୁଟିଆ ବନେ କରେ ବସନ୍ତ
ବୁଲ୍‌ ବୁଲ୍‌ ଘର—    ହାତଙ୍କ ବୃଷାର
ପାଇ ଧାଉଁଅଛି ତାହାଙ୍କ କନ୍ତ
ନଯାଏ କେ ଦୂରେ ଦେଖି ସୁକାନ୍ତ ?

(୨୩)
ଘମ୍ଭରେ ଏକାକୀ ହେଲେ ଗୋଚର
ଧରିବାକୁ ଆଖି ହେବ କୁଞ୍ଜର
ଲେଟନ୍ତି ରତନ    ନାନାପରେ ଜନ
ଅଯତନ ଲବ୍ଧ ସେ ରତ୍ନବାର
କିଏ ଅନାଦରେ କରଇ ଦୂର ।

(୨୪)
ଏଣୁ ପଶ୍ଚିମର୍ଣେ ହାଲଦାରଙ୍କ
ଘରଗଜେ ଚଢ଼ି ମାହୁନ୍ତପାକ
ମିଳାଇ ଘୁଷାଇନ୍ତି    ନାନାଭବେ ନେଇ
ହାତୀରେ କଲେ ସେ ହାତୀକୁ ଗେଜ ।
ଲାଳସାକୁ ଗେଧେ ଯଥା ବିବେକ ।

(୨୨) ମେଣ୍ଠ—ମାହୁନ୍ତ

(୨୫)
ରାଜ ଆଜ୍ଞା ପାଇ ସଙ୍କେତ ଦେଖି
ନନାଦଳ ଯଥା ଛାଲେ ଫୁତ୍କାର
ଯେତେ ସହଚରଆ ଯେତେକ ମୂଲିଆ
ଧାଇଁଲେ ଆତଙ୍କେ ପଡ଼ିଲା ହୁରି
ହାଣ୍ଡଶାଳ ଗଲା ଲୋକରେ ଭରି ।

(୨୬)
ସେ ସମୟେ ରାତ୍ର ତିନ ପ୍ରହର
ଥପଥପ ପଡ଼ୁଥିଲା କାକର
ତଥାପି ସେଘଡ଼ି ସୁଖଶଯ୍ୟା ଛାଡ଼ି
ରାତକୁ ମଣିଲେ ଦିନ ପ୍ରକାର ।
କର୍ମୀ ପକ୍ଷେ ସମ ନିଶିବାସର ।

(୨୭)
ହାତୀ ଧରିଧରି କାର୍ଯ୍ୟ ନିପୁଣ
ସମବେତ ହୋଇ ଯେତେକ ଜନ
ସୁଦୃଢ଼ ଜଗତ ବେଢ଼ର ବହୁତ
କାର୍ଯ୍ୟମାନ ଆରମ୍ଭିଲେ ତକ୍ଷଣ
ବନଗିରି କରି ଅନୁସନ୍ଧାନ ।

(୨୮)
ଗୁପ୍ତଚରଯୋଗେ ସନ୍ଦେଶ ଜାଣି
ଅନ୍ଧାରେ ହାତୀଙ୍କୁ କେନ୍ଦ୍ରକୁ ଆଣି
ଯୋଜନ ପର୍ଯ୍ୟନ୍ତ ଏକ ଦୀର୍ଘବୃତ୍ତ
ଲୋକ ରଖିରଖି ଦେଲେ ସେ ଠାଣି
ମନୁଷ୍ୟପ୍ରାଚୀର ସୁଷମାକୁ ଗଣି ।

(୨୯)
ବାଠରଚ କଣ୍ଟା ଲଠା ଉପାଡ଼ି
ବସାଇଲେ ଲୋକ ଧାଡ଼କୁଧାଡ଼ି
ଜଟିଲେ ସେମାନେ ବେଢ଼କୁ ଯତନେ
ପାଖେ ରଖି ଠେଙ୍ଗି ଫାରସା ବାଡ଼ି
ଯେପରି ମାଖନା ନଯାଏ ମାଡ଼ି ।

(୩୦)
କାଠଚକ୍ରେ କୁଟୀର ପାଖ ଜଙ୍ଗଲ
ଶେଷ ହେଲା ତରୁ ଲତାସକଳ
ଚଣ୍ଡାଳାରେ ଏକ      ବିଶାଳ ସଡକ
ବେଢ଼ିଲା ତା ଚଉପାଶେ କେବଳ
ନୀରଦକୁ ଯଥା ବିଧୁମଣ୍ଡଳ ।
(୩୧)
ପ୍ରତି ଦଶ ଜଣେ ଏକ ମାଇକ
ଦଶ ପାଇକରେ ଜଣେ ନାୟକ
ନାୟକ ସଙ୍ଗରେ      ସିପାହିଏ ଖରେ
ଭ୍ରମିଲେ ଇଙ୍ଗିତେ ଜମାଦାରଙ୍କ
କକ୍ଷୁଁ କକ୍ଷେ ଯଥା ଗ୍ରହନାୟକ ।
(୩୨)
ଅମଲାଏ ତମ୍ବୁ ବନ୍ଧିଲେ ଯାଇ
ଜଗିଆମାନଙ୍କ ସତର୍କ ପାଇଁ
ବାଛି ଦ୍ରବ୍ୟସଜ      ଇରୁଁକରେ ହେଜ
ମଣ୍ଡଳ ଆକାରେ ଦେଲେ ଚଳାଇ
ତାଙ୍କ ପରସ୍ୟେ ତା ବୁଲିଲା ଧାଇଁ ।
(୩୩)
ସେ ଜଗତବେଢ଼ ସୁଷମା ଦେଖି
କିଏ ବା ମନରେ ନୋହିବ ସୁଖୀ
ପ୍ରତ୍ୟେକ କୁଟୀର      ଛନହାତ ଦୂର
ତହିଁ ଗଦାଗଦା ଅନଳ ରଖି
ଜଗୁଆଳମାନେ ହୋଇଲେ ସେଙ୍କି
(୩୪)
ଜାଡପିବା ଭୟେ ପାଲ ଅଜାଡ଼
ଝରଚଲେ କିଏ କିଏ ବା ଖଡ଼
କେଉଁ କେଉଁ ଜନ      ହାଣି ପାଖବନ
ଡାଲଆଣି ଘର ଦେଲେ ସଜାଡ଼
ନଗଲବ ତହିଁ ବଣହରଡ଼ ।

(୩୫)

ବହୁବର୍ଣ୍ଣିତ ଲତାଠଳି
କିଏବା ଜର୍ଗଡେ ପାରିବ ଲଗି
ବିପିନ କୁଞ୍ଜର          ବୁଲଣା ପୁଷ୍ପର
ଉଦ୍ୟେ ଗନ୍ଧ ଘନ ବନରେ ଛୁଟି
ନଡ଼ଆ ଗଛରେ ଯେସନ କପି ।

(୩୬)

ଏକା ହେଲେ ପଳାଇବା ଭୟରେ
ହାଡୁଣୀକି ଛଡ଼ି ଦେଲେ ହିଡରେ
ବିପଦ ଭବଲେ          ପଡ଼ି ଦୈବ ବଳେ
ଏକା ରହିବାକୁ ମାନବ ଡରେ
ଅନ୍ୟ ପ୍ରାଣୀ କଥା କିଏ ପଚ୍ଛରେ ।

(୩୭)

ଲକ୍ଷ୍ମୀ ହାଡୁଣୀକୁ ଦେଖି ଆଗରେ
ମାଖି ନାନାଗର ଅନୁରାଗରେ
ହୋଇ ଜରଜର          ଲସର ପସର
ଗଣ୍ଡିରେ ମିଶି ତାହା ସଙ୍ଗରେ
ସ୍ୱର ପ୍ରକାଶିଲ ନାନା ରଙ୍ଗରେ ।

(୩୮)

ଶୁକ୍ଳ ଦ୍ୱିତୀୟାର ସନ୍ଧ୍ୟାସୁନ୍ଦରୀ
ଚନ୍ଦ୍ର ଦରପଣେ ବଦନ ହେରି
ଛାୟାପଥ ମାଳା          ଲମ୍ବାଇ ଅସିଲ
ଛନ୍ଦାଂକୁ ନଚାଇ ନର୍ତ୍ତକୀ ପରି
ଦୋଳାଇ ପୃଷ୍ଠରେ ଲତାକବରୀ ।

(୩୯)

ଶଙ୍ଖଘଣ୍ଟାନାଦ ଦେବ ଭବନେ
ଶନିଚରଙ୍କର ସ୍ୱର ଗଗନେ
ଗଳଘଣ୍ଟା ଶବ୍ଦ          ଗୋବତ୍ସହମ୍ବା ରବ
ଏକତ୍ର ମିଶିଲ ସମାନ ତାନେ
ତହିଁ ଯୋଗଦେଲେ ଜଗିଆଜନେ ।

(୪୦)

ସ୍ୱପନେ ଠାଣିଲେ ନଳିନୀବର
ଅସ୍ତାଚଳେ ସ୍ୱର୍ଣ୍ଣସ୍ତମ୍ଭ ତାଙ୍କର
ସେସ୍ତମ୍ଭ ରଶ୍ମି                ସମ ବର୍ଣ୍ଣି ଗ୍ରଶ୍ମି
ଅଙ୍କିଲା ଦୂରୁ ରୁଦ୍ରରଡର
ମେଘବକ୍ଷେ ଯଥା ରେଖା ଉଷାର ।

(୪୧)

କ୍ରମେ କ୍ରମେ ପ୍ରଭୁ ବାସର ବନ୍ଧୁ
ତଳକୁ ଖସିଲେ ସେ ତମୁ ମଧ୍ୟୁ
ଅନ୍ଧକାର କୂଳ                ସବୁ ହୋଇ ଢ଼ଳ
ଭୁବନକୁ କଲା ଅନ୍ଧାର ଅନ୍ଧୁ
ଉଲ୍ଲାସେ ରହିଲେ ଉଲ୍ଲୁକବନ୍ଧୁ ।

(୪୨)

ବଲ୍ଲୀବଳୟିତ ବାଉଁଶ ଲଟା
ସେଢାଳେ ବରିଲ ବାରଣ ଛଟା
ଓଡ଼ନି ନକର                ଲକ୍ଷଗାମୀ ଖର—
ଫେରି ଗଲେ ଖୋଜି ଖୋଜି ବସା ଠା
ବଢ଼ିଲା ଚୌଦିଗେ ଅନ୍ଧାରଘଟା ।

(୪୩)

ଜଗତ ବେଢ଼ର ଜଗିଆ ଜନେ
ଧୂନି ଜାଳିଦେଲେ ନିଃଶଙ୍କ ମନେ
ସେଧୂନି ନିକର                ନୀଳଗିରି ବନ୍ଧ
ବକ୍ଷରେ ଶୋଭିଲା ହାର ସମାନେ
ଭୂଷିକର ବାଣାସୁର ସଦନେ ।

(୪୪)

ମାତଙ୍ଗ ଆଶ୍ରମ ହେଲା ସେ ସ୍ଥାନ
ସ୍ତବଦେ ଅଛନ୍ତି ଜଗିଆ ଜନ
ବେଦଧ୍ୱନି ଗୀତ,                ହୋମକୁଣ୍ଡ ବତ
ଉଚ୍ଚଶିଖା ଟେକି ଜ୍ୱଳେ ଜ୍ୱଳନ
ଦଣ୍ଡକ ଅରଣ୍ୟ ସମକାନନ ।

(୪୫)

ସେସ୍ଥାନର ଶୋଭା ସେହି ସମୟେ
ଅନୁଭବ ବିନା କହି ନ ହୁଏ
ମୟୂର ଚନ୍ଦ୍ରକ     ନୀଳବିନ୍ଦୁ ତକ
ଜ୍ୱଳିଲା ଜ୍ୟୋତିରେଖା ବଳୟେ
ବଳୟିତ ଶନିଗ୍ରହ ପରାୟେ ।

(୪୬)

ଲିଆ କଛ କଛ ଖାଇ ମୂଲିଆ
ହୋଇଥିଲେ କଣହାଗି ଜଗୁଆ
ହେଲା ଶିବରାତି     ତାହାଙ୍କ ସେ ରାତି
ଆଗରେ ଜଳଲା ଜାଗର ନିଆଁ
ସ୍ୱଭାବେ ଗିରୀଶ (୧) ସମ୍ମୁଖେଠିଆ ।

(୪୭)

ଖଣ୍ଡେ ଖଣ୍ଡେ କାଛ ପିନ୍ଧିଅଛନ୍ତି
ଦେହ ଢାଙ୍କିବାକୁ ନାହିଁ ତ କଛି
ପ୍ରତ୍ୟେକ କୁଟୀର     ଆଗରେ, ପ୍ରଖର—
ଅଗ୍ନି ଅବଲମ୍ବି ଜଗୁଆଛନ୍ତି
କାଠ ପରେ କାଠ ଦିଅନ୍ତି ଖୁଞ୍ଚି ।

(୪୮)

କିରିସିନ ଟିଣେ ବଜାଇ ବାଜା
କେ କେତେ ପ୍ରକାରେ କରନ୍ତି ମଜା
ବିବିଧ ଆମୋଦ     ଯୋଗେ ହୋଇ ଖୁବ୍
ପଳାଉଛି ଶୀତ ଉପେକ୍ଷି ଲଜ୍ଜା
ସଲିଲକୁ ଦେଖି ଯେସନ ଅଜା ।

(୪୯)

କିଏ ଗାଉଛନ୍ତି ହଳିଆଗୀତ
ଖଞ୍ଜଣୀ ତବଲା ସ୍ୱର ସହିତ
କେ ମୁଖଭଙ୍ଗୀରେ     ପିଅନ୍ତି ଆଦରେ
ଭକ୍ତ ସୂର୍ଯ୍ୟଙ୍କର କବିତାମୃତ
ଦଗଦଗନ୍ତକୁ କରି ଝଙ୍କୃତ ।

(୧) ଗିରୀଶ—ପର୍ବତରାଜ, ଶିବ ।

(୫୦)
ସ୍ଥାନେ ସ୍ଥାନେ କାହିଁ ବସି ଯୁବକେ
ଖେଳୁଛନ୍ତି ତାସ ପଶା ଉତ୍ସୁକେ
କାହିଁ ଭଙ୍ଗ ପାନ          କାହିଁ ବା ଭୋଜନ
କାହିଁ ଗଳ୍ପାମୋଦ କରନ୍ତି ଥୋକେ
କେବା ବସିଛନ୍ତି ଏକାକୀ ଶୋକେ ।

(୫୧)
ଭଲ୍ଲୁକ ମେଦରେ ମାଜିକୁନ୍ତଳ
ଟେଡ଼ିକଟା ନବ୍ୟ ବାବୁ ସକଳ
ହାସ୍ୟ ଚଳ ଚଳ          ବଦନ ମଣ୍ଡଳ
ମୋଦକେ ମାର୍ଜିତ ନେତ୍ର ପାଟଳ
ଭ୍ରମି ଯେବୁଛନ୍ତି ଝଡ଼ ଜେବଲ ।

(୫୨)
କାହିଁ ଫଟକାର କଠୁ ଶବଦ
କାହୁ ବା ଶୁଭୁଛି ବନ୍ଧୁକ ନାଦ
ବାଉଁଶର ଗଣ୍ଠି          କାହିଁ ଯାଏ ଫୁଟି,
ଠାଙ୍ଗୁଆ ପାରେ ଲଭି ଦରଦ
ପୋଲ୍ଲଗଛ କାହିଁ କରଇ ବାଦ ।

(୫୩)
ଦଗନ୍ତ କମ୍ପାଇ ଘୋର ଚୁହାଟେ
ରଟନ୍ତି ଜଗୁଆ କାହିଁ ଉଚାଟେ
ଗିଲ କୋଡ଼ଶାଯୀ          ପ୍ରବୁଦ୍ଧ ତହିଁ
ଆସି ପୁଣି ଯୋଗ ଦଅଇ ଆଣ୍ଠେ
ଉତ୍ସବେ ବଡ଼ିଲା ପତ୍ୟେ ଭଟେ ।

(୫୪)
ସିଂହ ଗର୍ଜନରୁ ବଳୀ ଭୟଦ
କୋଳାହଳେ କମ୍ପି ଉଠଇ ହୃଦ
"ହାତୀ ହାତୀ ହୁର          କାନଫଏ ଭର
ନ ଆସେ ନଗର ନାରିଙ୍କୁ ନଦ
କେ କରନ୍ତି କେତେ ମତେ ପ୍ରବାଦ ।

(୫୧) ଭଲ୍ଲୁକ ମେଦରେ କେଶରଞ୍ଜନ ଦ୍ରବ୍ୟ ପ୍ରସ୍ତୁତ ହୁଏ ।

(୫୫)

କେବେ ବୋଲେ ଅଲଢ଼ ବଡ଼ଜୁଲମ
ମାନୁନାହିଁ ହାଣି ବର୍ଚ୍ଛାବଲମ
କେବେ ବୋଲେ ରେ ଶୁଭ ! ସ୍ୱପନା କର୍ଣ୍ଣାଭ
ଏକାଥାଇ ମୋର ଚଣ୍ଡଚଳମ
କଣ୍ଠରୁ ରଣିବ କରଉଲମ ।

(୫୬)

କେବେ ବୋଲେ ହାଣି ବଡ଼ ଚତୁର
ଶ୍ରୀଶ୍ରେତୁରୁ ଫିଙ୍ଗୁଅଛି ପଥର
ଫେଁକେଙ୍କାଳ ନାଦେ ଲଙ୍କଠେକ ବୋଧେ
ଉଡ଼ୁଅଛି ମାରି ମାରି ଠକର
ନଅଦୁଲା ପ୍ରଭୁ ନାହିଁତା ଡର ।

(୫୭)

ଏଣ୍ଟବେ ଜଗତ ହେଲା ଖଟଂସ
ଉଷାରାଣୀ ରଙ୍ଗ ପାଟପହର
କରିବଧୂ ସଜନା ମନ୍ଦ ସୁହାସିନୀ
କୁଙ୍କୁମ ରଜରେ ବଦନ ଭରି
ପ୍ରବେଶନ୍ତେ ଅସି ଅନ୍ତଃପୁର ।

(୫୮)

ମନ୍ଦର ରଞ୍ଜିତ ଲଲିତ ଲପନୀ
ଉଲ୍ଲାସ ଉତ୍ଫୁଲେ ପ୍ରାଚୀ ରଙ୍ଗିଣୀ
ସେବକ ସଲକ୍ଷେ ରବଦମ୍ଭ ବ୍ୟାଜେ
ଚେରିଭ୍ରାନ୍ତି ପୂର୍ଣ୍ଣ ପିଆଲଧେନ
ଢଳୁଥିଲେ ଶତଦଳନୟନା ।

(୫୯)

ହଲଇ ମୁକୁଟ ବନେ କୁକୁଟ
ଜୁଷା ଆଗମନ କଲେ ପ୍ରକଟ
ଧଣ୍ଡସ (୧) ବାହାର ବଜାଇଲେ ଭେର
କୁମ୍ଭାଠୁଁଆ ଲୁଟେ ଗର୍ଜି କୁହାଟ
ତମ ଖଣ୍ଡ ଭୟେ ଦେଲା ଡମଟ ।

(୧) ଧଣ୍ଡସ—ବନ୍ୟପକ୍ଷୀ ବିଶେଷ ।

(୭୦)

ପକ୍ଷିଏ ଗାଇଲେ ମଙ୍ଗଳ ଗୀତ
ଭ୍ରମର ଝଙ୍କାର ବୀଣା କ୍ୱଣିତ
ମୃଦୁ ସମୀରଣେ          କୁସୁମିତ ଉଦ୍ୟାନେ
ନାଚଇ କୁସୁମ ଲତା ସତତ
କରି କରତାଳ ତାଳ ବଦ୍ଧତ ।

(୭୧)

ଉଦୟ ଶିଖରୀ ଶିଖରେ ଚଢ଼ି
ତମକୁ ମାରନ୍ତେ ସୂର୍ଯ୍ୟ ଘଉଡ଼ି
ଆମ୍ଭେମାନେ କାଉ          ଅନ୍ଧକାର ନୋହୁ
ବୋଲି ଭୟେ କାକେ ଛାଡ଼ିଲେ ରଡ଼ି
ଉଚ୍ଚ ପାଦପର ଶୟନ ଛାଡ଼ି ।

(୭୨)

ପ୍ରାତ ହେବା ଦେଖି ମାଙ୍କଡ଼ମାନେ
ବାହାରିଲେ ହାଟ ତତ୍ତ୍ୱ କାରଣେ
ମାଖନାକୁ ବନେ          ଖୋଜିଲେ ଯତନେ
ସର୍ବେ କୁଲ୍ କୁଲ୍ ନର୍ଭୟମନେ
ଇନ୍ଦ୍ରସେନା ମୈନାକକୁ ଯେସନେ ।

(୭୩)

ଦେଖିଲେ କଅଁଳ ବାଉଁଶ ନେଇ
ଖଣ୍ଡେ ଖାଇ ଖଣ୍ଡେ ଲକ୍ଷ୍ମୀକୁ ଦେଇ
ହାବୁଣୀର ସଙ୍ଗେ          ଭ୍ରମୁଥିଲା ରଙ୍ଗେ
ମାଖନା ମଦନ ରସରେ ବାଇ
ଯେସନ୍ତେ ରୁଷ୍ୟଶୃଙ୍ଗ ମୁନି ଗୋସାଇଁ ।

(୭୪)

କୋଳାହଳେ ଭେକେ ଭୟରେ କମ୍ପି
ରହୁଥିଲା ଘନ ବନରେ ଛପି
କେବେ କରଣୀରେ          ବଲ୍ଲୋକ ଆଡରେ
ଆସୁଥିଲା ମୃଦୁସ୍ୱରେ ଆଳାପି
ଆସନ୍ତୁକୁ ଖିବ କଏସେ ଝପି ।

(୬୫)
ଧୀରେ ମନ୍ଦ ହେଲ ଭସ୍ମ ବଶ୍ରମ
ବଢ଼ିଲ କାମନା ହୋଇ ଉଦ୍ଦାମ
ସେ କ୍ଷୁଦ୍ର କାନ୍ତାରେ          ଅତି ଆମୋଦରେ
ଭ୍ରମିଲେ ସେ କେନ୍ଦ୍ରବନ୍ଧୁ ଆଶ୍ରମ
ଯାମିନୀ ସହିତ ଯେମନ୍ତ ଯାମ ।

(୬୬)
ସ୍ଥାଣୁଙ୍କୁ କି ସ୍ଥିର ଜଗତ ବେଢ଼
କୋଧ କି ମାନଇ ଗ୍ରଣନଗଢ଼ ?
ମୁଣ୍ଡ ଅନୁଯାୟୀ          ଥାନ୍ତା ଯେବେ ବନ୍ଧ
ଥୋକାଏ ମସ୍ତିସ୍କ, ନଖାଇ ମାଡ଼
ଜଗତେ ବୋଲାଉଥାନ୍ତା ସେ ବଡ଼ !

(୬୭)
ମାନ ବାଧି ଲଟି କେ କାଟିପାରେ
ବୁଲିବ ସେ ନରେ ବନ୍ଧୁ ପିଟିରେ
ତାହାର ସନ୍ଧାନ          ଘେନି ସେହି କ୍ଷଣ
ମାହୁନ୍ତଏ ଫେରି ଆସି ଶିବିରେ
ରତ ହେଲେ ନିଜ ନିଜ କାର୍ଯ୍ୟରେ ।

(୬୮)।
ଏଥୁ ଅନନ୍ତରେ ପାଇକ ଦଳ
ଚର୍ବ୍ୟଚୋଷ୍ୟ ଲେହ୍ୟ ପେୟ ସକଳ
ଗାଡ଼ ଗାଡ଼ ଭରି          ସପତେ ଆହରି
(୨) କୁରଙ୍କକୁଣ୍ଠକୁ ନେଇ ଚଞ୍ଚଳ
ପର୍ବତ ପରସ୍ତେ କଲେ ଠୁଳ ।

(୬୯)
ସୁଧା ଖାଇବାକୁ ଅମଲଙ୍କର
ଗୋରସ ଆଣିଲେ ଗୋପ ନିକର
ପିଇଲେ ଅମଲେ          ଡାକି ସୁଧା ଜଳେ
ଆନନ୍ଦେ ତଣ୍ଟିରେ ମିଶାଇଁ କ୍ଷୀର
ଯେସନେ ଅଗସ୍ତ୍ୟ ଋଷି ସାଗର ।

---

(୨) କୁରୁଙ୍କକୁଣ୍ଠ—ପର୍ବତବିଶେଷ ।

(୭୦)

ଡ଼ମ୍ବରୁ ଗରମ ଜଳେ ଧୋଇଣ
ତହିଁ ଦେଇ ଗୋଲମରିଚ ଲୁଣ
ଖାଇ ତୃପ୍ତ ମନେ        ଠାଣି ଅନୁକ୍ଷଣେ
ଛାଡ଼ ସିଗ୍ରେଟକୁ କଲେ ବର୍ଜନ
ଖାଣ୍ଡବ ବନକୁ ଯଥା ଅର୍ଜୁନ ।

(୭୧)

ଅଣ୍ଟାମାନ ଭିଡ଼ ସଞ୍ଚାଳି ଭୁଜ
ଖରଚ ବାଣ୍ଟିଲେ ବୃକର ବ୍ରଜ
ଡାଲ୍ ଷ୍ଟୁଣ୍ଡଲରେ        ଭରି ସବଧୁରେ
ଗଣ୍ଡଶିଳାସମ ପ୍ରକାଣ୍ଡ ବୋଝ
ପାଇକେ ବୋହିଲେ ହୋଇ ସୁସଜ ।

(୭୨)

ମୁଣ୍ଡେ ବୋଝ ଶୋଭେ ଏମନ୍ତ ଦଶେ
ସୁଗ୍ରୀବ ସେନାଙ୍କ ସେତୁ ସକାଶେ
ଏକାନ୍ତେ ବଗଜ        ଶୈତ୍ୟ ଶିଳା ରାଜ
ବହି ବହି ନୀଳ ଜଳଧିପାଶେ
ଚକ୍ରଛନ୍ଦ ଧୀରେ ନଳ ଆଦେଶେ ।

(୭୩)

ଗଦା ହୋଇଥିବାରୁ ତଣ୍ଡୁଲ ସବ
ବନ୍ଦୀଙ୍କ ହୃଦୟେ ହେଲ ଏ ଭାବ
ଅମର ନଗର        ପୂଜନ ସୁନ୍ଦର
ଅସିକ୍ତରେ ପ୍ରକାଶିଲା ବଇବ ?
ଶ୍ୱେତଶିଖରର ଗଞ୍ଜି ଗରବ ।

(୭୪)

ଡାଲ୍ ପରେ ଡାଲ୍ ହୋଇଛି ଠୁଳ
ସ୍ୱକାନ୍ତ ଗୌରବେ ଅଷ୍ଟ ମଞ୍ଜୁଳ
ବେଣୁଆ ହୁଙ୍କାରେ        ନବଢ଼ ସ୍ୱରରେ
ଯଦ୍ୟପି ଫୁଟନ୍ତା ସୌରଭ ଫୁଲ ?
ଲଭନ୍ତା ଏ ଶୋଭା ସହିତ ତୁଳ ।

(୭୫)

ଧବଳବରଣ ତଣ୍ଡୁଳରାଶି—
ପାର୍ଶ୍ୱେ ତାଲ୍‌ଗଦା ଶୋଭନ୍ତି ଅସି
ଦେଖି ଗଲ୍ଲ ଜଣା      କାଞ୍ଚନା ବରଣା
ବାମା ଯୋଗ୍ୟବର ବରେକ ହସି
ସ୍ୱୟମ୍ବରେ ଯଥା ରାଜରୂପସୀ ।

(୭୬)

ନାଗର ଶବଦେ ଜଗୁଆଳ
ଧାଡ଼ଧାଡ଼ ବେଗେ ଅଇଲେ ଖୁଲ୍
ଷାଠିଏ ହଜାର      ସଗର କୁମର
ସାଗରୁ ତୋଳିଲେ ଯେପର ବାଲ୍
ବହିଲେ ସେପର ଗୁଣ୍ଡଳ ତାଲ୍ ।

(୭୭)

ସ୍ୱେଚ୍ଛାରେ କେହୁ ବା ଉଖୁଡ଼ା ଲେଡ଼ୁ
ଖାଇ ଦେଲେ ଦହି ଚୂଡ଼ା ଅଜାଡ଼ି
ତାଲ୍‌ସହ ମେଳ      କରନ୍ତେ ଗୁଣ୍ଡଳ
ଚଞ୍ଚଳେ ଭଜିଲେ ସୁଖେ ଖୀରଚୂଡ଼ି
କେବା ବୁଡ଼ାଇଲେ ଭୋକରେ ମୁଢ଼ି ।

(୭୮)

ଆଶା ଅନ୍ତରକୁ ଖରଚ ଲାଗି
ଆନନ୍ଦେ ହଳଏ ବୋଇଲେ ଭାଇ
ଯେବେ ଏହିପରି      ଥାଉ ଦନାସ୍ଥିର
ରନ୍ଧନ୍ତା ମାଖନା ନିଶ୍ଚିନ୍ତ ହୋଇ
ବଞ୍ଚନ୍ତେ ଏତାଲ୍ ଗୁଣ୍ଡଳ ଖାଇ ।

(୭୯)

ଧାନ କାଟି କାଟି ହଜୁଛି ଅଣ୍ଟା
କେ ବୋଲେ ମୋ ଗୋଡେ ଗଳନ୍ତି କଣ୍ଟା
କେ ବୋଲେ ମୋ ସାନ୍ଧୁ      ନଝ କାଉ କାଉ
କରୁଥାଏ ଖାଉ ଥାଉତ ଘଣ୍ଟା
ରହୁଥାଉ ତାର ପୁଆଳ କଠା ।

## ୬ଷ୍ଠ ପରିଚ୍ଛେଦ

କାମୋଦୀ

(୧)

ହୈମନ୍ତିକ ତପନ ନାଶ ଉଷ୍ଣ କିରଣ
ଏକାଳେ ବହ୍ନି ମଧ୍ୟ ନଭେ
ବିରାଜିଲେ ରୁଚିରେ ଘନ ବନ ଭିତରେ
ଯେମନ୍ତ ମୃଗରାଜ ଶୋଭେ
ହେ ସେହି କାଳେ
ଛାୟା ଲଭିଲା ପଦତଳେ
ପକ୍ଷୀଏ ନୀରବେ ବସିଲେ
ଇନ୍ଦ୍ର କୋଦଣ୍ଡମାଳ ସ୍ଫୁରିଲା ଦନ୍ତାବଳ
ବମଥୁଁ ଜଳବିନ୍ଦୁ ଜାଳେ ।

(୨)

ସବୁ ଲୋକଙ୍କ ଶିର ଉପରେ ଦିନକର
ମଣ୍ଡଳ ଶୋଭିଲା ଆକାଶେ
(୧) ବୃନ୍ଦାବନେ ଶ୍ରୀହରି ନାରଦଙ୍କୁ ଯେପରି
ଦର୍ଶିଲେ ପ୍ରତି ଗୋପୀପାଶେ
ହେ ସେହିକାଳେ
ଘଡ଼ିଏ ହୋଇଲା ବିଜନ
ଗିରି ତଟିନୀ ତଟ ବନ
ମୃଗତୃଷ୍ଣାର ଜଳ ନିରଖି ମୃଗକୁଳ
ଆକୁଳ କଲା ଘନଘନ ।

(୩)

କ୍ଳାନ୍ତ ଗୋଧନକୁଳ ଜାଣି ମଧ୍ୟାହ୍ନବେଳ
ଶୀତଳ ବଟ ଦ୍ରୁମ ତଳେ
ମଣ୍ଡଳାକାରେ ରୁଣ୍ଡ— ହୋଇ ଚଳାଇ ତୁଣ୍ଡ
ମନ୍ଥରେ ରୋମନ୍ଥନ କଲେ
ସେ ପାନ୍ଥଶ୍ରେଣୀ
ମୋଟୁରି ମୁଣ୍ଡତଳେ ଦେଇ
ଶୋଇଲେ ଛାୟାତଳେ ଯାଇ
ବନହସ୍ତୀ ଜଗିଆ— ନିଜ ନିଜ କୁଞ୍ଜିଆ
ଭିତରୁ ନ ଉଠିଲେ କେହି ।

---

(୧) ହରିବଂଶ ଅନୁସନ୍ଧେୟ ।

(୪)

ଆଶ୍ରି ଶୀତଳ ସ୍ଥାନ ଆତୁରେ ଯେତେ ଶ୍ୱାନ
ରସନା ଲମ୍ବାଇଲେ ଖରେ
କେବଳ କଲବଲ ବୃକଲଣ ସକଳ
ହେଲେଟି ପ୍ରଭଙ୍କର କରେ
ସେ ଆତଙ୍କରେ
କେବେ ଲୁଚଲେ ପଲ୍ଲବରେ
କେବେ ବା ଉଠେ ଡାଳପରେ
ବହୁଳ ଛାୟା ଦେଖି ଉର ତହିଁରେ ପୋଖି
ରହିଲେ ନିର୍ଜୀବ ଭବରେ ।

(୫)

ଏକାଳେ ଗଜରାଜ— ସୁଗମ୍ୟ ମାର୍ଗ ଖୋଜ
କାନନେ ବହୁଦର୍ଶୀ ଜନ
ଦୁଇ ଉଚ୍ଚଭୂମିର ମଧ୍ୟରେ 'ଟିରଦା'ର
ସ୍ଥାନ କରିଲେ ନିର୍ବାଚନ
ସେ ଶୁଭକ୍ଷଣେ
ତହିଁରେ ଶୁଭ ଦେଲେ ଡ଼ାକ
ଅତରେ ଶୁଭ ହେବ ବୋଲି
ଗଡାଇଲେ ତା ପାଶେ କାଠମାନ ରହସେ
କାନନ କାଟି ଜଗୁଆଳ ।

(୬)

ଜଗତବେଢ଼ ଖାଲି ନ କର ଜଗୁଆଳ
ସତର୍କେ ଜଣେ ଛଡ଼ ଜଣେ
ଟିରଦା କାର୍ଯ୍ୟ ପାଇଁ ପ୍ରବେଶି ତ୍ୱରା ହୋଇ
ସେ ସ୍ଥାନେ ଗୁଣ୍ଡ ହେଲେ ଷଣେ
ସେ ସର୍ବେ ମିଳି
ଲାଗିଲେ କାର୍ଯ୍ୟେ ଏକ ପ୍ରାଣେ
ଟିରଦା ସତ୍ୱର ନିର୍ମାଣେ
ଲମ୍ବାଇ ଘୋରବନ ବହୁ ଠାଙ୍ଗିଆ ଠାଣ-
ଶ୍ରେଷ୍ଠ ଶୁଭଲ୍ଲ ଅନୁକ୍ଷଣେ ।

(୭)

ହାଟର ପରମାଣ ମାପି ଯୋଷୀ, ସମାନ
କର ସେ ସ୍ଥାନକୁ ଚଷଲେ
ଦୂରରେ ଉନହାଡ ଗାମ୍ଭୀର୍ଯ୍ୟଶାଳୀ ଗଭି
ଗଣ୍ଡିର ସ୍ତବେ ଖୋଲାଇଲେ
ହେ ସ୍ବର ପାଖେ
ଦୀର୍ଘ ପ୍ରସ୍ତରେ ବଂଶହାଡ
ଗିରଦା ହୋଇଛ ଚକ୍ଷିତ
ତାହାକୁ ଉନ ଉନ ଧାଡ଼ି କ୍ରମରେ ପୁଣି
ବେଡ଼ିଛ ପ୍ରସ୍ତପାର୍ଶ୍ୱେ ଗାଡ ।

(୮)

ଶତଶତ ବେଠିଆ କୋହୁ ଭଳେ ହାଲିଆ
ପାଲିଆ ସହୁ ଅକାତରେ
ଦୀର୍ଘ ଦ୍ରୁମ ନଦ୍ଦର— ହାଣି ବହୁ ସତ୍ୱର
ଏକତ୍ର କଲେ ଆଗ୍ରହରେ
ସେ ଏଢାବେଳେ
ପୋତଲେ ତାହା ବଳେ ଧର
ଗଭିକୁ ଗଭି ଅନୁସର
ଶୁଣ୍ଡଦଣ୍ଡ ଆଘାତେ ଠେଲି ହାଗ ଯେମନ୍ତେ
ସେଥିରୁ ନ ଯାଏ ବାହାର ।

(୯)

ମାନଣୀ ମାନ କର୍ଣ୍ଣ, ପତିବ୍ରତାର ଧର୍ମ୍ମ,
ନବୋଢ଼ା ଲଜ୍ଜା ସମ ଦୃଢ଼,
ଅଶାସ୍ତୀ ଜନ ଆଶା, ବରହଣୀର ନଶା,
ମନସ୍ୱୀ ମନ ପର୍ ବଢ଼
ହେ ସୁଗନ୍ଧରେ
ପୋତଲେ ଖମ୍ବ ଉନ ସାର
ସତ୍ୟ ଦ୍ୱାପର ତ୍ରେତା ପର
ମେଘନାଦ ପ୍ରାଚୀର ସମ ଅଟଳ ସ୍ଥିର,
ଅଚଳ ଅଚଳର ପର ।

(୧୦)

ନ ହୋଇଲା ସମାଧା ସେହୁଦନ ଶିବିକା
ରହିଲା କନ୍ଦୁକାମ ବାକି,
ବାସର ଶେଷ ହେଲା, ସୁଖେ ପ୍ରତୀଚୀ ବାଳା
ରବିଙ୍କି କୁଣ୍ଢାଇଲା ଯାକି
ହେ ଏହାସ୍ତୁହିଁ
ଗମିଲେ ସର୍ବେ ସେଥା ସ୍ଥାନେ,
ସଲିଲ ଅମ୍ବରରେ ଏଣେ
ପିପାସାରେ ଆତୁର ହୋଇ ସେ କସ୍ତୀବର
ପିବାକୁ ଜଳ ଏଣେ ତେଣେ ।

(୧୧)

ଏଣୁ କରଣୀଙ୍କର ସଙ୍ଗେ ମିଶାଇ, ମାତ୍ର
ପିଆଇବାକୁ ସଯତନେ
ମାହୁନ୍ତମାନେ କୁନ୍ତ କରେ ଧରି ହୁଣ୍ଡ
ବାହାର ହେଲେ ସାବଧାନେ
ସେ ଜଗୁଆଏ
ରହିଲେ ମୌନଭାବେ କ୍ଷଣେ
ଯେପରି ସେ ଭାବବ ମନେ
ନିଜ ଆତ୍ମୀୟଙ୍କ ଯୂଥ ସହ ହୋଇ ମିଳତ
ସ୍ୱେଚ୍ଛାରେ ସଞ୍ଚରଇ ବନେ ।

(୧୨)

ଗମ୍ଭୀରନାଦୀ ଘନ ସମ ବାରଣଗଣ—
ସହିତେ ଦନ୍ତ ମେଣ୍ଢମାନେ
ଖୋଜି କାନନେ ହେଲେ ଲକ୍ଷ୍ମୀହାତୁଣୀ ମେଳେ
ଖାଇଲେ ମାଖୁନାକୁ କ୍ଷଣେ
ସେ ବନଗଜ
ଦୂରରୁ ଏମାନଙ୍କୁ ଦେଖି
ଆସିଲା ଶୁଣ୍ଡ ଟେକି ଟେକି
ଆନନ୍ଦରେ ସ୍ବଜନ ଭେଟିଲେ କାହା ମନ
ନ ଯାଏ ପ୍ରମୋଦରେ ଲକ୍ଷି ।

(୧୩)

ମାହୁନ୍ତଙ୍କ ସ୍ଖଳନ                    ପାଇ ହସ୍ତିଶାଗଣ
ତାହାଙ୍କୁ ନେଲେ ପାଣି ଘାଣେ
ରାଜର୍ଷି ଭଗୀରଥ                    ଆଗେ ଦେଖାଇ ପଥ
ଯେମନ୍ତ ଗଙ୍ଗାଙ୍କୁ ହରଷେ
ସେ ଗଜମୂର୍ଖ
ତରୁଣୀ ସହିତେ ବିହର
ମନୁଷ୍ୟ ନ ପାରିଲେ ବାରି
କ୍ଷଣିକ ସୁଖକର                    ବିଷୟେ ଗଢ଼ ନର
ନ ଦେଖେ ବିପଦ ଯେପରି ।

(୧୪)

ଏମନ୍ତ ପରାଧୀନ—                    ଭବରେ ପୁନଃପୁନଃ
ତାହାଙ୍କୁ ଅନୁସରି ଧୀରେ
ଭ୍ରମଇ ସେ ମନ୍ଦମନ୍ଦ                    ହୋଇ ସେ ଯୂଥପତି
ସ୍ୱେଚ୍ଛାରେ ସଞ୍ଚରେ କାନ୍ତାରେ
ହେ ସାଧୁଜନେ !
ବିଧାତା ଇଚ୍ଛାରେ ସ୍ଖଳିତ
ହେଲେହେଁ ଏ ବିଶ୍ୱ ସନ୍ତତ
ଦମ୍ଭେ ଭୂବେ ମାନବ                    କରୁଛି ସେ ସରବ
ଘଟୁଛି ଯେତେକ ବୃତ୍ତାନ୍ତ ।

(୧୫)

ହାଟର ସେ କାଳରେ                    ଇଚ୍ଛାମତ ବିହାରେ
ପଡ଼ିଥିଲେହେଁ ମହାବାଧା
ନ ବୁଝି ତାହା ତଳେ                    ଚାଲଇ କୁତୂହଳେ
କରିଣୀଙ୍କର ସ୍ନେହେ ଅନ୍ଧ
ସେ ଜଗତରେ
ଇଚ୍ଛାବିରୁଦ୍ଧ କାର୍ଯ୍ୟମାନ
ଅଳ୍ପେକି କହ କେତେ ଜଣ
ସ୍ୱର୍ଗ୍ୟର ବିବର୍ତ୍ତନ                    ନିଜନିଜ ପତନ
ହେତୁ ଖୋଜନ୍ତି ଦେଇ ମନ ।

(୧୬)

ଷ୍ଟବେଣି ଜଳେ କଣ୍ଠ   ଶୋଷିବା ବେଳେ ବାରି
ଘୂରିଲା ଭଉଁରୀ ବେଗରେ
ଚଟପଟନେ ବଳେ   ଧୂଳିରାଶି ଚଞ୍ଚଳେ
ଉଠି କ୍ଷଣକେ ସ୍ତମ୍ଭାକାରେ
ହେ ସେହି ଧୂଳି
ଧୂମ୍ର ରଞ୍ଜିତ ଗିରିପରେ
ଘୂରିଲା ପରି କରଙ୍ଗରେ
ଶୁଣ୍ଡେ ସଲିଳ ସୁଖେ   ଫିଙ୍ଗି ଉପର ମୁଖେ
ଛାଡ଼ିଦେଲା ନେଇ ଶିରେ ।

(୧୭)

ଶୁଣ୍ଡକୁ ସଂକୋଚଇ   ମୁଖ ଧୀରେ ମେଲଇ
ଉପର ଦିଗେ ଶିର ଡୋଳ
ଯେମନ୍ତ ପ୍ରସ୍ରବଣ   ତେମନ୍ତ ଘନଘନ
ତହିଁରେ ଜଳଧାରା ଢାଳି
ସେ ମହାନନ୍ଦେ
ପଥସେଚକ ନଳ ପରି
ପୁଣି ଛାଡ଼ିଲା ଦେହେ ବାରି
ମନେ ହେଲା ବ୍ୟଜନ   କଲା କି ପୁନଃପୁନଃ
ନିଜକୁ ସେ ଚାମର ଧରି

(୧୮)

ଅଟେ ହୋଇ ଜର୍ଜର   ସ୍ୱେଦେ ହାତୁଣୀଙ୍କର
ଦେହକୁ ଫିଙ୍ଗିଲା ସଲିଳ
(୧) ନିଷାଦଗଣେ ସେହି   ଆସାରରେ ଗାଧୋଇ
ଶୀତରେ ହେଲେ ଥରଥର
ସେ ସଦାକାଳେ
ପ୍ରଣୟୀ ଦୁଷ୍ଟମାନଙ୍କର
ଶିଷ୍ଟ କୁଳର କଷ୍ଟକର
ଶୁନ ବିଦ୍ୟୁତ ସ୍ନେହ   ନୁହଇ ଭସ୍ମାବହ
ଜଗତେ କହ ବା କାହାର ।

(୧) ନିଷାଦ—ମାହୁନ୍ତ ।

(୧୯)

ଅଣ୍ଡ ଶୀତେ କାତର ମାହୁନ୍ତେ ଡରଡର
ଚଳାଇବାରୁ ଗୃହକର୍ତ୍ତ୍ରୀ
ତାହାଙ୍କ ସଙ୍ଗେ ମିଳି ଚଳିଲା ଢଳ ଢଳ
ଗର୍ବର ଅବତାର ପରି
ସେ ଧୂଳିଆଦି
ଯେତେକ ଦେଖିଲା ପଥରେ
ଫିଙ୍ଗିଲା ଉପରକୁ କରେ
ମହୀଧର ସମାନ ଦେବାକୁ କି ସେ ମନ
କରଇ ମହା ଉତ୍ସାହରେ ।

(୨୦)

ସଚଳଗିରି ଗୋଟି ସମ ଭଦ୍ରୁଁ ଲେଉଟି
ନରୁଦ୍ଧ ଅଟବୀ ଭିତରେ
ପ୍ରବେଶ ହେବାକ୍ଷଣ ଅନ୍ୟ ଅନ୍ୟ ବାରଣ
ଚଳିଲେ ତାକୁ ଘଡ଼ ଖରେ
ହେ କୁସଙ୍ଗର
ପରିଣାମରେ ଗଣ୍ଡ ଏହା
ନୁହନ୍ତି ଦୁଃଖେ କେହି ସାହା
ରହଇ ଏକୁଟିଆ ସକଳେ ମାରି ହୁଆଁ
ଦେଖନ୍ତି ଯେ ଯାହାର ସ୍ପହା ।

(୨୧)

ଉଦେ ଦେଖି ମେଘର ଯଥା କେକୀକୁଳର
ପ୍ରବଳେ ଉଚ୍ଛୁଳଇ କେକା
ବନେ କୁଞ୍ଜରମେଳ ହେବାରୁ କୋଳାହଳ
ଜାଗିଲା ପ୍ରଜାଙ୍କର ଏକା
ସେ ବନଗଜ
କାତରେ ଛପିଗଲା ବନେ
ମଧୁପ ପଟଳ ଗୁଞ୍ଜନେ
ପ୍ରସ୍ତେ ଅନ୍ଧକାର ଗିରିବର କନ୍ଦର
ଭିତରେ ଲୁଚଇ ଯେସନ ।

(୨୨)

ଜଗତରେ ସକଳ— ବ୍ୟକ୍ତ ବଳବାନର
ସପକ୍ଷ ହେବାରେ ତତ୍ପର
ଦୁର୍ବଳ ଲୋକ ପାଇଁ ଜଣେ କେହୁଟି ନାହିଁ
ବୋଲିବ ତାକୁ ଯେ ମୋହର
ହେ ଭ୍ରବ ଦେଖ
ଜଗିଅଜନେ କୋଳାହଳ
ଛାଡ଼ନ୍ତେ ନକଠ ଅଚଳ
ପ୍ରଚଣ୍ଡଧ୍ୱନି ଛଳରେ ଉଚ୍ଚାର ଉଚ୍ଚସ୍ୱରେ
ତାହାକୁ କରନ୍ତି କାତର ।

(୨୩)

ଯାଆନ୍ତେ କରଣୀଏ କ୍ଷୁଦ୍ର ଦୂରପାଏ
ତାଙ୍କ ଦ୍ୱରହେ ସେହି ଗଜ
ମନ୍ଦ ଗମ୍ଭୀରସ୍ୱରେ ଧାଇଁ ପଚ୍ଛପାଖରେ
ପଦରେ ଉଡ଼ାଇଲ୍ଲ ରଜ
ହେ ସାଧୁଜନେ
ମେଦୁର ନାଦରେ ଚମକି
ଶଇଳକୁଳ ପଲାନ୍ତକି
ପଛରେ ସଶବ୍ଦରେ ଧାଏଁ ମେଘ ଅମ୍ବରେ
ବୃଷ୍ଟିରେ ପ୍ଲାବ ଧରନ୍ତିକି ?

(୨୪)

ହାଟର ଉପଦ୍ରବେ ଅବଶେଷେ ସରବେ
ଲକ୍ଷ୍ମୀଙ୍କି ଛାଡ଼ଦେଲେ ତହିଁ
ବନ୍ଦୀ ସହ ବନ୍ଦନା ସମ ସେହି ହାରୁଣୀ
ତା ସଙ୍ଗେ ଚଳସିଲ୍ଲ ଯାଇ
ହେ ମହାନନ୍ଦେ
ବାରଣ ରହିଲ୍ଲ ନିଷ୍ଟିନ୍ତେ
ଯେମନ୍ତ ପ୍ରାଣୀଏ ଜଗତେ
ସୁଖରେ ହୋଇ ଭୋଳ ସ୍ୱୀବୀ ବିପଦକାଳ
କଦାପି ନ ଅଣନ୍ତି ଚିତ୍ତେ ।

---

# ୩ୟ ପରିଚ୍ଛେଦ

ସନ୍ଧ—ରସକୁଲ୍ୟା

(୧)

ଏ କାଳରେ ରଙ୍ଗବର୍ଣ୍ଣ ସବିତା
ବାରୁଣୀ ଲଲାଟେ ସିନ୍ଦୂର ଟିକା
ଅସ୍ତେ ସଧୀରେ ହେଲେ ପ୍ରବେଶ
କ୍ରମେ କ୍ରମେ ହେଲା ଦିବସ ଶେଷ
ଅସ୍ପଷ୍ଟତ ଅନ୍ଧକାର
କଳକଳ ଖଗ ଅବଶେଷେ ଖଗ
ହୋଇଲେ ଏବେ ଅଙ୍ଗାର ।

(୨)

ମ୍ଳାନହେଲା ଚାରୁ ଲାବଣ୍ୟ ଜଳ
ମୁଦିଲା ବିଷାଦେ ନେତ୍ର କମଳ
ଭୂରୁ ବୀଚି ଆଉ ନାଚନ୍ତି ନାହିଁ
ନେତ୍ର କାନ୍ତି ଅଳି ଗଲେ ପଳାଇ
ସରସୀ ହେଲା ଶ୍ରୀହୀନ
କିଏ ନ ଜାଣଇ ପ୍ରିୟ ବିଚ୍ଛେଦରେ
ହୁଏ ସବୁ ଅକଲ୍ୟାଣ ।

(୩)

ଅନ୍ଧାର ପଶିଲା ସକଳ ସ୍ଥାନ
ସମ ହେଲା ଯେତେ ବନ୍ଧୁରମାନ
ବୁଡ଼ାଏ ନଦଲେ ଉଲ୍ଲୁକ ଶିଶୁ
କାର୍ଦ୍ଦ ସମାନ ପଶିଲେ ଗିରି
ତଳ ଉପର ସମାନ
ପୂର୍ବ କଳନାରୁ 'ଦଗ ହେଲା ବାର
ଗଗନ ସୀମା ସଙ୍କୀର୍ଣ୍ଣ ।

(୪)
ଧୀରେ ଧୀରେ କଣି ହୋଇଲ୍ଲ ଘନ
କୋଳାହଳ ସ୍ୱରେ ପୂରିଲ୍ଲ ବନ
କୁନ୍ତୁକ୍ସ ବାରୁଣୀ ଲକ୍ଷ୍ମୀ ଏକାଳେ
କ୍ଷୁଧାତୁର ହୋଇ ଯିବାକୁ ଖାଲେ
ଜଗତ ବେଢ଼ ପାଖରେ
ଗିରି ବାରସ୍ରୋତ ସେତୁ ପାଖେ ଯଥା
ପ୍ରବେଶିଲ୍ଲ ସବେଗରେ ।

(୫)
ଯେମାନେ ଭୁଲ୍ଲାକୁ ଛଡ଼ନ୍ତ ଚକା
ଶକ୍ତ ଶୁଣି ଯେତ୍କ ଫିଙ୍ଗନ୍ତ ଠେକା
ସେମାନେ ବନ୍ଦେକ ଆଗତେ ହାତ
କପାଳି ମନେ ନ ବହିବେ ଭ୍ରାନ୍ତ
ସମାନ ଲକ୍ଷ୍ମୀ ମାଖୁନା
ବନ୍ତ୍ରଘାନ ବେକ କ୍ଷଏ ପଳାଉଛି
ସହସା ନ ଗଲ୍ଲ ଜଣା ।

(୬)
ଏବେ ହୋଇଥିଲ୍ଲ ଖାଲ ସମ୍ମୁଖ
ତା ପେଠରେ ପୁଣି ବଷମ ଭେକ
ପୁଙ୍ଗୁ ଦେଖିଛି ସେ ଅସଂଖ୍ୟ ନପାଁ
ବନ୍ଧୁକ ନାଦକୁ ଡ଼ରିବ କଆଁ
ପୂରୁଣା ସେହି ବାରୁଣୀ
ଅଖୁପେଡ଼ା ପୋଢ଼ (୧) ଡରିବେ କପାଳି
ଗାଢ଼ ଘଡ଼ଘଡ଼ ଶୁଣି ।

(୭)
ବାତ୍ୟାକୁ ଆବୋରେ ଯଥା ବସନ
ତମକୁ ଖଦ୍ୟୋତଶ୍ରେଣୀ ଯେସନ
ସ୍ରୋତକୁ ଯେମନ୍ତ ସିକତା ସେତୁ
କମ୍ପା ବାରଦକୁ ଯେପରି କେତୁ

(୧) ପୋଢ଼—ମହିଷ ।

ଲୁଣ୍ଠିବୁ ବନ୍ଧି ଯଥା
ଜଗତବେଢ଼ର ଜଗିଥା ନଗର
ତାକୁ ଅଗୁଳଲେ ତଥା ।

(୮)

ତୁମେ ପଢ଼ ବେଢ଼ୁ ଫିଙ୍ଗିଲେ ଖୁଣ୍ଟା
କିଏ ବା କାଟିଲେ ବନ୍ଧୁକ ଡୋଠା
ଘୋର ଘନରୋଳ ଗଗନେ ପୁରି
ପ୍ରତିଧ୍ୱନି ବଶେ ଲାଗିଲା ଘୂରି
ଭ୍ରୂକ୍ଷେପ ନ କରି ତହିଁ
ସବୁ ଉପଦ୍ରବ ଲଙ୍ଘି ସେ ଶାଳାକୁ
ସହଜେ ଗଲି ପଳାଇ ।

(୯)

ବାରିଦ ପଛରେ ଯଥା ବାଦଲ (୧)
ଧାଇଁଲେ ତା ପଛେ ନିଷାଦ ଦଳ
ଶାଳରେ ଭେଟିଲେ ପଛେ ଗୋଡାଇ
ଦାନା ଦେଇ ପୁଣି ପାଣି ପିଆଇ
ଫେରାଇଲେ ରୁଦ୍ଧବନେ
ଏସ୍ତବେ ରଜନୀ ପ୍ରସ୍ତଳ ରବ
ଉଇଁଲେ ପ୍ରାଚୀ ଗଗନେ ।

(୧୦)

ଅନ୍ଧ'ପ୍ରତ୍ୟୁଷରୁ ମୂଲିଆକୁଳ
ଗିରିଦା ପାଖରେ ହୋଇଲେ ଠୁଳ
ଉନଧାଡ ଖମ୍ବ ମଧ୍ୟେ ସୁଦୃଢ଼
ଗଛ ବୋଝ ବୋଝ କରିଲେ ରୁଢ଼
ବାନ୍ଧିଲେ ଶିଆଳି ରସି
ଯେମନ୍ତ ମାଖିନା ଡାଳ ବାଛ ତହୁଁ
କାଠ ନପଡ଼ିବ ଖସି ।

(୧) ବାଦଲ—ମେଘର ପୂର୍ବାବସ୍ଥା।

(୧୧)

ପୁଙ୍ଖ ପାଖେ ତାର ଦଶାଳ ବାଠ
ଝୁଲିବାକୁ ଅନୁରୂପ କବାଟ
ଖଳ କଣ୍ଠବାଣୀ ପରି ମୁନିଆ
ଯହିଁ ଦୃଢ଼ ହୋଇଥିଲା ବାଡଆ
ବହୁତ ଲୌହ କଣ୍ଟକ
ଶିରେ ଭୂଷି ଦେଇ      ଦାରୁଣ ବେଗରୁ
କରିବ ରୋଲ୍ ଅଟକ ।

(୧୨)

ରଚିଲେ କୌଶଳେ ବୈର ଦୁଆର
ଅଚଳା ଗହ୍ୱର ସମ ଆକାର
ନିଷ୍ଟଳ ସ୍ୱବରେ ଯହିଁରେ ପଶି
ପୂରେ କେହ୍ନ ଅନ୍ଧ ଦୃଢ଼ ସାହସୀ
ହାତ୍ଗା ଗୋଡ଼େ ଦେଇ ପାଶ
ଚିର ସ୍ୱାଧୀନତା      ବନାଶି ତାହାର
କିଣିନେବେ ପଉରୁଷ ।

(୧୩)

ଦୁହ୍ନୁତ ଦନର ମଞ୍ଜି ପୁରୁଣା
ଅର୍ଦ୍ଧଚନ୍ଦ୍ର ସରି ତା ପରେ ବେନା
ମୂର୍ଖ ବୋଧ ସମ ସଦା ଅଟଳ
ପଂକ୍ତିରୁ ଭ୍ରଷ୍ଟ ସେ ଯେସନ ଖଳ
ଏମନ୍ତ ସ୍ତମ୍ଭ ଯୁଗଳ
ଯୋଡା ହୋଇ ଆଗେ      ବାହୁଙ୍କ ଦୁର୍ବର
କବାଟ ଝୁଲ୍ଲ ଅର୍ଗଳ

(୧୪)

ଗୁରୁଜନ ଭକ୍ତି ସହିତେ ସ୍ୱର-
କବାଟକୁ ବାଠ ପାଖରେ ବେଢ଼ିର
ଯଣ୍ଡ ଜଠ ସମ ଛଣି ପଠରେ
ସପହେ ଗୁଡ଼ାଇ ସେ ଅଞ୍ଚଳରେ

ଓଠାଇ ଦେଲେ ଝୁଲାଇ
କୌଣ୍ଠ ଗିର ରକ୍ତ                ମୁଖେ ନବଘନ
କବା ପ୍ରବେଶିଲା ପାଇ ।

(୧୫)

ପଚାଶ ଛବିଶ ଜଣ ମୂଲିଆ
ଏକ ସ୍ଥାନେ ହୋଇ ଏକାନ୍ତେ ଠିଆ
ଦ୍ୱାରେ ଝୁଲୁଥିବା କବାଟ ଧରି
ନିକାଠିଆ ଯୋଗେ ଉର୍ଦ୍ଧ୍ୱେ ଓଠାଇ
ସଦମ୍ଭେ ହୁଙ୍କାର ମାରି
ଠେକ ଠେକ ଧୀରେ              ସଳଖେ ରଖିଲେ
ଊର୍ଦ୍ଧ୍ୱରେ ସ୍ତମ୍ଭୁଆ ଘର ।

(୧୬)

ସ୍ଥୀଷ୍ମ ଦବା ସମ ଦୀର୍ଘ ଅତ୍ୟନ୍ତ,
ଅଭୁଟ ସୁଜନ ମିତ୍ରତା ବନ,
କ୍ରୂର ହୃଦୟର କର୍କଶ ଅନ୍ତ,
ପକାଇ ଏମନ୍ତ ରଶ୍ମିଝଟଣ
ଉପରେ ଗଛ ବେକାରେ
ଘେରାଇ ସଳଖେ                ବାନ୍ଧିଲେ ଆକର୍ଷି
ସୁଦୃଢ଼େ ପଛ ପାଖରେ ।

(୧୭)

ଗିରବା ଦୁଆର ବେଢ଼ ପାର୍ଶ୍ୱରେ
ଟାଣି ଦେଲେ କାନ ବାତା କାଠରେ
ବାଟକୁ ଟାଣିବା ପାଇଁ କି ଆଉ
ମେଲିଲ ଗିରବା ତା ଦୀର୍ଘ ବାହୁ
କିଅବା ବଳ ଆଗରେ
ବାରଣର ଘୋର                ବଷୋଦ୍ଧେ ଉଠିଲା
ତରଙ୍ଗ ସ୍ୱର ଅଚରେ ।

(୧୮)

ଓକାଇବା ଲଗି ତାହାକୁ ଭ୍ରମେ
କେ କେତେ ଉପାୟ ରଚିଲେ କମେ

ତୃଣ ଲତା ଗୁଳ୍ମ ଘାସ ପତରେ
ପଲ୍ଲବ ବହୁଳ ଡାଳ ନଙ୍କରେ
ଅଚ୍ଛାଦଲେ ସବୁ ପାର୍ଶ୍ୱ
ଗିରଦା ଭିତରୁ ଖଣ୍ଡେ ଦୂର ଯାଏ
ପୋତିଲେ କଦଳୀ ଅଶ୍ୱ ।
(୧୯)
ସ୍ୱେଚ୍ଛାରେ କାଟିବାକୁ ଦଉଡ
ତୃଣର ମାରନ୍ତି ପାଚେରି ଘେରି
ଲୁଚିଲେ ତହିଁରେ ଧରମୁ (୧) ଖାଣ୍ଡ
ସବଳରେ ଧରି ସୁତୀକ୍ଷ୍ଣ କାଣ୍ଡ
ଯେସନେ ସ୍ୱବଣ ଅରି
ବାଳି ଆଗମନ ସ୍ପୃହି ରହିଥିଲେ
ଲତାମୂଳେ ଧନୁର୍ଦ୍ଧର ।
(୨୦)
ନୀରବେ ରହିଲେ ଜଗୁଆ ପ୍ରଜା
ନ ବାଜିଲ୍ଲ ଆଉ ପାଖର ବାଜା
ବନ୍ଧୁକିଆ ଦଳ ଅତି ସତର୍କେ
ଛପିଲେ ଗୁପ୍ତରେ ଗିରଦା ପାଖେ
ରଖିଲେ ବୁଲା ସଜାଇ
ବାରଣ ପଡ଼ିବା— ମାତ୍ରକେ ଚୌପାଖେ
ଚଳିଲେ କାଲବା ।ପାଇଁ ।
(୨୧)
ଏକମୁନା ଉଚ୍ଚ ବୃକ୍ଷ ତରଛ
ପାଇକ ନକର ଧରିଲେ ବାଛ
ଠଣା ଦେଲେ ଖଣ୍ଡେ ଦୂରରେ ଯାଇ
ପଞ୍ଚୁପଞ୍ଚୁ ହାତୀ ସହିବ ଧାଇଁ
ଜଗିବାକୁ ସ୍ୱରପାଶେ
ଯେପରି ପ୍ରଚଣ୍ଡ ଶୁଣ୍ଡ ଦଣ୍ଡ ତାଇ
ଗିରଦା ପାଖେ ନ ଅସେ ।

(୧) ବାମ ବଂଶେଷ ।

(୨୨)

ହାତୀ ଧରିବାର ଗଲରେ ମଜ୍ଜି
ଶିବରେ ଫେରିଲେ ଅମଲ୍ଲ ସ୍ୱଚ୍ଛ
କବାଟ ପଡବା ଶବ୍ଦକୁ ଶୁଣି
ରହିଲେ ସରବେ ଉତ୍ସୁକେ ତହିଁ
କେତେ ବାହାପିଆଁ ଜନ
ଗର୍ଜିଲେ ଯେପରି ଗିରଦାରେ ବସି
ସହିତେ କରିବେ ରଣ ।

(୨୩)

କେ କହଇ ହାତୀ ଆସିଲେ ତଡ଼ି
ଶିବରେ ଭୁଷିବ ବଲମ ବାଡ
କେ ସ୍ୱପଇ ହୁଲା ଯାକିବ ନେଇ
କେ ବୋଲେ ବନ୍ଧୁକେ ଦେବ ଫେରାଇ
କେ କହଇ ନଖ ଧରି
ଏତେ କଥା କହିଁ ଖାବଡ଼େ ମାରିଲେ
ଭୟେ ଘୁଞ୍ଚିବ କରୀ ।

(୨୪)

କେ ବୋଲେ ମାଖୁନା ଯେବେ ଭୟରେ
ନ ପଶିବ ଗିରଦାର ଭିତରେ
ଶୁଣିକେ ସୁଟଇ ଫାଶ ମାରିବା
ଆନବୋଲେ ଭାଇ ଠୋପ ପାଣ୍ଠବା
ହାସରସେ ବାରବାର
ଉଭର—କୁମର ପରସ୍ପରେ ପ୍ରହର୍ଷ
କରିଲେ ଥରକୁଥର ।

(୨୫)

ତେବେଣେ ସିପାହିଏ ପାଇକ ମେଳେ
ସଦମ୍ଭେ ଜଗତ ବେଢ଼େ ପସିଲେ
ହାତୀ କାଳବାକୁ ଚିରିଦା ମୁଖେ
ଦଉଡ଼ିଲେ ବ୍ୟଗ୍ରଭବରେ ଉତ୍ସୁକେ

ଯେସନ ବାୟୁ ମଣ୍ଡଳ
ପ୍ରବଳ ବେଗରେ     ଧାଏଁ ସମ୍ମୁଖରେ
ତଡ଼ିବାକୁ ମେଘଦଳ ।

(୨୬)

ଯଥାସ୍ଥାନେ ବନେ କଣ୍ଟିକୁ ହେଉ
ଧାଡ଼ଧର ବହୁଦୂର ଆବୋର
ସର୍ବେ ଅଗ୍ରସର ହେଉଁ ସଧୀରେ
ଅଗ୍ରେ ସ୍ଥୂଲଙ୍ଗ ସେ ଅଲକ୍ଷିତରେ
ସତେ କି ସାଗର ଲହରୀ
ବେଳାମୁଖେ ଭଗ୍ନ—     ତର ମାସ୍ତୁଲକୁ
ଆନ୍ଦୋଳଇ ନାଏ ଘିଷି ।

(୨୭)

କେତେବେଳେ ଶିଳେ ଶିଳ ବଜାଇ
ତଣ୍ଟିରୁ ଅଦ୍ଭୁତ ସ୍ୱର ଜନ୍ମାଇ
ବାରଣର କର୍ଣ୍ଣ ତାଳ ସମାନ
ତାଳପିଟି କେବେ ପ୍ରକଟ ସ୍ୱନ
କେବେ ବା ବାନର ପର
ଚୁଣ୍ଡ ଶବଦକୁ     ନାକ ବାଟେ ଅଣି
ଗମ୍ଭୀରସ୍ୱରେ ହୁଙ୍କାର ।

(୨୮)

କେବେ ପାର୍ଶ୍ୱ ଛେକିବାକୁ ଧପନ୍ତି
କେତେବେଳେ ଅବା ପଛକୁ ହଟି
କେବେ ଠିଆହୋଇ ସେହି ସ୍ଥାନରେ
କେବେ ବା ଅଗକୁ ଦଉଡ଼ ଖରେ
କେବେ ଅଲକ୍ଷିତେ ରହି
ତଡ଼ନେଲେ ଧୀରେ     ବାରଣକୁ ନାନା
ଛଳଶଳ ପ୍ରକଟଇ ।

(୨୯)

ସ୍ଥୂଳ ପାଦ୍ ହାତ କେବେ ଦଉଡ଼
କେବେ ଠିଆ ହୋଇ ରହଇ ଅଡ଼

କେତେବେଳେ ଅବା ମାରେ ଠୁଙ୍କର
କେବେ ତଳେ ପିଠେ ଥୋଡ଼ପାହାର
କେବେ ଠେକି କାନ ଦୁଇ
ଯୁଗ୍ମ ପାଞ୍ଚ ପଦ ଧପଟି ଆଗକୁ
ପଛକୁ ପୁଣି ହୁଟଇ ।

(୩୦)

କେବେ କାଳିଆଙ୍କ(୧) ପାଖେ ଦଣଇ
କେବେ ଧାଇଁ ବହୁଦୂର ଗମଇ
କେବେ ତାଙ୍କ ଦଗେ ଫେରି ତ୍ୱରିତ
ଆକ୍ରମିବାଲାଗି ହୁଏ ଉଦ୍ୟତ
କେବେ ତରୁଲତା ଦଳି
ଗୁରୁ ଗୁରୁ ଶବ୍ଦେ ମଣ୍ଡଳ ଆକାରେ
କ୍ରୋଧରେ ଲଗଇ ବୁଲି ।

(୩୧)

ଏ ସବେ ତାହାକୁ ଗୁଳି ସଙ୍କଳେ
ଯେମନ୍ତ ଗିରିଦା ମୁଖେ ଆଣିଲେ
ଘୋର କୋଳାହଳେ କାନନପୁର
ଏକାବେଳେ ଠାଣେ ଗର୍ଜିଲେ ହୁର
ବିକଟ କୁହାଟସହ
ଘନଘନ ନଳୀ ନାଦରେ ସେସ୍ଥାନ
କମ୍ପାଇଲେ ଅହରହ ।

(୩୨)

ଏସବେ ମାଖୁନା ହୋଇ ଆକ୍ରାନ୍ତ
ଆଚମ୍ବିତେ ହେଲା ଭୟେ ଚକିତ
ସମ୍ମୁଖ ଗିରିଦା ମୁଖେ ନ ପଶି
ଘୋର ଘୋଷେ ଗଛ ଝାଡ଼ ଧରଷି
ପଛକୁ ଫେରି ତକ୍ଷଣେ
ବିଜୁଳି ବେଗରେ ସେମାନଙ୍କୁ ଲଙ୍ଘି
ବନେ ହେଲା ଅନ୍ତର୍ଦ୍ଧାନ ।

(୧) କାଳିଆ—ସ୍ଥଳକ, ଯେଉଁମାନେ ଶଙ୍କ କରି ଶିକାରୀଙ୍କୁ ସୁବିଧା ଦଅନ୍ତି ।

(୩୩)

ଝନଝର ଏହୁସ୍ୱରେ ସକଳେ
ଅଣିଲେହେଁ ତାକୁ ନାନାକୌଶଳେ
ଝନଝର ଯାକ ଏସ୍ତ୍ରଣ ଧର
ଗିରଦାକୁ ଅସି ଲୁଗିଲ ଫେର
ସର୍ବେ ହେଲେ ଶ୍ରମେ କ୍ଲାନ୍ତ
ଦବସ ସରିଲ ପଶ୍ଚିମ ଦଗକୁ
ଅସ୍ତ୍ରିଲେ ନଳନୀ ନାଥ ।

(୩୪)

ବୃଜବାରେ ହୋଇ ଅକୃତକାର୍ଯ୍ୟ
ବାହାଉଲେ ମାହୁନ୍ତଆ ସମାଜ
ତାହାର ଚତୁରପଣିଆଁ ଗୁହିଁ
ନଜ ଗୁହିଁରେ ହେଲେ ବୁଲଇ
କୌଶଳେ ଅଣିବା ଆଶେ
ସବହାଗ ଚଢ଼ି ଜଙ୍ଗଲକୁ ଧାଇଁ
ଦେଲେ ସର୍ବେ ଅବଶେଷେ ।

(୩୫)

ଚନ୍ଦ୍ର ଅନୁସର ଉଚ୍ଛୃଙ୍କମନେ
ହାଲଦାରସହ ପଶି ଅରଣ୍ୟେ
ଭେଟିଲେ ତାହାକୁ ଲକ୍ଷୀରସହ
ଏମାନଙ୍କୁ ଦେଖି ବହୁ ସେ କୋହ
ଦଉଡ଼ ଆସିଲ ବେଗେ
ମାହ ଦଳ ଦେଖି । ପୂର୍ବ ମାଡ଼ ସ୍ମର
ପଳାଇଲ ଭୟ ବଶେ ।

(୩୬)

ଆପୁଆକୁ ଝାଣେ ଆପୁ ଯେପର
ଲୌହକୁ ଯେସନ ଚୁମ୍ବକ ଗିର
ହସ୍ତିଏ ତେସନ ବୁଲଇ ରସେ
ମାଖୁନାକୁ ସଙ୍ଗେ ଘେନ ରହସେ

ପରସ୍ପର ମିଳି ସୁଖେ
ପକ୍ଷୀ ଖାଇ ଖାଇ ଆନନ୍ଦେ ଚଳିଲେ
ନିର୍ଜନ ଗିରିଦାମୁଖେ ।

(୩୭)

ତହୁଁପରେ ପୁଣି ମାତୃଭକ୍ତମାନେ
ପଦ ନଖମୂନ ନିଖି ମନେ
ଲକ୍ଷ୍ମୀ ହାତୁଣୀକୁ ଆଗେ ଚଳାଇ
ମାଖୁନାକୁ ଧୀରେ ଧୀରେ ମଣାଇ
ଏକାଗେ ସେକାଗେ ଯାଇ
ଆଣିଲେ ଅତ୍ୟନ୍ତ ସତର୍କେ ସଭୟେ
ଗ୍ରୀବପାଖୁଁ ଛେକି ଛେକି ।

(୩୮)

ଆଗେ ଯାଉଥିଲା ଲକ୍ଷ୍ମୀ ଇଞ୍ଜିନ
ଇଞ୍ଜିନସ୍ଥରସେ ନିଷାଦଗଣ
ଉଠୁଥିଲା ଧୂମ ଛଳରେ ରଜ
ପଛ ହାତଯାକ ତାର ଭେରଜ (୧)
ଗିରିଦା ଷ୍ଟେସନ ମୁଖେ
ଯାଉଥିଲେ ଘୋର— ଘୋଷେ ବନଗିରି
କମ୍ପାଇ ପରମ ସୁଖେ ।

(୩୯)

ଈର୍ଷା ପରେ ଅହଂକାର ପ୍ରକାର
କବା କାମ ପଛେ ଯଥା ଶୃଙ୍ଗାର
ଅବା ଯେସନ୍ତେ ଲୋଭ ପଛେ କାର୍ପଣ୍ୟ
କିବା କୋଧ ପଛେ ଗାଳି ଯେସନ
ତେସନ ଲକ୍ଷ୍ମୀ ପଛରେ
ସବେ ବଶହୋଇ ମାଖୁନା ମନ୍ତ୍ରରେ
ଚଳୁଥିଲେ ଆନନ୍ଦରେ ।

---

(୧) ରେଳ ବସିବା ଗାଡ଼ି ।

(୪୦)

ବନ୍ଧନର ଏକା ମୂଳକାରଣ
ସଂସାର ମଧ୍ୟରେ ରମଣୀଗଣ
ସୁନା ଲଙ୍କା ହେଲା ସେହେତୁ ଚୂନା
କୀଚକର ଶିର ହୋଇଲା ହୁଣା
ସୁରେନ୍ଦ୍ର ସିଂହ ଏଣ୍ଡନ (୧)
ନାରୀରୂପ ଧାଇଁ ଚରଣନ ପାଇଁ
ଆସିଲେ ରଣଅଙ୍ଗନା ।

(୪୧)

ଲୋଭହିଁ ସକଳ ଅନଷ୍ଟ-ମୂଳ
ତାର ବଶ ହେଲେ ବୁଡ଼ଇ କୂଳ
ଲୋଭେ ପଡ଼ି ପୂର୍ବେ ଶ୍ରୀରଘୁମଣି
ହରାଇଲେ ସୀତା ସମ ଘରଣୀ
ଶିରଦା ଭିତରେ ଆଖୁ
ନରେଶି ଲୋଭେ ସେ ତା'ମଧ୍ୟେ ରହସେ
ଚଳଗଲା ତାଙ୍କ ପାଖୁ ।

(୪୨)

"ବକଧାର୍ମୀ" ହୋଇ ଧରମୁଖାଣ୍ଡ (୨)
ଠାକଥିଲା ଏହି ସୁଯୋଗ ପ୍ରଣ୍ଡ
ଶିରଦା ଭିତରେ ପ୍ରବେଶ ଜାଣି
କଲ ଦଣ୍ଡଡ଼କୁ ଦଅନ୍ତେ ହାଣି
କବାଟ ନର୍ଘାତ ପର
ପଡ଼ିଲା ଝଟତ ଶିରସ୍ତମ୍ଭ ଛଡ଼
ଖସଇ ଯଥା ଶିଖର ।

(୪୩)

ପଡ଼ିବା ବେଳରେ ତାର ସୁଷମା
ମନେ ଜନ୍ମାଇଲା ଏହି ଉପମା
ବାମନ ପାଦ କି ଆସିଲା ଖସି
ଇନ୍ଦ୍ରାତଳେ ଅବା ଯିବ ତା'ପଶି

(୧) ସେମ ଇତହାସ ଅନୁଶଣେୟ । (୨) ବ୍ୟକ୍ତି ବଶେଷ ।

ଦ୍ୱାରେ ହୋଇ ଲମ୍ବମାନ
ଶବ୍ଦଛଳେ ଅବା ବଜାଇଲା ହାଣି—
ଧସ୍ ପଡ଼ିବା ନିଶାଣ ।

(୪୪)

କବାଟ ଗିରଦା ମଜଲସର
ହୋଇଥିଲା ଆଗେ ବଡାନବର
ପଖାକାର୍ଯ୍ୟସାଧି ପଡ଼ିଲା ବେଳେ
ଗବାକ୍ଷ ହୋଇଲା ଦେଖିବା କାଳେ
ପରେ ହେଲା ଯବନିକା
ଅଭିନୟ ହେବ ଏଥିରେ ମାଖୁନା
ବନ୍ଦନରୂପ ନାଟିକା ।

(୪୫)

ଘୋରନାଦେ ପଡ଼ିବାରୁ କବାଟ
ଜଗିଏ (୧) ଛଡ଼ିଲେ ମହା କୁହାଟ
ପ୍ରତିଧ୍ୱନି ତାହା କଲା ପୃଥୁଲ
ଶୁଣି ବନଗଜ ଭୟେ ଆକୁଳ
ବସ୍ତୁରିଲେ ମନେ ମନେ
ଗିରିଶ୍ୱବ ଅବା ମାରିଲେ ଦେବେନ୍ଦ୍ର
ତାକୁ ବଜ୍ର ପ୍ରହରଣେ ।

(୪୬)

ଶବ୍ଦ ଶୁଣି ଲୋକମାନେ ଧାଇଁଲେ
ଦୀର୍ଘ ହୁଲାଜାଲ ଜାଳି ଚଳିଲେ
ଗୁଡ଼ ମାଟିଆକୁ ଜନ୍ଦା ପ୍ରକାରେ
ଘେରିଲେ ଗିଜଦା ବୁର ପାଖରେ
ଧରି ଏକ ମୁନା ଶୂଲ
ସଦମ୍ଭେ ଜଗିଲେ ଯେତେକେ ଧାଇଁ ଧାଇଁ
ନ ମାରେ ସେ ଶିକ୍ରତାଳ ।

(୧) ଜଗିଏ—ଦେଶଜ, ଜଗିଥିବା ଲୋକମାନେ ।

(୪୭)

ଚଉଦଗୁଁ ଲୋକେ ହୋଇଲେ ରୁଣ୍ଡ
କେବଳ ଦିଶିଲା ମନୁଷ୍ୟ ମୁଣ୍ଡ
କେ ଉଠେ ଗେରଦା କାଠକୁ ଧରି
ଉଠୁ ଉଠୁ କିଏ ପଡଇ ଡରି
କିଏ ଚଢ଼ି ଗଛପରେ
କୌତୁକେ ବସିଲେ     କିଏବା ଦୁଃଖରେ
ଦେଖିଲେ ସଭା ଭିତରେ ।

(୪୮)

ଅତର୍କିତ ବଣେ ଗଜ ଏକାଳେ
ପଡ଼ି ଘୋରତର ବିପଦ ଜାଲେ
ପୁଚ୍ଛ କବଳିତ ଆଖୁ କଦଳୀ
ସାଧ୍ୱସେ ବଦନୁ ପଡ଼ିଲା ଗଳି
ଚକିତେ ଦେଖିଲା ରୁନ୍ଧି
କାଠର ପ୍ରାଚୀର     ଶୁଣ୍ଡ ମୁଡ଼ା ତାଉ
ନ ପାରିବ ଗଲା କାନ୍ଧି ।

(୪୯)

ନଟାତେ ପଲ୍ଲବ ପୁଷ୍ପ ପ୍ରକାର
କାନ ବ୍ୟଜନକୁ ରଖି ତାହାର
ଫଣୀ ଫଣା ପରି ଶୁଣ୍ଡ ଉଠାଇ
ଗୁଦକ୍କି ଗୁଦକ୍କି ଦେହ ଫୁଲାଇ
ତରଟି ନୟନ ଗୋଲ
ଗେରଦା କାନ୍ଥକୁ     ଗୁର ହାତ ଖଣ୍ଡ
ଅଧୀରେ ଲଗିଲା ଗୋଲ୍ ।

(୫୦)

ଘନ ଘୋଷ ପରି ଗର୍ଜି ପ୍ରଖର
କେବେ ପ୍ରହାରିଲା ତଳେ ପୟର
କେବେ ପଙ୍କ ସହ ରଙ୍ଗିଆ ମାଟି
ଫିଙ୍ଗିଲା ପିଠିକୁ ଶୁଣ୍ଡେ ସାଉଁଟି

କେବେ ବା ଖର ବେଗରେ
ଉପରକୁ ପୁଚ୍ଛ— ଟେକି ଧପନ୍ତିଲେ
ସାମନା ଅଡ଼କୁ ଖରେ ।

(୫୧)

ତମତମେ ଗଛପତ୍ର ସାଉଁଟି
ଯେ ଢଗେ ଦେଖେ ସେ ନେତ୍ର ତପ୍ତି,
ଶୁଷ୍କ ପତ୍ର ପର ଡ଼ଉରୁଡ଼ାମାନେ
ଗିରଦା ପାଚେର ଉପରୁ ଷଣେ
ତଳକୁ ପଳାନ୍ତ ଡେଇଁ
'ହନ୍ତୀ ହସ୍ତ ସହ— ପ୍ରେଣ' ଗୃଣବ୍ୟର
ବାକ୍ୟକୁ ଦାଖିଲ ଦେଇ ।

(୫୨)

ନ ଜାଣିଲ ପର ଏ ଗଣ୍ଡଗୋଳ
ଲକ୍ଷ୍ମୀ ନଣ୍ଟିନ୍ରବେ ଗୁହ୍ଣି ସକଳ
ସ୍ୱଚ୍ଛନ୍ଦେ ଭୁଷଇ ଅଖୁ କଦଳୀ
ଗିରଦାରେ ମହା ଆନନ୍ଦେ ବୁଲି
କପାଁ ସେ ହେବ ଅଧୀର
ଟିଣି ଟିଣି ଶୁଣି ଡରନ୍ତି କି କେବେ
କଂସାର ଘରର ପାର ।

(୫୩)

ଗଗନେ ଉଠିଲେ କମେ ମିହୁର
ଅନ୍ତଶ୍ରମେ ହାତୀ ହେଲା କାତର
ହାଲଦାର ତାର ଏଦଶା ଭଲି
ପ୍ରକାଶିଲେ ଫାନ୍ଦେ ବାନ୍ଧିବା ଭାଲି
ଆଜ ରହୁ ଗିରଦାରେ
ଏକାବେଳେ କୋର ପ୍ରକାଶିଲେ ହୃଦ
(୧) ଅବସାଦେ ମରଷାରେ ।

(୧) Heart-fell.

(୫୮)

ଘନଧ୍ୱନି ଶୁଣି ଯଥା ମୟୂର
[୧] ମେଣ୍ଢେ ପ୍ରତିଧ୍ୱନି ଆଚରି ଡାର
ରହିଲେ ଗିରିଦା ଚୌପାଶେ ଘୋଟି
ଜଗତ ବେଢିଏ ପାଇଲେ ଛୁଟି
ଅମଳିଏ ଆନନ୍ଦରେ
ଗତ ଗ୍ରହ ଉଜା— ଗର ଶ୍ରାନ୍ତିନାଶେ
ଫେରିଲେ ସୁଖେ ଶିବିରେ ।

---

[୧] ମାତୃଳମାନେ

# ୪ର୍ଥ ପରିଚ୍ଛେଦ

## ରସକୁଲ୍ୟା

(୧)

କ୍ରମେ ପ୍ରକଟିଲା ପ୍ରଦୋଷ ଛବି
[୧] ମନଭଙ୍ଗା ଶିଖେ ବୁଡ଼ିଲେ ରବି
ନୀଳରୁ ପାଟଳ ହୋଇ ଆକାଶ
କ୍ଷଣକେ ଧରିଲା କାଳିମା ବେଶ
ଗଗନେ ନକ୍ଷତ୍ର ଗଣ
ଫୁଟିହେଲେ ସନ୍ଧ୍ୟା — ଅନ୍ଧାର କଣ୍ଟି
ପଥରେ ସ୍ୱ ତେଜମାନଙ୍କ ।

(୨)

ଆଲୁଷିଲା ଛାୟାପଥ ଅମ୍ବରେ
ପୋତାଲୀ ଭାସିଲା ସ୍ୱପ୍ନ ସାଗରେ
ନବଯୋଗୀ ଆତ୍ମ ପ୍ରକାଶ ପରି
ଦେଖାଇଲା ଧରା ନିଜର ଶିରୀ
ଦଶି ନ ଦଶିଲା ଛବି
ନବ ଯୁବତୀର ଅନ୍ତର୍ଗତ ଭାବ
ଭାବ ପରି ତା ଅଠଭ ।

(୩)

ନିଦ୍ରାଦେବୀଙ୍କର କୋମଳ ଅଙ୍କେ
ଆଶ୍ରିଲେ ଏକାଳେ ସର୍ବେ ନିଃଶଙ୍କେ
ନୀରବ ନିସ୍ତଳ ହୋଇଲା ସଂସାର
ବଣିଲା ନିଦ୍ରିତ ପଣ କାନ୍ତାର
ଏ ସୁଯୋଗ ଲଭିହାତି
ଶିରଦାକୁ ଲଙ୍ଘି ପଳାଇବା ପାଇଁ
ଉଦ୍ଧାମେ ଉଠିଲା ମାଣ୍ଡ ।

---

[୧] ଦେବଗଡ଼ ପର୍ବତର ଉଚ୍ଚ ଶୃଙ୍ଗ

(୪)

ବଙ୍କେକ ତାହାର ବକ୍ଷମଦମ୍ଭ
କ୍ରମେ ହେଲା କାଲ କାଲ ଆରମ୍ଭ
ତା ଶୁଣି ତକ୍ଷଣ ନିଦ୍ରା ବରଜ
ଶଯ୍ୟା ଉପେକ୍ଷିଲେ ଯେତେକ ତେଜା
ଖାରୁଏ ମହାଭୟରେ
ବ୍ୟାଜେ ଘନ ଘନ ଘୁଙ୍ଗୁଡ଼ି ଛାଡ଼ିଲେ
ଶ୍ୱାସ ସଙ୍ଗେ ଶଯ୍ୟାପରେ ।

(୫)

କାଏବା ଅଳସେ ପେଠକୁ ଜାକି
ମୁହଁ ମାଡ଼ିତଳେ ଗଲ୍ପ ଲଠିକି
କେ ଉଠେ ଅନ୍ଧାରେ ସ୍ୱର ଗଳପି
ତାକୁହାକୁ ନଜେ ରହିଲା ଛପି
କେତା ନାଶ ଟିକେ ସୁଙ୍ଘି
ପୁନଃ ପୁନଃ ଛିଙ୍କି ସରଦି ଛଳରେ
ରହିଲା ଶିର ଆଲିଙ୍ଗି ।

(୬)

ସ୍ପର୍ଦ୍ଧା ଯେ କରୁଥିଲେ ପ୍ରଖର!
ସେମାନଙ୍କୁ ଆଗେ ଆସିଲା ଜ୍ୱର
ଖାଲି ଥର ଦୁଇ ଗୋଡ଼ ମେଲାଇ
ଅବୋର ବସିଲେ ନଆଁ କୁଣ୍ଡାଇ!
ମୁଖେ ଗୁଲ ଗୁଲ ବୋଲି
ହାଇମାରି ଉଠେ ଅଳସ ଭାଙ୍ଗି କେ
ପଡ଼ିଲେ ଶଯ୍ୟାରେ ଢଳି ।

(୭)

ତହିଁ ଯେତେ ଥିଲେ ମୃଗୟାଦକ୍ଷ
ଉଲ୍ଲାସେ ଧାଇଁଲେ ଯଥା ହର୍ଯ୍ୟକ୍ଷ
କୁନ୍ତ ଏକମୁଦା ବରଛି ଲଉଠି
ଧେନ ଗିର୍ଦ୍ଦାର ବାଡ଼ିରେ ଉଠି

ଘେରିଲେ ରଣ ଭଙ୍ଗୀରେ
କୁରୁକ୍ଷେତ୍ର ଯୁଦ୍ଧେ                    ଅର୍ଜ୍ଜୁନକୁ ଯଥା
ଚକ୍ରବ୍ୟୂହେ କୁରୁଶ୍ରେ ।

(୮)

କାନ୍ତାରସାଗରେ ବାଡ଼ବ ବତ
ପ୍ରଜ୍ୱଳତ ଦୃଲାମାନ ସନ୍ତତ
ପ୍ରଜ୍ଜଳ ଅସ୍ତ୍ର ଶସ୍ତ୍ର ସମୂହେ
ନୟନକୁ ଝଲସାଇ ଦେଲେହେଁ
କୋପେ ସେ ସବୁଙ୍କୁ ଗଜ
ଖାତର ନ କରି                    ଶୁଣ୍ଡ ଦଣ୍ଡାଘାତେ
ଉଡାଇଲ ଖାଲି ରଜ ।

(୯)

ଆୟୁଧ୍ ଅସ୍ତ୍ରାଳ ଯେତେ ରକ୍ଷକେ
ତାହାର ଉଦ୍‌ବେଗ ଦେଖି ପଲକେ
କାଏବା ବଲମ ବଳେ ଭୂଷିଲେ
କାଏ ନେଇ ମୁଖେ ଦୃଲା ଯାଙ୍କଲେ
ସାଇଲକ୍ଷଣି ଏ ଘାତ
ତାଲ ପରେ ତାଲ                    ମାଇଲେ ବାତେ ସେ
ଯେସନେ ପଡ଼େ ନଘାତ ।

(୧୦)

ଦୃଢି ଦୃଢି ଦମ୍ଭେ ପଛ ପାରୁଶେ
ଧାଇଁ କବାଟକୁ ମାଇଲ ବେଗେ
ତହୁଁ କଣ୍ଟାମାନ ଉପୁଡ଼ି ବଲେ
ଲଷ୍ଟି ଗଲେ ତାର ମଧ୍ୟ କପାଳେ
ମିଳଲ ଉଚତ ଫଳ
ନଇ ଦେହେ ଯିନା                    ଛତକୁ ବାଙ୍କଇ
ଗଂରକୁ ଫଙ୍ଗିଲେ ଢେଲ ।

(୧୧)

ସେ କଣ୍ଟାକୁ ଭରେ ଧରି ଓଠାର
ଲାଚନା ଅଙ୍କୁରେ ପ୍ରଖରେ ଘୁରି

ଚଳ କ୍ଷିପ୍ର ପର ନାନା ଭାବରେ
ତେଜ ପ୍ରକାଶିଲ ଗିରଦାପରେ
ଯେସନ ଯଜ୍ଞ ମନ୍ଦରେ
ନଭସ୍ୱ ରାବଣି (୧) ଯୁଝିଲ ସଦମ୍ଭେ
ସୌମିତ୍ରି ସହ ରୋଷରେ ।

(୧୨)

ପାଦେ ଦାଉ କେବେ ଲାଗିଲ ଖଣ୍ଡା
କେତେବେଳେ ପୁଣି ଲଗାଇ ଅଣ୍ଟା
ହାତୁଣୀକୁ ଯାକି ଢଳେ ତହୁଁରେ
ଝୁଲ ଗୋଡ଼ ଠେକି ଗିରଦାପରେ
ଲଦ କେବେ ସଣବଢେ
ଝୁଙ୍କା ଝୁଙ୍କା ନଳୀ ନନାଦରେ ଝଳେ
ସୁଦ୍ଧା ନହୁଟିଲ ପଦେ ।

(୧୩)

ଗିରଦା ଉପର ଦରଣ୍ଡି ହସ୍ତେ
ଗରଜି ଡାକିଲ ଲୋକଙ୍କୁ ବ୍ୟସ୍ତେ
ଫଡ଼ ଉଠି ସେହୁ ବନ ଶୃଗାଳ
ଚମକ୍କ ଚମକ୍କ ମାଡଇ ତାଳ
ଧନ୍ୟ ଧନ୍ୟ ତା ବିକ୍ରମ
ଚିନ୍ତଏ ମନରେ ଗଣୁନାହୁଁ ଅରେ
ବରଛି ଭଲ୍ଲ ବଲମ ।

(୧୪)

ଦଲ ଦଲ କମ୍ପିଯାଏ ଗିରଦା
ପାଷାଣ ପତ୍ରଏ ହେଲ ସେ ଗଦା
ଲୁନ୍ତ ଏକମୁନା ବରଛି ଭଲ୍ଲ
ବାଗ ନ ପାରଲେ ତା ଟିବ୍ରଡାଳ
ଝରଇ ଦେହୁଁ ଶୋଣିତ
ଅଗ୍ନେୟ ପଟତ ଭେଦଅବା ଦୃଢ଼
ବହିଲ ହିଙ୍ଗୁଳ ସ୍ରୋତ ।

(୧) ମେଘନାଦ ବଧ ଅନୁସରଣେ

(୧୫)

ଦିଗମଣ୍ଡଳ ଗ୍ରାସୀ ଝଙ୍କଣ ଧ୍ୱନ
ବନ୍ଧୁକର ଘନ ଘନ ଗର୍ଜନ
ତା'ସଙ୍ଗ ହାତୀର ତୀବ୍ର ବୃଂହିତ
ମିଶିତହିଁ ବୀରଙ୍କର ହୁଙ୍କୃତ
ଏକତ୍ର ହୋଇ ପୃଥୁଳ
କଲାନ୍ତ କାଳର          ଘଡଘଡ଼ି ପରି
ହୃଦୟ କଲା ଆକୁଳ ।

(୧୬)

ଗଜ ପଦାଘାତେ ଉଡ୍ଡୀନ ଧୂଳି
ବନ୍ଧୁକ ଧୂମ୍ରଲା ତାସଙ୍ଗେ ମିଳି
ସେ ରେଣୁରାଶିକୁ ବହଳ କଲା,
ଗିରିଦା ଉପର ଅନ୍ଧାର ହେଲା
ଦିଶିଲା ନାହିଁ ମାଖନା
ଧପଟି ଧପଟି          ତାଳ ମାରିବାରୁ
କେବଳ ପଡ଼ିଲା ଜଣା ।

(୧୭)

ତାଳ ଭାଙ୍ଗି ବାଜି କ୍ରମଶ ଶ୍ଳଥ
ହେଲା ଗିରିଦାର ପଶ୍ଚିମ କାନ୍ଥ
ମାତ୍ର ମୂର୍ଖ ଗଜ ଛାଡ଼ି ସେ ଫାଳ
ଅନ୍ୟ ଦିଗେ ଯାଇ ମାରିଲା ତାଳ
ଫଳେ ହେଲେ ନିଜେ କ୍ଳାନ୍ତ
ଏବା ବଳ ଥିଲେ          କି ହେବ ଯେବେଟି
ବୁଦ୍ଧି ବିବର୍ଜିତ ପଶୁ ।

(୧୮)

ତରଙ୍ଗ ତାଡ଼ିତ ପୋତ ପ୍ରାକାରେ
ଫିଟି ଠେଁସିହୋଇ ସେ ଆରଡରେ
ମାତ୍ରେ କ୍ଷେକେ ଶୋଷେ ଚଳ ଦ୍ୱୀଗୁଣେ
ଆସ୍ତ୍ର ପର ଜ୍ଞାନ ହରାଇ କ୍ଷଣେ

କ୍ରୋଧେ ଗର୍ଜି ବାରମ୍ବାର
ଲକ୍ଷ୍ମୀ ବାରୁଣୀଙ୍କ ତାଳ କେତେ ମାର
ଦେଲ ପ୍ରେମ ପୁରସ୍କାର ।

(୧୯)

ପୁରୁଷ କୁଳର ଏ ଦଗାବାଜ
ଆଗେ ରମଣୀଙ୍କ ରସରେ ମଜ୍ଜି
ପଛେ ତର୍କୁଁବନ୍ଧ କନ୍ଦିଲେ କଣ
କୁରତେ ଉଠନ୍ତି ରୋଷରେ ଜଳି
ତା ସାକ୍ଷୀ ଋଷି କଳାପ
ପ୍ରେମେପଙ୍କ ପଥ— ଦୃଢ଼ ପଦଗେଡେ
ବଂଶନ୍ତ ସ୍ୱାପଣ ଶାପ ।

(୨୦)

ବାରୁଣୀ ହୃଅନ୍ତା କପାଁ ପରାସ୍ତ
ମାରମାର ତାକୁ କରନ୍ତେ ବ୍ୟସ୍ତ
ଲଳନା ଏ ସୁଖ ଦ୍ରୁହନ୍ତ ଉଣା
ଆଗେ ସୁଖେ ପିଇ ପ୍ରଣୟ ପଣା
ପ୍ରେମ ଭଙ୍ଗେ ହୋଇ ଖପା
କେତନ୍ତ ବସ୍ଥର ଧର୍ମ୍ମାସନେ ଯାଇ
କଳେହେଁ ନଇଛି ରଫା

(୨୧)

ବଂଶମ ବଲୋକ ସ୍ୱଜଳେ ସର୍ବେ
ସଢ ଅଣ୍ଡ ଦଣ୍ଡେ ଯାଏ ଏ ସ୍ୱବେ
ପ୍ରକାଶିବ ହାଟ ଏମନ୍ତ ବଳ
ଶିରଦାର ପୁରପିବତି କାଳ
ବଥାଇ ଗଲଣି ଘଣ୍ଟ
ପ୍ରବଳ ବେଗରେ ଭୂଲ୍ଲ ମାର ମାର
ଝଙ୍କିବାରୁ ଦନଗଣ୍ଡ ।

(୨୨)

ଅବରସ ହୋଇ ଯେତେ ସାହସୀ
କହୁଲେ ଦେବାକୁ ତା ଗୋଟେ ଫାଶି

ହାତେ ଫାଶ ହାତେ ନବେଶ ବୃନ୍ତ
ସ୍ୱେର ବାଠେ ପଶି ଗିର ମାହୁନ୍ତ (୧)
ସତର୍କେ ରହିଲେ ଠାକ
ବଡଶୀ ପକାଇ          ବସିଥାନ୍ତି ଯଥା
ଜଳେ ତହିଁ ରଖି ଆଖି ।

(୨୩)

ଉପରକୁ ହାତୀଥିଲା ଅନାଇଁ
ତଳେ ତାର ଲକ୍ଷ୍ୟ ତଳକୁ ନାହିଁ
ଏ ସୁଯୋଗ ପାଇ ଅତି ସାହସୀ
ସେ ଗିର (୨) ଟଂଗଦା ଉଡରେ ପଶି
ଲଗାଇଲା ପାଦେ ଫାଶ
ବରକ୍ତ ପ୍ରାଣୀଏ          ପଇସା ପାଇଲେ
ପ୍ରାଣେ ନ ରଖନ୍ତି ଆଶ ।

(୨୪)

କୌଶଳେ ସେ ଫାନ୍ଦ ଯୋଖି ପାଦରେ
ଲୁଚଗଲା ଗିର ସ୍ୱେରବାଠରେ
ଗୋଡ଼େ ବନ୍ଧ ଦେଖି ଖୋଲିବା ପାଇଁ
ଅଝାଡ଼ିଲାପାଦ କଷି ନଠାଇ
ବସିଲାମାତ୍ର ତା ବଳେ
ବିଧି ବାମ ହେଲେ          ଅନୁକୂଳ କାର୍ଯ୍ୟ
ଯାଏ ସିନା ପ୍ରତିକୂଳେ ।

(୨୫)

ବାରୁଦ କୋଠିରେ ପଡ଼ିଲା ନିଆଁ
ପ୍ରଚଣ୍ଡ ବେଗେ ସେ ମାରିଲା ଡ଼ିଆଁ
ପିତଳର ତାର ସମ ଦଉଡ଼
ଲମ୍ଫିଲା ଛାଡ଼ିବା ଆଶା ଘଉଡ଼
ଦୁଇ ଘଡ଼ ଯାଏ ତହିଁ
ବିଷମ ଧୂଳରେ          ପୁରିଲା ଗିରଦା
କିଛି ବାର ହେଲା ନାହିଁ ।

(୧) ବାଂକ୍ତି ବିଶେଷ ।          (୨) ଗିର—ଜଣେ ମାହୁନ୍ତ

(୨୨)

ଗର୍ଜି ଗର୍ଜି ବେଗେ ମାରନ୍ତେ ଦନ୍ତ
ଭାଙ୍ଗିଲା ସାମାନ୍ୟ ଗିରଦା କାନ୍ତ
ମାତ୍ର ତାର ସାନ ଦଶନ କ୍ଷଣେ
ଦୁଇ ଖଣ୍ଡ ହେଲା ସେହୁ ତାଡ଼ନେ
ସରିଲା ସକଳ ଦାଉ
ହେଲ ଲାଙ୍ଗୁଳରୁ— ଦ୍ୱିଗୁଣ ଆଗୁଳ
ଗଲେ କି ରହିଲା ଆଉ ।

(୨୭)

ହଟି ପଛଘୁଞ୍ଚା ଦେଉଁ ବାରଣ
ଚିନ୍ତା ହେଲା ଋଷି, ନିଷାଦଗଣ
ଗୁଡ଼ାଇ ଗୁଡ଼ାଇ ଗଛ ମୂଳରେ
ଓଠାଇ ରଖିଲେ କାନ୍ଥ ପାଖରେ
ବେଗେ ସେ ଯେଉଁ ପ୍ରକାରେ
ନିଜ ଥୋଇପାର— ଦଣ୍ଡରେ ଦବନ୍ତି
ଋଷିକୁ ଧୃବ ନ ପାରେ ।

(୨୮)

ଏକ ଚରଣରେ ଲାଗନ୍ତେ ଡୋର
ଋଷି ଦେଖି ହେଲା ବଡ଼ ଚତୁର
ଅନ୍ୟ ପାଦ ଆଉ ଛଳେ ନ ଟେକି
ସଦମ୍ଭେ ଭୂମିରେ ରଖିଲା ଜାକି
ବଳମର ତାଡ଼ନାରେ
ଅନନ୍ୟ ଉପାୟେ ଉଠାଇ ଚରଣ
ଥୋଇଲା ନେଇ ଫାଶରେ ।

(୨୯)

ପଲକେ ମାନ୍ଦ୍ରନ୍ତେ ସେହୁ ଦଉଡ଼
ଝିଙ୍କିବାରୁ ଫାଶ ରହିଲା ଭିଡ଼
କପ୍ରଡ଼ ହାବୁଡ ହେଲା ସେ ଯେତେ
ପାଦେ ଫାଶଗଣ୍ଠି ବସିଲା ତେତେ

ରାବଣ ହୋଇଲା ତାକୁ
ଅଗ୍ନିରୁଁ ଧମକ    ପାଇଲେ ଯେମନ୍ତ
ହୁଅନ୍ତ କମ୍ପନ ବାୟୁ ।

(୩୦)

ସ୍ୱାଧୀନତା ତାର ଏ ଭବେ ହର
କବାଟ ଠେକିଲେ ପୁରୁଷ ପର
ପ୍ରତ୍ୟକ୍ଷ ଗୃହଣୀ ଶିର ସମାନ
ଲକ୍ଷ୍ମୀ ଛାଡ଼ ତାକୁ ଗଲେ ବହନ
ସ୍ୱାଧୀନତା ହେଲେ ନାଶ
ଲକ୍ଷ୍ମୀଦେବୀ କେବେ—    ଆଦର ଗୌରବେ
ନ କରନ୍ତି ତହିଁ ବାସ ।

(୩୧)

ହତଲକ୍ଷ୍ମୀ ହେଲାକ୍ଷଣେ ବାରଣ
ପାପପଙ୍କେ ପଡ଼ି ପ୍ରାଣୀ ଯେସନ
ବଡ଼ଶୀ ରନ୍ଧ୍ରରେ ହୁଡ଼େ ଲଗନ
ଜଳରୁ ବାହାର ଯେମନ୍ତେ ମୀନ
କିଅବା ବ୍ୟୋମ-ସଞ୍ଚାରୀ
ବିହଙ୍ଗ, ନିଷାଦ    ବାଗୁରରେ ଜଡ଼
କ୍ଷଣକେ ହୁଏ ଯେପରି ।

(୩୨)

ଲକ୍ଷ୍ମୀସହ ଶୌର୍ଯ୍ୟ ଗଲା ସ୍ୱଭାବେ
"ସ୍ୱର୍ଯ୍ୟା-ଭାଇ" ବୋଲି ଭୁଛିଲେ ସର୍ବେ
ଗର୍ଜନ ତର୍ଜନ ତାର ଯେତେକ
ପରିହାସେ ଲୋକେ କଲେ କୌତୁକ
ସୂର୍ଯ୍ୟଙ୍କ ସମ ତେଜସ୍ୱୀ
ରାହୁଗ୍ରସ୍ତ ହେଲେ    ଦଅନ୍ତି ଉଲ୍ଲୁକେ
ଷଣ୍ଢା ବୋଲି ହସି ହସି ।

(୩୩)

ଯାହାର ଭୀଷଣ ଗର୍ଜନ ସ୍ୱରେ
ରହନ୍ତି ହଜାର ହାତରେ ନରେ

ସେ ଷଡ଼ଯନ୍ତ୍ରେ ଆଜ ପାଶରେ ଜଡ଼
ତାଲ ଦେଇ ସର୍ବେ ତାହାକୁ ବେଢ଼ି
ଦେଖନ୍ତି କୁତୂହଳରେ ।
ହେଲେ ପରାଧୀନ ଏହୁଭାବେ ଜନ
ସିନା ତୁଚ୍ଛ ଜଗତରେ ।

(୩୪)

ସ୍ଥଳଚରେ ସବୁଠାରୁ ଯେ ବଡ଼
ଅଲୌକସାମାନ୍ୟ ଯାର ରଗଡ଼
କମଳାଙ୍କ ଶିରେ ଢ଼ାଳେ ଯେ ନୀର
ଉଦରଲେ ଯାକୁ ଶ୍ରୀଚକ୍ରଧର
ସେ ମାଡ଼ଖାଇଲା ଦେଖ
ମର୍ତ୍ତ୍ୟ ମଣ୍ଡଳରେ ବଳୀ ଏକା ସେହୁ
କପାଳ ଯାର ସଲଖ ।

(୩୫)

ନିଜ ସ୍ୱାଧୀନତା ରଖିବା ପାଇଁ
ପରାକ୍ରମ କରିଥିଲା ଦେଖାଇ
ମାହୁନ୍ତ ଦର୍ଶକେ ନୋହୁ ସନ୍ତୁଷ୍ଟ
ଭାଷିଲେ ମାଖୁନା ଅତ୍ୟନ୍ତ ଦୁଷ୍ଟ
ଉପରେ ଭାଷନ୍ତି ସର୍ବେ
ତତ୍ତ୍ୱାଲୋକେ କାର୍ଯ୍ୟ— ଭିତର ବାହାର
କେ ଖୋଜି ଦେଖନ୍ତି କେବେ ।

(୩୬)

ସ୍ୱଜାତି ଗୌରବ ଗାରିମା ଯାଇଁ
ଯେତେ ତର୍କ ଯେତେ, କର ଲଢ଼ାଇ
ସେଥିରେ କାହାର ନୋହେ କରୁଣା
ଦୁଷ୍ଟାମିରେ ସବୁ ହୁଅଇ ଗଣା
ଦୁନିଆର ଏହୁ ଭାବ
ପ୍ରବଳର ଭବେ ସବୁଠାରେ ଜୟ
ଦୁର୍ବଳର ପରାଭବ ।

(୩୭)

ଯଦ୍ୟ ହେଲେ ମୁଦ୍ଧା ବିବେକୀପଣେ
ଅଧିକ ବୋଲି ମୁଁ ଗଜକୁ ମଣେ
ତା ସମ ତେଜସ୍ୱୀ ନୁହନ୍ତି କେହୁ
ମନସ୍ୱୀରେ ଲେଖା କେବଳ ସେହୁ
ଯେଣୁ ପରାଧୀନ କାଳେ
ତଳରେ ପଡ଼ିଲା ଆତ୍ମହରା ହୋଇ
ଶୁଣ୍ଡଦଣ୍ଡ ପିଟି ସ୍ଥଳେ !

(୩୮)

ପ୍ରାଣଠାରୁ ଅତି ପ୍ରିୟ ଆଦର
ସ୍ୱାଧୀନତା ଧନ ଥିଲା ତାହାର
ଜୀବନର ଆଶା ନ ରଖି ଛଳେ
ତେଇଁପଡ଼ି ତଳେ ଗଡ଼ି ବିକଳେ
ମୃତ୍ତିକାକୁ ଦନ୍ତେ ଚପି
କ୍ଷୋଭେ ଅପମାନେ ଯାଉଥିଲା ସିନା
ଧରଣୀରେ ଘୋଷେପଣି ।

(୩୯)

ସ୍ୱାଧୀନତା ଧନ ଭବେ ଅମୂଲ୍ୟ
ତା'ସହିତ କେହୁ ନୁହନ୍ତି ତୁଲ୍ୟ
ପରାଧୀନ ସାଧୁଠାରୁ ନୁହେକି
ସ୍ୱାଧୀନ ମୂଲିଆ ସର୍ବଦା ସୁଖୀ
ପରାଧୀନ, ସ୍ୱର୍ଗବାସ
ଉପେକ୍ଷି, ସ୍ୱାଧୀନ ନରକେ ଯିବାକୁ
ଭୟ ନ କରିବ ଆଶ ।

(୪୦)

ବନରେ କେଶରୀ ଅଟଇ ରଜା
ଦୁର୍ବଳ ଶୃଗାଳ ନୁହେ ତା ପ୍ରଜା
ସ୍ୱୀୟ ଭର୍ମାଙ୍ଗିଲ ହୃଦରେ ଜଳେ
ଶପଥ ଉଚ୍ଚେ କି ତା' ଗୋଡ଼ ତଳେ

ପକ୍ଷୀନ୍ଦ୍ର ଈଗଲ ନଭେ
ସନ୍ତରଇ ଜଳ ସନ୍ତାଣ ଲଘୁରେ
ଶୋଭାନ୍ତି ତା' ପଛେ କେବେ ?

(୪୧)

ଭୁମ୍ବେତ ଶାହୁର ଜଗତ ସାଇଁ
ଲୋଡ଼ ନାହିଁ କେବେ ସାହାଯ୍ୟ କାହିଁ
ମାତ୍ର ମାନବର ପକ୍ଷେ କହନ୍ତ
କାହିଁକ ହୁଅଇ ଏ ବିପରୀତ ?
ନିଜର ହୃତ ସନ୍ଧାଣେ
ଅପରର ସୁଖ ଶାନ୍ତି ସ୍ୱାଧୀନତା
ବିନାଶନ୍ତି ଅନାୟାସେ ।

(୪୨)

ପ୍ରକୃତ ପ୍ରଦତ୍ତ ଦ୍ରବ୍ୟ ଉପାୟେ
ବିଚରନ୍ତି ସ୍ୱଚ୍ଛନ୍ଦାରେ ସର୍ବେ ଏ
ସ୍ୱକାର୍ଯ୍ୟେ ସମର୍ଥ ଥିଲେହେଁ ନର
ବଳେ ଗଳଗ୍ରହ ହୋଇ ଅନ୍ୟର,
ସଭ୍ୟତା ବୋଲି କଥାଏ—
ଭାତି, ମନେ ମନେ ମାତ୍ର ବସୁଛନ୍ତି
ପୃଥିବୀକୁ ଛଏଁ ଛଏଁ ।

(୪୩)

ସେ ସଭ୍ୟତା ସ୍ୱଇ ନତାନ୍ତ ପୋଲ
ରୂପ ରସ ହୀନ ବାକ୍ୟ କେବଳ
ପରକୁ ପୋଡ଼ାଇ ସ୍ୱୀୟ ତେଜରେ
ନିଜକୁ ମଣ୍ଡାଏ ବିଳାସିତାରେ
ବିଚାର ତାହାର ଗଣ୍ଡ
ଶାଣିତ କରିବଲେ ଯନ୍ତ୍ର ଲଗାଇଲେ
ତହିଁରେ ହୁଏ ତା ଖଣ୍ଡ ।

(୪୪)

ଦନ୍ତୋନ୍ମୂଳ ମୁଖ ବାରଣ ଘଟା
ବହଳ ବଲ୍କଳ ଶିଖରୀ ଛଟା

(୧) "ମୋଣ୍ଡଗଜ" "ଗ୍ରମ ପ୍ରସାଦ" ଅବ
ମାଖୁନାର ଅଗ ପଛ ଅଚ୍ଛାଦ
ଶାଳକୁ ଆଣିଲେ ଛାଣି
ହାତ ଗୋଡ଼ ବାନ୍ଧ ଦୋଷୀକୁ ଯେସନ
ନଅଣ୍ଟ ସିପାହ୍ଣ ଶ୍ରେଣୀ ।

(୪୫)

ଲକ୍ଷ୍ମୀ ଯୋଗେ ଲଭିଲ୍ଲ ସେ ବଦନ
ଲକ୍ଷ୍ମୀପରି ତାର ଦେହ ଗଠନ
ଲକ୍ଷ୍ମୀଙ୍କର ବାର ଗୁରୁ ବାସରେ
ପ୍ରବେଶି ଅସିଲ୍ଲ ଗ୍ରଜନଗରେ
ଏଣୁ ମନେ ବହୁ ମୋଦ
ଏକମତ ହୋଇ ମାଖୁନାର ନାମ
ରଖିଲେ "ଲକ୍ଷ୍ମୀପ୍ରସାଦ ।"

(୪୬)

ମାନ୍ତ ସେହୁ ନାମ ରହିଲ୍ଲ ନାହିଁ
କାହା ଛୁଣ୍ଡ କଏ ମୁଦବ ଜ୍ଞାଇ
ନ ଦେଖି ତାହାର ଯୁଗଳଦନ୍ତେ
ଡାକିଲେ "ମାଖୁନା" ବୋଲି ସମସ୍ତେ
ଯେମନ୍ତ "ଷଦ୍ଧ ଲୋଚନ"—
ନାମ ରଖିଲେହେଁ ତାକନ୍ତ କଣାଦ
'କଣା' ବୋଲି ଭବେ ଜନ ।

ସମାପ୍ତ



(୧ ସର ହାପର ବାମ

ଶ୍ରୀମାନ୍ ବାମଣ୍ଡା ରାଜା ଭାନୁଗଙ୍ଗ ତ୍ରିଭୁବନଦେବ

କଲ୍ୟାଣବରେଷୁ

ଧନ ହେ !

ସୁବର୍ଣ୍ଣରେଖାଠାରୁ କାବେରୀ ଯାଏ
ଅକ୍ଷୟ ଯଶରାଜି ଯା ଶୋଭାପାଏ
ଦକ୍ଷିଣାଦିଗ୍‌ବଧୂର ଭୂଷଣ ତୁଲ
ଅଦ୍ୟାପି ରାଜେ ଯା'ଙ୍କ ବନ୍ଧୁ ଦେଉଳ । ୧ ।

ଯାହାଙ୍କ ଆରାଧନେ ବିଶ୍ୱବିଖ୍ୟାତ
ରାଜନ୍ତି ନୀଳାଚଳେ ଶ୍ରୀ ଜଗନ୍ନାଥ
ବିମଳ ଦ୍ୟୁତିବନ୍ତ ଧରାବତଂସ
ଭାରତେ ଖ୍ୟାତ ଅମ୍ଭ ଏ ଗଙ୍ଗବଂଶ । ୨ ।

ତୁମ୍ଭେ ସେ ଗଙ୍ଗବଂଶେ ଜନ୍ମ ସୁକ୍ଷଣେ
ବସିଛ ବାମଣ୍ଡାର ରାଜ ଆସନେ
ଦୁର୍ଲ୍ଲଭ ଅନାବିଳ — ବାଞ୍ଛି ସମସ୍ତ
ପ୍ରଦାନ ଶିକ୍ଷା ଦୀକ୍ଷା ମାଗେ ବିଦାୟୁ । ୩ ।

କୈଶୋର-ସ୍ମୂର କର ତୂଳିକା ସାଜି
ରଞ୍ଜଇ ମଞ୍ଜୁ ମୁଖରାଜୀବ ଆଜି
ବିନମ୍ର ପୁଷ୍ପିଲଭି ସୁଶିକ୍ଷା-ବନ୍ଧୁଁ
ଗାମ୍ଭୀର୍ଯ୍ୟ ଗଉରବ ବରଇ ତନୁ । ୪ ।

ବାଣୀଭଣ୍ଡାର ବିଶ୍ୱବିଦ୍ୟା ଆଳୟୁ
ତୋଳାଇ ତହୁଁ ଦିବ୍ୟ ରତ୍ନଚୟୁ
କୌସ୍ତୁଭ ହାର ଯଥା କେଶବ ହୃଦେ
ସେ ମଣିରତ୍ନମାଳ ଲମ୍ବାଇ ମୋଦେ । ୫ ।

ବିଦେଶୁଁ ଫେରି ଆସ ଆସ ସଖାଳ
* ଚନ୍ଦ୍ରାପୀଡଙ୍କ ଶିକ୍ଷା ପ୍ରତିଷ୍ଠା ଭଳି

* କାଦମ୍ବରୀ ଅନୁସରଣେ

ତୁମ୍ଭର ଅଦର୍ଶନେ ପରଜାଗଣ
ଘର୍ମ୍ମାକ୍ତ ଶିଖୀସମ ହୁଅନ୍ତ ଅଛ । ୬ ।

ଅଦ୍ଧାଲୋଦୟ ଘନେ ସଗ୍ରେଜସର
ଏ ଧଗ୍ ଅଛୁ ସାବ୍ୟ ଭାଲମା ଧର
ସ୍ୱତ୍ରସନ୍ଧିଭ ସ୍ୱନ୍ତ୍ର ! ପ୍ରାଚୀ ଗଗନେ
ଉଇଁ ସେ ତମ ନାଶ ପୂର୍ଣ୍ଣନ୍ଦ୍ରଦାନେ । ୭ ।

ଧାର୍ମ୍ମିକ ସତ୍ୟବାଦୀ * ସାଧୁ ଶାସକ
ଅଟନ୍ତି ସଦା ସାଧୁ ଉପଦେଶକ
ଏ ବାଲ୍ୟସ୍ମୃତି ଗଙ୍ଗ-ଜଳ ପୁରିତ
ତୁମ୍ଭ ଶ୍ରୀକରେ ଧନ ! ହେଉ ଗ୍ରହିତ । ୮ ।

ତା । ୮ । ୪ । ୧୯୩୨ — ଦେବଦୁର୍ଗ

ତୁମ୍ଭର
ଅଜା ।

---

* Mr. H. Mecpharson

# ବାଲ୍ୟସ୍ମୃତି

ଗଙ୍ଗାଧରଙ୍କର          ରମ୍ୟ ନିକେତନ
    ଦକ୍ଷିଣ ଦିଗରେ ଦେବଗଡ଼ର
ପର୍ବତ "ଝାଲିଆମରା"          ଶୋଭୁଥାଏ
    ଗଗନକୁ ତୋଳି ଉଚ୍ଚଶିଖର ।
ବନ ପ୍ରାନ୍ତରର          ସାର୍ଦ୍ଧ (୧) ଗ୍ରୀଷ୍ମବାସ
    ଥାଏ ରାଜେ ସେ ବିଶାଳ ଗିରି
ନିର୍ଝରିଣୀ କୂଳ          ଭୃଗୁପୃଷ୍ଠେ ବାଜି
    ସୃଜିଅଛି ଯହିଁ ଫଏରା ଶିରୀ ।
ସେ ସ୍ୱଚ୍ଛ ଶୀତଳ          ସୁସ୍ନିଗ୍ଧ ଶୀକର
    ଅବିରତ ବହି ମୃଦୁଳ ବାତ
ସନସନ ଶବ୍ଦେ          ମାନସ ମତ୍ତାଇ
    ତରୁ ବ୍ରତତିକୁ କରାଏ ସ୍ନାତ ।
ପର୍ବତ ଦେହରୁ          ଜନମ କାହିଁ ବା
    ଅର୍ବୁଦ (୨) ଥାଏ ବିଷମ ଶିଳା
ବହୁଛି ଅତୁଳ          ଅରଣ୍ୟ ଦେବୀଙ୍କ
    ମନୋହର ଶୁଭ୍ର ଅଞ୍ଚଳ ଲୀଳା ।
ଝଙ୍କାଳିଆ ଲତା          କୁଞ୍ଜେ ବିମଣ୍ଡିତ
    କାହିଁ ସୁବିସ୍ତୃତ ଶୁଭ୍ର ଉପଳ
ଧିକ୍କାରୁଛି ସ୍ଥିରୁ          ଗୃନ୍ଦୁଆ ରଜତ
    କାରୁକାର୍ଯ୍ୟମୟ ମଣ୍ଡପ ତଳ ।
ସେ ଗ୍ରୀଷ୍ମ ବାସର          ଗଳବାଠ ପରି
    କାହିଁ କାହିଁ କ୍ଷୁଦ୍ର ପର୍ବତ ଖୋଲ

---

(୧) Summer residence.
(୨) ଅର୍ବୁଦ—ଅବୁ

ନର୍ଦ୍ଦମାରେ ବହୁ— ଗଙ୍ଗ ପରି ତହିଁ
ଝରୁଛି ନିରତ ଝରଣା ଜଳ ।
ପଲ୍ଲବ ବହୁଳ ତରୁ ସମାକୁଳ
ମଧ୍ୟାହ୍ନ କାଳରେ ମଧ୍ୟ ତହିଁରେ
ସୂର୍ଯ୍ୟଦେବଙ୍କର କର ପଡ଼େ ନାହିଁ
ଅବୃତ ଉଦର ଓଦା ମାଟିରେ
ଶ୍ୟାମଳ ସତେଜ ସ୍ନିଗ୍ଧ ଗୁଳ୍ମ ଘାସ
ବାରମାସ ତହିଁ ଛାଡ଼ଇ ନାହିଁ ।
କଅଁଳ ସୁସ୍ୱାଦୁ ଗିଲିରି (୧) ପତର
ବନ ପଶୁ ମନ ଓଟାରୁ ଥାଇ ।
ହରଡ଼, ପୋଗିଆ, ଶୁକ, ଚିଲ୍‌ଲିପି (୨)
ଧଣ୍ଡସ୍, ଠେଣ୍ଟୋଇ, କ୍ଷୀରଖାଇର
ସ୍ୱର ଶୁଭୁଥାଇ ପ୍ରକୃତି ରଚିତ
ଯଶୋଗୀତ ପରି ବନସ୍ଥଳୀର ।
ଶିଳା ସନ୍ଧିବାସୀ ସଜାରୁ (୩) ଗୋଧିକା
ଭ୍ରମନ୍ତି କାହିଁ ବା ବନ୍ଧୁର ସ୍ଥାନେ
ଅହି ଗନ୍ଧପାଇ ଶରୀର ଫୁଲାଇ
କାହିଁ ଗର୍ଜୁଥାନ୍ତି ନକୁଳମାନେ ।
ବଙ୍କ ହିରଣ୍ୟକ (୪) ମୂଷିକ ରାଜର
ବଂଶଧର ଚଉଁରିଆ (୫) ନିକର
ଶତମୁଖ ବିଳେ ରହନ୍ତି ନିର୍ଭୟେ
ସକୁଟୁମ୍ବେ କାହିଁ ବିରଚି ଘର ।

(୧) ଏକପ୍ରକାର କ୍ଷୁଦ୍ର ଗଛ, ପଶୁମାନଙ୍କର ଉପାଦେୟ ଖାଦ୍ୟ;
(୨) ଚିଲ୍‌ଲିପି—ଏକପ୍ରକାର ପକ୍ଷୀ
(୩) ସଜାରୁ—ଝିଙ୍କ
(୪) ହିତୋପଦେଶ ଅନୁସନ୍ଧେୟ
(୫) ଏହି ମୂଷା ଅନେକ ବାଟ କରି ଦଳବଦ୍ଧ ହୋଇ ବସା ରଚନ୍ତି । ଏହାଙ୍କୁ ଏ ଦେଶରେ ଚଉଁରିଆ ମୂଷା କହନ୍ତି ।

ଜଙ୍ଘପକ୍ଷଯୁକ୍ତ ଅସଂଖ୍ୟ ପକ୍ଷୀଏ
ଏକାନ୍ତ ଧାଇଁଲେ ପରି ଗଗନେ
ବାଘମନ୍ଦ୍ରମାନେ ଉଡ଼ୁଥାନ୍ତି ଚାହିଁ
ଆକାଶ କମ୍ପାଇ ଘୋରଗର୍ଜ୍ଜନେ ।
ପ୍ରକୃତି ଦେବୀଙ୍କ କର୍ଣ୍ଣ ରସାୟନ
ପ୍ରଣବ ଝଙ୍କାର ପରି ନିରତ
ଉଡ୍ଡୀନ ଭ୍ରମର ମଧୁର ନିସ୍ୱନେ
ହେଉଥିଲା ସେହି ବନ ଝଙ୍କୃତ ।
କୁରଙ୍ଗ ଶମ୍ବର ଗବୟ ଗୁସଣ୍ଡି (୧)
ବରାହ ଭଲ୍ଲୁକ ଶଶ ବାରଣେ
ବାସିନ୍ଦା ସତ୍ୱେ ସେ ରମ୍ୟମନ୍ଦିରେ
ରହୁଥାନ୍ତି ସୁଖେ ନିଃଶଙ୍କ ମନେ ।
ତାହାଙ୍କ ନିଭୃତ ନିବାସ ମଣ୍ଡପ
ବୃକ୍ଷମାନଙ୍କର ଶୀତଳଛାୟା
ବିହାର ପାର୍ଶ୍ୱେ ରହୁଥିଲା ସଦା
ଓସାର ଦମଳ (୨) ପ୍ରସାରି କାୟା ।
ସ୍ୱରୁଚନ୍ଦ୍ରାତପ ଲତିକା ନିକୁଞ୍ଜ,
ଶଯ୍ୟା ନବଦୂର୍ବାଦଳ କୋମଳ,
ଆହାର୍ଯ୍ୟ ନୂତନ ପତ୍ର ଗୁଳ୍ମସ୍ତବ,
ପାନୀୟ ପ୍ରକୃତି ପ୍ରଦତ୍ତ ଜଳ ।
ଦନ୍ତବାଦ୍ୟକାର— ବାନର ଉପଲ—
ଉଦ୍‌ପ୍ଲାବକ ସ୍ୱଚ୍ଛ ନିର୍ଝରଣୀର,
ପ୍ରଜାପତିପନ୍ତି ନର୍ତ୍ତକୀ, ଗାୟକ
ସୁଖ ସେବ୍ୟ ପାର୍ବତୀୟ ସମୀର,
ସେ ନଟୀମାନଙ୍କ କିଙ୍କିଣୀର ଧ୍ୱନି
ପରି ଶୁଭୁଥିଲା ଝିଲ୍ଲିଝଙ୍କାର ।

(୧) ମୂଷଣ୍ଡି ଜନ୍ତୁବିଶେଷ—Mouse deer.

(୨) ଦମଳ ଅଶ୍ୱତ୍ଥବାଳ ।

ତାଳର ଅସ୍ପର            ସ୍ୱର ନେଉଥିଲା
ପକ୍ଷୀଙ୍କ ଝାଡ଼ିବା ଶବ୍ଦ ଜେଣାର ।
ଏ ଆଜ ହଉଛି            ମହୋତ୍ସବମୟ
ବନ୍ୟ ପ୍ରାଣୀଙ୍କର ସେ ରାଜଧାନୀ
ଜୋନାକି (୧) କୁଳର            ମୃଦୁ ଆଲୋକରେ
ରାତେ ପୁଣି ହେଉଥିଲା ରୋଷଣି ।
ଗିରି ପଦତଳେ            ଏବେ ଯହିଁ ରାଜେ
ମୋହନାପୁରର ଶୋଭା ନବନ୍ତ ।
ନାମ ଅନୁସାରେ (୨)            ସାତଗୋଟି ଗ୍ରାମ
ଶୋଭେ ଯହିଁ ଶସ୍ୟ ସମ୍ପଦସନ୍ତ ।
ନୃପ ଭୂଇଁ ସୌଧ (୩)            ଧବଳ ପ୍ରତିମା
ବହୁ ଏକାଳରେ ଦେଦେଲା ଜଳ
ନତାନତଭୂମି            ଲଙ୍ଘି ବହେ ଯହିଁ
ତରଳ ରଜତବତ ଉଜ୍ଜ୍ୱଳ ।
ଧ୍ୱଜା ପାହାଡ଼ର            କଟୀ କମ୍ରଦେଶେ
ରୌପ୍ୟ ମେଖଳାକୁ ଧୀରେ ଧିକ୍କାରି
ଅଜଗର ପରି            କୁଞ୍ଚିତ ଗଣ୍ଡରେ
ମନ୍ଦେ ମନ୍ଦେ ସେହୁ ସୁପେୟବାରି ।
ସୁଧା (୪) ଧୂଧବଳା            ସଂକୀର୍ଣ୍ଣ "ପଥର—
ଚଡ଼ା" (୫) ତଟିନୀର ପୋଲ ଉପରେ

(୧) ଜୁଳୁଜୁଳିଆ ପୋକ ।
(୨) ବାମଣ୍ଡାରୁ ପୋଷ୍ୟପୁତ୍ର ହୋଇ ଯିବା ପୂର୍ବେ ବର୍ତ୍ତମାନ ପୁଣି ରାଜା ଶ୍ରୀମାନ୍ ରାମଚନ୍ଦ୍ରଦେବଙ୍କ ନାମ, ଶ୍ରୀମାନ୍ ମୋହନମୋହନ ଦେବ ଲାଲସାହେବ ପ୍ରଭୃ, ତଦନୁସାରେ ଶ୍ରୀପୁର, ମାନପୁର, ମୋହନପୁର, ମୋହନପୁର, ଦେବପୁର, ଲାଲପୁର, ସାହେବପୁର ସାତଟି ଗ୍ରାମ ରଚିତ ହୋଇଅଛି । ଏହା ରାଜା ସଚ୍ଚିଦାନନ୍ଦ ତ୍ରିଭୁବନଦେବଙ୍କ ଦ୍ୱାରା ନିର୍ମିତ ।
(୩) ଶ୍ରୀମାନ୍ ଲାଲ ରାଘବକେଶରୀ ଦେବଙ୍କ ଶମାଧି ନୃପଭୂଇଁର ପଡ଼ା ।
(୪) ସୁଧା—ଚୂନ ।
(୫) ପଥରଚଡ଼ା ନାଳ ଉପରସ୍ଥ ସେତୁରେ ଜଳ ନେବାଲାଗି ପଥ ଅଛି । ଏ ସ୍ଥାନରେ ପ୍ରଚୁର ଚୂନ ପଥର ମିଳେ ।

ସଂକୋଚ ସ୍ୱରୂପ    ବନ୍ଧ ଏକାନ୍ତରେ
ଯା' ଯୌବନକର ଉର୍ବର କରେ ।
ସୁଗନ୍ଧିତଭର    ବନ୍ଧ ପୁଷ୍କରଣୀ
କୁଞ୍ଜମାନରେ ଯହିଁ ସ୍ୱତନ୍ତ୍ରଭର
ଭ୍ରମରେ କୁମୁଦେ    ଝଙ୍କାରେ ଦଶନ୍ତ
ଏବେ ଯହିଁ ନୈଶ ଆକାଶ ପରି ।
ଦେବଗଡ଼ଠାରୁ    ଦୀର୍ଘ ରାଜପଥ
ଏବେ ବିସ୍ତୃତ ଯା' ବକ୍ଷ ଉପରେ
ଦମ୍ଭେ ପାଦ ଥୋଇ    ନିର୍ମାଣ କୌଶଳେ
ପ୍ରବେଶିଛି 'ରେଢାଖୋଲ' ଭିତରେ ।
ଗିରିଗାତ୍ର ଭେଦ    ଆବର୍ତ୍ତି ଆକାରେ
ଉତ୍ଥିତ, ଯେ ପଥ ସାହାଯ୍ୟ ପାଇଁ
ହାତୀ ଘୋଡ଼ାଙ୍କର    ଅଗମ୍ୟ ସ୍ଥାନରେ
ଅକ୍ଲେଶେ ମୋଟର ବୁଲଇ ଧାଇଁ ।
ଥିଲା ଆଗେ ତହିଁ    ପ୍ରଶସ୍ତ ପ୍ରାନ୍ତର
ଶୈଳୁଁ 'ବଡ଼ଯୋର' ସୈକତଯାଏ
ପ୍ରାଂଶୁଳ ପନାସି    ଘାସେ ଠାବେ ଠାବେ
(୧) ନୀଳଚୂଳ ପରି ଆସ୍ଥୁ ଥାଏ ।
ଅର୍ଜ୍ଜୁନ ଅଶନ    ଶାଳ ହରିତକୀ
ମହୁଲ, ଅଁଏଳା ଜାମ୍ବୁ କୁରୁମ
ବେହଣୀ, ଧଉରା,    ଖଦିର, ଶିଂଶୁପା,
ଘଣ୍ଟଳ, କରଡା, ସ୍ୱର, କୁସୁମ
ପଦ ଦ୍ରୁମରାଜ    ଭିଡ଼ାଭିଡ଼ ହୋଇ
ଅବିରତ ପ୍ରେମ ଉଲ୍ଲାସେ ରଙ୍ଗେ
ମାଧବୀ, ମାଳତୀ,    କୁନ୍ଦାଳୀ, ଶିଆଳୀ
ନଥାଳୀ, ଅତଣ୍ଡି ଲତାର ସଙ୍ଗେ ।
କଳାନ୍ତ କାଳରୁ    ରହିଥିଲେ ଯହିଁ
ପ୍ରକୃତିର ନବଦମ୍ପତୀ ପରି

(୧) ନୀଳ ବନାଂଶାଇ ।

ଏକର କଷଣେ ଦୁଃଖ ପାଉଥିଲି
ଅନ୍ୟର ହୃଦରେ ଭୂରତେ ଭର ।
ଧବଳ ପକ୍ଷବେ ଶିରେଶ୍ୱେଶ ମଣ୍ଡି
କାହିଁବା ସାଳେନ୍ଦ୍ର ପାଦପଗଣ
ଜଡ଼ାଇ ଦେହରେ ସୁଚିକ୍କଣ ଶ୍ୱେତ
ପାତଳ ବଲ୍କଳ-ରମ୍ୟ ବସନ ।
ଗୁଚ୍ଛଚ ଲମ୍ବର ଓହଳେ ଜଟିଳ
ଊର୍ଦ୍ଧ୍ୱବାହୁ ବୃଦ୍ଧ ତପସ୍ୱୀବତ
ବିଭୁଙ୍କ ଧ୍ୟାନରେ ରତ ହୋଇଥିଲେ
ଶାଖାବାହୁଗଣ ଟେକି ସତତ ।
ଧ୍ୱଜା ଗିରିବର ଶିରୁଁ ଗଡ଼ି ଗଡ଼ି
ଚଞ୍ଚଳା 'ପଥରଡଙ୍ଗା' ତଟିନୀ
ବହୁଥିଲା ଯହିଁ ପଶ୍ଚିମେ ପାଦପ—
ସନ୍ଦ୍ର ଛାୟା ତଳେ ବନଗାମିନୀ ।
ଉଙ୍କର ସଲିଳ ଦାନେ ପୁଲକାଇ
ବେଳମଗ୍ନ ଗ୍ରାମ ଶସ୍ୟସମ୍ପଦେ
ମିଶୁଥିଲା ସେତୁ ଦଉଡ଼ି ସବେଗେ
ବଡ଼ଯୋର ପ୍ରବାହରେ ଗଦ୍‌ଗଦେ ।
କୁଟିଳ ଗଣ୍ଡରେ ଅଟକି ଅଟକି
ଉପଳ ବନ୍ଧୁର ପଥେ ଅଧୀରେ
ଚେରତଳେ ଯହିଁ ଧୀରେ ଗଳି ଗଳି
ବହଇ ଆମ୍ଳପାଣି (୧) ପ୍ରାଚୀରେ (୨) ।
କରତେ କର୍ତ୍ତିତ (୩) ଶିଳାରେଣୁସଙ୍ଗ
ଅବହେଳେ ଦର କୋଳରୁ କାଢ଼ି
ପ୍ରାବୃଟେ ସେ ଶ୍ୱେତ ସଲିଳ ନିରତ
ଦେଉଥିଲା ବଡ଼ ଯୋରେ ଅଜାଡ଼ି ।

---

(୧) ଅମ୍ଳପାଣି—ଅମ୍ଳପାଣି ସାଣ୍ଟିରେ ପ୍ରବାହିତ ଝରଣା ବିଶେଷ ।
(୨) ପ୍ରାଚୀରେ—ପୂର୍ବ ଦିଗରେ ।
(୩) ଏଠାରେ ଟାଇଲ ପଥର ପ୍ରସ୍ତୁତ ହୁଏ ।

ସେ କାଳରେ ଥିଲା                ବିଜନ ଭୀଷଣ
    ପୁଣି ବନଜାତେ ପୂର୍ଣ୍ଣ ଏ ସ୍ଥଳ
ବନ୍ଧୁକ ହସ୍ତରେ                ଶିକାର ଉଦ୍ଦେଶ୍ୟେ
    ଭ୍ରମୁଥିଲେ ମୋତେ ମୃଗୟାଦଳ ।।
କେନ୍ଦୁଗାଛମାରେ                କାନ୍ତାରକୁ ରଞ୍ଜି
    ତହାଙ୍ଗ କୁରଙ୍ଗେ ଭସ୍ମ ବରଜ
କୁରଙ୍ଗିଣୀ ସଙ୍ଗ                ଦଳଦଳ ଯାହିଁ
    ଚରି ବୁଲୁଥିଲେ ଆମୋଦେ ମତ୍ତି ।
ବନ୍ୟ ଚନ୍ଦ୍ରସର (୧)                ଲୁଣଜଳ ପିଇ
    ଗଛେ ଶିଙ୍ଗ ଘଷିଘଷି ସମ୍ଭରେ
(୨) ପଙ୍କରୁ ବାହାରି                ଯାଉଥିଲେ ଯହିଁ
    ଦେଖୁ ଝାଡ଼ଝାଡ଼ ରଙ୍ଗରସରେ ।
କର୍ଦ୍ଦମ ଜଡ଼ିତ                ସେମାନଙ୍କ ଗାତ୍ର—
    ଚ୍ୟୁତ ହଳୁ ହଳୁ ପଙ୍କିଲ ଜଳେ
ପିଚ୍ଛିଳ ଅସ୍ପଷ୍ଟ                ପଥେ ଖସି ଯହିଁ
    ପଡ଼ୁଥିଲେ ପ୍ରାତେ ପଥିକେ ତଳେ ।
ମୃଗୟା ଉଦ୍ଦେଶ୍ୟ                ରାମଚନ୍ଦ୍ରଦେବ (୩)
    ଦିନେ ପ୍ରତ୍ୟୁଷରୁ ଶଯ୍ୟାରୁ ଉଠି
ସେ ବିଜନ ସ୍ଥାନେ                ପ୍ରବେଶି ସମ୍ବର
    ପଦଚିହ୍ନ ଖୋଜୁ ଖୋଜୁ ଲପଟି । (୪)
ମାଳତୀ ନିକୁଞ୍ଜ                ମୂଳେ ନିରେଖିଲେ
    ଡମ୍ବାକୃତି ଏକ ଧଳା ପାଷାଣ
ଆଶ୍ରମସ୍ଥ ତାହା                ଆଶ୍ରମସ୍ଥ ଯଥା
    ଗଗନବିହାରୀ ଜ୍ୟୋତିଷ୍କ ଗଣ ।

(୧) ଲବଣାକ୍ତ ପଲ୍ୱଳ । ସମ୍ବର ଜନ୍ତୁମାନେ ଏହି ପାଣି ପିଇବାକୁ ସବୁରେ ଉପସ୍ଥିତ ହୁଅନ୍ତି ।

(୨) ପଙ୍କ—ପଙ୍କମିଶ୍ରିତ ପତ୍ରଭୂମି, ସମ୍ବର, ବରାହାଦି ଶୀତକାଳ ସବୁରେ । ଏପରି ସ୍ଥାନରେ ଲେଟିବାକୁ ଭଲପାଅନ୍ତି ।

(୩) ସ୍ୱନାମ ପ୍ରସିଦ୍ଧ ବାମଣ୍ଡା ରାଜା ।

(୪) ଲପଟି—ଲଗି ଲଗି ।

ସେ କ୍ଷୁଦ୍ର ଶିଳାର ମସ୍ତକ ଉପରେ
ଛତ୍ରାକାରେ ସ୍ୱୀୟ ଫଣା ଉତ୍ତୋଳି
ଛାୟା ଦେଉଥିଲା ପ୍ରସ୍ତରର ପର
ଆବୋର ଆଦରେ ଏକ କୁଣ୍ଡଳୀ ।
ଶ୍ୟାମ ଭୁଜଙ୍ଗକୁ ଲକ୍ଷିଲେ ସାହସୀ
କ୍ଷଣେ ଗୁଳଭର ନଳୀ ଉଠାଇ
ମାତ୍ର ଗୁଳିଗଲା ଲକ୍ଷଭ୍ରଷ୍ଟ ହୋଇ
କେଉଁ ବାଟେ ଗୁଳ ଠୁକର (୧) ଖାଇ ।
ନଳକଠର ଲତା ଗୁଳାଦ ଛଣ୍ଡାଇ
ଦୀର୍ଘରେଖା ବନ୍ଧୁ, ବେନ ପାର୍ଶ୍ୱର
ଛିଣ୍ଡାଇ ବେଗେ କଟିଣ ମୃତ୍ତିକା
ସହିତେ ଯେତକ କ୍ଷୁଦ୍ର ପ୍ରସ୍ତର ।
ଖଣ୍ଡେ ଶିଳାକଣି ଛିଡ଼ଙ୍କ ତହିଁରୁ
ସେ ନଳୀ ଗୁଳର ଖର-ଗଣ୍ଡରେ
ବାଜିଲା ସଜୋରେ ହଂସ ଡମ୍ବାକୃତ
ସୁନ୍ଦର ଧବଳ ଉପଲ ଶିରେ ।
ସୁଧୀରେ ସଧୀରେ ସନ୍ନିକଟେ ଯାଇ
ନିରେଖିଲେ ସତସ୍ଥାନ୍ତ ଶିଳାର
କଞ୍ଚନ (୨) କାନ୍ତିକି ଅବହେଳେ ଜିଣି
ବହୁଛି ପ୍ରଖରେ ରୁଧିର ଧାର ।
ଦେଖି ଏ ଘଟନ ବ୍ୟାପାର ସତର୍କେ
ଠାଣିମୁନେ ଗୁଣମଣି ଫଟାନ୍ତ
ମୃତ୍ତିକା ଅନ୍ତର ଭରନ୍ତେ ଚୌଦଗୁଁ
ବାହାର ପଡ଼ିଲା ଏକ ମୁରଣ୍ଡ ।
ସୂର୍ଯ୍ୟକାନ୍ତମଣି ସୁଷମାକୁ ଜିଣି
ସେ ଦେବବିଗ୍ରହ ଦିଶେ ଉଜ୍ଜ୍ୱଳ
ସମୁଦିତ ତାର ତେଜେ ହୋଇଗଲା
ଅଗ୍ନିମୟ କ୍ଷଣେ କାନନସ୍ଥଳ ।

(୧) ଠୁକର—ଅପାତ, ଦେଶଜ ଶବ୍ଦ ।
(୨) କଞ୍ଚନ—ରକ୍ତପୁଷ୍ପ ବିଶେଷ ।

ଗାଇଲେ ମଙ୍ଗଳ          ଗୀତ ବୈତାଳିକ
    ପ୍ରାଏ ପତଙ୍ଗ ପାଦପ ଡାଳେ
ପଲକେ ପ୍ରାନ୍ତରେ          ସୁଧା ବରଷଇ
    ପୁଲକାଇ ପ୍ରାଣିକୁଳେ ଅକାଳେ ।

ପୁଷ୍ପବାସହର          ସନ୍ନିକଟ ତଟ-
    ତରୁରୁ ବହିଲା ମଧୁର ବାତ
ଉଚେ ବର୍ହଚୋଳ          ନାଚିଲେ ଉଲ୍ଲାସେ
    ଭଣ୍ଡୁ ଫୁଲାଇ ବରଷା ବ୍ରାତ ।

ଉଚ୍ଛୁଳଇ ନଦୀ          ଉଚ୍ଛୁଳାଇ ଗିରି
    ବଜାଇ ବଜାଇ କେଳା କାହାଳୀ
ପ୍ରତିଧ୍ୱନି ବଣେ          ଉଚ ଗିରିବର
    ଯୋଗଦେଇ ତାକୁ ଧରିଲା ପାଳି ।

ମାଟି ଖେଳେ ମତ୍ତ          ପଙ୍କ ବିମଣ୍ଡିତ
    ମସ୍ତକ ଉଠାଇ ବୃଷଭବର
ଗାଇଗୋଷ୍ଠ ଛାଡ଼ି          କର୍ତ୍ତବ୍ୟ ପାଳନେ
    ଉପଗତ ହେଲା ଆସି ସତ୍ୱର ।

ବାଳକ ନୃପଙ୍କ          କର୍ଣ୍ଣେ ଦେବବାଦ୍ୟ
    ଶୁଭିଲା ସ୍ୱର୍ଗୀୟ ଗୀତଲହରୀ
ମାନସ ନୟନେ          ନାଚିଲେ ଅପ୍ସରୀ
    ସୁକାନ୍ତ ପ୍ରଭବେ ହୃଦୟ ହରି ।

ନୃପ ରାମଚନ୍ଦ୍ର          ଦେଖି ଶିବଙ୍କର
    ସୁପବିତ୍ର ଏହି ଶୁଭ ଉଦ୍ଭବ
କୃତାଞ୍ଜଳିପୁଟେ          ସାଷ୍ଟାଙ୍ଗେ ପ୍ରଣମି
    କଲେ ନାନାମତେ ବହୁତ ସ୍ତବ ।

ଚିର ଦିନୁଁ ଏ ପୁତ          ପ୍ରତିମା ଅବିଦିତ
    ହେଲେହେଁ ଚୌଦିଗେ ଲୋକମଣ୍ଡଳେ
ପୂଜା ହେଉଥିଲା          ନିର୍ଜନେ ନିଭୃତେ
    ସେ ମାଳତୀଲତା ମଣ୍ଡପତଳେ

ଭକ୍ତଚୂଡ଼ାମଣି ଶ୍ରୀ ଦୁର୍ଲ୍ଲଭ ଦେବ (୧)
କଲ ବନ୍ଧୁକାଳେ ଏହି ମନ୍ଦିର
ଭକ୍ତସିଦ୍ଧି ଭରେ ନିର୍ମିଣି ଆଦରେ
ଘେରିଲେ ଚୌପାଶେ ସ୍ଥୂଳପ୍ରାଚୀର ।
ଦେଉଳ ସମ୍ମୁଖେ ଖୋଳି ସଯତନେ
ଦେଲେ ପୁଷ୍କଳାର ଦୀର୍ଘକାସାର
ପ୍ରତିଷ୍ଠା କରାଇ ଶାସ୍ତ୍ର ବିଧିମତେ
ତ୍ରିଶୂଳ ସ୍ଥାପିଲେ ବକ୍ଷରେ ତାର ।
ଦେବଦୁର୍ଲ୍ଲଭଙ୍କ କୀର୍ତ୍ତି ସ୍ତୁପରେ
ଯେହ୍ନେ ଦନ୍ତୁ ଆଶ୍ରି ଶଇଳମୂଳ
ଅଦ୍ଭୁତ ପ୍ରାନ୍ତରେ ଶୋଭେ ଶୁଭ୍ରାକାରେ
ଗଗନ ପରଶି ଏହି ଦେଉଳ ।
ନାନା ଦିଗ୍‌ଦେଶରୁ ଯାତ୍ରୀମାନେ ଆସି
ଏ ପୁଣ୍ୟପୀଠରେ ଭକ୍ତିଭରରେ
ପ୍ରବେଶି ବାଞ୍ଛିତ ସମ୍ଭାର ଚଢ଼ାଇ
ଚନ୍ଦ୍ରଚୂଡ଼ଙ୍କର ପାଦପଦ୍ମରେ ।
ଲୀଳାଗରେ ରହି ଫେରି ଯାଉଛନ୍ତି
ଯଥାକାଳେ ଲଭି ଅଭୀଷ୍ଟ ବର
ଧନ୍ୟହାସ୍ତି ଯେହୁ ରଖିଲେ ଧରାକୁ
ନର ଦୁଃଖ ତାଙ୍କୁ ଭେଟେ ମାତର ।
ଶଙ୍ଖ ଘଣ୍ଟାନାଦେ ଜନ କୋଳାହଳେ
ଉଚ୍ଚ ସ୍ତବ ପାଠେ ସ୍ୱନ୍ଦବସେ
ସଦା ଗହଗହ ଏ ସ୍ଥଳ ଯେସନ
ବାୟୁସହ ଦ୍ୱନ୍ଦ ସିନ୍ଧୁନିର୍ଘୋଷେ ।

---

(୧) ଶ୍ରୀ ଝାଡ଼େଶ୍ୱର ମହାଦେବଙ୍କ ମନ୍ଦିର ଦେବଗଡ଼ର ଦକ୍ଷିଣରେ ପାହାଡ଼ ତଳରେ ଅବସ୍ଥିତ । ଏହି ମନ୍ଦିର ରାଜା ଶ୍ରୀ ଦୁର୍ଲ୍ଲଭଦେବ ନିର୍ମାଣ କରାଇଥିଲେ । ଏଠାରେ ପ୍ରତିବର୍ଷ ସଂ ୧୦ ଯାତ୍ରୀ ଉପଗତ ହୁଅନ୍ତି । ଅନେକେ ସର୍ବାର୍ଥସିଦ୍ଧି, ମନୋରଥ ପୂର୍ଣ୍ଣ କରନ୍ତି ।

ଚତୁର୍ଦ୍ଦଶୀ ବର୍ଷେ ଏକଦା ନଗରୁ
ବାହାର ମଧୁର ମଧୁସମୟେ
ଉପବାସ ସାନ୍ଧ୍ୟ ଉପାସନା ଅନ୍ତେ
ଗଲି ମୁଁ ଦେଖିବ ଶିବାଳୟେ ।
ସୌଧ କଣ୍ଟିକା ସଜନବରର
ରୌପ୍ୟ ବାଡ଼ଦଣ୍ଡ ଅଜିଣ ଗ୍ରୀବ
ଚୂର୍ଣ୍ଣସୋପାନତ (୧) ଯୁଗଳ ତଡ଼ାଗ
ପ୍ରଥମେ ହେଲା ମୋ ନେତ୍ର ଅତିଥି ।
ଉତ୍ଫୁଲ୍ଲ ବକୁଳ— ବଟ ଗୁଚ୍ଛେ ସନ୍ଧି
ଅନ୍ଧକାରକୂଳ ଦେଲେ ଘଉଡ଼ି
ବାଡ଼ରେ ଅଙ୍କିତ ପଦ୍ମେ ବନ୍ଧୁଥିଲେ
ଭ୍ରମରେ ମୁଦ୍ରିତ କମଳ ଜଡ଼ି ।
ଉଦ୍ୟାନମାଳେ ବେଢ଼ା ଦକୋଣ (୨) ଭବନ
କ୍ରୀଡ଼ା ଉପବନ ତହିଁ ସ୍ଥଳର
ନକ୍ଷତ୍ର ଭୂଷିତ ଗଗନରୁ ଖସେ
ଛିଡ଼ି ଅବା ଖଣ୍ଡ ପଡ଼ିଛି ତହିଁ ।
ବହ୍ୟନ୍ତରର ଶତଦଧାସୁତ
ଇଞ୍ଜିନ୍ରୁ ଉତ୍ଥିତ ଧୂମପଟଳ
ଦେଖି ମନେହେଲା ସଦେବ ନଗରୀ
ଝାଡ଼ୁଥିଲି ତାର ମୁକ୍ତକୁନ୍ତଳ ।
ଚପଣୀ ସଙ୍କୁଳ ରାଜପଥ ପାର୍ଶ୍ୱେ
ନଗର ରମଣୀ ଶ୍ରେଷ୍ଠ କଟକ (୩)

(୧) ସଜ୍ଜାପ୍ରାସାଦ ସମ୍ମୁଖରେ ସଡ଼କର ଉଭୟ ପାର୍ଶ୍ୱରେ ଦୁଇଗୋଟି ଜଳାଶୟ ଅଛି । ଉଭୟ ଜଳାଧାରର ଚତୁଃପାର୍ଶ୍ୱରେ ଚୂର୍ଣ୍ଣନିର୍ମିତ ସୁନ୍ଦର ଭାବରେ ସୋପାନ ନିର୍ମିତ ହୋଇଅଛି ।
(୨) ବାମଣ୍ଡା ରାଜଧାନୀ ଦେବଗଡ଼ ରାଜପ୍ରାସାଦ ସମ୍ମୁଖରେ କଦମ୍ବପଡ଼ିଆ ଅବସ୍ଥିତ । ଏହାର ଅବଂ ନାମ ପ୍ରମୋଦୋଦ୍ୟାନ । ଏହାର ସନ୍ନିକଟରେ ଦେବଗଡ଼ରେ ବହୁଂତାଲେବ ତେବା ସ୍ୱାଗେ ଉଚ୍ଚେବ ବହୁଅଛି ।
(୩) ମେଂ ଉର୍ସବ.ନ ମାର୍ବେଂ ।

ଜନଗହଳରେ         କୋଳାହଳମୟ
    ଯାଉଥିଲା ଯାହା ଉପରୁଁ ବଳ ।
ଗୋପାଳଙ୍କ ଗୁଡ଼ (୧)         ତା'ପରେ ଦକ୍ଷିଣ
    ପାଣ୍ଡ-ନଳବନ ମର୍ଦ୍ଦନଗଜ
ସୁବର୍ଣ୍ଣ କଳଶେ         ସୁବର୍ଣ୍ଣରଚଣ
    ତା'ପରେ ଉଡ଼ାଇ ସୁବର୍ଣ୍ଣଧ୍ୱଜ ।
ଗୁଡ଼ବପତ୍ରିତେ (୨)         ଅଷ୍ଟାଳ ଉପରେ
    କୃତ୍ରିମ ଘୋଟକ ବନା ସୁଆରେ
ଅଗପଦ ଟେକି         ଗ୍ରୀବା ବଙ୍କି ପଛ
    ପିବାକୁ ଉଦ୍ୟତ ହୁଏ ପୁସ୍ତାରେ । (୩)
ସେ ସଉଧତଳେ         ନିଜନିଜ ଶାଳେ
    ବନ୍ଧା ହୋଇଥିଲେ ଘୋଟକଗଣ
ସର୍ବାଙ୍ଗ ଅବୋଉ         ଶୋଭୁଥିଲା ପୃଷ୍ଠେ
    ବର୍ଣ୍ଣ ଅନୁରୂପ ନାନାବସନ ।
କ୍ଷୀର ସିନ୍ଧୁଫେନ,         କୁମୁଦ, ଚନ୍ଦ୍ରମା
    କୁନ୍ଦଫୁଲ ଜିଣି କେଏ ସୁନ୍ଦର
କେଏ ବା ଧବଳ         ମାର୍ଜ୍ଜିତ ମସୃଣ
    ଝନ୍ଦୂକ ମଞ୍ଜର କାନ୍ତି ତତ୍ପର ।
ନବନୀତ ବୋଳା         ସିନ୍ଦୂର ପତ୍ରଏ
    ଝଲ ଯାଉଥିଲା କାହାର ତନୁ
ହିଙ୍କି ଆଣୁଥିଲା         ଶାରଦ ନୀରଦ
    ସୁଷମା କେଏବା ସାନ୍ଧ୍ୟ ଗଗନୁଁ ।
ଭୂର୍ଜପତ୍ର ପର         କାହାର ଶରୀର
    କାହାର ଚକୋର ନୟନ ସର,

(୧) ଶ୍ରୀ ଗୋପାଳଜିଉ ମନ୍ଦିର ରାଜା ସାର୍ ସୁଚଳ ଦେବ କେ. ସି. ଆଇ. ଇ, ମହୋଦୟଙ୍କ ଦ୍ୱାରା ନିର୍ମିତ । ଏହା ଚତୁର୍ଦ୍ଦିଗରେ ସ୍ୱର୍ଣ୍ଣ କଳସ, ଉପରେ ସ୍ୱର୍ଣ୍ଣ ଚକ୍ର ଚତୁପାର୍ଶ୍ୱ ସର୍ବଦା ସ୍ୱର୍ଣ୍ଣ ପତାକା ଶୋଭିତ ।

(୨) ଅଶ୍ୱଶାଳଗୃହର ଉପରେ ଅବସ୍ଥିତ ।

(୩) ପୁସ୍ତା—ସ୍ତୂପ ଉଚ୍ଚ, ଘାବନ୍ଧ ସ୍ଥଳ ।

ଚଳ ଚଞ୍ଚଳତ                    ଦଶୁଥିଲେ ଦେହ,
    ଦେଉଥିଲେ ଚମତ୍କରୁଚ ଆଦର ।

ଶୁକପକ୍ଷୀ ପନ୍ତ                    ରୁଚିର ବସ୍ତ୍ରରେ
    କେ ବା ବହୁ ଇନ୍ଦ୍ର ଶୁଭ୍ର କଣାକୁ
କହୁଥିଲେ ସ୍ତୁରୁ                    ଡାରକା ସୂଚକ
    ନୀଳଗଗନର ମଧୁରିମାକୁ ।

ଫହକଣ୍ଠା ପଣ                    କାହାର ଗ୍ରୀବାରେ
    ରାଜୁଥିଲା ରମ୍ୟ କେଶରସ୍ତର
ଗ୍ରୀବା ପୁଚ୍ଛ ଲୋମ                    କଣ୍ଠା ହୋଇ କେ'ବା
    ଦଶୁଥିଲେ ବନ୍ୟଗାମ୍ଭୀ ପ୍ରକାର ।

ପଗଗୋଡ଼ ଝଟେ                    ଥୋଇ ଦେହଭାର
    ସତେକି ତେଜସ୍ୱୀ ତୁରଙ୍ଗମାଳ
ଉଡ଼ିବା ନିମନ୍ତେ                    ବ୍ୟଗ୍ର ହେଉଥିଲେ
    ସ୍ତର ସ୍ତର ସ୍ତ୍ରୀୟ ପକ୍ଷ ବିଶାଳ । (୧)
କର୍ଣ୍ଣ ଠାପୁରୁ (୨)                    ଉଠାଇ ପକାଇ
    ଉପୁଜାଇ ତହିଁ ସ୍ୱର ଦୁଃସହ
ଶ୍ରାନ୍ତୁଥିଲେ ଅଶ୍ୱେ                    ତୀବ୍ର ହ୍ରେଷାରବେ
    ଫୁତ୍କାରେ ଫୁଲାଇ ସ୍ତୁରୁବଗହ ।

ଏ ଅଦ ବଦଧ                    ସୌନ୍ଦର୍ଯ୍ୟ ସମ୍ମାରେ
    ଥିଲା ଯା ପୁରୁବେ ନେତ୍ର ସୁଖଦ
ମୋଟର କୃପାରେ                    ତହିଁ ଏବେ ଛନ୍ତି
    ଗୋଃଠାକେତେ ଘୋଡ଼ା, ଠାଙ୍ଗାବଳଦ ।

ଜଳୁଥିଲା ଯହିଁ                    ପ୍ରଚଣ୍ଡ ପ୍ରହରରେ
    ଘୋଡ଼ା ସବାରଙ୍କ ତାଙ୍କେ ଚମକ
କୈଶ ନରବତା                    ନାଶନ୍ତି ତହିଁରେ
    ଉଲ୍ଲାସେ ରାସକେ ବଜାଇ ଶଙ୍ଖ ।

---

(୧) ଯଅ ଉଡ଼ିବା ସ୍ତମ୍ଭଣ ପ୍ରସବ ।

(୨) ଠାପୁ—ଖୁରୁ ।

ଦାଣ୍ଡେ ବକପନ୍ତି      ସୁନୀଳ ସଲିଳେ
ଖେଳୁଥିଲେ ନବ କୋମଳହଂସ
ଦେବ ଜଳ ମଧ୍ୟେ      ସ୍ୱଜପଥ ଜଳେ
ଶୋଭୁଥିଲ ହରତାଳିକା ପର । (୧)

ନାନାବିଧ ପାନ      ଜନ ତୋଳାବୁଲେ
ପୂରୁଥିଲ ସେହୁ ପ୍ରଶସ୍ତ ବାଟ
ସୋପାନେ ସୋପାନେ      ବସିଥାଉଥିଲେ
ସ୍ନାନାର୍ଥିଜନଙ୍କର ସୌନ୍ଦର୍ଯ୍ୟ ହାଟ ।

ଫହଁର ଫହଁର      ଉଡ଼ନ୍ତେ ଅଞ୍ଚଳେ
ଉନ୍ମୁକ୍ତିମା ରମ୍ୟା ରମଣୀବୃନ୍ଦ
କମଳା କର୍ବୁର      କମଳ ପୁଷ୍ପାକୁ
ବଢ଼ାଉଥିଲେ ସେ ଦ୍ୱିଗୁଣେ ଆଭ ।

ଅମ୍ଭୋଜିନୀ ବନ      ବ୍ୟାପି ଗୁଞ୍ଜୁଥିଲେ
ସରଧା ଘଟାର ମଧୁ ଝଙ୍କାର
ସେମାନଙ୍କ ରବ      ଛଳେ ଦେଉଥିଲ
କୋଦଣ୍ଡରେ କାମ କଲା ଟଙ୍କାର ।

ସୁଦୃଢ଼ ଅଙ୍କନେ (୨)      ବନ୍ଧୁଥିଲେ ଦୁବେ
ନବଘନକାନ୍ତ ବାରଣଗଣ
ଉଡ୍ଡୀନ ଧବଳ      ବଳାକ ସମ୍ବେ
ଶୋଭୁଥିଲ ସ୍ୱଚ୍ଛ ସୁରଙ୍ଗଗନ ।

ଶ୍ୱେତ ଚମ୍ପୁଛବ      ସୁଗନ୍ଧ ଅଙ୍କୁଶ
ଝୁଲୁଥିଲ ତାଙ୍କ କାନ ପାହାରେ
ଲଡ଼ୁଥାଉଥିଲ      ତାହାଙ୍କ ମଣ୍ଡଳ
ମରକତଯୁକ୍ତ କର୍ଣ୍ଣାଳଙ୍କାରେ ।

ଭଦମ୍ବଣ୍ଡ ସେହୁ      ଶୁଣ୍ଡାଳଙ୍କ ମୁକେ
ଅଦ୍ଭୁତ ଦୃଶ୍ୟପାଟଳପଙ୍କ

---

(୧) ହରତାଳିକା—ସ୍ୱର୍ଣ୍ଣପଦ ।
(୨) ବାଉଁଦଳ ଗୁହ ।

ଦାଉ ହେଉଥିଲା ପୂର୍ଣ୍ଣିମା ନିଶାରେ
ଚନ୍ଦ୍ରର ଶରୀରେ ଯଥା କଳଙ୍କ ।
ସପ୍ତପର୍ଣ୍ଣୀ କ୍ଷୀର ସମ ଉଜ୍ଜ୍ୱଳ
ମଦଗନ୍ଧେ ମୁଗ୍ଧ ମଧୁବ୍ରତଦଳ
ଉଦ୍ୟାନର ଗଛ ଭ୍ରମର ଗୁଞ୍ଜଏ
ମଣ୍ଡୁଥିଲେ ତାଙ୍କ ଗଣ୍ଡମଣ୍ଡଳ ।
ଦିଶୁଥିଲା ଦୂରେ ଉଚ୍ଚ ପ୍ରାଚୀରରେ
ବେଷ୍ଟିତ ବିଶାଳ ବନ୍ଦୀମନ୍ଦର
ଯହିଁ ପୂର୍ବସ୍ମୃତି ପ୍ରତିଫଳ ଭୁଞ୍ଜି
ଘାଣ୍ଟି ହେଉଥିଲେ ନରନାରୀର ।
ସ୍ମୃତି ଅଙ୍କେତରେ ଅବଲେକ କେତେ
ଜଗତ ଖାତର ଦୂର ମୂରତ
ସ୍ୱଚ୍ଛେ ହାତଦେଇ ବସି ହେଉଥିଲି
ଅନୁତାପେ ମନୋଦୁଃଖେ ଭରନ୍ତ ।
ତାହା ମନେ ଉଇଁ ହାସ୍ୟ ଛଳଛଳ
ପ୍ରେୟସୀର ସ୍ମରୁ ମୁଖଚନ୍ଦ୍ରମା
ଝୁଲ ଅଳକାଗ୍ରୁଁ ଟାଣୁଥିଲି ମୁହିଁ
ଧରଣି ଭ୍ରମରୁ ସେହି ସୁଷମା ।
କିଏ ବା ବାତୃତ ସୁତର ମଧୁର
ଆଲିଙ୍ଗନ ମନେ ମନେ ସ୍ମରି
ଝୁରି ଝୁରି ସେହି ବାତ୍ସଲ୍ୟ ସ୍ନେହକୁ
ନେତ୍ର ମୁଞ୍ଚୁଥିଲି ଲୋତକଧାର ।
ତାହା ମାନସକୁ ମନ୍ଥୁଥିଲି ସଦା
ଶ୍ରମେ ଉପାର୍ଜିତ ଧନଲାଳସା
ସ୍ୱର୍ଣ୍ଣ କାରାବାସ ଚିନ୍ତାରେ ତାହାର
ଲିଭି ଯାଉଥିଲା ଆଶା ଭରସା ।
ସେ ଶାନ୍ତ ନଜର ପୁଙ୍ଖପୁଙ୍ଖର
ଜମିବାଡ଼ି ଘରଦ୍ୱାରର କଥା
ଅନୁତାପେ ଜଡ଼ ଦେଉଥିଲି ଛାଡ଼ି
ଅନିତ୍ୟ ସଂସାରୁ ମାୟା ମମତା ।

ଗତ ଶରତର କଙ୍କାଳ ଚର୍ଚ୍ଚ
ଦେବା ପୁନଃପୁନଃ ମନେ ଅର୍ପି
ଓଷ୍ଠ ଦଂଶୁଥିଲ ଭ୍ରୁକୁଟି ନେତ୍ରରେ
ଘନଘନ ଦନ୍ତେ ଦଶନ ଘଷି ।
ସ୍ୱୀୟ ପ୍ରକୃତିରେ ଦୁର୍ବୋଧ୍ୟ ହେତୁ
ସ୍ମରୁଥିଲ ଏବେ ଏଥୁ ଫିଟିଲେ
ତବ ବଇଶାଖ ପ୍ରେତ ବସନ୍ତ
ପ୍ରେରକ ସେ ଦୟା ନ କର ତଳେ ।
ବନ୍ଧୁଶୂନ୍ୟ ଯେହ୍ନେ କାରା ପ୍ରକୋଷ୍ଠରେ
କେ'ବା ସ୍ମର ସ୍ମର ପୂର୍ବ ଦୁରନ୍ତ
ମଣୁଥିଲ ତାର ଉତ୍କଟ ପାପର
ଏହି ପ୍ରାୟଶ୍ଚିତ୍ତ ଅଟେ ବହୁତ ।
ଏଥୁଁ ମୁକୁଳିଲେ ନ କରିବା ପାଇଁ
ଧର୍ମକୁ କେବେହେଁ ଆଉ ଅବଜ୍ଞା
ଅଭୀଷ୍ଟ ଦେବଙ୍କୁ ସର ସ୍ଥିର ଚିତ୍ତେ
କେ'ବା କରୁଥିଲ ଦୃଢ଼ ପ୍ରତିଜ୍ଞା ।
ଏସବେ ବନ୍ଦୀଏ ବାଞ୍ଛା ଅନୁକୂଳେ
ସ୍ମରୁଥିଲେ ଭାଗ୍ୟ ନିନ୍ଦ ନିରତେ
ସେମାନଙ୍କ ଦୁଃଖେ କ୍ଷଣେ ଦୁଃଖୀ ହୋଇ
ଗମିଲି ମୋହର ଗନ୍ତବ୍ୟ ପଥେ ।
ଅଗ୍ରେ କୁସୁମିତ ରସାଳ କୁଞ୍ଜରେ
ଚୂତ ମଧୁମତ୍ତ କୋକିଳବର
କୋକିଳାର ସହ ଶୁଭ ଉଦ୍‌ବୋଧନ
କରୁଥିଲେ ନବ ମଧୁକାଳର ।
କର୍ଣ୍ଣ ରସାୟନ ଦୟାଦ୍ରବ ମୃଦୁ
ସୁଲଳିତ କଣ୍ଠ ବୀଣାଯନ୍ତ୍ରରେ
ସ୍ୱ ତାନ ମିଳାଇ ଗୀତ ଗାଉଥିଲ
(୧) ଚଷାପୁଅ ମୃଦୁ ମଧୁରସ୍ୱରେ ।

(୧) ପକ୍ଷୀ-ବିଶେଷ

ହେମନ୍ତ ବସନ୍ତ          ଶୋଭା ଦୁହିଙ୍କର
    ବାଠୁଲି ଲଡ଼ାଇ ସୁଷମା ଭଳି
ଭ୍ରମର ନିକର          ଉଡ଼ି ବୁଲୁଥିଲେ
    ଆକାଶରେ ଦେହେ ସ୍ୱରଗ ବୋଲି ।
ଫୁଲ୍ଲ ଚୂତଦ୍ରୁମେ          ତିଳକ କୁସୁମେ
    କେବେ ବା ଧବଳ ଅତଶି ଫୁଲେ
କେବେ ମଲ୍ଲିକାରେ          ବସୁଥିଲେ ଯାଇ
    ପ୍ରଜାପତି ପନ୍ତ ବାନ୍ଧୁ ଆକୁଳେ ।
ପ୍ରବାଳ ପାଟଳ          ପଲାଶ ଦୀପିକ
    ଦେଖି ହେଉଥିଲି ମାନସେ ପ୍ରୀତେ
ନବାଗତ ସ୍ୱାମୀ          ଦର୍ଶନେ ଧସ୍ୱର
    ଲଜ ସିନ୍ଦୂରମା ଫିଟିଛି ସତେ ?
କୃଷକେ କ୍ଷେତରୁ          ଧାନଦାଇ ସୁଖେ
    ଖଳାଅଗଣାରେ ରଖି ସେ ବଛି
ପକାଇ ବେଙ୍ଗଲା          ଗାଉଥିଲେ ରଙ୍ଗେ
    ଗ୍ରାମ୍ୟ ତାଳପୂର୍ଣ୍ଣ ହଳିୟା ଗୀତ ।
ଅର୍ଥସ୍ୱରଶୂନ୍ୟ          ସେ ଗୀତ ଗାଅନ୍ତ
    କେବଳ ତା ସ୍ୱରେ ବଳାଇ ସଧ
ପରିଶ୍ରମକ୍ଲାନ୍ତ          ଶରୀର ମନକୁ
    ଏକମାତ୍ର ସିନା ଦେବାକୁ ବୋଧ ।
କୁଳ ହାତେ ଧରି          କୃଷକ ନାରୀଏ
    ବେଙ୍ଗଲା ଗଦାରୁ ଧାନ ଉଠାଇ
ସଙ୍ଗୀତରେ ଯୋଗ          ଦେଉଥିଲେ ହସି
    ଧାନରୁ ଅଗାଡ଼ି ଧୀରେ ଉଡ଼ାଇ ।
ବସନ୍ତେ ଯେମନ୍ତ          ପତ୍ରଶୂନ୍ୟ ରୁକ୍ଷ
    ପାଦପର ଶାଖା ବାଉଁଶ ଲଠି
ଗଜାରେଖି ଯେତେ          ମୃଗଯୁବୂଳକୁ
    ଯାତନା ଦିଅଇ ପିଠି ଅଝାଟି ।
ତେମନ୍ତେ ଧାନ୍ୟଶୂନ୍ୟ          କେଦାର ହୃଦରେ
    ଅର୍ଦ୍ଧଶୁଷ୍କ ଘିନ ଖିଙ୍କୁଲା ଘାସ

ଦଂଶନେ ଲଟକି        ପଥିକମାନଙ୍କୁ
    ଦେଉଥିଲେ ବାଟେ ବିଷମ ତ୍ରାସ ।
ବନ୍ୟ ପ୍ରାଣୀକୁଳ        ମେଳ ହୋଇ ନବ
    ବସନ୍ତ ଆଗମେ ପ୍ରେମବିକାରେ
ପ୍ରକାଶୁଥିଲେ ଯେ—        ଯାହା ପ୍ରେମଭାବ
    ପ୍ରଣୟିଙ୍କ ପାଶେ ନାନାପ୍ରକାରେ ।
ପ୍ରଣୟ ଉତ୍ସବେ        ପ୍ରମତ୍ତ ବୃଷଭେ
    ଦୀର୍ଘ ଶୃଙ୍ଗେ ଗେରୁ ମୃତ୍ତିକା ବୋଳି
ଗାଭୀଙ୍କ ଆଗରେ        ଯାଉଥିଲେ ଧୀରେ
    ଫେରିଫେରି ରଙ୍ଗେ ମସ୍ତକ ଡୋଳି ।
ଥରେଥରେ ଶିର        ସଧୀରେ ହଲାଇ
    ପୁଚ୍ଛ ଟେକି ବସି ଲଣ୍ଡାଗଛରେ
କଣ୍ଠକୁ ଫୁଲାଇ        ଚଢ଼ି ଡୋପଥିଲେ
    ପାରାଏ ପ୍ରିୟାର ପ୍ରେମ ଆଦରେ ।
ପ୍ରଫୁଲ୍ଲ ପଙ୍କଜ—        ପରାଗେ ଧୂସର
    ଶଙ୍ଖର ଉଦର ସମ ବରଣ
ଜଳାର୍ଦ୍ର ଜଳଦ        ନାଡ଼ଖଣ୍ଡି ଅଙ୍ଗେ
    କି ରଙ୍ଗେ ମଞ୍ଜୁଳମରାଳଗଣ ।
ନୂଆଁଇ ଉଠାଇ        ମନୋହର ଶିର
    ହଂସୀବଦନରେ ଦେଇ ଆନନ୍ଦେ
କେତେ ପ୍ରେମାଳାପେ        ନାଚୁଥିଲେ ଧୀରେ
    ବୀଣାକ୍ୱଣ ମୃଦୁ ମଧୁର ଛନ୍ଦେ ।
ତରୁଛାୟାତଳେ        ବିଶାଳ ଶୃଙ୍ଗାଗ୍ରେ
    କୁଣ୍ଡାଇ ଜାୟାର ଦେହ ଉଲ୍ଲାସେ
ପାଳିତ କୁରଙ୍ଗ        ଗ୍ରୁଠି ଥିଲା ସ୍ନେହେ
    ତା' ପ୍ରଣୟରସ ଲଭିବା ଆଶେ ।
ରଜତ ଶଳାକା        ସମାନ ଯୁଗଳ
    ଦନ୍ତରେ ଶୈବାଳମଞ୍ଜରୀ ଧରି
ଶୁଣ୍ଢେ ଜଳଧେନ        ଉତ୍କଣ୍ଠେ ଉଲ୍ଲାସେ
    ବସନ୍ତ ବିକାରେ ପ୍ରମତ୍ତ-କରୀ ।

ସେ ଜଳ ଅଶାରେ    ପ୍ରିୟା ଅଙ୍ଗଧୋଇ
ଥରେଥରେ ନିଜ ଦେହ ପଖାଳି
ମୃଣାଳ ଖଣ୍ଡରୁ    ଖଣ୍ଡେ ଖାଇ ଖଣ୍ଡେ
ତାର ମୁଖେ ଦିଏ ପ୍ରଣୟୁଜ୍ଜ୍ୱଳ ।
ସୁଝୀନ ବସନ    ଅଞ୍ଚଳ ପ୍ରସାରି
ନାଚୁଣିଏ ଯଥା ଭଙ୍ଗୀରେ ଘୂରି
ବାଦ୍ୟତାଳେ ପଦ    ଚଳାଇ ଦେଖାନ୍ତି
ଦର୍ଶକେ ତାହାଙ୍କ ନାଟ୍ୟ ମାଧୁରୀ ।
ହଲଇ ମୁକୁଟ    ତେସନ କୁକ୍କୁଟ
ପାଦଯାଏ ତେଣା ପକ୍ଷୀ ମେଲାଇ
ମଧୁର ସମ୍ଭାଷେ    ସମ୍ଭାଷି, ପ୍ରିୟାର
ପାଖେ ବୁଲୁଥିଲା ମନ ମତ୍ତାଇ ।
ବାଳକାମାନଙ୍କ    (୧) ଚୁଇଖେଳଛନ୍ଦ
ଅନୁସରି ଖୁଣ୍ଟା ସୁଇ (୨) ବିହଙ୍ଗେ
ଶିରପୁଚ୍ଛ ଟୁଳି    ପ୍ରିୟାପ୍ରୀତ ଲୋଡ଼ି
ତେଉଁ ତେଉଁ ନାଚୁଥିଲେ କି ରଙ୍ଗେ ।
ଏ ସବେ ବାସନ୍ତୀ    ଶୋଭା ଦେଖି ଦେଖି
ପୁରୁଣାଗଡ଼ର ଦୋଳମଣ୍ଡପେ (୩)
ବିଶ୍ରାମି ମୁହୂର୍ତ୍ତେ    ପ୍ରବେଶିଲି ଯାଇ
ବଡ଼ଦେଉଳର ପଦତଳପେ ।
ବିଶାଳ ଦେଉଳ    ଉନ୍ନତ ମସ୍ତକ
ନଭ ଉପରକୁ ଯାଇଛି ଉଠି
ମର୍ମ୍ମର ଶୈଳର    ଶୃଙ୍ଗ ବାହାରିଛି
କିବା ଦମ୍ଭେ ରସାତଳରୁ ଫୁଟି ?
ସୁନ୍ଦର ଦେବତା    ରତ୍ନ ମୂରତିଙ୍କୁ
ଭକ୍ତିଭରେ ନମି ଶିର ନୁଆଇଁ

---

(୧) ଏ ଦେଶରେ ବାଳିକାମାନେ ବର୍ଷକର ନାଚି ନାଚି ହାତ ହଲାଇ ଚୁଇଖେଳ ଖେଳନ୍ତି ।

(୨) ସୁଇ ନାମ ପ୍ରସିଦ୍ଧ ପକ୍ଷୀ ବିଶେଷ ।

(୩) ପୁରୁଣାଗଡ଼ସ୍ଥିତ ବଡ଼ଦେଉଳର ଉତ୍ତରରେ ଦୋଳମଣ୍ଡପ ବସିଛି ।

ଦେଖନ୍ତି ତାହାର ବେଢ଼ା ପରିକମି
ଅଗ୍ରହେ ଦେଖିଲ ତାହାରୁ ଆଗ୍ରେ ।
ଦଳାଞ୍ଜନକାନ୍ତ କାଳକା ମୂରତ
ବସ୍ତ୍ରବିଯୁକ୍ତାଙ୍ଗୀ ମହାକରାଳ
ଶୋଭାପାଏ କରେ କନକ କୁଳଶ
କୃପାଣ, କମଳ, ନରକପାଳ ।
ସାଜୁଥିଲ ବଳ୍ୟ— ପଲ୍ଲବେ ମଣ୍ଡିତ
ମାଳାରେ ସୁକଣ୍ଠି କଣ୍ଠପ୍ରଦେଶ
ବହୁଥିଲେ କସେ ମହାକାଳ ପ୍ରଣ
ଅନ୍ଧକାରକାର ରୁଚିର ବେଶ ?
ପ୍ରଳୟକାଳୀନ ନବଘନରୁଚି—
ରୁଚିର ବସ୍ତ୍ରହେ ସେ ଦେବୀଙ୍କର
ସଦ୍ୟ ଖଣ୍ଡିତ ରକ୍ତବିନ୍ଦୁ ସ୍ରାବୀ
ମୁଣ୍ଡ ଦିଶୁଥିଲ ଭୀଷଣତର ।
ଘୋର ହାସପ୍ରଦ ଗମ୍ଭୀର ଅକାର
ଶତ୍ତିରେ କୁଳିର (୧) କାନ୍ତ ଧିକ୍କାର
ଶୋଣିତ ସ୍ରୋତରେ ଆବର୍ତ୍ତ ପଡ଼ିଏ
ଦିଶୁଥିଲ ତୁଣ୍ଡ ଗୋଟି ତାଙ୍କର ।
ସେ ତୁଣ୍ଡ ଗହ୍ୱରେ କୃତାନ୍ତର ଶୂଳ—
ସମ ଦନ୍ତଶିଖାମାଳ ଭିତରେ
ବିଦ୍ୟୁତ ପରିଏ ଲହଲହ ଜିହ୍ୱା
ଖେଳୁଥିଲ ନାଚନାଚ ରଙ୍ଗରେ ।
ଘନ ଜରଜର ସେ ଲୋଳରସନା
ସଦା ରକ୍ତପାନେ ମନବଳାଇ
ବହୁଥିଲ ସିନା ମେରୁଆ ପଶୁଙ୍କ
ଆଗମନ ବାଟ ଅଧୀରେ ଚାହିଁ ।
ମେରୁଆ ରୁଧିର ପ୍ରବାହେ ଜର୍ଜ୍ଜର
ମାଷ (୨) ପୁଷ୍ପରାଜ ନେହ ଦୁଃସହ

(୧) କୁଳିର—ଗଲ କଙ୍କଡ଼ା । (୨) ମାଷ—ବାସନ୍ତ୍ରବ ବେଳେ ବଦମ୍ ।

ଦେବୀଙ୍କ ଦେଉଳରେ ବିମଣ୍ଡିତ ଦେଖି
ଥର ଯାଉଥିଲା ଭୟେ ହୃଦୟ ।
ବଳି ସମୟରେ ଆକଣ୍ଠ ଅଧୀରେ
ଭୀଷଣ ଢକ୍କାର କର୍କଶ ସ୍ୱର
ସତେକି ଠାକୁର ଥିଲା କଳେବର
ଉଲ୍ଲାସ-ଉତ୍ଥିତ-ପ୍ରେମେ ତାଙ୍କର ।
ଘୋର ଦିଗମ୍ବରୀ ଉନ୍ମୁକ୍ତ କୁନ୍ତଳା
ଭୟଙ୍କରୀ ଉଗ୍ରଚଣ୍ଡୀ କାଳିକା
ଶିରେ ରାଜୁଥିଲା କିରୀଟ ପରାଏ
ରକ୍ତକରବର୍ଷୀ ବାଳେନ୍ଦୁ ଶିଖା ।
ସିଂହ ବିଦାରତ ମତ୍ତ କରୀ କୁମ୍ଭ—
ବିଚ୍ୟୁତ ରକ୍ତାକ୍ତ ମୁକ୍ତାବତ
ବଳି ପୂଜାକାଳ ଶୋଣିତେ ରଞ୍ଜିତ
ଆତପ ତଣ୍ଡୁଳରାଜି ସନ୍ତତ ।
ପୂଜା ଅନ୍ତସ୍ଥ ଖାଇବା ନିମନ୍ତେ
କ୍ଷୁଧାର୍ତ୍ତ ଚଟୁଳ ଚଟକଗଣ
ଏପାଖେ ସେପାଖେ ଉଡ଼ି ବୁଲୁଥିଲେ
ଖୋଜି ଖୋଜି ସେହି ତଣ୍ଡୁଳକଣ ।
ଦେବୀଙ୍କୁ ପ୍ରଣମି ପିବା ସମୟରେ
ସହସା ହେଲା ମୋ ନେତ୍ର ଅତିଥି
ଭଗ୍ନ ଅବଶେଷ ପତନ ପୁରୁଣା—
ଗଡ଼ର ଯେତେକ ପ୍ରାଚୀନ କୀର୍ତ୍ତି ।
ମନୋହର ଗଡ଼ ସୁଦୃଢ଼େ ରକ୍ଷିତ
ପ୍ରଶସ୍ତ ଗଭୀର ଦୀର୍ଘ ଖାଇରେ ।
ବେଢ଼ା ହୋଇଥିଲା ନୀରନ୍ଧ୍ର ନିବିଡ଼
ଦୁର୍ଭେଦ୍ୟ ବାଉଁଶ କଣ୍ଟା ପ୍ରାଚୀରେ ।
ତୋପ ବସାଇବା ପାଇଁ ସ୍ଥାନେ ସ୍ଥାନେ
ସେ ଖାଇ ଭିତରେ ମୃତ୍ତିକାସ୍ତୂପ
ଜମା ହୋଇଥିଲା ପ୍ରବୃଦ୍ଧଦେବୀଙ୍କ
ଯେସନ ବିଶାଳ ପାତ୍ରଅ ପୂପ । (୧)

(୧) ପୂପ—ମଣ୍ଡାପେଠା ।

ଶାସରେ ଆବୃତ ଥୋପି ଜଳରାଶି
ଭାସୁଥିଲା ସେହି ଜଳୀ ଉପରେ
ନବମେଘ ଯଥା ଚଳେ ଧୀରେ ଧୀରେ
ମୃଦୁ ପବନରେ ନୀଳ ଅମ୍ବରେ ।
ଗଙ୍ଗ ଭୂପଙ୍କର ବହାର ପ୍ରାଙ୍ଗଣ
ବପ୍ରବମଣ୍ଡପ ସନ୍ତ୍ରସଦନ
ଭଗ୍ନ ସ୍ତୂପମାନ ଦୁଃଖିତ ଅନ୍ତରେ
ବୁଲିବୁଲି କଲି ଅବଲୋକନ ।
ଦେଖିଲି ସହସା ଚନ୍ଦ୍ର କୁମାରୀଙ୍କ
ଅନ୍ତଃପୁରସହ ରାଜ ଉଆସ
ଆଦର୍ଶ ଚରିତ୍ର ପ୍ରତାପରୁଦ୍ରଙ୍କ
କର୍ମମୟ ପୂତ ପ୍ରସିଦ୍ଧ ବାସ ।
ଶସ୍ୟ ପରିପୂର୍ଣ୍ଣ କ୍ଷେତ୍ର ମଧ୍ୟସ୍ଥଳେ
ଆକର୍ଷିତ ଖଣ୍ଡେ ଭୂମି ତହିଁରେ
ରହିଛି ଏ ଯାଏ ସେ ପବିତ୍ର ସ୍ଥଳ
ଚଷା ନୋହି କୃଷିଜାବୀଙ୍କ ସୀରେ । (୧)
ଗୁଳ୍ମ ସମାଚ୍ଛନ୍ନ ସେ ପ୍ରାଚୀନ ସ୍ଥାନ
ନୟନେ ମୋହର ପଡ଼ି ସହସା
ମାନସ ପଟରେ ସ୍ମରାଇଲା ଆଣି
ସେ ଦୁର୍ଗର ଯେତେ ଅତୀତ ଦଶା ।
ପଡ଼ିଲା ମନରେ ସର୍ବେଶ୍ୱର ଦେବ (୨)
ସନ୍ଧ୍ୟାରେ ଯେମନ୍ତ ଦୁର୍ଗୁ ବାହାରି
ବୁଲୁଥିବା ବେଳେ ଗୁପ୍ତଚର ହସ୍ତେ
ଯେ ଭାବରେ ଥିଲେ ପରାଣ ହାରି ।
ପାଟ ମହାଦେଇ ଯେମନ୍ତ ତାହାଙ୍କ
ବିଯୋଗ ବେଦନା ନ ସହି ଗଲେ
ସଚିବଙ୍କ ହସ୍ତେ ଶିଶୁପୁତ୍ର ଦେଇ
ଚିତା ଅନଳରେ ତନୁ ଝାସିଲେ । (୩)

(୧) ସୀର—ଲଙ୍ଗଳ । (୨) ମଦଳଗା କୁଞ୍ଜପୋଟ ଉପରେ ।
(୩) ଏ ସ୍ଥଳର୍ଗରୁ ବାହାରି ବୁଲୁସବାବେଳେ ରେଡ଼ାଖୋଲିଅଙ୍କ ହାସ ହତ ହୋଇଥିଲେ ।

ରେଢ଼ାଖୋଲ୍‌ଆଙ୍କ        ପ୍ରବଳ ବାହିନୀ
    ଯୋଗେ ଅଲକ୍ଷିତେ ହୋଇ ଅକାନ୍ତ
ଯେମନ୍ତ ଭଯୂରେ        ଦୁର୍ଗବାସୀସହ
    ଅମାତ୍ୟ ପ୍ରବର ଶ୍ରୀବିଶ୍ୱନାଥ ।
ଶିଶୁ କୁମାରଙ୍କ        ପ୍ରାଣରକ୍ଷା ପାଇଁ
    ଶୁଦ୍ଧାନ୍ତବାସିନୀ ବାମା ସଙ୍ଗରେ
ପଳାଇ ଆସିଲେ        ଅତି ଦୁସ୍ତରେହ (୧)
    ମନଭଙ୍ଗା ଶୈଳ ଗୁହା ଗୃହରେ ।
ସର୍ବେଶ୍ୱରଙ୍କର        ପ୍ରିୟ ଅନୁଚର
    ରାମଦାସ ଶ୍ୟାମଦାସ ଯୁଗଳ (୨)
ଦେଖି ଏ ଅନାଥ        ଧାଇଁଲେ ଯେମନ୍ତ
    ମର୍କ୍କଟାପତିଙ୍କ ପାଶେ ଚଞ୍ଚଳ ।
ଜୁଟାଇ ସକଳ        ତାହାଙ୍କ ସଙ୍ଗତେ
    ଦୁର୍ନିବାର ନାଗା ବାହିନୀ ଆଣି
ଛେଳପଲେ ବାଘ        ପଶିଲା ପରାଏ
    ବିପକ୍ଷ ପକ୍ଷଙ୍କୁ ଯେମନ୍ତ ହାଣି ।
ତଡ଼ି ତଡ଼ି ବଳେ        ସରପାଲି ପାଖେ
    ରୁଧିର କର୍ଦ୍ଦମେ ସରଣି ଭରି
ଗଦାଇଲେ ମୁଣ୍ଡ        ଦୁଇ ଗାଇଜର
    ସୁଦୃଢ଼ ସୀମାନା ପିଲର (୩) ଉପରି ।
ପ୍ରଚଣ୍ଡ ଆହବେ        ସେଦିନୁ ଏ ପାଏ
    ମେଣ୍ଟିଲା ଚଣ୍ଡୀଙ୍କ ରକ୍ତ ପିପାସା
ବୀରଙ୍କ ଉତ୍ତପ୍ତ        ରୁଧିର ରେଖାରେ
    ଅବଶେଷେ ହେଲା ସୀମା ମୀମାଂସା ।
ହାଟଶାଳ ପଛ        ପାଖେ ଯେ ବିଶାଳ
    ପ୍ରାନ୍ତର ଦେଖାଏ ଶୋଭା ନିକର

(୧) କୁରୁଡ଼କୋଟ ଝରଣା ନିକଟରେ ସଦ୍ୟମରଣ ଲଭିଥିଲେ ।
(୨) ତୁଳଭଣ ବିଦେଶୀ ପାରୁଷଦ ।
(୩) ସୀମା ନିର୍ଦ୍ଦେଶକ ସ୍ତମ୍ଭ ।

(୧) ଟାର୍‌ବାଇନ ପାଖେ ଯା ବଟେ ଧାଇଁଛି
ଏବେ ଯହିଁ ରାଜପଥ ସୁନ୍ଦର ।
ଘୋରଢ଼କୋଟର ଜଳୀୟ ଶୀକରେ
ସଦା ଯହିଁ ସିକ୍ତ ତରୁଲତାଏ
ନାଗାସୈନ୍ୟ ତହିଁ ଥିବାରୁ ସେ ନାମେ
ଅଦ୍ୟାପି ସେ "ନାଗଘୋଡ଼ା" ବୋଲାଏ ।
ଜନଶୂନ୍ୟ ହେଲ ନଗର ନିଃଶଙ୍କେ
ନାଗରିକଦଳ ଭ୍ରମିଲେ ପୁଣି
ସେ ଶୈଳ ନିବାସ ଛାଡ଼ି ଓହ୍ଲାଇଲେ
ରାଜ ଉଆସର ସେତେ ତରୁଣୀ ।
କେବେହେଁ ଜୀବନ ନିରାପଦ ନୁହେଁ
ସେ ରାଜଧାନୀରେ ଶିଶୁନୃପଙ୍କ
ଏ ଭାବ ଭାବନା ବଣେ ମନ୍ତ୍ରିମାନେ
ଉପାୟ ଲୋଡ଼ିଲେ ହୋଇ ସଶଙ୍କ ।
ଅବିରତ ଶୀତ— ବାତ ସହଚର
ଶୁଭ୍ର ଝରଣର ସୁନ୍ଦରଧାରା
ମୌକ୍ତିକ ଉଜ୍ଜ୍ୱଳ ଶୀକରେ ଯାହାର
ଭାଲେ ଇନ୍ଦ୍ରଧନୁ ହୁଅଇ ବାର ।
ଘନକୃଷ୍ଣଶିଳା ସୋପାନେ ଶିଖରୁ
ସଲିଳ ଯାହାର ପଡ଼ଇ ଗଡ଼ି
ଶିଳେ ଅସମ୍ଭାଳେ କରୁଡ଼ ଶିର ଯେ
ସର୍ବଦା ଛାଡ଼ଇ ଭୀଷଣ ରଡ଼ି ।
ସେ ପ୍ରଧାନ ପାଟ (୨) ଜଳକଣାସ୍ନାତ
(୩) ବୃହଦ୍ରୁମ ଅଟ୍ଟାଳିକା ନିବାସୀ

---

(୧) କୁନ୍ଦୁଡ଼ଢୋଡ଼ ପର୍ବତ ଦେବଗଡ଼ର ପଶ୍ଚିମରେ ଅବସ୍ଥିତ । ଏହାର ପାଦରେ ଗୋଟିଏ ସୁନ୍ଦର ପ୍ରପାତ ପ୍ରବହମାନ ହେଉଅଛି । ଏହି ପ୍ରପାତର ଜଳ ଦ୍ୱାରା ଚାଳିତ ଟାରବାଇନ୍ ରାଜା ସଚ୍ଚିଦାନନ୍ଦ ଦେବ ସ୍ଥାପନ କରାଇ ଦେବଗଡ଼କୁ ଇଲେକ୍‌ଟ୍ରିକ୍ ଦେବାର ସୁବିଧା କରିଅଛନ୍ତି ।

(୨) ପ୍ରଧାନ ପାଟ ପ୍ରପାତ ଦେବଗଡ଼ର ଉତ୍ତରରେ ପର୍ବତ ପାଦରୁ ପ୍ରବାହିତ ।

(୩) ପଞ୍ଚଶ୍ରୀ ଦେବୀଙ୍କ ପୀଠ ବରଗଛ ମୂଳରେ ସ୍ଥିତ ।

ପାଷଣ୍ଡୀଙ୍କର (୧)   ଶ୍ରୀଚରଣ ତଳେ
ସଭୟେ ଶରଣ ପଶିଲେ ଆସି ।
ବିଶାଳ ବୈଦନ୍ତା (୨)   ପାଦ ପ୍ରଦେଶରେ
ସେଦିନ୍ତୁଁ ପ୍ରସିଦ୍ଧ ଏ ଦେବଗଡ଼
ସୁରମ୍ୟ ଅଟ୍ଟାଳି   ମାଳେମଣ୍ଡି ମୌଳି
ଉନ୍ନତ ସୋପାନେ ଶୋଭଇ ଗୋଡ଼ ।
ଗଣ୍ଡଶୀଳ ନଜ   ଯାନରୁ ଯେସନ
ଦ୍ରବ୍ୟମାନ ଦେଖି ଦେଖି ଆଗରେ
ଚଳାଏ ଚାଳକ   ମଠଦ୍ୱାରକୁ
ଗନ୍ତବ୍ୟମାର୍ଗରେ ସାବଧାନରେ ।
ତେସନ ପ୍ରାଚୀନ   କୀର୍ତ୍ତିମାନ ଦେଖି
ସ୍ୱବଶ୍ବ ସ୍ନେହ ପୁଂ ଚରତ
ବଡ଼ ଯୋର ଲଙ୍ଘି   ପ୍ରବେଶିଲ ଯାନ
ଶିବାଳୟେ ଭକ୍ତତଦ୍‌ଗତଚିତ୍ତ ।
ଘନ ତରୁପୁଞ୍ଜ   କାନନ ଭିତରେ
ସୁରମ୍ୟ ଦେଉଳ ଝଟକି ଦିଶେ
ନବୀନ ନୀରଦ   ଅନ୍ତରାଳେ ନବ
ପୂର୍ଣ୍ଣଚନ୍ଦ୍ରମାର ମୂରତି କିଏ ?
ତହିଁପରେ ରମ୍ୟ   ହେମକୁମ୍ଭ ଶିରେ
ଉଡ଼ଇ ସୁନ୍ଦର ଶ୍ୱେତକେତନ
ଭବ ସ୍ଥଳ କିବା   ଦେଖାଏ ଦେଉଳ
ଭକ୍ତଗଣଙ୍କୁ ମୁକ୍ତି ଭବନ ?
ସେ କେତନ ତଳେ   ଦିଶେ ଝକଝକ
ରଜତ ଉଜ୍ଜ୍ୱଳ ତ୍ରିଶୂଳବର
ତା'ପାଖେ କେଶରୀ   କେଶର ଭରାଏ
ବିସ୍ତାରି ଶ୍ୱେତ ସ୍ଥୁରୁସ୍ଥୁମର ।

(୧) ପ୍ରଧାନପାଟ ପର୍ବତରେ ପାଷଣ୍ଡୀ ଦେବୀଙ୍କ ପୀଠ ସ୍ଥଳ ।
(୨) ବୈଦନ୍ତା ଦେବଗଡ଼ର ଉଚ୍ଚ ପର୍ବତ ।

ଲମ୍ବିଛି ପ୍ରଲମ୍ବ ଲୌହର ଶିକୁଳ
ଭ୍ରମର ତଳକୁ ଚୁମ୍ବି ରୁଚିରେ
ସୁଗମ୍ଭୀରନାଦ ଘଣ୍ଟା ଦୋହଲଇ
ସମୀରେ ସଧୀରେ ସେ ଶିକୁଳରେ ।
ସ୍ଫଟିକ—ଗଢ଼ର ମୂର୍ତ୍ତି ବିରାଜନ୍ତ
ଆସନେ ମନ୍ଦର ମଧ୍ୟମ ସ୍ଥାନେ
ଗଜଦନ୍ତ ଛଟେ ଗଢ଼ା ହୋଇଛି କି
ଏ ଦିବ୍ୟମୂରତି ପୁଣ୍ୟୋପାଦାନେ ?
ଈଶ୍ୱର ବିଦ୍ୱେଷୀ ପାପୀ ହୃଦୟରେ
ସଦୟେ ବିତର ମଙ୍ଗଳମୟ
ରୁଚିର ତ୍ରିଶୂଳ ଶୋଭଇ ଶୀକରେ
ବିନାଶି ଉକଟ ହୃଦୁଁ ପାତକ ।
ସେହି ମନ୍ଦରର ଭିତର ଉଜ୍ଜ୍ୱଳ
ସମୁଜ୍ଜ୍ୱଳ ନିଜ ପ୍ରଭା ପ୍ରବେହେ (୧)
ଦେବଦେବଙ୍କର ଭାଲେ ନବୋଦିତ
ଶୁଭ୍ରଚନ୍ଦ୍ରକଳା କି ଶୋଭା ବହେ ।
ସୁରଭି ଚମ୍ପକ ବିମଣ୍ଡିତ ଶିରେ
ଦୀର୍ଘ ଜଟାଜୁଟ ଯାଏ ଦୋହଲି
ସେ ଜଟାକୁ ବେଢି ଫଣିଏ ଶ୍ୱାସନ୍ତ
ଫଁ ଫଁ ଧ୍ୱନେ ଫଣାମଣ୍ଡଳ ଡୋଳି ।
କରବାଳ ସମ ସୁଦୀର୍ଘ ରସନା
ଭ୍ରମି ସେ ଭୀଷଣ ଭୁଜଙ୍ଗପନ୍ତ
ନେତ୍ରାଗ୍ନି ଶ୍ୱାସରେ ଦଗ୍ଧ ହୋଇ ଅବା
ଚୂଡ଼ାଚନ୍ଦ୍ରୁଁ ସୁଧା ସଦା ପିଅନ୍ତ ।
କେଙ୍କାକଣ୍ଠ ପରି ନୀଳକଣ୍ଠ କଣ୍ଠ
ଆଭାସଇ ହଳାହଳ ରସରେ
ଧକ୍‌ଧକ ଜ୍ୱଳେ ତୃତୀୟ ନୟନ
ସୁପ୍ରଶସ୍ତ ଭର୍ଗ ଭାଲ ପଠରେ ।

(୧) ପ୍ରବେହ – ସମୂହ ।

ବାମାଙ୍ଗ ସଙ୍ଗିନୀ　　ହିମାଳୟ ସୁତା
　　ବସିଛନ୍ତି ଅତି ଅପୂର୍ବ ଶୋଭା
ମଥା ସନ୍ନତରେ　　ଉଜ୍ଜ୍ୱଳ ଶ୍ରୀମୁଖ
　　ବାଳାର୍କ କିରଣେ ଝଳାରେ ପ୍ରଭା ।
ଆଦେଶକୁ ଯାହାଁ　　ସଙ୍କୋଚ କେଶରୀ
　　ଭକ୍ତଭାବେ ଶାନ୍ତ ମୂରତି ଧରି
ବାହାନ କେଶରୀ　　ପଦ ତଳେ ପଡ଼ି
　　ଲୋଟଇ ପାଳିତ ମାର୍ଜାର ପରି ।
ଅନ୍ନସ୍ଥାଳୀ ତୋଳି　　ଅନ୍ନପୂର୍ଣ୍ଣା ରୂପେ
　　ଯାହିଁ ରହିଛନ୍ତି କୃପା କଟାକ୍ଷେ
ସେ ଅନ୍ନ ବିତରି　　ଦୀନ ଦରିଦ୍ରଙ୍କ
　　ଭବ ଦୁଃଖ ନାଶିବାକୁ କଟାକ୍ଷେ ।
ଆଗରେ ଗଣେଶ　　କୁଣ୍ଡ ସମାଚ୍ଛନ୍ନ
　　ଅସଂଖ୍ୟ ସୁନ୍ଦର ସୁବର୍ଣ୍ଣ ନାଗେ
ଗଇଣ ଦୁଦୁରା　　ବେଲପତ୍ରମାନ
　　ଫୁଟି ଭାସୁଛନ୍ତି ଉପରି ଭାଗେ ।
ସେ କୁଣ୍ଡୁଁ ନିଗିଡ଼ି　　ପାଦୁକା ସଲିଳ
　　ଛିଦ୍ର ପଥେ ସ୍ୱଚ୍ଛ ସ୍ରବ ବାହାରେ
ଭକତଙ୍କୁ ପାତେ　　ମୁକ୍ତିମାର୍ଗ ଦେଇ
　　ପଡୁଛି ବାମ୍ଫେରେ ଝର ଆକାରେ ।
ଦୁଆରେ ବସିଛେ　　ଊର୍ଦ୍ଧ୍ୱେ ମୁଖ ଟେକି
　　ହରଙ୍କ ବାହନ ବୃଷଭବର
ବିଶାଳ କକୁଦ　　ସ୍କନ୍ଧଦେଶେ ଶୋଭେ
　　ମାର୍ଜିତ ପୃଥୁଳ ତନୁ ସୁନ୍ଦର ।
ବଳୟ ଆକାରେ　　ଶୃଙ୍ଗ ବେନି ଶିରେ
　　ପିଠିରେ ଅର୍ପିତ କମ୍ବଳ ଭିଡ଼ା
ସତେକି ପ୍ରଭୁଙ୍କୁ　　ବୋହିବା ପାଇଁକି
　　ଆରମ୍ଭେ ବୃଷଭ ହୋଇଛି ଛିଡ଼ା ।
ଦେଉଳ ସମ୍ମୁଖେ　　ଭୈରବ ମୂରତି
　　ବକ୍ଷେ ଗଳେ ନର ମୁଣ୍ଡମାଳ

ବଲ୍ଲେଳ ରସନା ବାମକରେ ଚର୍ମ
ଦକ୍ଷେ ବିରାଜଇ ଖଡ୍ଗ ଭୟାଳ ।
ଲହ ଲହ ଜିହ୍ୱା ଗ୍ଳଳ ଶ୍ୱାନକୂଳ (୧)
ଘୃଷ୍ଟିଛନ୍ତି ଧୀରେ ରକ୍ତଚରଣ,
ମାଜୁଅଛି କିବା କମଳ ଦଳକୁ
ନିଜ ସ୍ୱପ୍ରକରେ ବାଳତପନ ।

ସେ ମହା ଭୈରବ ପଶୁପତିଙ୍କର
ବସିଛନ୍ତି ଦ୍ୱାରୀ ପ୍ରାୟ ବାଟରେ,
ଶ୍ୱେତାଙ୍ଗ ଶ୍ୱେତାଙ୍ଗୀ ହରଗୌରୀ ପାଶେ
କେ’ ଯିବ ତାହାଙ୍କ ଅନାଗୋଚରେ ।

ଦେବସେନାସହ ଉତ୍ତରେ ସେନାନୀ
ଷଡ଼ାନନ ଉଚ୍ଚ ସିଂହାସନେ,
ସେନାପତି ବେଶେ ହେମବର୍ମାବୃତ
ଶରୀର ଶୋଭଇ ନାନାଭୂଷଣେ ।

ଭୁଜମାନଙ୍କରେ ବିରାଜଇ ଖଡ୍ଗ
ପଟ୍ଟୀଶ (୨) କାର୍ମୁକ ଗଦାମୁଦ୍‌ଗର
ପୃଷ୍ଠ ସପଠାଇ ନତମୁଖେ ଠିଆ
ହୋଇଛି ଅଗରେ ମୟୂରବର ।

ରାଜନ୍ତି ଦକ୍ଷିଣେ ଗିରିଜା ନନ୍ଦନ
ଗଣେଶ ବିଘ୍ନେଶ ମୂଷାବାହନ
ସୁବିଶାଳ ତନୁ ଏକଦନ୍ତଧାରୀ
ସ୍ଥୂଳ ଉଦର ଗଜବଦନ ।

ଭବେ ଯେତେ ଦୁଃଖ ପ୍ରାଣୀମାନଙ୍କର
ଏହାଙ୍କ କଲ୍ୟାଣ ଅଚିରେ ନାଶେ
ବିଦ୍ୟାଳୟ ଆସେ ଭକ୍ତିରେ ମନାନ୍ତି
ବିଦ୍ୟାର୍ଥୀ ବାଳକମାନେ ଉପାସେ ।

(୧) କୁକ୍କୁର ଭୈରବଙ୍କ ବାହନ ।
(୨) ପଟ୍ଟୀଶ—ଅସ୍ତ୍ର ବିଶେଷ ।

ଦେଉଳର ବେଢ଼ା      ଭିତରେ ବନସ୍ତେ
ବିଭିନ୍ନ ଆକୃତି କେତେ ପ୍ରମଥେ,
ନିଜ ନିଜ ସ୍ଥାନେ      ଉଭା ହୋଇଛନ୍ତି
ପ୍ରମଥ ପତିଙ୍କ ଆଜ୍ଞା ନିମନ୍ତେ ।
ସ୍ତୋତ୍ର ପାଠ ଶେଷେ      ପ୍ରଣମି ସାଷ୍ଟାଙ୍ଗେ
ଭକ୍ତି ରସପୂର୍ଣ୍ଣ ସ୍ନିଗ୍ଧମନରେ ।
ବସିଲେକିଲ୍ ସେହି      ଦମ୍ପତି ବନ୍ଦନାସ୍ଥା
ପବିତ୍ର ଯୁଗଳମୂର୍ତ୍ତି ଆଗରେ ।
ହେମଗୌର ଗୌରୀ      ରଜତାଭ ଶିବ
ଙ୍କ ଅଚିନ୍ତ୍ୟନୀୟ ପ୍ରେମମନ୍ଦିରେ
ଜୀବନର କାମ୍ୟ      ଦିବା ସନ୍ଧ୍ୟାପର
ମିଳିଛନ୍ତି ଏକମନ ପ୍ରାଣରେ ।
ଅସ୍ତଗାମୀ ରବି      ନବୋଦିତ ଚନ୍ଦ୍ରେ
ଯେମନ୍ତ ଦିଶଇ ମେରୁଭୂଧର,
ଏକରୂପ ଧରି      ଦୁଇପ୍ରାଣେ ପ୍ରେମ
ସଜୁଥିଲା ତେବେ ଯୁଗଳଙ୍କର ।
ଅର୍ଦ୍ଧଗୌରୀ ହର      ଅର୍ଦ୍ଧ ହରଗୌରୀ
ଶୋଭା ପାଉଛନ୍ତି ଏକ ଆସନେ,
ମୂର୍ତ୍ତି ପରିଗ୍ରହ      ପ୍ରେମଙ୍କ ସଜଇ
ଶିକ୍ଷାଦେବା ପାଇଁ ତିନିଭୁବନ ।
ଅନନ୍ତ ପ୍ରେମର      ସେ ମହା ଗମ୍ଭୀର
ମହୋଦାର ମୂର୍ତ୍ତ ସୁନ୍ଦର ଚିତ୍ର
ସ୍ମରୁଥିଲି ମନେ      ଦକ୍ଷଯଜ୍ଞେ ତାଙ୍କ
ଆତ୍ମ ଉତ୍ସର୍ଗର ଭ୍ରବ ପବିତ୍ର
ଯଜ୍ଞ ନିମନ୍ତ୍ରଣେ      ଜନକ ଭବନେ
ବିଜେ ହୋଇ ସ୍ୱାମୀ ସମ୍ମତେ ସତୀ
ଶୁଣି ସ୍ୱାମୀ ନିନ୍ଦା      ବିଲୋକି ସ୍ୱାମୀର
ବିରୂପ ବିକୃତ ଧ୍ୟାନ ମୂରତି ।
ଅଭିମାନେ ଲାଜେ      ଅପମାନେ ସାଧ୍ୱୀ
ଛାଡ଼ିଲେ ସ୍ୱତନ୍ତ୍ର ତନୁ ତକ୍ଷଣେ

ସେ ଘୋର ବାରତା ଶୁଣି ଦଉଡ଼ିଲେ
ବୃଷଭ ବାହନ ବୃଷ ବାହନେ ।
ପ୍ରବଳ ପ୍ରମଥ ବଳ ଘେନି ସଙ୍ଗେ
ବିଶାଳ ତ୍ରିଶୂଳ ଦଣ୍ଡେ ତ୍ରିଶୂଳୀ
ଧ୍ୱଂସି ଦକ୍ଷଯଜ୍ଞ ସଂହାରି ଦକ୍ଷକୁ
ଅବଲମ୍ବେ କଲେ ସେ ଦେଶ ଧୂଳି ।
ମହାସତୀଙ୍କର ବିଷମ ବିରହ
ବିଶିଖେ କାତର ଦୀନ ଅନାଥ
ଜୀବର ଜୀବିତ— ମୃତ ଜ୍ଞାନଶୂନ୍ୟ
ତନ୍ମୟ ହୃଦୟ ପ୍ରମଥନାଥ ।
ମହାମାୟାଙ୍କର ମୃତ ଶରୀରକୁ
ଜୀବିତ ପରିଏ ବହି ସ୍କନ୍ଧରେ
କ୍ଷୁଧା ତୃଷା ଭୁଲି ଦାମ୍ପତ୍ୟ ପ୍ରେମକୁ
ପ୍ରକାଶିଲେ କିବା ଭୂମି ଉପରେ ।
ରକ୍ତ ମାଂସ ମେଦ ପଚି କ୍ରମେ କ୍ରମେ
ତାହାର ଦୂଷିତ ଜଳ ନିଚୟ
ସ୍କନ୍ଧଦେଶୁଁ ଝରି ସମଗ୍ର ତନୁକୁ
କଲେହେଁ ଉତ୍କଟ ଦୁର୍ଗନ୍ଧମୟ ।
ମାଂସାହାରୀ ଜୀବେ ଉର୍ଦ୍ଧେ ଚିଲ୍ଲମାରି
ତନୁ ଖଣ୍ଡେ ଖଣ୍ଡେ ନେଲେହେଁ ବହି
ନ ଛାଡ଼ି ସେ ତନୁ ବାତୁଳ ପରାଏ
ଭ୍ରମିଲେ ଭୂତେଶ ତନ୍ମୟ ହୋଇ ।
ବିଶ୍ୱପ୍ଳାବିନୀ ଜାହ୍ନବୀ ପରାଏ
ଧନ୍ୟ ଏ ଅନନ୍ତ ପ୍ରେମଲହରୀ
ଏ ବିଶ୍ୱ ମଣ୍ଡଳେ କେଉଁ ଦେଶ ପ୍ରେମ
ହେବ ଏ ପ୍ରଣୟ ସହିତେ ସରି ।
ଏମନ୍ତ ପ୍ରେମିକ ପ୍ରେମିକା ଜନମି
ଯେ ପବିତ୍ର ଦେଶେ ଶୁଭକ୍ଷଣରେ ।
ପ୍ରକାଶିଲେ ଏହି ପ୍ରେମର ଅତୁଳ
ଆଦର୍ଶ ମହିମା ଭୂତଭୃତରେ ।

ସେ ଦେଶେ ପ୍ରସିଦ୍ଧ ଦାମ୍ପତ୍ୟ ପ୍ରେମର
ସଦାଦେଲେ କିଆଁ ଏଥୁ ଦୁର୍ଗନ୍ଧ
ପୁରୁଷ ବାହାରେ ନାରୀମାନେ ଘରେ
ବନ୍ଦନୀ ପରାଏ କିପାଁ ରହନ୍ତି ।
ସୁଶିକ୍ଷା ବଳରେ ଯହିଁ କୁମାରୀଏ
ପଢ଼ୁଥିଲେ ବେଦ ସ୍ମୃତି ପୁରାଣ
କୁଶିକ୍ଷା ବଶରେ କୁରୁଚିରେ କିପାଁ
ଗାଉଛନ୍ତି ଢଗ ଢମାଳିମାନ ।
ବିଶ୍ୱ ବିଜୟିନୀ ବିଦୁଷୀ ବାମାଏ
ଦକ୍ଷଥିଲେ ଯହିଁ ସବୁ ବିଷୟେ
କିପାଁ ତହିଁ ନାରୀ କୋଡ଼ି କୋଡ଼ି କରି
ପାଞ୍ଚ କୋଡ଼ି ଥୋଇ ଗଣନ୍ତି ଶଏ ।
ପ୍ରବଳ ଶତ୍ରୁଙ୍କ ସମ୍ମୁଖୀନ ହୋଇ
ଯେମାନେ ପ୍ରବେଶି ରଣମଣ୍ଡଳେ
ତଲବାର ହସ୍ତେ କାଟୁଥିଲେ ଶତ୍ରୁ
ଶିର କମଳକୁ ଶୌର୍ଯ୍ୟ କୌଶଳେ ।
କାହିଁକି ସେମାନେ ରହିଛନ୍ତି ଏବେ
ପୁରୁଷକୁଳର ସେବିକା ପରି
ଗୌରବ ଗରିମା ସକଳ ହରାଇ
ଘରକୋଣେ ପଡ଼ି ଛଟୁଣି ସରି ।
ହସ୍ତିନୀ ଯେସନ ସଦା ଆଣ୍ଠୁ ବନ୍ଧୁ
କୁଡ଼ନଗଡ଼ରେ ବନ୍ଦନୀ ହୋଇ
ପାଶୋରି ପୂର୍ବର ସ୍ୱାଧୀନତା ତାର
ପରାଧୀନତାକୁ ସୁଖମଣଇ ।
ତେସନ ପୁଂସଙ୍କ ଇଚ୍ଛା-ଅନୁକୂଳେ
ଚଳି ରମଣୀଏ ଅନବରତେ
ଅଭ୍ୟାସ ବଶରେ ଏ ଅତ୍ୟାଚାରକୁ
ସୁଖ ମଣୁଛନ୍ତି ଆପଣା ଚିତ୍ତେ ।
ଆହେ ଶୂଳପାଣି ! ତୁମ୍ଭର ପରାଏ
ଦୟାମୟ ପ୍ରଭୁ ଥାଇଁ ଭରସା

ଭାରତେ ଲଳନା— କୁଳର କାହିଁକି
ହୋଇଛି ଏମନ୍ତ କଦର୍ଯ୍ୟ ଦଶା !
ତୁମ୍ଭ ଜ୍ୟୋତିର୍ମୟୀ ଶୂଳ କି ତ୍ରିଶୂଳୀ
ରହୁଛନ୍ତି ହୋଇ ନିଷ୍ପ୍ରଭ ଏବେ ?
ନୋହିଲେ ଏ ଘୋର ଅତ୍ୟାଚାର ଦେଖି
ତୁନି ହୋଇ ପ୍ରଭୋ ! ଥାଆନ୍ତ କେବେ ?
ବେଢ଼ା ଅନ୍ତର୍ମି ଏସବୁ ବହୁତ
ରତ୍ନ ରତ୍ନ ପୁଂ ଭବ ସକଳ
ବିଷକଣ୍ଠ କଣ୍ଠେ ଢାଳିଲେ ସଲିଳ
ବିଷଜ୍ୱାଳା ହେବା ପାଇଁ ଶୀତଳ ।
ମହାଭସ୍ମଙ୍କର ବିଷର ଜ୍ୱାଳାରେ
ସଦା ଶୁଷ୍କକଣ୍ଠ ଚନ୍ଦ୍ରଶେଖର
ବିଶ୍ୱ ହିତାର୍ଥେ କି ? ଆତ୍ମ ବଳିଦାନ
କି ଘୋର ଉଦାର ତ୍ୟାଗ ସ୍ୱୀକାର ।
ଦେବାସୁର ମିଳି ପ୍ରବଳ ବଳରେ
ମନ୍ଥିଲେ ଯେକାଳେ ଅନନ୍ତ ସିନ୍ଧୁ
ବାହାରିଲେ ସେହୁ କ୍ଷୀରାବ୍ଧି—ଶୁକ୍ତିର
ମୁକ୍ତା ପରିଏ ସୁନ୍ଦର ଇନ୍ଦୁ ।
ଜଳଧିଜଳରୁ ସ୍ୱକାନ୍ତିରେ ରଞ୍ଜି
ବରଭୁଜେ ଲୀଳା କମଳ ଧରି
ଜନମିଲେ ତହୁଁ ରତ୍ନାକର ଜେମା
ଚମ୍ପକ ଗଉରୀ ରମାସୁନ୍ଦରୀ ।
ଧବଳ ରୁଚିର ଉଚ୍ଚୈଃଶ୍ରବା ଅଶ୍ୱ
ବାରଣ ସୃଜନ ଅଇରାବତ ।
କାମଦା ବରଦା ପାରିଜାତ ତରୁ
ଜଗତେ ଦୁର୍ଲ୍ଲଭ ଦ୍ରବ୍ୟ ଅମୃତ ।
ଉଠିଲା ଶେଷରେ ସାନ୍ଦ୍ର ଘନକାନ୍ତ
ଦୂଷିତ ପ୍ରବାହସମ ତରଳ
ବିଶ୍ୱ ବିଧ୍ୱଂସନ ପାଇଁ ସମୁଦ୍ୟତ
ମହାତ୍ରାସପ୍ରଦ ଘୋର ଗରଳ ।

ସମସ୍ତଙ୍କୁ ଛଳ      କୌଶଳୀ ଶ୍ରୀହରି
ଜଳଧି ଜେମାଙ୍କୁ ନେଲେ ସରଗେ
ଉଚ୍ଚୈଃଶ୍ରବା ଐରା—      ବଡ ପାରିଜାତ—
ପାଦପ ପଡ଼ିଲା ଦେବେନ୍ଦ୍ର ଭାଗେ ।
ଅଦୃଷ୍ଟ ହୋଇଲେ      ଦୁଷ୍ଟହତ ପାଇଁ
ଉଦବାକୁ ନଭେ ତାର ରମଣ·
ଜରା ମୃତ୍ୟୁହାରୀ      ସୁସ୍ୱାଦୁ ସୁଧାକୁ
ସ୍ୱର୍ଗପୁରେ ନେଲେ ଦେବତାଗଣ ।
ଶ୍ରମେ ଦୃଷ୍ଟ କରି      ଶସ୍ୟ ଜମାଇଲେ
ଖଳାରେ ଯେସନ ବେଙ୍ଗଳା ବସ୍ତି
ସାହୁକାର ନେଇ      ଭଣ୍ଡାରେ ଭରଇ
ମୂଲ୍ୟ ସେଥିରୁ ନ ପାନ୍ତି କଷ୍ଟ ।
ତେଣନ୍ତେ ଅସ୍ତବ୍ୟସ୍ତେ      ମନ୍ଥା ମନ୍ଦରକୁ
ଧନଗ୍ରନ୍ଥ ଟାଣି ବଳ ସହିତ
ବଳବାନ ଦୈତ୍ୟ      ନବୋଧତା ଦୋଷୁ
ସହଜେ ହେଲେ ସେ ଭାଗ୍ୟୁଁ ବଞ୍ଚିତ ।
ସେ କାଳେ ପ୍ରବଳ      ହଳାହଳ ରସ
ଉଠିଲା ସମୁଦ୍ର ଗର୍ଭ ଉଛୁଳି
ତ୍ରାସେ ଦେବାସୁରେ      ସେ ବିଷମ ବିଷ—
ହିଂସାରେ ଅବଶେ ଗଲେ ମଉଳି ।
ନେବାର ତେଣିକି      ଥାଉ ସେ ଗରଳ
ଦେଖି ଭୟେ ତାଙ୍କ ଉଡ଼ିଲା ପ୍ରାଣ
ଶେଷେ କରଯୋଡ଼ି      ଦୀନମ୍ଲ ବଦନେ
ଆରମ୍ଭିଲେ ଦେବଦେବଙ୍କ ଧ୍ୟାନ ।
ପ୍ରସନ୍ନ ବଦନେ      ଭକ୍ତଙ୍କ ଗୁହାରି
ଶୁଣି ଆଶୁତୋଷ ଗଉରୀ ସାଇଁ
ପିଇଲେ ଗରଳ      ଆଶୁ ମୃତ୍ୟୁ ମୁଖୁଁ
ଅନନ୍ତ ସୃଷ୍ଟିକୁ ରଖିବା ପାଇଁ ।
ବାଡବାଗ୍ନି ଶିଖା      ପରାଏ ଜଳୁଛି
ସେ ଦିନୁଁ କଣ୍ଠରେ ତୀବ୍ର ଗରଳ ।

ଜ୍ୱାଳା ନାଶ ପାଇଁ ଅଜଯାଏ ତେଣୁ
ଢାଳନ୍ତି ସାଧକେ ଶୀତଳ ଜଳ ।
ଆଶୁତୋଷ ନାମ ସଦ୍ୟ ସୁ ପ୍ରସନ୍ନ
ମାନସରେ ଥାଏ ସଦା ସନ୍ତୋଷ
ଭୋଳା ମହେଶ୍ୱର ସାମାନ୍ୟ ସ୍ତୁତିରେ
ହୁଅନ୍ତି ନିରତ ଭକ୍ତଙ୍କ ବଶ ।
ସୁଖ ଭୋଗେ ନାହିଁ ଭକ୍ତେମାନେ ସ୍ପୃହା
ସୁଖଦ ସୁଗନ୍ଧ ତୈଳ ଚନ୍ଦନ
ବଦଳରେ ନେଇ ଶରୀରେ ଲେପନ୍ତି
ପାଉଁଶ ଯେସନ ଅନୁଲେପନ ।
ଛାଡ଼ି ସଦାବେଳେ କାରୁକାର୍ଯ୍ୟମୟ
ଗଜଦନ୍ତେ ଗଢ଼ା ରତ୍ନପଲଙ୍କେ
ନରଅସ୍ଥିମାଳା ପରେ ପିନ୍ଧନ୍ତି
ନିର୍ଜ୍ଜନ ଶ୍ମଶାନେ ସୁଖେ ନିଃଶଙ୍କେ ।
ବ୍ରହ୍ମା ବିଷ୍ଣୁ ଆଦି ତାଙ୍କ ମିତ୍ରମାନେ
କଳାସ ଲଳସୀ ଏଣୁ ସ୍ନେହରେ
ସୁରଭି କୁସୁମେ ମନୋହର ହାର
କହନ୍ତି ଆଦରେ ସଦା ହୃଦରେ ।
କିଏ ଗଜରାଜେ କିଏ ପକ୍ଷୀରାଜେ
କିଏ ହଂସେ କିଏ ପୁଷ୍ପକ ରଥେ
ବିରାଜି ଭ୍ରମନ୍ତି ଦେବତା ନିକର
ଅତି ଆଡ଼ମ୍ବରେ ଆକାଶ ପଥେ ।
ମାନ ଶିରମଣି ରୂପ ବାସସ୍ଥାନ
ଦୂନ୍ଦୁର ଗଇସ ଭଳ ସୁମନେ
ବିନା ଆଡମ୍ବରେ ବୃଦ୍ଧ ବୃଷେ ଚଢ଼ି
ବୁଲନ୍ତି ଶଙ୍କର ଆନନ୍ଦ ମନେ ।
ପୀତାମ୍ବର ନୀଳା— ମ୍ବର ଶୁକ୍ଳାମ୍ବର—
ଧାରି ଦେବତାଏ ବିବିଧ ରଙ୍ଗେ
କିଏ ଶଙ୍ଖ କିଏ ବେଣୁ ବୀଣା ଧରି
ସଙ୍ଗୀତ ରଚନ୍ତି ଅପୂର୍ବ ସଙ୍ଗେ ।

ବିପଶ୍ଚିତ ସଦା ଏହାଙ୍କ ବେଶର
ଦିଗମ୍ବର ଢରେ ଭିକ୍ଷାର ଝୁଲି
ଶିଙ୍ଗାବାଦ୍ୟଠାଏ ବହୁ ଦ୍ୱାରେ ଦ୍ୱାରେ
ଭିକ୍ଷା ଆଚରନ୍ତି ନରଦେବ ବୁଲି ।
ଉପଯୁକ୍ତା ଭାର୍ଯ୍ୟା ଗୃହେ ଅନ୍ନପୂର୍ଣ୍ଣା
ଦୟାର୍ଦ୍ର ହୃଦୟା ଚଣ୍ଡୀ ସୁନ୍ଦରୀ
ଯା କିଛି ଭିକ୍ଷାରୁ ଆଣନ୍ତି ଦରିଦ୍ରେ
ଦିଅନ୍ତି ସଦୟେ ସବୁ ବିତରି ।
ସସ୍ନେହରେ ହସି ପ୍ରିୟାକୁ ଆଦରି
ବିରକ୍ତିରେ କଥା ପଦେ ନ କହି ।
ସଦାନନ୍ଦ ସଦା ଆନନ୍ଦେ ଯାଆନ୍ତି
ପୁଣି ଭିକ୍ଷା ମାଗି ଝୁଲିଟି ବହି
ସଦା ପ୍ରେମମୟ ସଦା ଉଦାସୀନ
ପର ଉପକାରୀ ସଂଯତେନ୍ଦ୍ରିୟ
ଏମନ୍ତ ନିସ୍ୱାର୍ଥ ଉଦାର ସନ୍ନ୍ୟାସୀ
ଅନ୍ୟ ଦେଶେ କାହିଁ ହେବେ ଉଦୟ ।

# ଦ୍ୱିତୀୟ ସୋପାନ

ସନ୍ଧ୍ୟା ହେଲା ଶେଷ                କୃଷ୍ଣ ଆଚ୍ଛାଦନେ
ସର୍ବାଙ୍ଗ ଆଚ୍ଛାଦି ନିବିଡ଼ ତମ
ଉପସ୍ଥିତ ହେଲା                ଘୋର ପ୍ରଦାୟିନୀ
ଭୀଷଣଦର୍ଶନା ଦାନବୀ ସମ ।
କଳାଶାଢ଼ୀ ପିନ୍ଧି                ଶ୍ୟାମାଙ୍ଗୀ ପୃଷ୍ଠରେ
ଶୋଭଇ ଯେସନ କୁନ୍ତଳ ଭାର
ସ୍ୱଚ୍ଛଳ ତେସନ                କାଚକ ମେଚକ
ଚକୁର ପୁଞ୍ଜେ ଚରମେ ତା'ର ।
ଏକେତ ରଜନୀ                ମସୀମୟୀ ଦୁଜେ
ଖଣ୍ଡେ ଖଣ୍ଡେ ମେଘ ନଭେ ବସ୍ତିତ
ତରୁଲତା ମୂର୍ତ୍ତି                ଅନ୍ଧାର ସାଉଁଟି
ଦେଉଥିଲା ତାର କାନ୍ତିକୁ ସାଛି ।
ସୁସମୟ ଜାଣି                ନିଜ ନିଜ ନାଡ଼ୁଁ
ବାହାରି ଆହ୍ଲାଦେ ରଜନୀଚରେ
ଉଡ଼ି ଉଡ଼ି ନଭେ                ତମିର ସହିତୁ
ବସିଲେ ସଧୀରେ ଫଳ ବାଡରେ ।
ଗାଢ ତମିସ୍ରର                କଳେବର ଭେଦି
ତରୁ ଅବଲମ୍ବେ ଖଦ୍ୟୋତବ୍ରଜ
ନାଚିଲେ ଉଲ୍ଲାସେ                ପ୍ରଫୁଲ୍ଲ ମୁନାକୁ
ସେ ଗଛ କଣ୍ଠୀ ପାଷାଣେ ସାଜି ।
ଗଗନ ଉଦ୍ୟାନେ                ମଲ୍ଲୀଫୁଲ ପରି
ଦିଶିଲେ ଆକାଶେ ତାରକାଗଣ
ନୀରବିଲ କ୍ରମେ                ଦେଉଳୁଁ ମୃଦଙ୍ଗ
କରତାଳ ଘଣ୍ଟି ଘଣ୍ଟା ନିସ୍ୱନ ।
ଲୋକ କୋଳାହଳ                କ୍ରମଶଃ ତୁଟିଲା
ହୀନତେଜ ହେଲେ କ୍ରମେ ଦୀପାଳୀ
ଉପାସିଆମାନେ                ମଉନେ ରହିଲେ
ଉଜାଗରେ ପ୍ରଭୁ ମହିମା ଭାଳି ।

ମନେ ମନେ ନାନା          କଥା ଅଙ୍କେଚଲି
ତାଙ୍କ ସଙ୍ଗ ଦସ୍ତି ମୁଖଶାଳାରେ
ହୃଦ ଉପବନେ          ସ୍ମୃତିଫୁଲ ଫୁଟି
ବାସ ବିତରିଲା ଚିନ୍ତା ସମୀରେ ।
ଜାଗ୍ରତ ନିଦ୍ରାରେ          ଅତୀତ କାଳର
ସ୍ୱପ୍ନ ଦେଖାଇଲା କଳ୍ପନା ବାଳା ।
ଜାଗିଲା ହୃଦରେ          ମନୋମୁଗ୍ଧକର
ବାଲ୍ୟ ସମୟର ଘଟଣାମାଳା ।
ଯେବେ ସଖା ମେଳେ          ବିଦ୍ୟାଳୟ ଶେଷେ
ଶିବ ପୂଜା ପାଇଁ ପୂର୍ବେ ଏ ସ୍ଥଳେ
ପଦେ ଧୂଳିଧୂଳ          * ପିତାମହ ସଙ୍ଗ
ଆସୁଥିଲୁଁ ତେଣିଁ ନାଚ ସକଳେ ।
ମନ୍ଦିର ସମ୍ମୁଖେ          ଚଳେଇ ଦଣିଆ
କ୍ଷୁଦ୍ର ପ୍ରାଙ୍ଗଣରେ ସର୍ବେ ଉତ୍ସୁକେ
ବାଳୁତ ସୁଲଭ          ଅନାବିଳମୟ
ଖେଳେ ମଜ୍ଜିଥିଲୁଁ ପରମ ସୁଖେ ।
କେବେ ଖେଳୁଥିଲୁଁ          ୧ ଲୁଣଚୋର ୧ ଲୁଚ-
ଲୁଚାଲୋ, ୧ ଚେଳଅଣ୍ଡଇ, ମେଳଅ
କେବେ ବା ୧ ଲେଙ୍ଗୁଲ ୧ ଖେଉଆ, ଡେଗାଣି
କେବେ ୧ କଣାମାଛ ୧ ଛେକିଦଣ୍ଡିଆ ।
୧ ଫଦ ୧ ଲୁଗାବେଣ୍ଟା ୧ ପଣ୍ଟୁଆ କେବେ ବା
୧ ମୁଦ ଲୁଚକାଳି ୧ ଡୁଡୁ ୧ କବାଡ଼ି
ଭିଚ୍ଛାରେ କାହାକୁ          ଧରିବାକୁ କଏ
କେବେ ନେଉଥିଲୁ ସବେଗେ ତଡ଼ି ।
ମନ୍ଦିର ଆରଣି—          ଗୁପ୍ତୀ ସରସୀର
ବିମଳ ସଲିଳେ ପଶି ବିନୋଦେ

* ଗ୍ରନ୍ଥକାରଙ୍କ ପିତାମହ ମହାରାଜ ବାହାଦୁର ବ୍ରଜସୁନ୍ଦର ଦେବ ରାଜା ମହୋଦୟଙ୍କ ସହୋଦର ଭାଇ ନନ୍ଦକିଶୋର ଦେବଙ୍କ ପ୍ରତି ଲକ୍ଷ୍ୟ । (୧, ୧, ୧, ୧, ୧, ୧, ୧, ୧, ୧, ୧, ୧, ୧, ୧) ଏସବୁ ଦେଶୀୟ ଖେଳ ।

ଉଷ୍ମ ପବନେ     ଭାସି ବୁଲୁଥିଲୁ
    ହଂସବଳ ପନ୍ତି ପରି ବିନୋଦେ ।
ନୀଳମେଘ ରନ୍ଧ୍ରେ     ଇନ୍ଦ୍ରରେଖା ସମ
    ସଜଳେ ସଞ୍ଚାଳି କୋମଳ କର
ଜଳ ଲୁଚକାଳି     ଖେଳେ ମଜ୍ଜୁଥିଲୁ
    ତନ୍ଦ୍ରି ବୁଡ଼ି ଉଠି ଭାସି ସତ୍ୱର ।
ବିସ୍ତୀର୍ଣ୍ଣ ସରସୀ—     ଜଳ ଆସ୍ତରଣୁ
    ତୋଳି ବିକଶିତ କମଳ ଦଳେ
ଅଲକ୍ଷିତେ ଲକ୍ଷି     କାହାକୁ ଛିଞ୍ଚାଡ଼ି
    ମାରୁଥିଲୁଁ କେହୁ କୌତୁକେ ଖେଳେ ।
ଭୂଷଣ ଶିଞ୍ଜିତ     ଯୋଗହେଲା ପରି
    ବୀଣାବାଦ୍ୟ ରତା ଲଳନା ସ୍ୱରେ
କେବେ ପଲ୍ଲବିତ     ରସାଳ ପାଦପ—
    ବିତାନ ଛାୟାରେ ବସି ସୁଖରେ ।

କୋକିଳ, ଦୟାଳୁ,     ହଳଦୀବସନ୍ତ
    ପକ୍ୱ ଜଡ଼ଫଳ—ମୁଗ୍ଧ (୧) ହାସିତ
ବିହଙ୍ଗକୁଳର     ରୂତ ଅନୁକରି
    ନାଚୁଥିଲୁ ଗାଇ ବିବିଧ ଗୀତ ।
ଗନ୍ଧଶାଳି ଡାଳ—     ତରୁର ଉପରେ
    ଖାଦ୍ୟ ହୃଷ୍ଟମାନୁ ସହଜେ କଳି
ପୁରୁଣାଗଡ଼ରୁ     ଜଗନ୍ନାଥ ଭୋଗ
    ଆଣୁଥିଲେ ଶିରେ ବିପ୍ରମଣ୍ଡଳୀ ।
ଗାଉଥିଲୁଁ ସଙ୍ଗେ     ମିଳି ଏକସ୍ୱରେ
    କ୍ଷୁଦ୍ର ତଟିନୀର ତଟରେ ବସି
ଡାଳଘର ଭେଦ     ପ୍ରଭାକର କର
    ସେ ସ୍ଥାନକୁ ପାରୁ ନ ଥିଲା ପଶି ।

(୧) ହରଡ଼ପକ୍ଷୀ ।

୧ ଅଜାବୁଢ଼ା କେବେ ୨ ଫାଳସିଆ ମୁନେ
ଶିଶୁ ତାଳ ଫଳ ଫାଡ଼ କୌଶଳେ
ଲବଣିରୁ ବଳ କୋମଳ ତା ସଜ
ଖାଇବାକୁ ଦେଉଥିଲେ ସକଳେ

କେବେ ବା କଣ୍ଟାଇ— କୋଳି, ବରକୋଳି
ଖୁର, କେନ୍ଦୁ, ଜାମ୍ବୁ, ଭୁଇଁଚ ଫଳ
କ୍ଷୁଦ୍ର ହାତେ ତାର ଡାଳ ଓହଳାଇ
ତୋଳୁଥିଲୁଁ ବାଲ୍ୟାମୋଦେ ତରଳ ।

କେବେ ଇକ୍ଷୁ କ୍ଷେତ୍ରେ ପ୍ରବେଶି ସରବେ
ରମ୍ୟ ୩ ବଡ଼ଯୋର ପୂଜନ ପାଖୁଁ
ବାଡ ଅନ୍ତରମି ଭାଙ୍ଗି ଆଣୁଥିଲୁ
ମଧୁରସେ ଭରା ବଙ୍ଗଳା ଆଖୁ ।

କେବେ ଶିବଙ୍କର ଦେଉଳ ବାହାରେ
ପବିତ୍ର ପାଦୁକା କୁଣ୍ଡରେ ପଶି
ବେଲପତ୍ର ଜଳ ପାପନାଶ ପାଇଁ
ଦେଉଥିଲୁଁ କ୍ଷୁଦ୍ର ମସ୍ତକେ ଘଷି ।

ସର୍ବାଙ୍ଗରେ ବୋଳି କେବେ ବା ଆମୋଦେ
ଉଲ୍ଲାସେ ସଭିଏଁ ଚନ୍ଦନ ଘୋରି,
ବୁଲୁଥିଲୁଁ ବନେ ସେ ବନର ଶୁଭ୍ର—
ସଞ୍ଚରଣଶୀଳା ମୂରତି ଧରି ।

ଦୁଗ୍ଧପାନେ ପୋଷା ମାଳୀଙ୍କର ମାଠି—
ବରଗୁଡ଼ ସର୍ପକୁ କେବେ ସ୍ନେହରେ
ଖାଇବାକୁ ଦେଉ— ଥିଲୁଁ ଦୁଗ୍ଧ ଢ଼ାଳି
ଆଦରେ ପ୍ରବେଶି ଗ୍ରେପେଇ ଘରେ ।

(୧) ରାଜା ନନ୍ଦକିଶୋର ଦେବଙ୍କ ପଟ୍ଟ ଲକ୍ଷ୍ମୀ । ଏ ରାଜା ବାଲ୍ୟକାଳରୁ ଦେବଙ୍କ ଜନ୍ମ ପୂର୍ବ ।

(୨) ପସ୍ତ୍ରବନ୍ଧେଷ ।

(୩) ଏହା ଗୋଟିଏ ଗଭବତୀ ଦେବୀଙ୍କ ନବଟବର୍ତ୍ତୀ ପଶାଳଶିଷ ସ୍ଥାନରୁ ବାହାରିଥାନ୍ତି ।

୧ କଷିଗଛ ମୂଳେ ନଣବଦେ ବସି
କେବେ ବା ୨ କାଣ୍ଡିଆ ପାଠ ପଢନେ
ଜଗି ରହୁଥିଲୁଁ ଚମ୍ପା ଚଢାଇଙ୍କୁ
ବେଳ ଶେଷ ଦେଖି ଉତ୍ସୁକ ମନେ ।
ପିତାମହଙ୍କର କଣ୍ଠରେ ମିଳାଇ
କେବେ ଗାଉଥିଲୁ ଦେବଙ୍କ ସ୍ତବ
ପ୍ରତିଧ୍ୱନି ବଶେ ଦ୍ୱିଗୁଣ ମୁଖର
ହେଉଥିଲା ଦେବମନ୍ଦିର ଗର୍ଭ ।
କିଏ ବା ଅଞ୍ଜାଦେ ପାଣି ଟାକୁଥିଲୁଁ
କିଏ ଦେଉଥିଲୁଁ ଘଣ୍ଟା ବଜାଇ
କିଏ ଶଙ୍ଖ ଧରି ଫୁଙ୍କୁଥିଲୁଁ ଦମ୍ଭେ
ଗମ୍ଭୀର ନାଦରେ କର୍ଣ୍ଣ କମ୍ପାଇ ।
ବନ ପ୍ରସୂନରେ ବିରଚି ରୁଚିର—
ହାର କେବେ ଅବା ବାଳକ ଜାଳ
ହାସ ପରିହାସେ ମାରୁଥିଲେ କେବେ
ପରସ୍ପର କଣ୍ଠେ ଦେଇ ସେ ମାଳ ।
କେବେ ବା ଶିଳରେ ୩ ମାକଡ଼ କନ୍ଦାର
ମଞ୍ଜି ଛେଚି ତହିଁ ସଲିଳ ଢାଳି
କଷାଶୂନ୍ୟ କରି ଭୁଞ୍ଜୁଥିଲୁ ସୁଖେ
ବନଦେବୀ ଭୃତ ବୋଲି ପଖାଳି ।
ଘୂର୍ଣ୍ଣୀଳ କର୍ଣ୍ଣାରେ ସମାଚ୍ଛନ୍ନ କେବେ
୪ ଗିରି ଶନ୍ୟ ବଢ଼ ଯୋର ଭିତରେ
ନବଢ଼ ଅତନ୍ତ୍ରି ଲଟି ଛାଇ ତଳେ
ଧବଳ ସିକତାସ୍ତୂପ ଉପରେ ।

---

(୧) ବୃକ୍ଷ ବିଶେଷ ଏହାର ଫଳ ଚମ୍ପାପକ୍ଷୀଙ୍କର ଉପାଦେୟ ଖାଦ୍ୟ ।

(୨) ପକ୍ଷୀରବ ପଠାବାଠ ।

(୩) ବୃକ୍ଷ ବିଶେଷ । ଏହା ଛେଚି କସି ମଞ୍ଜିକୁ ଧୋଇ ପରିଷ୍କାର କରି ଖାଇବାକୁ ହୁଏ ।

(୪) ଫୁଲୁଣୀଗଡ଼ ନିକଟରେ ପ୍ରବାହିତା ଗିରିନଦୀ ।

ନିର୍ଜନ ସମୟେ ପବନ ସ୍ଖଳିତ
ଶୁଷ୍କ ପତ୍ର ଖଡ଼ ଖଡ଼ ଆଚରନ୍ତି
ଯାଉଥିଲୁଁ ସର୍ବେ ପଛକୁ ନ ଚାହିଁ
ଭୟରେ ଭୂତର ଶବଦ ମଣି ।

ବନ ତଳେ ଗୁପ୍ତ ପତ୍ର ଅନ୍ତରାଳେ
ଦୁରନ୍ତ ଉଲୂକ ଦେଲେ ବୋବାଳି
ଡର ଲାଗୁଥିଲା ଚେତନା ଏଥିରେ
କନ୍ଦାଉଛି ତାର ବୁଆକୁ ବୋଲି !

ବାଳକ ସମୟେ ଅଲକ୍ଷିତେ ଆସି
ଭୟ ଯେବେ ଯାଏ ମନରେ ଭରି
ନିଜ ଛାୟା ସୁଦ୍ଧା ଡରାଏ ନିଜକୁ
ସହଜେ ବିକଟ ମୂରତି ଧରି ।

ଏଣେ ତେଣେ ବୁଲି— ବୁଲି ସେ ନିର୍ଜନ
କାନନ ପ୍ରଦେଶେ ମହାନନ୍ଦରେ
ଉପଗତ ହେଉ— ଥିଲୁଁ କେବେ କେବେ
ସମାଧି—ପଟ୍ଟନ ୧ ସତୀ ଘାଟରେ ।

ସମାଧି ନିକର ଠିଆ ହୋଇଥିଲେ
ଯହିଁ ଚୂର୍ଣ୍ଣ ଚାରୁ ମସୃଣ ସ୍ତମ୍ଭେ
ମହାତ୍ମାମାନଙ୍କ ଏକାର୍ଥ ଭୂମିରେ
କର୍ମମୟ ଫଳ ପରଏ ଦମ୍ଭେ ।

ରାଜୁଥିଲା ତହିଁ ୨ ପ୍ରତାପରୁଦ୍ରଙ୍କ
ଜୀବନ ସଙ୍ଗିନୀ ୩ ଚନ୍ଦ୍ରକୁମାରୀ—
ମହାରାଣୀଙ୍କର ପୂତ ସତୀ ପୀଠ
ମୂର୍ତ୍ତିମନ୍ତ ପ୍ରେମ ସମ୍ପଦ ପରି ।

(୧) ଏହାର ଘରରେ ସତୀଘାଟ ପୀଠ ଅବସ୍ଥିତ ।
(୨) ପୁରୁଣାଗଡ଼ ଅବସ୍ଥିତ ଶ୍ରୀଜଗନ୍ନାଥ ଦେବଙ୍କ ମନ୍ଦିର ନିର୍ମାତା ରାଜା ।
(୩) ମହାରାଣୀ ଚନ୍ଦ୍ରକୁମାରୀ ଦେବୀ, ପ୍ରତାପରୁଦ୍ର ଦେବଙ୍କ ସହମୃତା ହୋଇଥିଲେ । ଏଣୁ ତାଙ୍କର ସମାଧିଥିବା ସ୍ଥାନ (ପୀଠ) ର ନାମ ସତୀଘାଟ ହୋଇଅଛି ।

ସାଧ୍ୱୀ ପତିବ୍ରତା ପତି ଦେବତାଙ୍କ
ପରମାୟୁ ଶେଷ ହେବା ନରେଖି
ବଡ଼ ଘୋର ତଠେ ଚିତାନଳେ ପଶି
ତେଜିଲେ ନଶ୍ୱର ଶରୀର ଟିକି ।
କନ୍ଦାଇ ଅଧୀରେ ପୁତ୍ର, ପୁତ୍ରବଧୂ
କନ୍ଦାଇ ଆତ୍ମୀୟ ସ୍ୱଜନଗଣ
କନ୍ଦାଇ ରାଜ୍ୟର ରାଜଭକ୍ତ ପ୍ରଜା
କନ୍ଦାଇ ତଟିନୀ ତଟ କାନନ ।
ଦେଖାଇଲେ ଧନ୍ୟ କେମନ୍ତ ରମଣୀ
ପତି ପାଇଁ ପାରେ ମୃତ୍ୟୁରୁ ହସି
ଅଦ୍ୟାପି ତହିଁର ମୂକସାକ୍ଷୀ ପରି
ସଦର୍ପେ ସମାଧି ହୋଇଛି ଠିଆ ।
ସେ ସମାଧି ଦ୍ୱାରେ ଘୁରେଣି ବାଳକେ
ଯିବାରୁ ଥିଲେ କେ ଉକଣ୍ଠ ଭରେ
ଶ୍ମଶାନର ଶିଳା ବସ୍ତୃତ କଏ ବା
ସେ ପାଖକୁ ପଶୁ ନ ଥିଲେ ଡରେ ।
ସମ୍ବୋଧି ପିଲଙ୍କୁ ପିତାମହ କେବେ
ଅମ୍ଳପାଣିର—ଘାଟିରେ ବସି
କର୍ଣ୍ଣ ରସାୟନ ପୁର୍ବ ଇତିହାସ—
ମାନ କହୁଥିଲେ ଏରୂପେ ହସି ।
ଏ ଅମ୍ଳପାଣି ବୀରତ୍ୱ ବ୍ୟଞ୍ଜକ
ଐତିହାସିକ ହେ ବାଳକଦଳ
ଦିନେ ହୋଇଥିଲା ବୀରମାନଙ୍କର
ରକ୍ତରେ ଏହାର ବକ୍ଷ ପାଟଳ ।
ଦିନେ ଏଥି ମହା— ଘୋର ଅଟ୍ଟହାସ୍ୟେ
ତାଣ୍ଡବ କରଚ ରଣଚଣ୍ଡିକା
ସଖୀଗଣ ସହ ରକ୍ତ ପିଇଥିଲେ
ଛିଣ୍ଡାଇ କରଜେ ବୀର ନାଡ଼ିକା ।
ଶୂରର ନୂପୁର ଶୌର୍ଯ୍ୟ ପରିଚୟେ
ବାଜିଥିଲା ଦିନେ ଏହାର ମାଟି

ମହା ଧାର୍ମିକର ଦମ୍ଭ ପାଇଥିଲ
ଧନେ ସିନା ଏହି ଘାଟିରେ ଜାତି ।
ଶୁଣ ପିଲ୍ଲମାନେ ବସି ଏକମନେ
ମୂଳରୁ କହୁଛି ସେହି ଚରିତ
ଯହିଁରୁ ବହୁତ ବୀରତ୍ୱ ବଡ଼ିମା
ଏ ଦେଶବାସୀର ହେବ ବିଦିତ ।
ପ୍ରଚଣ୍ଡ ତେଜସ୍ୱୀ! କୂଟନୀତି ପଟୁ
ସମର ବିଦ୍ୟାରେ ଅତି ପ୍ରଖର
ଭଗବାନ ଚନ୍ଦ୍ର (୧) ଯେଣାମଣି ପିଲେ !
ରେଢ଼ାଖୋଲ ଭୂଖଣ୍ଡର ଈଶ୍ୱର ।
ଅରଣ୍ୟାନୀ ମଧ୍ୟେ ଠାକି ରହିଥାଏ
ସତେକି ସଭୟେ ବ୍ୟାଧ ଯେସନ
କେଶରୀ ଅଲକ୍ଷେ ଗୁହାରେ ପ୍ରବେଶି
ହରିବାକୁ ତାର ସନ୍ତାନଗଣ ।
ଖୋଜି ବୁଲୁଥିଲେ ପୂର୍ବର ବୈରିତା-
ବଶରୁ ସେ ଭୂପ ତେଣେ ସୁଯୋଗ
ପ୍ରଚଣ୍ଡ ବେଗରେ ଆକ୍ରମିବା ଲଗି
ଅଲକ୍ଷିତେ ଏହି ସୁନ୍ଦର ଦୁର୍ଗ ।
ପାଲ-ଲହଡ଼ାର ଅବରୋଧେ ରତ
ଦଳେକ (୨) ଶ୍ରୀମୁଖମଣ୍ଡନ ଭୂପେ
ଶୂନ୍ୟପୁର ଜାଣି ସଜାଡ଼ି ସ୍ୱସୈନ୍ୟ
ଧାଇଁଲେ ସମର ବେଶରେ କୋପେ ।
ଅଶ୍ୱପୃଷ୍ଠେ ସ୍ଥିତ ଧୂଳିଚନ୍ଦ୍ରାତପେ
ପ୍ରଖର ମିହିର କର ଆବୋରି
ଘୋର ରଣବାଦ୍ୟେ ପୂରି ଦିଙ୍ମଣ୍ଡଳ
କମ୍ପାଇ କାନନ ପର୍ବତଦରୀ ।

(୧) ରେଢ଼ାଖୋଲ ରଜାଙ୍କ ପାରମ୍ପରିକ ଉପାଧି ।

(୨) ବାମଣ୍ଡାର ରଜା ତୁହିନା ଦେବଙ୍କ ପରବର୍ତ୍ତୀ ରଜା । ଏହାଙ୍କ ପ୍ରକୃତ ନାମ ଶ୍ରୀମୁଖ-ମଣ୍ଡନ । ମାଦଳାବରରେ ଅପଭ୍ରଂଶଭାବେ ନାମ 'ମୁଖୀ ଦେବ ବୋଲି ଲେଖାଅଛି ।

ଗଜଗଣ୍ଡ ସ୍ରୁତ ମଦସଲିଳର
ଉତ୍କଟ ସୌରଭେ ଫୁଲଗଛକୁ
ନମନ୍ତି ମଧୁପ ମାଳକୁ ଘଉଡ଼
ପ୍ରାଣିଗଣେ ପଥ ଦେବ ପାର୍ଶ୍ୱରୁ ।
ଆସିଲେ ବାଳକେ ! ଭଗବାନ ଚନ୍ଦ୍ର
ଗୈରବର ସମ ଗଜ ଆରୋହୀ
ଆଡ଼ଚଗ୍ ମାର ସ୍ଖଳୁଥିଲେ ତାଙ୍କ
ଆଗରେ ପାଇକେ କୃପାଣ ବହୁ ।
କର୍ଣ୍ଣପାଏ ଦୃଢ଼େ ଠଙ୍କାର କାର୍ମୁକ
ଧନୁର୍ଦ୍ଧର ବୃନ୍ଦ ସମରରଙ୍କ
କୁହାଟ ଅଣ୍ଡରେ ଧାଇଁ ଆସୁଥିଲେ
ସଙ୍ଗେ ସଙ୍ଗେ ସେହୁ ଖୋଲଭୂପଙ୍କ ।
ସୁବର୍ଣ୍ଣ ଅମାରୀ ମଣ୍ଡିତ ପ୍ରମତ୍ତ
ମାତଙ୍ଗେ ଆରୋହୀ ସେ ଜେନାମଣି
ସେନାପତି ରୂପେ ସ୍ଖଳୁଥିଲେ ନଜେ
ଇଙ୍ଗିତେ କୌଶଳେ ମହାବାହିନୀ ।
ଗୁପ୍ତଚର ମୁଖୁଁ ବାମଣ୍ଡା ବାସୀଏ
ଶୁଣି ଏ ଅଦ୍ଭୁତ କୁସମାଗ୍ଦର
ଚକିତେ କ୍ଷଣକେ ହେଲେ ସର୍ବ୍ବୀଭୂତ
ଦେବାଲାଗି ପ୍ରତ୍ୟୁତ୍ତର ତାର ।
ସୌନ୍ଦର୍ଯ୍ୟେ ଲଳିତ ରଣରଙ୍ଗପ୍ରିୟ
କଠୋର ସୁନ୍ଦର ଦିବ୍ୟ ମୂରତି
ବିଶ୍ୱନାଥ ଦେବ ମହା ସମ୍ଭ୍ରାନ୍ତ
ଯୁବରାଜ ରାଜ୍ୟ ଗୌରଭୂପତି ।
ଅନନ୍ତଦଳମ୍ବେ ଦୃଢ଼ବର୍ମ୍ମେ ଚର୍ମ୍ମେ
ସୁକୁମାର ତନୁ ମଣ୍ଡି ଆଗ୍ରହେ
ରଣ ଅୟୋଜନେ ଆଦେଶ ବହିଲେ
ଅଗ୍ରସର ବୀରବେଶେ ଉତ୍ସାହେ ।
ଝଣଝଣ ନାଦେ ଝୁଲନ୍ତ କଟିରେ
କୋଷସ୍ଥିତ ତରବାର କଠାର

କର୍ଣ୍ଣ ଯୁଗଳରେ          କୁଣ୍ଡଳ ସ୍ୱକଳ୍ପ
    ଗୁଚ୍ଛ ଶୁଦ୍ଧ ବେଣୀ ତାର ପ୍ରକାର ।
ଗ୍ରୀବାଦେଶ ଚୁମ୍ବି          କୁଞ୍ଚିତ ଜୁଲଫି
    କି ରଙ୍ଗେ ମଧୁର ସୁଷମା ଧରି
ବିସ୍ତାରିଛି ନବ          କମଳ କଳରେ
    ଉଡ୍‌ଡୀନ ଭ୍ରମର ପଙ୍କ୍ତି ପରି ।
ସଙ୍କେତ ଦମାମ          ସ୍ୱନ ପକାଇଲା
    ବିଷମ ଛନକା ମନେ ସଭିଙ୍କ
ଦଉଡ଼ିଲେ ବେଗେ          ଦେଶ ବୈରୀନାଶେ
    ଆୟୁଧ ଆସ୍ଫାଳି ଯେତେ ସୈନିକ ।
କରେ ବର୍ଚ୍ଛା ଧରି          ଅଶ୍ୱାରୋହୀ ଦଳ
    ତୁରଙ୍ଗକୁ କଷାଘାତେ ଘଉଡ଼ି
ପ୍ରବେଶିଲେ ଖରେ          ବିଦ୍ୟୁତ ଗତିରେ
    ପଂକ୍ତିବାନ୍ଧି ନାନାଦିଗୁଁ ଦଉଡ଼ି ।
ଅଗ ଗୋଡ଼ ଠେକି          ଘନ ଘନ ବାଦ୍ୟ
    ନାଦେ ବକ୍ରଗ୍ରୀବା ତୁଳି ଘୋଟକେ
ଚୋବାଇ ଲଗାମ          ଫେନୋଦ୍ଗାରୀ ମୁଖେ
    ପିବାପାଇଁ ବ୍ୟଗ୍ର ହେଲେ ଛଟକେ ।
ସଂଗ୍ରାମେ ସର୍ବଦା          ରାଜାଙ୍କର ସାଙ୍ଗ
    ପାଇକର ନାହା ଗଡ଼ନାୟକ
ପାଇକଙ୍କୁ ଘେନି          ଦଉଡ଼ି ଆସିଲେ
    ବାମେ ଶୋଭେ ଧନୁ ବକ୍ଷେ ସାୟକ ।
ପ୍ରଧାନ ସଚିବ          ସହିତେ ଅମାତ୍ୟ
    ମିତ୍ର ପାରିଷଦେ ଫୁଲାଇ ଛାତି
ଦଳ ଦଳ ଧାଇଁ          ଉଭାହେଲେ ଆସି
    ଏ ନବୀନ ରଣ-ଉତ୍ସାହେ ମାତି ।
ପିତଳ ପିହିତ          ଗଣ୍ଡାର ପୃଷ୍ଠଲ
    ଚର୍ମ୍ମେ ବିନିର୍ମିତ ଅଭେଦ୍ୟ ଢାଲ
ବାମଭୁଜେ ଧରି          ଭୀମବୀର୍ଯ୍ୟ ଶାଳୀ
    ପରନାଶେ ପଟୁ ଷଣ୍ଡିସୁମାଳ ।

ଶୁଣ୍ଡାଳ ବଦନ ରଣରଙ୍ଗରଙ୍କ
ଝଙ୍କଧରଙ୍କର ତ୍ରିଶୂଳପର
ମହାମଲ୍ଲ ବେଶେ ଭୁଜ ଯୁଗଳରେ
(୧) ଶଲ୍ଲଙ୍କସମାନ ଭଲ୍ଲାସ୍ତ୍ର ଧରି ।

ଦାମୋଢ଼ ସନ୍ତେଷେ ଭ୍ରୂକୁଟି ବ୍ୟଞ୍ଜକ
ରକ୍ତିମ ଅଧର ଓଷ୍ଠ ତାଙ୍କର
ଦେଶ ବୈରୀନାଶେ ଧପଟି ଆସିଲେ
ଝଙ୍କାର କାର୍ମୁକ ଥରକୁ ଥର ।

ପରଶ୍ରମ ପଠୁ ପ୍ରସ୍ତର ବନ୍ଧାଣୀ
ଯନ୍ତନାଦେ ଯାର ସୀମା ମୁଖର
(୨) ଅସୁର ଖୋଳର ଶୀତଳ ପ୍ରାନ୍ତର—
ଝୁଣ୍ଟି ସେହି ପଥୁରିଆ ନଗର—

ଆଗରେ ଚଳାଇ ପ୍ରବେଶିଲ୍ଲ ଅଡ଼ା (୩)
ବଜ୍ର କପୋତର ଦୃଢ଼ କାଛରେ
ନିର୍ମିତ କବଚ ଉଡ଼ା ହୋଇଥିଲ୍ଲ
ସୁବିଶାଳ ତାର ଝାଣ ଘଣ୍ଟରେ ।

ଅପ୍ରିୟ କର୍କଶ କଥା କହିବାକୁ
ନିରତ ଅଭ୍ୟସ୍ତ ଯାହାଙ୍କ ତୁଣ୍ଡ
ସାମାନ୍ୟ କଳହେ ଯେମାନେ ପ୍ରସ୍ତୁତ
କାଟିବା ପାଇଁକି ଅସଣ୍ଡ ମୁଣ୍ଡ ।

ବରଜ ଅର୍ଜ୍ଜୁନ ଅଝାରେ ଘନ
(୪) ଯାମସୂର୍ନାଳ ବହାର ସୁଖ
ଯମଦଣ୍ଡ ପ୍ରାୟ ଭୀମଲୌହ ଗଦା
ଅସ୍ଫାଳ ଅଙ୍କାଦେ ଯୁଦ୍ଧ ଉନ୍ମୁଖ ।

---

(୧) ଝାଙ୍କବାଠି ।
(୨) ଏକାମ ପଶ୍ଚିମ ସ୍ଥାନ ।
(୩) ବଳ ସର୍ଦ୍ଦାର ।
(୪) ଦେବସଭାର ଚେଳଶାଳାର ପଶ୍ଚିମରେ ପ୍ରବାହିତ ଜଳସ୍ରୋତ ।

ଏ ଭୀଷଣ ବାର୍ତ୍ତା ସହସା ଆକର୍ଣ୍ଣି
ଅଳସେ ନ ରହି ଘରେ ଘଡ଼ିଏ
(୧) କୁମ୍ଭାର ପାଳିରୁ ଗୁଳିଲେ ହୁଙ୍କାର
ବାଘରଖୁଣ୍ଟିଆ ଗଣ୍ଡ ଝଡ଼ିଏ ।
ଭୀଷଣ ନର୍ଘୋଷେ (୨) ଘୋଘୋର ଘାଟରୁ
ଡେଇଁ ବଡ଼ଯୋର ପୁଟଙ୍କୁ ଧାଇଁ
ଲୌହିତଚଟପ୍ରଭ (୩) ସାତହାଣ୍ଡିଆରେ
ଘୂରେ ଯହିଁ ଊର୍ମିମାଳ ଜନ୍ମାଇ ।
ଆବର୍ତ୍ତି ବେଗରେ ଘନଫେଳ ଡାଳ
ଗଙ୍ଗାର ସଲିଳ ଗର୍ଭ ଆକର୍ଷି
ଦକ୍ଷିଣକୁ ଯହିଁ ବହି ଯାଉଅଛି
ଉଭୟ ପାର୍ଶ୍ୱର ତୀରଧରଷି ।
(୪) ଶୁଗୁଡ଼ା ଗଡ଼ର ସେ ଶୂର କୁଳର
ସଂଗ୍ରାମ ଉତ୍ସାହ ନ୍ରହଇ କହି
ସ୍ୱର୍ଣ୍ଣ କଙ୍କଦାର ଝୂଲରେ ମଞ୍ଜୁଳ
ମତ୍ତ ମାତଙ୍ଗରେ ରଙ୍ଗେ ଆରୋହି ।
ମୃଦୁଳ ସମୀରେ ଶଙ୍ଖ ସୁଲଞ୍ଛିତ
ସୁନ୍ଦର କେତନ ବର ଆନ୍ଦୋଳି
ବଜ୍ରଧର ପରି ବରଭୂଜେ ଧରି
ଭବୁରଭୀଷଣ ନନାଦ ନଳୀ ।
ଅସିଲେ ସଦମ୍ଭେ ଯୁଦ୍ଧ ନିମନ୍ତ୍ରଣେ
(୫) ରମ୍ଭାଦେବୀଙ୍କର ଅଭ୍ୟୁଦୟରେ

(୧) ଜେଲଗାବାର ଦକ୍ଷିଣରେ କୁମ୍ଭାରପାଳି ଅବସ୍ଥିତ ।
(୨) ଲନ୍ତ୍ରବାରଙ୍କ ଗମାର ସୁବାମୁଣ୍ଡା ଗ୍ରାମର ଦକ୍ଷିଣରେ ଅଛି ।
(୩) ଶୁଗୁଡ଼ାର ନିକଟବର୍ତ୍ତୀ ଘଣ୍ଟ ।
(୪) ଦେବଗଡ଼ ରାଜଧାନୀ ହେବା ପୂର୍ବେ ଶୁଗୁଡ଼ାରେ ରାଜଧାନୀ ଥିବା ମାଦଳାରୁ ଅନୁମାନେତ୍ ।
(୫) ଶୁଗୁଡ଼ାଗଡ଼ର ଅଧିଷ୍ଠାତ୍ରୀ ଦେବୀ ଜ୍ୟେଷ୍ଠ ଶୁକ୍ଳ ଚତୁର୍ଦ୍ଦଶୀରେ ରମ୍ଭାଦେବୀଙ୍କଠାରେ ଅସଂଖ୍ୟ ବଳି ଦିଆ ହୁଏ ।

ଅଟଳ ଅଚଳ ଦୁର୍ନିବାର ସଦା
ହଠନ୍ତ ନାହିଁ ଯେ କେବେ ସମରେ ।
ସଦା ମସୀମସ୍ତ (୧) ମଷିଣ୍ଡା ଖୋଲ
ଛଡ଼ ବେଣ୍ଟସୁଲା ଭଙ୍ଗିମା ଜାର
ଦଉଡ଼ଇ ଯହିଁ ଲଙ୍ଘେ ବେଗବଶେ
ଢେଙ୍କେନାଲବନକୁ (୨) କଳାମାଟିର ।
ବନ୍ଧୁର ଶଇଳ— ଶଯ୍ୟାରେ ପ୍ରାବୃଟେ
ଗୈରିକ ରଞ୍ଜିତ ସ୍ରୋତ ସମ୍ପଦେ
କଣ୍ଟୁଡ଼ଝୋଇ ଯେ ଘୋର ଘୋଘୋ ନାଦେ
(୩) ବାଘମାଣ୍ଡି କ୍ଷୁଦ୍ର ଶଇଳପଦେ ।
କେଦାର-ସଙ୍କୁଳ ଉଦ୍ୟାନ-ମଞ୍ଜୁଳ
ସୁନାମୁଣ୍ଡା ମଞ୍ଜୁତନୁ ପଖାଳି
କୁଞ୍ଜାପଥେ ଧାଇଁ ଫେନପୁଞ୍ଜ ହାସ୍ୟେ
ବଢ଼ଯୋରେ ଜଳ ଦଅଇ ଢାଳି ।
ସୁପବନ ସେହୁ ରମ୍ୟ ତଟିନୀର
ନବଠସ୍ଥ ଗିରିପାଦବହାରୀ
ଅଭେଦ୍ୟ ଉଜ୍ଜ୍ୱଳ ବର୍ମ୍ମେ ଭୂଷି ଦେହ
ରଣଶ୍ରମ ସହ ବରଛଧାରୀ ।
ଯେମାନେ ସେବାରେ (୪) କୁଡ଼ି କୁଣ୍ଠଣୀର
(୫) ବ୍ରାହ୍ମଣୀ ଦେଈଙ୍କ ମନ ମନାଇ
ତାହାଙ୍କ ପ୍ରସାଦେ ସମରେ ଶତ୍ରୁଙ୍କୁ
ଡଳେ ହୃଦୟରେ ଶଙ୍କା ନାହିଁ ।
ଖଣ୍ଡାଖେଳେ ପଟୁ ବଣିଅକଲଣ୍ଡା
ଯୁଦ୍ଧ ବ୍ୟବସାୟୀ ଛତ୍ରୀସୁ ବୀରେ

(୧) ଦେବଗଡ଼ ଉତ୍ତରସ୍ଥ ବୈଦନ୍ତା ପର୍ବତର ଅଂଶ ବିଶେଷ ।
(୨) ଶ୍ରୀମାନ୍ ଲଳିତମୋହନ ଦେବ ଗଲଙ୍କ ଶମାର ।
(୩) ସୁନାମୁଣ୍ଡା ଶମାର ଅନ୍ତର୍ବର୍ତ୍ତୀ ପର୍ବତ ।
(୪) ବଣିଅ ବଇଣ୍ଡାର ଉତ୍ତରସ୍ଥ ପଥରଶଯ୍ୟା ।
(୫) ବଣିଅବଇଣ୍ଡାର ଅଧିଷ୍ଠାତ୍ରୀ ଦେବୀ ।

ଘାଂଶୁ ଚେଣ୍ଡ୍ରାକୃଣେ		ବିଷମ ଦୁର୍ଗମ
(୧) ରଜାବସା ଘୋର ଅରଣ୍ୟାଙ୍କରେ ।
ମହା ବଳଶାଳୀ		ମହାବଳ ସବୁ
ମୃଗୟା କୌତୁକ ଉପେକ୍ଷି ଖରେ
ଅମ୍ବେ ଅସିଲେ		ସିଂହଦ୍ୱାର ମୁଖେ
ଅରେହ ଚଟିଲ ତୁରଙ୍ଗବରେ ।
ଅର୍ଜୁନ, ଅଶନ		ଶାଳ, ପିଅଶାଳ
ବନସ୍ତଜ ନୀଳ ଭୂଧରେ ଯହିଁ
ମଣ୍ଡଳ ଆକାରେ		ଚଉଦଗେ ଘେର
ନଭ ସୀମା ଚୁମ୍ବି ଅଚଳ ରହି ।
ଗ୍ରୀଷ୍ମକାଳେ ଯହିଁ		ଦିନ ଦ୍ୱିପ୍ରହରେ
ମର୍କଟ ବୃକ୍ଷଡ ଶାଖା କମ୍ପନେ
ଭରବା ଫଟଏ		ଫଟୁଥାଏ ଖସି
ବନ୍ୟବୃକ୍ଷଫଳ (୨) ଟେକଙ୍ଗରଣେ ।
ସଦ୍ୟ ନିପତିତ		ସେ ରସାଳ ରସେ
କାନନସ୍ଥଳୀ ବାରଣପନ୍ତି
ଛାୟା ସୁଶୀତଳ		ଗଛ ତଳେ ତଳେ
ବୁଲି ଯହିଁ କ୍ଷୁଧା ତୃଷା ହରନ୍ତି ।
ନାନା ବନ୍ୟ ଫଳେ		ଫୁଲେ ବୁଢ଼ଙ୍କର
ସେହୁ (୩) ନଲବନ ଖୋଳ ପାଖରେ
କନ୍ଦମୂଳ ଖାଇ		ରହୁଥିଲେ ସେହୁ
(୪) ଗାଡ ଘୁମୁସର କ୍ଷୁଦ୍ର ପ୍ରାନ୍ତରେ ।

---

(୧) କଲାମାଟି ଗମାର ଓ ବଲମ ଗମାର ମଧ୍ୟବର୍ତ୍ତୀ ସ୍ଥାନ ଏଠାରେ ଘୋଡ଼ିଏ ପଥର ପ୍ରସ୍ତର ଅଛି । ଏଠାରେ ପୂର୍ବେ ବାମଣ୍ଡାର କବିଙ୍କ ରଜା ଥିବାର ସମୟରେ ବସି-ଥିବାରୁ ଏହାର ନାମ "ରଜାବସା" ।

(୨) ବଲବଲର ପର୍ବତସ୍ଥ କ୍ଷୁଦ୍ର ପ୍ରପାତ । ଏଠାରେ ବିଶେଷ ପରିମାଣରେ ବହଂଶମ୍ଭ ମିଳେ ।

(୩) ବଲବନ ପାହାଡ଼ ଗ୍ରାମ ଦେବଗଡ଼ର ଝିଣାବାଙ୍କରେ ଅବସ୍ଥିତ ।

(୪) ବଲବଲର ଉତ୍ତରସ୍ଥ ଉଚ୍ଚ ପର୍ବତ ।

ଭଙ୍ଗଗୋଳ ପ୍ରିୟ ସେ ଚୋଲ୍ଲ ନଚଯ୍ୟ
ପ୍ରବେଶିଲେ ଆସି ଜୂଲଇ ଭୂଅ
କଠିନ କର୍ଣ୍ଣ କଲେ ମୂର୍ଦ୍ଧନ୍ୟ
ସଗର୍ବେ ଆସ୍ଫାଳ ଠାଣ ଠାଙ୍ଗିଆ ।
ଏକାଗ୍ର ତପସ୍ୟା ତତ୍ପର ଉତ୍କଳ—
ଜଟିଳ ବସ୍ତ୍ର ବଟ ତରୁଏ
ବହୁସ୍ଥାନ ବ୍ୟାପି ବସ୍ତ୍ରକଣ୍ଡ ଯତ୍ନ
(୧) ବଟେଶ୍ୱରଙ୍କର ଛାୟ ପତ୍ରଏ ।
ଶିମ୍ବପଡ଼ ରସ ପରସ୍ପେ ପୂର୍ଣ୍ଣ
ଯାହାଙ୍କ କବଚ୍ଚ ନାଲମା କାନ୍ତ
ଡାଠବଣା ପାନ୍ତ ମନେ ଉପୁଜାଏ
ଦୂରରୁ ନବୀନ ନୀରଦ ଭ୍ରାନ୍ତ ।
(୨) କଳାକାବ୍ରଠାରୁ ଦେଖଇ ସ୍ପଷ୍ଟ—
ଧାଏ ବଳମର କ୍ଷୁଦ୍ର ଶିଖର
ଦଣ୍ଡଥାଏ ଯତ୍ନ ମଣ୍ଡିତ ମର୍ଣ୍ଡତ
ପ୍ରାଚୀର ସମାନ ଭୂଧରବର ।
ଶ୍ୟାମଳ କୋମଳ ପନାସି ବନରେ
ସଦା-ପରିପୂର୍ଣ୍ଣ ସେ ସ୍ଥାନ ଛଡ଼
(୩) କଣ୍ଟଳ ନବାସୀ (୪) କଣ୍ଡଆଳ ମାଳ
କରବାଳ କରେ ଆସିଲେ ମାଡ଼ି ।
କୁଣ ତନ୍ତ୍ର ଅଣ୍ଡ ଚୋପନ ପ୍ରକ୍ଷତ
ଯେ ସ୍ୱରେ କୌଶଳେ ବନା କ୍ଲେଶରେ

(୧) ବଣ୍ଟଳଗ୍ରାମର ପଞ୍ଚାକ୍ଷୀ ଦେବୀ ।
(୨) କଳାଗଡ଼ ଗିରିକନ୍ଦା । ଏହାର ଗର୍ଭରେ ବାମଣ୍ଡା ରାଜାଙ୍କ ବଳମ ସମାଧି ଅଛି । ଏଠାରେ ପର୍ବତ ଉପରେ ରାଜା ସାର ବାସୁଦେବ ସୁଢ଼ଳଦେବ କେ. ସି. ଆଇ. ଇ. ମହୋଦୟଙ୍କ ଦ୍ୱାରା ଶିବମନ୍ଦିର ନିର୍ମିତ ହୋଇଅଛି ।
(୩) ବେଣୁବରନ୍ଦ୍ର ଦେବ ଇନ୍ଦ୍ରଙ୍କର ସମାଧି । ଏହା ବଳମ ସମାଧି ଉତ୍ତରରେ ଅବସ୍ଥିତ, ଏଠାରେ ପୂର୍ବେ ଅସଂଖ୍ୟ ଖଣ୍ଡୁଆଇ ଥିଲେ ।
(୪) ଅବମକାଡ଼ ବଣେଷ ।

ପଶୁ ବନାଗତ — ବାନ୍ଧେ ତଳେ ରହି
(୧) ରଙ୍ଗମାଟିଆର ଶୈଳ ଉପରେ ।
କମଳା-ପତ୍ର— ସୁରଭିତ-ଦେହେ
(୨) ଟୁସ୍କଲାର ପଙ୍କ ସଲିଳ ବୋଳ
ଚଞ୍ଚଳଗାମିନୀ (୩) ମହୁଆଲୀ ଯହିଁ
ବହେ ବର୍ଷାଜଳେ ତରଙ୍ଗ ଦୋଳ ।

ବନ୍ଧନ ବସନ— ଢାଳେ ବଳଙ୍କୃତ
ଜନେ ଅଜାତରେ ଅଭୟ ଦେଇ
ପାଷାଣ ପୁରଟେ ସୁଖେ ନିବସନ୍ତି
ସେ ତଟିନୀ ତଟେ ଦେବୀ (୪) ରମ୍ଭେଇ ।

ସେ ମହାଦେବୀଙ୍କ ପ୍ରିୟ ଉପାସକ
ବ୍ୟାଘ୍ରବତ ପଶୁ ପକ୍ଷୀ ମାଂସାଶୀ
କୃଷ୍ଣ ପରିଚ୍ଛଦ ଘର ଦ୍ୱାର ହୀନ
ନିରତ ନର୍ତ୍ତନ-ବନ ବିଳାସୀ ।

ମୃଦଙ୍ଗ ବାଦ୍ୟ ବାଜେ ବାମସ୍ତନେ
ଶୋଭେ ନୀଳକଣ୍ଠ-ଚନ୍ଦ୍ରିକା ଶିରେ
ଚଞ୍ଚଳା କମଳା ଯୋଗେ ଉପେକ୍ଷିତ
ନିଦ୍ରିସ୍ତ ନିସ୍ପୃହ ଶବର ବୀରେ ।

---

(୧) ରଙ୍ଗମାଟିଆ ଟଙ୍ଗରର ପାଦ ଦେଶରେ ଗଡ ବଢ ଧାର୍ଣ୍ଣୀଯାଇ ଶଗରଷ୍ଟ ବାନ୍ଧି ପଥର ଭୂସରେ ଶୋବାସ୍ ବଂକ୍ତ ବସିଲେ ଅବାଧରେ ଜଳୁ ମାଉପାରେ ।

(୨) ଦେବଗଡ଼ର ଉତ୍ତରସ୍ଥିତ ସ୍ୱଜାଙ୍କର ଖମାର ଗ୍ରାମ । ଏଠାରେ ରାଜା ସାର ବାସୁଦେବ ସୁଢ଼ଳଦେବ କେ. ସି. ଆଇ. ଇ. ମହୋଦୟଙ୍କ ସ୍ୱମେଷ୍ଟ କମଳା ବଗିଚା ଅଛି । ବର୍ଷା ସମୟରେ କମଳାଫୁଲ ଫୁଟେ ।

(୩) ମହୁଆଲୀ ପେଉବବା ବର୍ଷା ସମୟରେ ଶିଳା ଘଷଂରେ ଅଷ୍ଟଣସ୍କବେ ବାଠି ବାଠି ପ୍ରବାହିତା ହୁଏ ।

(୪) ରାଜା ସଚ୍ଚିଦାନନ୍ଦ ତ୍ରିଭୁବନଦେବ ଗୋଟିଏ ଖମାର ଏଠାରେ କରିଛନ୍ତି । ଏହି ଖମାର ବସ୍ତବସ୍ତ ଓ ଠଳ ପ୍ରସ୍ତବୋଷ୍ମ ବଳ ଦୃଶ୍ୟ ସମ୍ପ୍ରିମନ୍ତ ଥିଲା । ଦେବୀଙ୍କର ନାମାନୁସାରେ ଖମାରର ନାମ "ରମ୍ଭାଇ ଖମାର" ହୋଇଅଛି ।

ଉପତ୍ୟକାପୂର୍ଣ୍ଣ (୧) ହଳଦ୍ୱୀପାଣିର
ନଭ୍ରତ ଅନ୍ଧାର ଗୁହା ଦ୍ୱାର—
ସୁଖକୁ ବରଛି ଢାଲଚର୍ମ ପର
ଦକ୍ଷିଣରେ ଧରି ତୀକ୍ଷ୍ଣ କୁଠାର ।
ହଜାରି ମରିଚ ସ୍ପେନ ସମାପ୍ତର୍ଣ୍ଣ
(୨) ଖଜୁରିବାହାଲ (୩) ବାହାଲ ଲଙ୍ଘି
ଦଳଦଳ ଆସି ସ୍ୱଜଧାମୀ ମଧ୍ୟେ
ହେଲେ ନବାଗତ ସୈନ୍ୟଙ୍କ ସଙ୍ଗୀ ।
ମହୁଷ ଛିଙ୍କର ଦେଖି ଧ୍ୱନ ସହ
ଯେ ମାନେ ମର୍ଦ୍ଦଳ ବଜାଇ ସଦା
ଉଲ୍ଲାସେ ନାଚନ୍ତି ସଙ୍ଗତେ ନସ୍ୱର
ସେମାନଙ୍କ ପ୍ରିୟତମା ପ୍ରମଦା ।
ବଇଁଛା ନାଦେ ପୁରି ବନ ଭୂମି
ହ୍ରଦ୍ଧ୍ୱପ୍ରିୟ ଜନସେନା ଅଠରେ
ଢାଣ୍ଡା ଲଠା ଦଳ ଯନ୍ତ୍ରାଯନ୍ତ୍ର ହୋଇ
ଲୁହାଠି କୈବର୍ତ୍ତ୍ୟା ଉଚ ଘଟିରେ ।
ଖଣିଗର୍ଭ ସ୍ଥିତ (୪) ଅଗ୍ନିସ୍ଥାନ୍ତ ମଣି
ଯନ୍ତ୍ର ସଦା ଠାଣି ନଜ ଆଙ୍ଗୁଳ
ଦର୍ବାରଣ ଯନ୍ତ୍ର— ଲୌହ କଣ୍ଟକୁ
ଓଢାଏ ଢଷମ ଭ୍ରମେ ପାନ୍ଥକୁ ।
ସୁନ୍ଦର ଶାଳଅଁ ବାଉଁଶରେ ପୂର୍ଣ୍ଣ
ନୀରନ୍ଧ୍ର ରଚିତା ଜଡ଼ା ବଣିଅଁ
ଜନପାଳ ପାଖୁଁ ଦଳେ ଦଳେ ଆସି
ଗଜ ନଦରରେ ହେଲେ କୁଣିଆ ।

(୧) ସମ୍ବଲ ସ୍ୱକୂଳ ସ୍ୱାବ ପ୍ରସିଦ୍ଧ ଗ୍ରାମ ।
(୨) ଖଜୁରିବାହାଲ ଗ୍ରାମର ଦୁର୍ଗପ୍ରସାଦ ଦେବ ବଡ଼କୁମାରଙ୍କ ସମାଧ୍ର । ଏହାରେ ବଳେଶ୍ୱ ସମ୍ମାନରେ ମଇଦ ହୁଏ ।
(୩) ତଳକର୍ମି ।
(୪) ଚୁମ୍ବକ ନକ୍ସ ବଳସ୍ୱାଳ ସନ୍ଧିରେ ରୂମ୍ବଦ୍ୱବା ଦର୍ବାରଣସ୍ଥରେ ସଂଶ୍ଳିଷ୍ଟ ।

ଲୌହଖଣିପୂର୍ଣ୍ଣ (୧) କନ୍ଦର୍ପ ଘାଟରେ
ଯେ ମାନେ ସର୍ବଦା ସହଜେ ଧାଇଁ
ଗୋଟି ଗୋଟି କାଟି ଅକ୍ଲେଶେ ଦଅନ୍ତି
ଶତ୍ରୁମାନଙ୍କର ମୁଣ୍ଡ ଗଡ଼ାଇ ।
(୨) ଖଡଖଣ୍ଡି ଭୂୟାଁ ପୀଠର ମାଳିକ
କେତେଙ୍କ ପରଗ ବୋଲି ବଦନେ
ବୃଷାଙ୍କ ସର୍ବ ଗର୍ଗସ୍ତମ୍ଭେ ଦକ୍ଷ
* ବଡ଼ବାଉଁଆଙ୍କୁ ଘେନ ଗହଣେ ।
ପ୍ରବେଶିଲେ ଆସି ଲଇମୁଣ୍ଡ ଗ୍ରାମ
ମହା ସମାରୋହେ ମହାନାୟକ
ଯମଦଣ୍ଡ ସମ କୁନ୍ତ କରେ ଧରେ
ବଇରୀକୁଳର ପୀଡ଼ାଦାୟକ ।
ବଣାଇଁ (୩) ମୟୂର— କ୍ରମା ଅଣ୍ଡଚରି
ଅନାବିଲ ଜଳା (୪) କୁରୁମଲଇ
ଅସଂଖ୍ୟ (୫) କୁଣାସି— ମାଛ ପେଟେ ଭରି
ଖିଳେ ନାଚନାଚ ସହିତ ଗମଇ ।
ସମୁଖି ଲଣ୍ଠନ— ପଛୁ ଦସ୍ୟୁଦଳ
(୬) ସୁଲଗୁଡ଼ା ଆଡୁ ଆସି ବହନ
ଏକ ପ୍ରିୟୁଷିର ବଦଳେ ଯେ ସ୍ଥାନେ
ଖଣ୍ଡନ୍ତି ଭବର ମାୟାବନ୍ଧନ ।
ବେତ ଲତାପୂର୍ଣ୍ଣ ବେତ ଝରଣର
(୭) ଢଳେଇ ମୁଣ୍ଡିଆ ବଣ ·ପଙ୍କତ

(୧) ଲଇମୁଣ୍ଡାଗ୍ରାମ ଓ କୁସୁମୀଗ୍ରାମ ମଧ୍ୟସ୍ଥିତ ପର୍ବତ ପର୍ବତ ।
(୨) ଖଡଖଣ୍ଡି ନାମକ ଭୂୟାଁଜାତି ବିଶେଷରେ ସର୍ଦ୍ଦାର ଲଇମୁଣ୍ଡ ଗ୍ରାମରେ ବାସକରନ୍ତି ।
(୩) ବଣାଇ ଷ୍ଟେଟରେ ଗ୍ରାମ ବିଶେଷ ।
(୪) ସ୍ଥାନ ପ୍ରସିଦ୍ଧ ପିଠବଣ ।
(୫) ଏକପ୍ରକାର କୁଚମସ୍ୟ ।
(୬) ବଣାଇଁ ଗ୍ରାମ ବିଶେଷ, ଏଠାର ଜଙ୍ଗଲରେ ଦସ୍ୟୁମାନେ ସାମୟିକ ଲୁଚି ରହିଥାନ୍ତି ।
(୭) ଆସନ୍ତୁ ଜଇପୋବ । ବେତଝରଣର ହାଣଙ୍କର ଦେହକୁଳବାରେ ମୁଣ୍ଡ ପଡ ଷ୍ଟେଷ ।
* ବନ୍ଦୁକାର ପ୍ରସବ ବିଶେଷ ।

ନର୍ତ୍ତ୍ୟେ ନରତେ      ପ୍ରବେଶି ନଗୀପେ
      ଲୁଣ୍ଠନ୍ତି ଯାହାଙ୍କ ଶସ୍ୟ ସମ୍ପତ୍ତି ।
ସଂଗ୍ରାମେ ଯାହାଙ୍କ      ଖର ଶର ଯୁକ୍ତ
      ପ୍ରଚଣ୍ଡ କୋଦଣ୍ଡ ଗୁଣ ନର୍ଘୋଷ
ବୈଧବ୍ୟ ଡଡର      ଯନ୍ତ୍ରଣା ଅନଳେ
      ଦହୁଇ ବପକ୍ଷ ବାମା ମାନସ ।
ସୁରଭି କୁରେନ୍ଦ୍ର      କୁସୁମରେ ଶୋଭି
      ସେ ରମ୍ୟ (୧) ଭୁରେଇବାସୀ ପାଇଲେ
କେଣେ କେନ୍ଦୁ ଘରେ      ନ ରହୁ ମିଳଲେ
      ଏ ମହାମିଳନେ ଅସି ପୂଜଲେ ।
ଉଚ୍ଚ ଶୃଙ୍ଗ ଯାର      ମାଣିକ୍ୟ ମଞ୍ଜୁଳ
      ରଜତ କଳଶ ସୁଷମା ଧର
ଅସ୍ପଷ୍ଟ ଦୁରେ      ବାଳରବି କରେ
      ହେମ ଶିଖରର ଶିଖର ପର ।
ଗଗନ ଭେଦୀ ସେ      (୨) ଗଡ଼ପାଟ ଗିରି
      ପ୍ରକୃତର ସ୍ୱର୍ଗ ତମ୍ବୁ ସଦୃଶ
ଶିବଡୋଳ ସହୁଁ   ଦେଖଇ (୩) କୋଠଣ୍ଡା—
      ପ୍ରଗଣାର ସ୍ୱପ୍ନ ସୁନ୍ଦର ଦୃଶ୍ୟ ।
ପ୍ରବେଶିଲେ ତହୁଁ      (୪) ଉଚ୍ଚଭଗା ଭଡ଼
      (୫) କର୍ଣ୍ଣୀନାଟ ଫଟୁ ଉତ୍ସବ ଭୋଳ
ଶ୍ରମକ୍ଳାନ୍ତ ମନ      ମହାନ୍ତି ସେ ସାଜେ
      ବଜାଇ ଝଞ୍ଝଧ ତାଳେ (୬) ମାଦଳ ।

---

(୧) ବାମଣ୍ଡାର ସ୍ୱନାମଧନ୍ୟ ଗ୍ରାମ; ଏଠାରେ ବହୁତ କୁରେଇ ଫୁଲଗଛ ଅଛି ।
(୨) କେଶୋଇବାହାଲରୁ ଦୃଶ୍ୟମାନ ସୁଦୂରସ୍ଥିତ ପର୍ବତ ।
(୩) କୋଠଣ୍ଡା ବାମଣ୍ଡାର ଗୋଟିଏ ସବ୍‌ଡିଭିଜନ ।
(୪) ସ୍ୱନାମ ପ୍ରସିଦ୍ଧ ଗ୍ରାମ ।
(୫) ସୂର୍ଯ୍ୟ ବର ବୋଲ୍ ଜାତ କର୍ମୀ ଦେବତାଙ୍କର ପୂଜା କରି ସ୍ତ୍ରୀ ପୁରୁଷ ମିଳିତ ହୋଇ ନୃତ୍ୟ କରନ୍ତି । ଉତ୍ସବ ବୋଲ୍ ଜାତ ବିଶେଷ ।
(୬) ବାଦ୍ୟ ବିଶେଷ ।

ଖଣ୍ଡ ପଦ୍ମଳୀ— ଦାନବ ଘସ୍ମାରେ
ଉଠା ଜରଜର ସଦା ଯେ ସ୍ଥଳୀ
ଅବସନ୍ନ ଯହିଁ ମେରୁଆ ଶୋଣିତେ
ସୁରତ ଖର୍ପର ଦେବୀ (୧) ଉଚ୍ଛଳୀ ।
ସୁବିଶାଳ ତନ୍ତ୍ର ସବଳ ସୁଢ଼ଳ
ଶାଳଦ୍ରୁମେ ପୂର୍ଣ୍ଣ ଯେ ସ୍ଥାନେ ଅଛି
ବନର ଗହ୍ୱର ନନ୍ତ୍ରଦୃତା ସ୍ୱଚ୍ଛ
ଗଭଜନ୍ତୁ ହେଷେ (୨) ଭରତସଞ୍ଚ ।
ଦାରୁଣ ସେବତ ଶ୍ରମବିଶିନକୁ
(୩) ବାରଧାର ନାମେ ଭଣି ବଦତ
ବାଲବାର ଘୂରି ବାରବାଙ୍କେ ଯହିଁ
ବହେ ବାରଧାର ଗିରି ସରତ ।
ସେ ମହାକାନ୍ତାରେ ବୁଲି ବୁଲି ନିତ୍ୟ
ମର୍କଟ ମାଂସେ ଯେ ପୂରନ୍ତି ପେଟ
ଶ୍ୱମଦାୟୁ ସେହୁ ପାଙ୍ଗଗୟୁ ଜାଣ
ଠୁଲହେଲେ ଆସି ଏଡ଼ ଅଖେଠ (୪)
ଅହୁବେ ହସଇ ଗାଙ୍ଗପୁରେଶଙ୍କୁ
ନୃପ (୫) ରଘୁନାଥ ବୀରବନ୍ଦତ
ବଳେ ଠାଣିଆଣି ଯେ ଭୂଖଣ୍ଡ ଭଲେ
ଏ ରାଜ୍ୟର ସୀମା ଅନ୍ତରଗତ ।

---

(୧) ବାରଧାର ଗ୍ରାମର ଅଧିଷ୍ଠାତ୍ରୀଦେବୀ ।

(୨) ବାରଧାର ଗ୍ରାମରେ ଶିକାର ବ୍ୟବସାୟ ପ୍ରଥମେ ଆରମ୍ଭ ହୋଇଥିଲା । ଶିକାର ତହିଁର ସବାଶେ ଇଞ୍ଜିନ୍ ଗ୍ଲିଡ ଧରତ ବ୍ୟବହୃତ ହେଉଥିଲା ।

(୩) ଏଠାରେ ବୈରବଣୀ ନାମ ବାରଧାର, ଏହି ନଦୀର ନାମାନୁସାରେ ଗ୍ରାମର ନାମ ବାରଧାର ବୋଲି କଥିତ ହେଲା ।

(୪) ମୃଗୟା ।

(୫) ବାମଣ୍ଡାର ପ୍ରତାପୀ ରାଜା ରଘୁନାଥ ଦେବଙ୍କ ଦ୍ୱାରା ଗାଙ୍ଗପୁର ରାଜା ପରାସ୍ତ ହୋଇ କଳଭି ଦେଇ ନ ପାରି ଏହି ପ୍ରଗଣାଟି ବନ୍ଧା ଦେଇ ଥିବାରୁ ଏହାର ନାମ ବନ୍ଧାର ହୋଇଥିବା ମାଦଳା ପାଞ୍ଜିରେ ଅଛି ।

ବାମଣ୍ଡାର ମାନ–  ଚନ୍ଦେ ରହୁଛ ଯେ
ହଂସବେକ ପରି ପ୍ରକାଶି ଶୋଭା
ସେ ବଜ୍ରାବାରୁଆ  ସ୍ଥାପଣ କାଘାଣେ
ଅସି ଦେବଗଡ଼େ ହୋଇଲେ ଉସ୍ତ ।
ବଦେଶୁଁ ଆଗତ  ରେଲ-ଯାନ-ଯାତ୍ରୀ
ପକ୍ଷେ ବାମଣ୍ଡାର ଦଗ ବାରଣ
(୧) ମହାବୀର ଶୈଳେ  ସଦା ଯେହ୍ନ ଭ୍ରମି
ଶୋଭନ୍ତ (୨) ଯୁଗଣ୍ଡି (୩) ଗୋଧ୍ୱ ଜୀବନ ।
ଝାଙ୍ଗର ମୃଣ୍ଡିଆ  (୪) ସଙ୍କିଣୀ ଶୈଳର
ଶିଳା ଦଗ୍ଧଶାୟୀ ରୁଷ ହୁଙ୍କାର
ନମାନ ଡାକ୍ତରୁ  ଦନ୍ତପାଟି ଯାଏ
ଦ୍ୱିଫାଳ କରଇ ଫାଳୟା ଯାଉ ।
ସିଂହ ଆଖ୍ୟାଧାରୀ  ଗଣ୍ଡ ଜମିଦାରେ
ଦଗନ୍ତ କମ୍ପାଇ ବାଦ୍ୟ ନସ୍ୱନେ
ପଗନ୍ତ ଶୋଣିତ  ଲିପ୍ସୁ କରବାଳେ
କୃଶ କଟୀ ଗୋଟି ମଣ୍ଡି ଯତନେ ।
ବାହାରିଲେ ବେଗେ  ମହୁଲପାଲରୁ
ଦୁର୍ନିବାର ଗଣ୍ଡ ସେନା ସଜାଡ଼
ଯୁଦ୍ଧେ ପ୍ରଭଞ୍ଜନ  ସମ ଦପନ୍ତ ଯେ
ବଦଶିକୁଳରୁ ମୂର୍ତ୍ତି ଉପାଡ଼ ।
ଭୁବନେଶ୍ୱର ଶିର—  ଚନ୍ଦ୍ର ଚନ୍ଦ୍ରକାରେ
କୃଷ୍ଣପକ୍ଷେ ଯୁବା ପରମାନଙ୍କ

(୧) ଭୋବନପୁର ଉତ୍ତରସ୍ଥ ଯଗୁଂଛ ପର୍ବତ । ରେଲଯାତ୍ରୀମାନେ ଦୂରରୁ ଏହି ପର୍ବତ ଦେଖି ବାମଣ୍ଡା ଷ୍ଟେସନ ନିକଟ ହେବାର ଜାଣି ପାରନ୍ତି ।
(୨) Mouse deer.
(୩) ସରୀସୃପ ବଶେଷ ।
(୪) ମହୁଲପାଲର ଉତ୍ତରପର୍ବତ । ଏହାର ଶିଖରଦେଶ ଲମ୍ବା । ପର୍ଯ୍ୟନ୍ତ ସଞ୍ଚରଣରୁ । ମହୁଲପାଲରେ ପୂର୍ବେ ବଲଣ୍ଡା ଜମିଦାର ବଂଶ ଥିଲେ ।

ଅକମଣ ଝନା    କୋଷରେ କୃପାଣ
  ରହଇ ଯାହାଙ୍କ ଭଙ୍ଗି କଳଙ୍କ ।
ପ୍ରସାଦ ୧ କେତକୀ    ବଜେ ମଣ୍ଡି ମୁଖ
  ଚଳୁରେ କେତକୀ ପାଖୁଡ଼ା ଖୋସି
ସମର ସଙ୍ଗୀତେ    ଯହିଁ ଜନନୀଏ
  ପୁତ୍ରଙ୍କୁ ବୀରତ୍ୱ ଶିଖାନ୍ତି ହସି ।
ନିର୍ଭୟ ହୃଦୟ    ସେ ଜୟପୁରଆ
  ୨ ହୈହୟ ବଂଶୀୟ କ୍ଷତ୍ରିୟଦଳ
ପ୍ରାଚୀନ ବୈଶ୍ୱତା    ଛାଡ଼ି ଯୋଗଦେଲେ
  ବାରିଦ ସହିତ ଯଥା ବାଦଲ ।
ପୂର୍ବବାସସ୍ଥାନ    ୩ କୋଳାହଳ ପୁର
  ଗଉରବମୟ ନାମାନୁଯାୟୀ
୪ ଚୈତସ୍ୟ ପାଖେ    ଯେମାନେ ବସନ୍ତି
  କଣ୍ଟାପଡ଼ା ନାମେ ଗ୍ରାମ ବସାଇ ।
ପାଦପ ବେଷ୍ଟିତ    ସ୍ୱଚ୍ଛ ସୁଗଭୀର
  ଶ୍ରୀଦହ ଯାର ସମ୍ମୁଖେ ଦଶେ
ଗ୍ରାମଲକ୍ଷ୍ମୀଙ୍କର    ମଣିରତ୍ନଭରା
  ମନୋଜ୍ଞ ମର୍କତ ଫରୁଆ କସେ ?
ପଡ଼ିଅଛି ପାଖେ    ସିନ୍ଦୂର ଜର୍ଜ୍ଜର
  ଆଜଣାଏ ଯହିଁ ଲୌହ ଶିକୁଳି

---

(୧) ଭୁବନେଶ୍ୱରଙ୍କର ପ୍ରସାଦ କେତକୀଫୁଲ ।

(୨) ସମ୍ବଲପୁର ଅନ୍ତର୍ଗତ ଜୟପୁର ଜମିଦାର ହୈହୟ କ୍ଷତ୍ରିୟମାନେ ଏଠାରେ ବାସ କରୁଥିବାର ଜନଶ୍ରୁତି । ପୂର୍ବ ନାମାନୁସାରେ ଏହାକୁ ଜୟପୁର ନାମ ଦେଇଥିଲେ ।

(୩) କୋଳାହଳପୁରର ଅଧୁନାତନ ନାମ କୋଲ୍ହାପୁର, ଏଠାରୁ ଗଙ୍ଗବଂଶୀୟମାନେ କାମଣ୍ଡାକୁ ଆସି କଣ୍ଟପଡ଼ା ନାମ ଦେଇଅଛନ୍ତି ।

(୪) ଚୈତସ୍ୟ କୋରେଣ୍ଡାର ଉଚ୍ଚ ପର୍ବତ । ସେଠାର ଅଧିଷ୍ଠିତ ଦେବତାଙ୍କ ନାମ ମଧ୍ୟ ଚୈତସ୍ୟ । ଦେବତାଙ୍କ ନାମାନୁସାରେ ପର୍ବତର ନାମ ହୋଇଅଛି । ଦେବତାଙ୍କ ପୂଜା ସମୟରେ ଏଠାରେ ବାର୍ଷିକ ମେଳା ହୁଏ ।

ବାନ୍ଧ ରଖି ବୃତେ ଶତ୍ରୁକୁ ଯା ଯୋଗେ
ସମର ବଜୟୀ ବୀରମଣ୍ଡଳ ।
ସେମାନଙ୍କ ମଧ୍ୟ ଅବାଧ ଦୃଷ୍ଟକୁ
ପୁଜାସମୟରେ ବଳ ପ୍ରଦାନ
ଯୁଦ୍ଧଯାତ୍ରା ଅଗେ ମନାସିବା ବାଣୀ
ପୁରନ୍ତି ଯେମାନେ ଅବାଧେ ହାଣି ।
ଚୈତସ୍ରଯ୍ସ ବରେ ବପକ୍ଷ ବଶିଶ
ମଣନ୍ତି ଯେ ଫଳସ୍ତବକ ବତ
ଶ୍ୱେତବୈଜୟନ୍ତୀ ଉଡୁଥାଏ ଯାଙ୍କ
ସଧୀରେ ସମୀରେ ନବେ ସନ୍ତତ ।
ଗ୍ରାର ହୁଙ୍କାକର ସେ କାଲ୍ହାପଡଏ
ଆସିଲେ ସଗ୍ରବେ ସ୍ୱସ୍ଥାନ ଛଡ଼ି
ମଧୁଚକ ସମ ୧ ଗଣ୍ଡ ଅଧରୋଷ୍ଠେ
ଶୋଭୁଥିଲା ତାଙ୍କ ଶ୍ୟାମଳ ଦାଢି ।
ଇନ୍ଦ୍ର ନୀଳମଣି କାନ୍ତିଶୋଭା ଜିଣି
ଅଠକ ଅଠକ କଟୀରେ ଯାର
ବହେ ବେଳନଦୀ ୨ ଖରଲା ୩ ଭେଡେନ
ପ୍ରିୟସହଚରୀ ଚନ୍ଦ୍ରୋପୂଳାର ।
ସ୍ୱର୍ଣ୍ଣବଲ୍ଲୀରୂପା ବପ୍ରସୀମନ୍ତିନୀ,
ଗଉରାଙ୍ଗୀ ଅଘରଥା ଯୋଷିତ
ବଦନ ଲବଣ୍ୟେ ଯାର ଜଳବେଣୀ
ଶତ ପୁର୍ଣ୍ଣଚନ୍ଦ୍ରେ ହୁଏ ଗ୍ରଜତ ।
ସ୍ମୃରୁହାସିନୀଙ୍କ କାନନକାଶୋଭା
ଗୃହଣି ଚଞ୍ଚଳ ଭ୍ରୁଲୁଲାସ୍ୟରେ

(୧) ପୂର୍ବକାଳରେ କ୍ଷତ୍ରିୟମାନେ ଦାଢ଼ୀକୁ ଦୁଇ ଭାଗ କରି ଉପରକୁ ଉଠାଇ କର୍ଣ୍ଣମୂଳ ବାଳରେ ବାନ୍ଧି ରଖିଥାନ୍ତି । ଏହା ଶାଶ୍ୱାସଂଲଗ୍ନ ମଧୁଚକ୍ର ପରି ଦେଖାଯାଏ ।

(୨-୩) କୋଚିଣ୍ଡାର ଦକ୍ଷିଣରେ ଖରଲା ଓ ଉତ୍ତରରେ ଭେଡେନ ନଦୀଦ୍ୱୟ ପ୍ରବାହିତ ହେଉଅଛନ୍ତି । ଏହି ଉଭୟ ନଦୀ କୋଚିଣ୍ଡାର ଦକ୍ଷିଣସ୍ଥିତ କସାଭାମ ସୀମାରେ ମିଳିତ ହୋଇଅଛନ୍ତି ।

ଯୌବ ଜୀବନନ୍ତ— ଆମ୍ବା ପାର ଯହିଁ
ଏକାଳେ କେଳଣ୍ଡବର ୧ ବହୁରେ ।
ସେ ରୁଚ କୋଦଣ୍ଡ ତହସିଲ ପାଖୁଁ
ନାନାଦେଶେ ନାନାଜାତି ବାହିନୀ
ବେଲାଅଭିମୁଖେ ଧାବିତ ସୁନୀଳ
ସାଗରଫେନିଲ ତରଙ୍ଗ ଜିଣି ।

ବଟନପ୍ରସ୍ତର— ମଣିବିଭୂଷିତ
କାମନସୂକାସ୍ତୁ ତନ୍ତୁ ତୁରଙ୍ଗେ
ଆରୋହି ଅସ୍ତନେ ଆସିଲେ ଅମନ୍ଦେ
ବନଗିରି ଛାଇ ସମରରଙ୍ଗେ ।

ମରକତ କାନ୍ତି ଗୁମ୍ବଜ ଆବୃତ
୨ ଗୁରୁଜ ପାଷାଣ ବପ୍ରଠକାସ୍ଥ
ଏକାଳରେ ଯହିଁ ରକ୍ତମୁଖେ ଢ଼ାକି
ଭୂତଙ୍କ ପଶୀକି ଦିଏ ଆଶ୍ରୟ ।

ମାଧବ ପ୍ରଗାଢ଼ ଜାତକୁ ନମାନ
୩ ପ୍ରାଚୁଁ ବାଧବସ୍ତୁ ବାଜ ଆରୋହି
ପଙ୍କ୍ତି କରୁଥିଲ ରଣବିଦ୍ୟା ଶିକ୍ଷା
ପର୍ବତ ତାଳୁରେ ବରହ୍ମା ଯହିଁ ।

ସେ ଆଖଡା ଦାଣ୍ଡି ୪ ଖାଡାହେଲେ ଧାଇଁ
ତାର ଇଙ୍ଗିତରେ ବିଶାଳସେନା
ପ୍ରସାରନ୍ତ କରେ ବହୁଦୂରବ୍ୟାପି
ସିନ୍ଧୁ ବୀଚ ପର ଗରୁଡ଼ବେଣୀ ?

---

(୧) ପତଙ୍ଗ ।

(୨) ସୈନ୍ୟ ଅବସ୍ଥିତାର୍ଥେ ନିର୍ମିତ ଗୃହବିଶେଷ । ଏଥିରେ ଅନେକ ରନ୍ଧ୍ର ଥାଏ । ସେନାମାନେ ଏହି ରନ୍ଧ୍ର ଦେଇ ଶତ୍ରୁଙ୍କୁ ଗୁଳି ମାରନ୍ତି ।

(୩) ବାସନ୍ତ ନାମକ ଘୋଡ଼ାରେ ବରହାଜାତ ସର୍ଦାର ଅଖଡା ସାଧୁଥିବାର କିମ୍ବଦନ୍ତୀ ।

(୪) ଯାବନିକ ଶବ୍ଦ ।

ବାମଣ୍ଡା ୧ ଖାଲସା    ସୀମା ସ୍ୱରୂପିଣୀ
ଅଭ୍ର ତାରକିତ ୨ ମାଲଗିନଶି
୩ ହୁରଡ ସହିତ    ଚନ୍ଦ୍ରୋପୃଲା ନାରେ
ମିଶେ ଯହିଁ ବାଲ୍‌ଶଯ୍ୟାରେ ବନ୍ଧୁ ।
ବିସ୍ତୀର୍ଣ୍ଣ ୪ କୁଣ୍ଡେଇ—    ସଗର ପେ ବନ୍ଧ
ବେଦେହେସ୍ୱର ସ୍ୱଜଭକ୍ତ ସୁମର
ଉପଗତ ହେଲେ    ସମ୍ମୁଖେ ଲୁହାଟି
କରେ ଏକମ୍ରନା ଶଙ୍କୁ ଧର
୫ ଅଦାପାର୍ଶ୍ୱର    ଉନ୍ନତ ମସ୍ତକେ
ଯେମାନେ ଶିଳୁଲାସଙ୍କୁଳ ପଥେ
ଭରଙ୍ଗା ୬ ସମ୍ପତ୍ତି    ରଖନ୍ତି ପ୍ରବଳ
ଗଜଯୂଥ ସହ ଯୁଝି କରତେ ।
ଧକ୍ଳେକନ୍ତି ଯେହ୍ନେ    ମେଘଚୁମ୍ବୀ ସେହ୍ନେ
ଶିଖରୀ ଶିଖରେ ସୁଖେ ବସନ୍ତି
ଧଳା ସୌଧମାଳା—    ମଣ୍ଡିତ ସମ୍ବଲ—
ପୁର ସହରର ସୁଷମା ରାଜି ।
ସୁପ୍ତେ ସୁରଦ୍ରୁମ    ମଞ୍ଚାରେ ଲମ୍ବିଲ
ନୃପଙ୍କୁ ଟିଟିଲାଗଡ଼ରୁ ଆଣି
ପାନାସ୍ୱବେ ଯେହ୍ନେ    ପାଣିପାନ ରୂପେ
ଯୋଗାଇଲେ ନଳା (୭) କଣ୍ଠଙ୍କ ହାଣି ।

---

(୧) ଖାସମାହାଲର ଅପଭ୍ରଂଶ ଶବ୍ଦ ।
(୨) ମାଲଗିଯୋର ଖରସ୍ତ ସାସଲହ ଗ୍ରାମରେ ଅଭ୍ର ଖଣି ଅଛି ।
(୩) ସୌନ୍ଦପାଲ୍ ଗ୍ରାମ ନିକଟବର୍ତ୍ତୀ ନଦୀ ।
(୪) ସୌନ୍ଦପାଲ୍ ନିକଟସ୍ଥ ଗ୍ରାମ, ଏଠାରେ ସଦାବେଦେହେସ୍ୱ ଜମିଦାର ଥିଲେ ।
(୫) ବଡ଼ରମାର ସର୍ବୋଚ୍ଚ ପର୍ବତ ।
(୬) ବନ୍ଧମାନେ ଜଙ୍ଗଲ କାଟି ପୋଡ଼ାଇ ସେହି ସ୍ଥାନରେ ଲୁମା ମକା ଆଦି ଚାଷ କରନ୍ତି । ଏହାକୁ ଭରଙ୍ଗା କୁହାଯାଏ ।
(୭) ବାଉଁଶ ବିଶେଷ ।

ଗ୍ରାମର କଟଙ୍ଗ— ପାଣି ବୋଲି ନାମ
କାର୍ଯ୍ୟ ଅନୁଯାୟୀ ରଖି (୧) ଭୂପତି
ପୁରସ୍କାର ସହ ଖଞ୍ଜି ଦେଇଛନ୍ତି
ସେ ଦିନୁଁ ଯାହାଙ୍କୁ ଏ ଗ୍ରାମ ବୃତ୍ତି ।

ପୂର୍ବ ସ୍ତବ ସ୍ୱର ଆସିଲେ ବାହାର
ବ୍ୟାଘ୍ରଚର୍ମେ ମଣ୍ଡି ଅଙ୍ଗ ନିଜର
ଠାଣି ଚମକାଇ କଟଙ୍ଗ ପାଣିରୁ
ବଂଶଧରମାନେ (୨) ସୁନା କଙ୍କର ।

ଯାହାଙ୍କ ଅପୂର୍ବ ଆବିର୍ଭାବ ପୂର୍ବେ
ଦୁଗ୍ଧବତୀ ଧେନୁ ନିଜ ଇଚ୍ଛାରେ
ସେବୁଥିଲା ଆସି ଭୂଗର୍ଭେ ନିହିତ
ମୂରତିଙ୍କି ନିଜ ଗୋରସ ଧାରେ ।

ଅଦ୍ୟାପି ଯାହାଙ୍କ ପୂତ ପ୍ରତିମାର
ଉଭୟ ପାରୁଶେ କୃଷ୍ଣ ପ୍ରସ୍ତରେ
ପୁଣ୍ୟ ପୟସ୍ୱିନୀ ଗାଭୀର ପବିତ୍ର
ପଦଚିହ୍ନ ଦିଶେ ସ୍ପଷ୍ଟ ଭାବରେ ।

ମାଳତୀ ମାଳିନୀ ମାଳିନୀଏ ସ୍ନେହେ
ସୁପବିତ୍ର ସାନ୍ଧ୍ୟ ଆଳତି କାଳେ
ଦୋଳା ଢାଳି ଗୁନ୍ଥି ମଣ୍ଡନ୍ତି ଯା ତନୁ
ମିଳିନ୍ଦ ମଣ୍ଡିତ କମଳମାଳେ ।

---

(୧) ବାମଣ୍ଡାର ଏବ ରାଜା ସରଯୁ ଦେବ ।

(୨) ସୁନାବନ୍ଧ ବାମଣ୍ଡାରୁ ଯାଇ ଏଦ ରାଜା ସରଯୁଦେବଙ୍କ ପୁତ୍ରରେ ପାଠନା ଟିଟିଲାଗଡ଼ରୁ ଏଣି ବାମଣ୍ଡାରେ ଏହ୍ୱେବ ବସଇଥିବା ବଷସ୍ ମାଦଳାରେ ଏନୁସନ୍ଧେସ୍ । କଣ୍ଟାବୁଭର୍ଯ୍ୟା, ବେଲିପଦରରୁ ସୁନାବନ୍ଧ ସହିତ ଟିଟିଲାଗଡ଼କୁ ଯାଇଥିଲା । ସେ ସ୍ଥାରେ ସଦାଙ୍କ ପାଇଁ ଗ୍ରାମ ବସାଇଦେଲ । ମଣ୍ଡ ନିସ୍ତାସନ ପାଇଁ ହାଣ୍ଡିରେ ବାଣ୍ଡ ବନ୍ଧି ଦେଇନ୍ତି । ପରେ କଶୋର ରାଜା ଗ୍ରାମ ଓଡ଼ିଆର ସେବକ ବରନ୍ତି; ଏହା କମ୍ବଦନ୍ତୀ ।

ଭବ ମୁକ୍ତିଦାତା ଜ୍ୟୋତିର୍ମୟ ସେହୁ
(୧) ମୁକ୍ତେଶ୍ୱର ଏବେ ଯହିଁ ରାଜନ୍ତି
(୨) ହରିହରଙ୍କର ରଚିତ ଦେଉଳେ
ଉଡ଼ାଇ ଅଭୟ ବଇଜୟନ୍ତୀ ।
(୩) ଦାଡ଼ିଆ (୪) କୁମୁଟି (୫) ବାବ (୬) ଘମୁଣ୍ଡିଆ
ସୁରସ୍ରୋତ ବାଲୁଶଯ୍ୟାରେ ବହୁ
ଏକାଧାରେ ମିଶି ମୁକ୍ତେଶ୍ୱରୀ ନାମେ
ଦକ୍ଷିଣାଭିମୁଖେ ଯାଆନ୍ତି ଯହିଁ ।
ସେ ଦେବଙ୍କ ଦ୍ୱାର ବଳ-ବାହାଦୂର
ନାନାଜାତି ସେନା ସଙ୍ଗତେ ଘେନ
(୭) ବଲଣ୍ଡା (୮) ସରେଇ (୯) ଗୁଲୁକପାଲିରୁ
ଅଇଲେ ଉତ୍ସାହୀ ଭୂସ୍ୱାମି ଶ୍ରେଣୀ ।
ସୁପ୍ରସିଦ୍ଧ ଫାସି— ମାଳର ଭୈରବ
ପୀଠକୁ ଯେମାନେ ଶୁଦ୍ଧ ହୃଦୟେ
ଭକ୍ତିରେ ପୂଜନ୍ତି ସୁଗନ୍ଧିର ନୀର—
ଗର୍ଭେରେ ନଇଁତ ଦ୍ରୁମ ଆଳୟେ ।
ପୂର୍ବ ରାଜଭକ୍ତି ନିଦର୍ଶନ ପରି
ସବ ସମକ୍ଷେ ଯେ ଆନନ୍ଦସ୍ୱେଳେ
ମହା ସମ୍ମାନରେ ନବ ଅଭିଷେକେ
ଏ ଦେଶ ନୃପଙ୍କୁ ଧରନ୍ତି କୋଳେ ।

(୧) ସମନଙ୍କାସ ପ୍ରଗଣାସ୍ଥିତ ମୁକ୍ତେଶ୍ୱର ମହାଦେବଙ୍କର ଅବିର୍ଭାବ ପୂର୍ବେ ପ୍ରତିଦିନ ଗୋଟିଏ ପୟସ୍ୱିନୀ ଗାଈ ସ୍ୱେଚ୍ଛାରେ ଆସି ମୁକ୍ତେଶ୍ୱରଙ୍କ ଥିବା ସ୍ଥାନରେ ଠିଆ ହୁଏ, ପ୍ରତିଦିନ ମୁକ୍ତେଶ୍ୱରଙ୍କ ଶିରରେ ତାହାର ଦୁଗ୍ଧ ପତିତ ହେବା ପରେ ଗାଈ ଫେରିଯାଏ । ଗୋରକ୍ଷକ ଗାଈଠାରେ ଦୁଗ୍ଧ ନଥିବା ଦେଖି ଅନୁସନ୍ଧାନ କରି ଏହି ଘଟଣା ପ୍ରକାଶ କରିବାରୁ ଦେବଙ୍କର ଅବିର୍ଭାବ ହୋଇଥିବା କିମ୍ବଦନ୍ତୀ ।

(୨) ରାଜା ସାର ସୁଚଲଦେବଙ୍କ ଜନ୍ମଦାତା ହରିହର ଦେବ ବଡ଼କୁମାର ଏହି ଦେଉଳ ଏଠାରେ ତିଆର କରି ଦେଇଅଛନ୍ତି ।

(୩, ୪, ୫, ୬) ମୁକ୍ତେଶ୍ୱର ଦେଉଳର ପାଦଦେଶରେ ଏହି ଚାରି ଗିରିନଦୀ ପ୍ରବାହିତା ହେଉଥିବାରୁ ତଦନୁସାରେ ଏହାର ନାମ ମୁକ୍ତେଶ୍ୱରୀ ହୋଇଅଛି ।

(୭, ୮, ୯) ଏହିସବୁ ଜମିଦାରୀ ।

ଟେଁମେଣ୍ଟାପୁରର (୧) ଯୋଗ୍ୟ ବଂଶଧର
ପୁଣର (୨) ଢଡରବେଲ୍ଲ ନିବାସୀ
ଦମ୍ଭୀ ଦେବତାଏ ଉପଗତ ହେଲେ
ଯୁଝିବାକୁ ଯୁବ ବେଶ ସନ୍ୟାସୀ ।

ଯାହାଙ୍କ ଉଦ୍ଦେଶେ କଳାମେଣ୍ଢା ପାଠ
ପୁରଭ (୩) ଗୁଉଳଗଣ୍ଡା ନିବେଦ
ରାଜ ପୁଣ୍ଡଶ୍ୱାଏ ଦେଉଛନ୍ତି ମନ୍ତ୍ର
ଉଭୟ ଦ୍ରବ୍ୟର ମମତା ଛେଦ ।

ସନକ ବରଣା (୪) କନକ ଦୁର୍ଗାଙ୍କ
ଜ୍ୟୋତିର୍ମୟୀ ସେହି ପୂତ ପ୍ରତିମା
ଯହିଁ ଜନ୍ମ ପୁର— ଅଧିଷ୍ଠାତ୍ରୀରୂପେ
ରାଜନ୍ତି ପ୍ରକାଶି ମହାମହିମା ।

---

(୧) ବୃଦ୍ଧ ରେମେଣ୍ଟାପୁରର ଆଦି ବାସସ୍ଥାନ ଜୟପୁର । ଜୟପୁର ରାଜା ବଣନାଥ ଦେବଙ୍କ ସହିତ ଯେତେବେଳେ ବାମଣ୍ଡା ରାଜା ରୁଦ୍ରନାରାୟଣ ଦେବଙ୍କ ଯୁଦ୍ଧ ହୋଇଥିଲା, ସେତେବେଳେ ରେମେଣ୍ଟାପୁରର ସହାୟତାରେ ଜୟୀ ହୋଇ ରାଜ୍ୟାଧିକାର କରିଥିବାରୁ ତାଙ୍କୁ ଦେହୁରି ଉପାଧି ପ୍ରଦାନ କରିଥିଲେ ଓ ଜାଗିରି ପ୍ରଦାନ କରିଥିଲେ । ଏହି କାରଣରୁ ବାମଣ୍ଡା ରାଜାଙ୍କ ପ୍ରଥମ ରାଜ୍ୟାଭିଷେକ ସମୟରେ ରାଜ ଗାଦିରେ ଏହି ବଂଶୀୟ ଜମିଦାର ବସି ରାଜାଙ୍କୁ କୋଳରେ ଧରନ୍ତି ।

(୨) ରେମେଣ୍ଟାପୁରର ବଂଶଧରଙ୍କର ଜମିଦାରୀସ୍ଥ ନାମ "ଢଡରବେଲ୍ଲ ଓଡ଼ମର୍ଗା ।"

(୩) ଗୁଉଳଗଣ୍ଡା ଚମ୍ପାବର୍ଣ୍ଣ, ଶୈଳଜ ପ୍ରକୃତ ମିଷ୍ଟ ଅଙ୍ଗୁରଣ ବିଶେଷ । କଳା ପାଠପାଠି ଓ ଗୁଉଳଗଣ୍ଡା ଇଷ୍ଟଦେବୀ କନକଦୁର୍ଗାଙ୍କୁ ଦେଉଥିବାରୁ ଏହି ଉଭୟପଦାର୍ଥ ବାମଣ୍ଡା ରାଜଭବନରେ ବ୍ୟବହୃତ ହୁଏ ନାହିଁ ।

(୪) ହରିତାଳ । ଭେଡେନ ନଦୀଗର୍ଭରୁ କନକଦୁର୍ଗାଙ୍କ ପ୍ରତିମା ବାମଣ୍ଡା ରାଜା ରୁଦ୍ରନାରାୟଣ ଦେବଙ୍କ ସମୟରେ ପାଇଯାଇଥିଲା ତଦବଧି ଇଷ୍ଟଦେବତାରୂପେ ରାଜପ୍ରାସାଦ ସମ୍ମୁଖରେ ବସିଛନ୍ତି, ଆଶ୍ୱିନ ମାସରେ ଶାରଦୀୟ କାଳୀନ ପୂଜା ସମୟରେ ମୂଳାଷ୍ଟମୀ ଆରମ୍ଭରୁ ମହାନବମୀ ପର୍ଯ୍ୟନ୍ତ ପ୍ରତିଦିନ ଯଥାବିଧି ପୂଜା କରାଯାଇ ବଳିପ୍ରଦାନ କରା ହେଉଅଛି ।

ପ୍ରାତଃସ୍ମରଣୀୟ (୧)        ଶ୍ରୀ ସରଯୂ ଦେବ
ଏରାଜ୍ୟେ ପ୍ରବେଶି ଦେବାନନ୍ଦଙ୍କୁ
ପାଠଶାଳୁ ଆଣି        ତାଙ୍କ ନିଯୋଗରେ
ଖଞ୍ଜିଛନ୍ତି ଯେଉଁ ଜନପଦକୁ ।
ସଜଳଙ୍କ ମଞ୍ଜୁ—        ସୌରଭ-ଶ୍ୱାସିନୀ
ଖଞ୍ଜନ ନୟନା ଦ୍ୱିଜ ବାଳାଏ
ବେଦାଭ୍ୟାସ ବେଳେ        ବସନ୍ତି ଯହିଁ
ସଜୀବ ସାବନୀ ମନ୍ତ୍ର ପଦ୍ମଏ ।
ସେ କିସ ଶାସନ—        ଆଦିମ ନିବାସୀ
ଭୂୟାଁ ସୈନ୍ୟ ସଙ୍ଗେ ଖେଳ ଅଙ୍କାଂଦେ
(୨) କେଳପଦରରୁ        ଗୁଳିଲେ ଚପଟେଲେ
କଟିସ୍ତୁ କଣ୍ଟାରୁ ଭୂୟାଁ ଦାୟାଦେ ।
ବାସନ୍ତ ସମୟେ        ବାଳେନ୍ଦୁ କୋରକେ
ପାଠଳ ପଲାଶ ବଟିନ ଯାର
ଅସ୍ୱସଇ ଦୂରେ        ବନ ପାସ୍ୱାରେ
ବାଡ଼ବ ଅନଳ ଜ୍ୟୋତି ପ୍ରକାର ।
ପର୍ବତ ତାଳୁରେ        ପ୍ରାଚୀର ବେଷ୍ଟିତ
ସେ ଗୁଡୁସ ଦୁର୍ଗେ ନିଃଶଙ୍କ ମନେ
ରହୁଥିଲେ ଯେନ୍ତୁ        କୁଲ୍ଲୀସାହାଯ୍ୟରେ
(୩) ସଡ଼ୋ ଯୋରୁ ପାଣି ଝାଣି ଯତନେ ।
ପାଚିଲି ବାଉଁଶେ        ବୋଝ ତୋଲି କୁଲି
ଗୁନ୍ଥିବା ଯାହାଙ୍କ ମୂଳ ବ୍ୟବସା ।
ଆୟୁଧ ଫାଳସା        ସଙ୍ଗୀ ସାର ମେୟୁ
ବଟଦେ (୪) ରେଙ୍ଗାଲପାଠ ଭରସା ।

---

(୧) ଅବସ୍ଥା ସରଯୂଦେବ କୁଳ ପୁରୋହିତ ଦେବାନନ୍ଦ ମହାପାତ୍ରଙ୍କୁ ପାଠଶାଳୁ ପଣାଇ ଖିରସ୍ଥାମ ଦାନ କରିଥିଲେ ।

(୨) କେଳପଦର ଗ୍ରାମ କୋଠେଣ୍ଡା ପ୍ରଗଣାନ୍ତର୍ଗତ ।

(୩) ବେତାଳ ଦ୍ୱାର ପାଣି ଗୁଡୁସୁପଡ଼ା ଦୁର୍ଗକୁ ସତୋଯୋରରୁ ନୀତ ହେଉଥିଲା ।

(୪) ଗୁଡୁସପଡ଼ା ଦୁର୍ଗରେ ଅଧିଷ୍ଠିତ ଦେବତା । ଗୁଡୁସଦୁର୍ଗ ସୋନପୁର ନିକଟ ଉଚ୍ଚ ପର୍ବତରେ ସ୍ଥିତ ।

ସେ ଗୁହୁରିଦଳ ସବୁ ସଜ ହେଲେ
ନବିଶମାଳଆ ଠାକୁରମାନେ
ସ୍କନ୍ଧେ ରଜେ ନଳୀ ହସ୍ତରେ ଯାମୁକା
କଟୀରେ ଝୁଲଇ ଅସି (୧) ପିଧାନେ ।
ଠାକୁଆ ବନ୍ଧୁଳ ଠାକୁଆ ଖୋଲରୁ
ଗଡ଼ ଗଡ଼ ରଗଡ଼ଆ ପ୍ରାନ୍ତରେ
ଖାଡ଼ଆ (୨) ସେବତ (୩) ଦାଢ଼ିଆ ଝରଣ
ପ୍ରବାହିତ ହୁଏ ଯହିଁ ମନ୍ଦରେ ।
ଯହିଁ (୪) କାଣ୍ଡଣର ମୁହାଣେ ବଢ଼ନ୍ତେ
ଶରମୂଳେ ଅଭିଷେକ ଉତ୍ସବ
ବାମଣ୍ଡା ରାଜ୍ୟର ଆଦ୍ୟ ନରେଶଙ୍କ
ନାମ ପ୍ରକଟିଲା 'ସରଯୁଦେବ'
ସେଟ ସନ୍ଧତରେ ଚନ୍ଦନର (୫) ଟୀକା
ଲଲାଟ ଘଟରେ ହେବାରୁ ଚଢ଼ା
ଅଦ୍ୟାପି ସେ ନାମେ ପ୍ରକାଶ ପାଉଛି
ଲୋକମୁଖେ ଯେଉଁ ଟିକିଲିପଡ଼ା
ପୂର୍ବ ଦିଗାବଧି ଗୁରୁବୃନ୍ଦ ସେହୁ
ପ୍ରସିଦ୍ଧ ଟିକିଲିପଡ଼ାରୁ ଛାଡ ।
ଆକର୍ଣ୍ଣ ଦାରୁଣ ରଣ ସମାଚାର
ଉଦ୍ଭବେ ହେଲେ ଅସି ଧାଡ଼କୁ ଧାଡ ।
ଦକ୍ଷିଣେ ପାଠଲ (୬) ସିନ୍ଦୂରିଆ ପାଠ
ଉତ୍ତରେ ସଙ୍କୀର୍ଣ୍ଣ (୭) ଡଡ଼ଙ୍ଗା ଖୋଲ

(୧) ଖଣ୍ଡାର ଖୋଲ ।
(୨) ପ୍ରଥମ ଅଶ୍ୱାରୋହୀ ସେନାଣ ।
(୩) ଶିରବଗର ନାମ ଦାଢ଼ିଆ ।
(୪) ଏହି ସ୍ଥାନରେ କାଣ୍ଡଣର ବଟମୂଳେ ସରଯୁଦେବଙ୍କ ଅଭିଷେକ ହୋଇଥିବା ମାଦଳା ଅନୁସନ୍ଧେୟ ।
(୫) ସୁନାଙ୍କନର ବଂଶଧରମାନେ ପଗଡ ପରିବର୍ତ୍ତେ ରଜାଙ୍କ ଶିରର ସୁଅଲଇ ଚୁଡ଼ାଇ ଦେଉଥିଲେ । ସୁନାଙ୍କନ ପ୍ରଥମାଭିଷେକ ସମୟରେ ଟୀକା ଦେଇଥିଲେ ।
(୬) ସୁନାମ ପ୍ରସିଦ୍ଧ ପର୍ବତ ।
(୭) ବର୍ତ୍ତମାନ ଏହାର ନାମ ସିଉଡ ।

ପୂରୁବେ ଭ୍ରମର— କୂଟ ପଶ୍ଚିମରେ
 କଳାପାଠ ଅଦ ଗିରି ମଣ୍ଡଳ ।
ଚକ୍ରବାଳ ଡେଇଁ ଚକ୍ରକାରେ ଯାଉ
 ବେଢିଛନ୍ତି ନବାକୃତ ଶରୀର
ଦୁଃସହ ଗ୍ରୀଷ୍ମରେ ସୁଦ୍ଧା ବହୁଥାଏ
 ଯହିଁ ସୁଖସେବ୍ୟ ମନ୍ଦ ସମୀର ।
ଅସଂଖ୍ୟ କପୋତ ରୁଡେ଼ ମୁଖରିତ
 ପୁଟୋଦ୍ଭରେ ଯାଉ (୧) ପାରୁଆଖ୍ୱଡ
ତରୁଲତାଶୂନ୍ୟ ଦେହେ ଯେ ଧଅଇ
 ମାଣିକ୍ୟ ମଣ୍ଡପ କାନ୍ତି ଅଜାଡ଼ ।
ଗର୍ଜ୍ଜନ କରତ ଲୌହ ଇଞ୍ଜିନର
 ଅଟ୍ଟହାସ୍ୟ ପରି ଏବେ ଯେ ସ୍ଥାନେ
ଶରଦଭ୍ର ଶୁଭ୍ର କରତର ଗୁଣ୍ଡି
 ଜମିଛି ଅନ୍ଦ୍ରଭ ଶୈଳ ସମାନେ ।
ବଡ଼ିଅଁଲ ଝିଅ (୨) ଶୀରଡଆ ଶୂରେ
 ଦ୍ୟସ୍ତହେଲେ ତଆଁ ମାରି ଦଉଡ଼
ନଳୀ ଶବଦରେ ଗଳପଡ଼େ ଯାଙ୍କ
 ବପଷ ବାଳୀଙ୍କ (୩) ପ୍ରକୋଷ୍ଠ ଚୂଡ଼ି
ଭଡାଣିଆ ଖୋଲେ ଖର ପ୍ରବାହିନୀ
 ଖରଡ଼ା (୪) ନଦୀର ଗମ୍ଭୀର ଘୋଷ
ସଙ୍କଟନାଶନ (୫) ଶଙ୍କଟେଶ୍ବରଙ୍କ
 ଯହିଁ ଅବିରତ ଜନାଏ ତୋଷ ।
ପଡ଼ିଅଛି ଯହିଁ ମୁକସାକ୍ଷୀ ପରି
 ଲୋକଶୂନ୍ୟ ଦୂର୍ଗ ସ୍ତୂପ ସରବ

(୧) ସ୍ୱନାମ ପ୍ରସିଦ୍ଧ ପର୍ବତ । ଏଠାରେ ସଙ୍ଖ୍ୟ ବନ୍ୟ ପାରାବତ ଦେଖାଯାନ୍ତି ।
(୨) ଅଚଙ୍ଗଳ ଏଠାରେ ପ୍ରଚୁର ମିଳେ ।
(୩) ମଣିବନ୍ଧ ।
(୪) ବାମଣ୍ଡାଗଡରେ ପ୍ରବାହିତା ନଦୀ ।
(୫) ଏଠାରେ ମହାଦେବଙ୍କର ନାମ ।

ପ୍ରକାଶି ଦର୍ଶକ ନେତ୍ରେ ପୁରାତନ
ସମୃଦ୍ଧିସମ୍ପନ୍ନ ମହାଗୌରବ
ରାଜଦ୍ରୋହେପଟୁ (୧) ଘଣ୍ଟିଆଳ ଯୋଗେ
ସନ୍ଧାନତ ତୀକ୍ଷ୍ଣ ଏକ କାଣ୍ଡକେ
ନିମିଷକେ ଯାର ବିଭବ ବିକ୍ରମା
ବିଲୟ ଭଜିଲା ଏକାବେଳକେ ।
ପୁରାତ୍ୱେ ଯହିଁ ଏଯାଏ ସୁଦୃଢ଼
ନଗର ପୁରକେ, ଯେଉଁ ନଗରେ
ବାଙ୍କି ମହାବଳେ ପୂର୍ବେ ପେଷିଥିଲେ
ପଡିଲେ କରାଳ ଶତ୍ରୁ ହାବୋଡେ ।
ନଭଃସୀମା ଛେଦି (୨) ମହୀଧର ରାଜି
ରାଜିତ ବାମଣ୍ଡାଗଡ଼ ବରଜି
ଦେଶବୈରୀ ବଧେ ଉଗ୍ରାୟୁଧ ଯୋଷେ
କରେ କରବାଳ ଘେନ ଗରଜି ।
ଦୁମୁଦୁମ୍ (୩) ଘଟି ଉଠି ଅନାୟାସେ
ଧାଇଁଲେ ରଭସେ ଉଚ୍ଚାଟ ମନ
ଷଣ୍ଡମୁଣ୍ଡାକୃତ ଷଣ୍ଡଶିଳା ଲଙ୍ଘି
ବେଢ଼ାଖୋଲିଆଙ୍କୁ ଦେବାକୁ ରଣ ।
ନିର୍ଜନ ପଲ୍ଲୀରେ ଗ୍ରୀଷ୍ମକାଳେ ଯହିଁ
ଶୋଷରେ ଆତୁର ହୋଇ ଅମାପ
ଅହିରାଜ ମଣି— ଚୂଡ ଅଜଗର
ମହାନାଗ.ଶଙ୍ଖାପାଟିଆ ସାପ ।

---

(୧) ଘଣ୍ଟିଆଳ ନାମରେ ରାଜଦ୍ରୋହୀ ଜଣେ ରାଜା ରଘୁନାଥ ଦେବ ସିଂହାସନରେ ବସିଥିବା-ବେଳେ ଗୋଟିଏ ତିଅଳବାଣ ମାରିଥିଲା । ଉକ୍ତ ବାଣ ଦରବାର ଘରରେ ବାଜି ବିଦ୍ଧହେଲା । ସେହି ସମୟରୁ ବାମଣ୍ଡା ଗଡରୁ ରାଜଧାନୀ ଗୁରୁଡ଼ାସଙ୍ଗକୁ ଉଠି ଆସିଥିବା ମାଦଳା ଅନୁସନ୍ଧେୟ ।

(୨) ଗଗନାକାଶ ।

(୩) ଛୋଟ ଶୋଳରୁ ପୂର୍ବେ ଦୁମୁଦୁମି ଘଟି ଦେଉଥିଲା, ଏହିସମୟରେ ଷଣ୍ଡ ମୁଣ୍ଡା-କୃତ ପଥର ଅଛି ।

ଜଳପାନେ ଆସି ଗ୍ରହେ ସନ୍ତରନ୍ତି
ଯେ ମାନଙ୍କ ଫଣା ମଣି ମଣ୍ଡଳ
ଅନେକ ଫଳଦ ବନଷଣ୍ଡ ଚକ୍ଷୁ
ପଡ଼ଏ ଦୂରକୁ ଦଶେ ଉଜ୍ଜ୍ୱଳ ।
(୧) ସେ ଓଷାକୋଠୀର ଓଷାର ଡାକରେ
କଂସଧନୁ ଯାହା ଅନୁକରଣେ
ଅନୁକ୍ଷଣେ ଧନୁ— କୋଇଲ କୌତୁକ
ରଚନ୍ତି ଯେମାନେ ଆନନ୍ଦ ମନେ ।
(୨) କୋରଡେ ମୃତ୍ତିକା ଠାଣି ଖୋଳନ୍ତି ଯେ
ତାର ଆସ୍ତରଣେ ଦୀର୍ଘ କାନ୍ତାର
ଊର୍ମିମାଳ ଗଙ୍ଗେ କଳସ୍ତ (୩) କୂର୍ମିଏ
ଧାଇଁଲେ ଶଲଭ ପନ୍ତି ପ୍ରକାର ।
ବହଳ କାଚକ କୁଞ୍ଜ ସୁଗନ୍ଧର
ଛାୟା ମେଚକରେ ଶିଳା ଶେଯରେ
(୪) ବଡ଼ଝରଣର ନୀର ସ୍ରୋତ ଯନ୍ତ୍ର
ଗଡ଼ ପଡ଼ୁଥାଏ କଳନାଦରେ ।
ସେ ବିଜନ ତଟ ବନଭୂମିଗୃହୀ
ବଳସ୍ତ ଗବୟ ମୃଗୟାପ୍ରିୟ
ମିଳିଲେ ଦୁର୍ଗରେ ବଳୀ ବଳଯୁତ
ହସ୍ତୀଷଣ୍ଡ ପ୍ରିୟ କାନ୍ତ ନଚୟ ।

(୧) ସ୍ୱନାମ ପ୍ରସିଦ୍ଧ ପର୍ବତ, ଏହା ପ୍ରସ୍ତୁଣି ଗମାର ଗ୍ରାମର ଉତ୍ତରରେ ଅବସ୍ଥିତ, ଅଣିବ ମାସରେ ସାଧାରଣ ଶ୍ରେଣୀର ଲୋକେ ପୂଜାପୀଠରେ ସନ୍ଧ୍ୟାରେ ଦେବତାମାନଙ୍କର ପୂଜା କରି ନାନାପ୍ରକାର ଗୀତ ଗାଆନ୍ତି । ମନୁଷ୍ୟମାନେ ଉପବାସ କରି ରହିଥାନ୍ତି । ପୂଜା ସମୟରେ ଦେବତା ସ୍ୱର ଉଲ୍ଲାସରେ ନାଚି ଗାଆନ୍ତି । ଗାୟକ ଗୋଟିଏ ହାଣ୍ଡି ଉପରେ ଗୋଟିଏ କୁଲା ଢାଙ୍କି ଦେଇ ତାର ଉପରେ ଧନୁଟିଏ ରଖି ଝୁମ୍ପା ଲଗା ବେତବାଡ଼ ପକ୍ଷି ୨ ଦେବତା ଆଗମନ ସୂଚକ ଗୀତ ଗାୟକ କରନ୍ତି ।
(୨) ମାଟିଖଣା ଯନ୍ତ୍ରବିଶେଷ ।
(୩) କୁର୍ମି ଅନାର୍ଯ୍ୟ ଜାତି ଏମାନେ ନିଜ ଖୋଦିତ ଜଳାଶୟରୁ ପାଣି ବ୍ୟବହାର କରନ୍ତି ।
(୪) ବଡ଼ଝରଣା କମନଘାଟ ପର୍ବତରେ ପ୍ରବାହିତ ହେଉଅଛି ।

ଅର୍ଦ୍ଧେନ୍ଦୁ ଲଲାଟେ ଦିଶେ ଜଳଜଳ
ପୂର୍ଣ୍ଣେନ୍ଦୁ ପରାଏ ଗୋଲ ପୃଥୁଳ
ନବୀନ କାଞ୍ଚନ କୋରକର କାନ୍ତି
ଉଜ୍ଜ୍ୱଳ ସିନ୍ଦୂର ବିନ୍ଦୁ ମଞ୍ଜୁଳ ।
ଅଭୟବରଦା (୧) ଖରଦାଗଡ଼ାର
ମେରିଆ ଶୋଣିତେ ସଦା ରଞ୍ଜିତ
ତଲବାରେ ଶୋଭେ ଯାʼଙ୍କ ଦୃପ୍ତଭୁଜେ
ଭୁଜଙ୍ଗମ ଲୋଳ ରସନାବୃତ ।
ଚିକିଟିନଗର ମାତୃଅଙ୍କେ ପଶି
ଦଉଡ଼ାଇ ଦଉଡ଼ାଇ ଖରରେ
ଥକାଇ ପଶୁକୁ ନାଶି କୁଠାରେ ଯେ
କ୍ଷୁଧା ବାରନ୍ତି ତା ଶୁଷ୍କ ଶିକାରେ ।
ରିପୁ ଦଣ୍ଡଦାତା ଚଣ୍ଡ ଗଣ୍ଡକୁଳ
ରୁଣ୍ଡ ହେବେ ଆସି ସିଂହଦ୍ୱାରରେ
ଗଣ୍ଡଶୈଳ ଶୋଭି ଏରଣ୍ଡ ବଣିଆ
କଂସର ପ୍ରଗଣା ଉପେକ୍ଷି ଖରେ ।
ଅସୁର ପରାଏ ପ୍ରଚୁର ଆହ୍ୱାସି
ସଦର୍ପେ ଆକର୍ଷି ଖର ପରଶୁ
ଲଣ୍ଡାତରୁଯୁକ୍ତ (୨) ମଣ୍ଡାପୁଣି ଶୈଳେ
ଧାଇଁ ଧାଇଁ ଯେହ୍ନେ ବଧନ୍ତି ପଶୁ ।
ଦଗ୍ଧ ବାଉଁଶର ପାଉଁଶ ସଲିଳେ
ଉର୍ବର କ୍ଷେତ୍ରରେ କର୍ଷଣରତ
ବୀରତ୍ୱ ଲକ୍ଷ୍ମୀଆ ଯେତେ (୩) ଝମ୍ପୁରିଆ
ଠାକୁରେ ଅତ୍ୟନ୍ତ ବିଭବବନ୍ତ

(୧) କଂସର ପ୍ରଗଣାସ୍ଥ ପାଙ୍କଶ୍ୱ ବନମାଳଙ୍କର ଅଧିଷ୍ଠାତ୍ରୀ ଦେବତା । ଏଠାରେ ବାବା-ପ୍ରକାର ବଳି ଦିଆ ହେଉଥିଲା । ଏଠାରେ ତୁଳସୀଗୋଟି ସ୍ତୂପ ଅଛି । ବନମାଳେ ବଳସ୍ୱ ସର ଲଡାଜୋର ପିକନ୍ତି ।
(୨) ଝମ୍ପୁର ନିକଟସ୍ଥ ପର୍ବତ । ଝମ୍ପୁର ଗ୍ରାମରେ ପୂର୍ବେ ଠାକୁର ଜମିଦାର ଥିଲେ ।
(୩) ସ୍ୱନାମ ଖ୍ୟାତ ଗ୍ରାମ ।

ନବଢ଼ ତଡ଼ାଗେ ବେଢ଼ା ଦୁର୍ଗବାସ୍ପ
ଗଡ଼୍ଥିଙ୍କୁ ଆଶ୍ରୁ ଢେନ ଗହ୍ୱଣେ
ଛଡ଼ ନ ଥିଲେତ ସମ୍ମୁଖାହେ ଧାଇଁ
ମିଳିବାକୁ ଏହୁ ମହାମିଳନେ ।
ତମାଳ ବରଣ (୧) ଦଣ୍ଡାଶୈଳ ଯହିଁ
ପ୍ରାଚୀର ପରାଏ ଆଗରେ ଉଭା
ଗୃଧ୍ରନୀ, ସାଲେଖା, ଶିଶୁ, କେନ୍ଦୁ, ସାଇ
ମହୀରୁହେ ମଣ୍ଡି ଉନ୍ନତ ଗଭା ।
(୨) ହୁଲଙ୍ଗ ପ୍ରଭବା ଅରଡ଼ ତଟିନୀ
ଦଉଡ଼ ଦଉଡ଼ ଢଗୁଡ଼ ହୋଇ
ପଛକୁ ଲେଉଟି ରହୁ ରହୁ ଯହିଁ
ଦକ୍ଷିଣାଭିମୁଖେ ଯାଉଛି ବହି ।
ମାହେଶ୍ୱରୀ ଦେବୀ ପ୍ରସାଦେ ଦୁର୍ବାର
ପ୍ରାଂଶୁ କଳେବର ବଳ ଗର୍ବିତ
କୁମାଳ ସନ୍ନିଧି (୩) ଡୁମାଳ ପାଇକେ
ଧାଇଁଲେ ଶାମୁକେ କର ଅଙ୍କିତ-
ଖୋଳ, ଅନୁଗୋଳ ବାମଣ୍ଡା ରାଜ୍ୟରୁ
ସଦେଶେ ପ୍ରେରିତ କାଠ ଭେଳାରେ
ଅଟକି ଅଟକି (୪) ଟିକିରା ବହଇ
ଯହିଁ ଫଳ ଫୁଲ ପତ୍ର ସମ୍ଭାରେ ।
ପାଣ୍ଡବ ଗୁମ୍ଫାର (୫) କେଳିକଳା ପ୍ରିୟା
ବନ ଦୁର୍ଗାଙ୍କର ଘୋର କୁଟିରେ
ମର୍କଟ ସେବିତ (୬) କଠାଣର ଘାଟି
ବିକଟ ସଙ୍କଟମୟ ବାଟରେ ।

(୧) ସ୍ୱନାମ ପ୍ରସିଦ୍ଧ ପର୍ବତ ।
(୨) କୁମାଳ ଗ୍ରାମର ଅଧିଷ୍ଠାତ୍ରୀ ଦେବୀ ।
(୩) ଡୁମାଳ — ଜାତିବିଶେଷ ।
(୪) ଟିକିରା ସ୍ୱନାମଖ୍ୟାତ ନଦୀ ।
(୫) ଅହିଁଲି ପ୍ରଗଣାସ୍ଥ ଉଚ୍ଚ ପର୍ବତ ।
(୬) ପାର୍ବତ୍ୟ ସଙ୍କଟାପନ୍ନ ସ୍ଥାନ । ଏଠାରେ ରାଜପଥ ନ ଥିଲା କେବଳ ପାଦବାଟ ଥିଲା ।

ସଦା ପରରାଜ୍ୟ ଆକ୍ରମଣକାରୀ
ଅନ୍ତୁଗୋଲିଆଙ୍କ ସହିତେ ଲଢ଼ି
ଏ ସ୍ଥାନକୁ ଛାଡ଼ି ନ ଦେଲେ ଯେମାନେ
ସ୍ୱାଧୀନତେ ଦମି ଦଅନ୍ତି ତଡ଼ି ।
ପଣସ ବନରେ ବିମଣ୍ଡିତ ସେହି
(୧) କୁଣ୍ଡେଇଗୋଲିଆ ପାଇକ ନାହା
ଶୁଣ ପିଲାମାନେ ! ହୋଇଥିଲେ ଆସି
ଏ ଘୋର ଯୁଦ୍ଧରେ ଆନନ୍ଦେ ସାହା
ମଣ୍ଡିତ ହୋଇଛି ଯାହାର ବିଶାଳ
ବପ୍ରହ ଅସଂଖ୍ୟ ଶିଳା ଗୁମ୍ଫାରେ
ଲୁଚିଛନ୍ତି ଆଣି ସଚ୍ଛନ୍ଦେ ଏବେ ଯେ
ଅନ୍ଧକାର ଯାକ ସେହି ଗୁହାରେ ।
ତମପ୍ରିୟ ଚମ— ଚଟା ନିଚୟକୁ
ନିମନ୍ତି ତହିଁ ଯେ ଦେଇଛି ବସା
ଜାଗି ଉଠୁଥାଏ ପ୍ରତିଧ୍ୱନି ଯହିଁ
ସ୍ୱଳ୍ପ ଶବ୍ଦେ ହେଲେ ପର ବଚସା ।
ସ୍ୱତେ ମାଡ଼ ମାଡ଼ ରକ୍ତପଦ ଯୁକ୍ତ
ଲୌହ କାମକାରୀ ବୋଧୀ କମାରେ
(୨) ଉଆସ ଖୋଲରୁ ଆସି ଯୋଗଦେଲେ
ଜଣ ଆଉଁଷି ସେ ଦେଶ ସେବାରେ ।
ଯୋଜନ ବିସ୍ତାର ତେଣା ଦେନ ସ୍ଥଳ
ଉଡୁଥିବା ବେଳେ ଉଚ୍ଚେ ଗଗନେ
ବୋଧ କରଜର ଦେବ ରାଜଙ୍କର
ଗମ୍ଭୀର ନିନାଦୀ ବଜ୍ର ତାଡ଼ନେ ।

---

(୧) ଗ୍ରାମ ବିଶେଷ ।

(୨) ପଞ୍ଚିଲି ପ୍ରଗଣାର ବାଣ୍ଡିଅମ୍ବ ଗ୍ରାମ ପାଖରେ ସଣୀ ଉଆସ ଶୋଳ ଅଛି । ପର୍ବତର ଭିତର ଶୋଲା ହୋଇ ଅନେକ ଦୂରଯାଏ ଘରପରି ଭଣ୍ଡାର ହୋଇଅଛି । ଏହା ଭିତରେ ଦୁଇଗୋଟି କୂପ ଅଛି ଭିତରକୁ ସୂର୍ଯ୍ୟାଲୋକ ଯିବାକୁ ପର୍ବତଗାତ୍ର ଭେଦ ବସ ହୋଇ ଜଳାବବାହି ଭଣ୍ଡାର ହୋଇଅଛି । ସମ୍ଭବତଃ ବହୁପୂର୍ବେ ବାମଣ୍ଡାର କୌଣସି ରଜା ଏହା ଭଣ୍ଡାର କରାଇ ଥିଲେ ।

ଛିନ୍ନପକ୍ଷ ହୋଇ        ପୂର୍ବ ପ୍ରବାହଙ୍କ
ବ୍ରାହ୍ମୀ ନଦୀ ଖରଗତି ନିବାରି
ବାମଣ୍ଡା ଲହଡ଼ା        ତାଳଚେର ରାଜ୍ୟ
(୧) ନିସୀମାର ମଧ୍ୟସ୍ଥାନ ଆବୋରି
ଫଣୀ-ମଣିଦୀପ୍ତ        (୨) ମାଛଖଣି ଗିରି
ପଡ଼ିଲା ଯେ କାଳେ ଆକାଶୁଁ ଛାଡ଼ି
ମହା ବେଗ ବଶେ        ଉଦ୍ଭିଦ ପଂକ୍ତିକୁ
ନିଜ ଅଭିମୁଖେ ପ୍ରବଳେ ଭିଡ଼ି ।
ମହୋନ୍ନତ ଶୃଙ୍ଗ        ଗଗନକୁ ଠେକି
ଥରାଇ ସଂସାର ଘୋର ଘୋଷରେ
ଅତଳ ଭୂଗର୍ଭେ        ସୃଷ୍ଟି ମୀନ ନକ୍ର
କଚ୍ଛପାଦି ଯେତେ ସଲିଳଚରେ ।
ଉତ୍କ୍ଷିପ୍ତ ପ୍ରସ୍ତର        ଘାତ ପ୍ରତିଘାତେ
ଚକିତି ଏକାନେ ମଣ୍ଡଳବତ
ପ୍ରାଣୀମାନଙ୍କର        ପିଲହା ମସ୍ତିଷ୍କ
ଭୁଷୀ ମେଦ ମଜ୍ଜା ଯକୃତ ରକ୍ତ ।
ସୁଗମ୍ଭୀର ନାଦେ        କମ୍ପାଇ ଭୂଖଣ୍ଡ
କ୍ଷିତିପ୍ରଦ ଭୀମ ଭୂକମ୍ପ ପରି
ପଡ଼ିଲା ଯେବେଟି        ଦକ୍ଷସ୍ଥାନ ବ୍ୟାପି
ବାଳକେ ! ସେ ମାଛଖଣି ଶିଖରୀ ।
ସହସା ସମ୍ମୁଖେ        ଗୁରୁବାଧା ପାଇ
ବ୍ରାହ୍ମୀର ଫେନିଲ ଚଞ୍ଚଳ ସ୍ରୋତ
ପଛକୁ ଲେଉଟି        ଦୁଟି ଦୁଟି ବେଗେ
ଘୁରିଲା ମଣ୍ଡଳାକାରେ ସତତ ।
ଅତରେ ଜନ୍ମାଇ        ହ୍ରଦେ ଠାବେ ଠାବେ
ଚକ୍ରବାତ୍ୟା ପରି ଭୀମ ଭଉଁରୀ
ଜଳେ ଲୁପ୍ତମାନ        ପଦାର୍ଥ ନିକରେ
ତାହାର ଗର୍ଭର ଗହ୍ୱର ପୁରି ।

(୧) ବାମଣ୍ଡା, ତାଳଚେର, ପାଲ-ଲହଡ଼ା ସ୍ୱଜଂଶସ୍ଥର ସୀମା ସଂଯୁକ୍ତ ସ୍ଥାନ ।
(୨) ସ୍ୱନାମ ପ୍ରସିଦ୍ଧ ପର୍ବତ । ଏଠାରେ ବହୁତ ବଶାକ୍ତ ସର୍ପ ଦେଖାଯାନ୍ତି ।

ବୃକ୍ଷ ଉଜାଣି          ଖଳ ଖଳ ପାଣି
(୧) ଖଜୁରିଆ (୨) ପୋଡ଼ପାଠ ମୁଖରେ
ଫୁଲି ଫୁଲି କ୍ରମେ          ମତ୍ତାହ୍ଲାଦସମ
ନାଚନ୍ତି ସେ ଜଳ ଭ୍ରମ ଭଙ୍ଗୀରେ ।
ଯେ ଶିଳା ଚରଣ          ଚୁମ୍ବି ବହୁଥିଲା
କ୍ଷଣକେ ତା ଶିରେ ଥୋଇଲା ପାଦ
ସ୍ଖଳିତ ପାଷାଣ          ଶବଦ ଶୁଭିଲା
ଯେସନ ଗମ୍ଭୀର ମୃଦଙ୍ଗ ନାଦ ।
ବାଲିସ୍ତୂପ ସ୍ଥିତ          ବେତସର ଚୂଳ
ଧିକାରିଲା ନବ ଚନ୍ଦ୍ର ପୁଚ୍ଛକୁ
ନବ ପଲ୍ଲବିତ          ବାଉଁଶର ଅଗ୍ର
ବରିଲା ସଲିଳ ହସ୍ତୀ ହସ୍ତକୁ ।
ନୀର ନିମଜ୍ଜିତ          ଅସିତ ବରଣ
(୩) ଗଣ୍ଡ ଶଇଳର ମସୃଣ ତାଳୁ
ଦେଖି ମନେ ହେଲା          ପହଁରି ପହଁରି
ଲଡ଼ୁଥିଲା ପରି ଅସଂଖ୍ୟ ଭାଲୁ ।
ତୁଙ୍ଗ ତଟ ସୀମା          ଅତିକ୍ରମି ଜଳ
ସମତଳ ଭୂମିପୃଷ୍ଠେ ଆକୁଳେ
ଫେନପୁଞ୍ଜେ ରଞ୍ଜି          ବ୍ୟାପିଲା କ୍ଷଣକେ
ଗଳି ଗଳି ପ୍ରାଂଶୁ ଶିମୁଳି ମୂଳେ ।
ଉଚ୍ଚ ତରୁବର—          ଶାଖା ନିଡ଼ଶାୟୀ
ବିହଙ୍ଗ ଶାବକମାନଙ୍କୁ ବଳେ
ଘୋ ଘୋ ରବ ଛଳେ          ଉପହାର ଦେଇ
ତଟିନୀର ଜଳଜୀବ କବଳେ ।
ଭସାଇ କେଦାର          ଗୋଶାଳା ; ସଦନ
ମଜ୍ଜାଇ ପ୍ରାଣୀଙ୍କୁ ଦୁଃସହ ଦୁଃଖେ

(୧) ବୈତୁଳ ଗ୍ରାମ ନିକଟ ପ୍ରବାହିତା ବ୍ରାହ୍ମୀ ଉପନଦୀ ।
(୨) ବ୍ରାହ୍ମୀର ଉପନଦୀ, ବେତୁଳ ଓ ଗୌଣୁପ ମଧ୍ୟସ୍ଥାନରେ ପ୍ରବାହିତା ହେଉଅଛି ।
(୩) ୟବାମ ପ୍ରସିଦ୍ଧ ପର୍ବତ ।

କଟକ ସହରକ ୧ ଏବେ ଯହିଁ ଗ୍ରଜେ
ବହ୍ନିର ସ୍ରୋତ ସେ ଦକ୍ଷିଣ ମୁଖେ ।
ନାହୁ ନାହୁ ଡାକ ସାଧୁସେ ସେକାଳେ
ଦୁଃଖାର୍ତ୍ତ ମାନବେ ପ୍ରାଣ ବଞ୍ଚଲେ
ଆଜିରେ ଶରଣ ପଶି ଜଣାଇଲେ
ଖରମୀପାଠଙ୍କ ୨ ଚରଣ ତଳେ ।

ନରନାରୀଙ୍କର ଆରତ ଚିତ୍କାର
ଆକର୍ଣ୍ଣି କରୁଣାମୟୀ କମିଷେ
ସଂଙ୍କଟ ଛେଦିବା ଲାଗି ସଜହେଲେ
ରଣ ଉନ୍ମାଦିନୀ ଭୈରବୀ ବେଶେ ।

ଅସ୍ଫୁଟ ନବାର୍କ ମଣ୍ଡଳରୁ ବଳ
ଦ୍ୟୁତିଶାଳୀ ଶ୍ୟାମ ଭାସ୍ୱର ଅସି
ବରଭୁଜେ ଧରି ସୁଦୃଢ଼େ ଶଙ୍କସ୍ରୀ
ଅଧରୋଷ୍ଠ ଦଂଶି ସରୋଷେ ଭଷି ।

ପ୍ରଭଞ୍ଜନ ବେଗେ ମାଛଖଣି ଦଗେ
ଦଉଡ଼ି ପ୍ରଚଣ୍ଡ ଖଡଗ ଶ୍ଲେଟେ
ଘୋର ହୁଁହୁଙ୍କାରେ କାଟିଲେ ଦ୍ୱିଫାଳେ
ଚିତ୍ରାଦ୍ରି ସ୍କନ୍ଧରୁ ମହାଦପଟେ । *

ଯେ ଦନ୍ତ କର୍ତ୍ତିତ ରନ୍ଧ୍ର ମଧ୍ୟେ ପଶି
ସଙ୍କୋଚ ନଜର ବପୁ ବିଶାଳ
ଜୁଆଳଭଞ୍ଜାରୁ ରେଙ୍ଗାଳି ପର୍ଯ୍ୟନ୍ତ
ବ୍ରାହ୍ମୀର ଉଦ୍ବେଳ ସ୍ଲେଳ ୩ କାଜଳ ।

ଅନ୍ତକପ୍ଲୋ ଆପ୍ଲେ ଶିଳେ ଛେଚି ହୋଇ
ମହାରତ ଘୁଡ଼ ଘୁଡ଼ ଆଗଡେ

(୧) ବାମଣ୍ଡାରୁ ଭାଲଟେର ଖଇବ ଯିବା ସଡକ ।
(୨) * ନୈବୁଲ ଷାମର ଅଧିଷ୍ଠାତ୍ରୀ ଦେବୀ ।
(୩) ଝାଲଲ—ଜଳ ।
● ଦପଟ—ଦେଶଜଣଙ୍କ ଜୋର, ବଳ,

ଅସଂଖ୍ୟ ପ୍ରପାତ ସୃଜି ଅବିରତ
ଢେଙ୍କାନାଳ ୧ ଘାଟି କନ୍ଦରପଥେ ।

ଅବର୍ତ୍ତି ଘଗର ବୃକ୍ଷମାନ ତରୁ
ତୃଣ ଲତା ଗୁଳ୍ମ ପତ୍ର ସମ୍ଭାର
ଧାଏଁ ଅହରହ ନବ ମାରକନ୍ଦ
ଖର୍ପଣ ନର୍ଘୋଷେ ପୁଣ୍ୟ କାନ୍ତାର ।

ଉଦ୍‌ବେଳତ, କ୍ରୁଦ୍ଧ ନର୍ତ୍ତିତ ମନ୍ଥିତ
ଆଲୋଡ଼ିତ ସ୍ଫୀତ କମ୍ପିତ ନତ
ସେ ଭୂମୂଳ ଭୃଙ୍ଗ— ତରଙ୍ଗ ନର୍ତ୍ତନ
ରଙ୍ଗରସ ଅନୁଗାମୀ ସତତ ।

ଗତଶୀଳ ବେଗ, ଖଳୁତ, କୁମ୍ଭୀର
ଶିଶୁମାନେ ଲକ୍ଷି ଅନବରତ
ଚଳ ଲକ୍ଷ୍ୟ ଭେଦୀ ମୃଗୟାରେ ଦକ୍ଷ
କ୍ଷୁଏ ଯା ସାଯୁକ ସନ୍ଧାଣବ୍ରତ ।

ସେ ନଈକୂଳଅ ୨ କାଉଁରୀ ମାଳଅ
ଖାଇକ ନାୟକ ସଙ୍ଗତେ ସେନ
ଅସିଲେ ଉଲ୍ଲାସେ ଦତ୍ତ ବଂଶଧର
ଉତ୍ସାହ ଜଗିଆ ଭଗିଆ ବେଜ ।

କାଳୁଥିଲା ତାଙ୍କ କୃଷ କଣ୍ଠୀତଟେ
ଘନ ଘନ ଘଣ୍ଟି ଘାଗୁଡ଼ି ମାଳ
ଶୋଭୁଥିଲା ଶୁଭ୍ର— ବକପକ୍ଷେ ବାନ୍ଧୁ
ସୁନ୍ଦର ସିନ୍ଦୂର କଲରେ ଜ୍ୱଳ ।

ଅଗମ୍ୟ କାହ୍ନଣା— ଖୋଳ ୩ କାଟେ ଜଗି
ଯେ ମାନେ ଗୁପତେ ଦିବସ ଶେଷେ

(୧) ବାମଣ୍ଡା ତାଳଚେର ସଙ୍ଗେ କକଟବର୍ତ୍ତୀ ବାମଣ୍ଡାସ୍ଥ କାହ୍ନାନଦୀର ଘାଟି ।
(୨) ଦେବଗଡ଼ ପୂର୍ବେ ରାଜଧାନୀ ଥିଲା । ଏଠାରେ ଅଦ୍ୟାପି ଅନେକ ପାଇକ ଅଛନ୍ତି ।
ପାଇକମାନଙ୍କ ସର୍ଦ୍ଦାର ଭଞ୍ଜବାୟକ ଏଠାରେ ଅବସ୍ଥାନ କରନ୍ତି ।
(୩) ସଙ୍କଟାପନ୍ନ ପର୍ବତ ଖୋଳ ।

ସମ୍ପତ୍ତି ଲୁଣ୍ଠନ— ପଠୁ ଦସ୍ୟୁଦଳେ
ନଦଥନ୍ତି ଆସିବାକୁ ଏ ଦେଶେ
ଚକ୍ରଟେ ହାବୋଡ ଯୁବସ୍ପୃହା ଖଣ୍ଡି
ଗଣ୍ଡିରୁ ଛଟକେ ମୁଣ୍ଡ ଛିଣ୍ଡାଇ
ନରୁଦ୍‌ବେଗେ ସେଥୁ ରହନ୍ତି, ତାହାଙ୍କ
କୃତାନ୍ତ ପାଞ୍ଜିରୁ ନାମ ଲିଭାଇ ।
ସ୍ୱଯଶ ସହିତ ବାତେ ଉଡେ ଯାଙ୍କ
ଲଙ୍ଗଳ ଲଞ୍ଛିତ ମଞ୍ଜୁଳ ଧ୍ୱଜ
ସ୍କନ୍ଧେ ବାଘଛାଲ ଉତ୍ତରୀୟ ସଜେ
ଶିରେ ଶିଖୀପୁଚ୍ଛ ଚନ୍ଦ୍ରିକା ବ୍ରଜ ।
ପଳାନ୍ନ ୧ ବନୋଦ୍ଧି ଫାଳସା ଭରସା
ସେ ପଳସମ୍ପିଆ ପାଇକଆଳୀ
ଗୃହରେ ଅଳସେ ନରହିଲେ ଢିଳେ
ସ୍ୱଦେଶର ଏହି ଦୁର୍ଦ୍ଦଶା ଭୁଲି ।
ଯେ ମାନେ ଲଙ୍ଗଳେ ଫାଳଫାଳ କରି
ଉର୍ବର ମୃତ୍ତିକା ବ୍ରାହ୍ମୀ ନଦୀର
ଭୂମୀକର ପ୍ରଭୁ ସୋରିଷ କୁସୁମେ
ଭରନ୍ତି ତଟିନୀ ଉଭୟ ତୀର ।
ଦୁଇପାର୍ଶ୍ୱେ ପୀତ ଉଜ୍ଜ୍ୱଳ ପ୍ରାନ୍ତର
ମଧ୍ୟେ ଶିଳାଶାୟୀ ଯା ଜଳ ବେଣୀ
ଦେଖି ମନେ ଜନ୍ମେ ବସନ୍ତୀ ଚରମେ
ବିଶ୍ଳେଷିତ କୃଷ୍ଣ କୁନ୍ତଳ ଶ୍ରେଣୀ ।
ଅସଂଖ୍ୟ ଲଦନ ବଳଦେ ଆଣି ଯେ
ଲୁଣ, ଜୀରା, ହିଙ୍ଗୁ, ମରିଚ ରାଶି
ତାହା ବଦଳରେ ଏ ଦେଶୁଁ ନଅନ୍ତି
ମୁଗ ବ୍ରୀହି ଜଡା ଗୁଞ୍ଜଲ ରାଶି ।
ସାରମେୟ ସହ ବଣବୀର ୨ ଶୈଳେ
ଦଉଡ଼ ଶୂକର ଶିକାରେ ମାଣ୍ଡି

(୧) ପଳ—ମାଂସ, ଅନ୍ନ—ଭାତ ।
(୨) ବୀରାମ୍‌ଶିବ ପର୍ବତ ।

ଯେମାନେ ବହୁଳ    ପୃଥୁଳ ତନୁରୁ
    ଶ୍ରମ ସହିବାକୁ ନନ୍ତ ଶିଖାନ୍ତି ।
ଯାଙ୍କ ଖଣ୍ଡାଧାରେ    ୧ ହାତୀଅ ଦଣ୍ଡାରେ
    ଦଣ୍ଡା ହୋଇ ଜଡ ଋଷିପ୍ର ଭେଣ୍ଡା
ମଣ୍ଡାପରେ ମୁଣ୍ଡ    ସମରେ ଗଡାଇ
    ଶୁଅନ୍ତି ଯେମନ୍ତ ମେରଅ ମେଣ୍ଢା ।
ଉଚ ଚଷାଳଅ    ସେ ବନ୍ଧପୁରଅ
    ତୁରୀଏ ଡିଲେ ନୋହୁ ହାଲିଅ
ନୋଳିଅଙ୍କ ସହ    ଅସିଲେ ଉଲ୍ଲାସେ
    ଡେଇଁ ନଦୀ ଖଣ୍ଡି ଧୂଡା ଗାଡଅ ।
ଅଭ୍ର ୨ ବିମଣ୍ଡିତ    ଯାକର୍ଷିତ ସ୍ରୋତ
    ଦଶେ ରମଣୀୟ ରଜନୀ କାଳେ
ବିଶାଳ ବିଗ୍ରହ    ଭରନ୍ତି ଯାହାର
    ଝିଲ, ଗ୍ରମଣ୍ଡଳା ତଇଲାମାନେ ।
ପ୍ରଖର ଗାମିନୀ    କଲ୍ଲ ନଦୀ ବେଗ
    ନ ସହି ବ୍ରାହ୍ମଣୀ ଦ୍ୱିଖଣ୍ଡେ ବହି
ବଡ଼କୁଦ ନାମେ    ଶାଳବନାକୀର୍ଣ୍ଣ
    ଏକ ରମ୍ୟ ଦ୍ୱୀପ ସୃଜିଛି ଯହିଁ ।
ସେ ଦ୍ୱୀପ ସନ୍ଥାଳି    କର୍କଶ ଶରୀର
    ଠାକୁର ନାଗର କୁଲସରଅ ୩
ବାହାର, କେଶରୀ    ଗଜ ଗର୍ଜେ ଯଥା
    ସିଂହଦ୍ୱାରେ ତଥା ହୋଇଲେ ଠିଆ ।
ଚମ୍ପକ, କେଶର,    କଦଳୀ, ପଣସ
    ରସାଳ, ଶ୍ରୀଫଳ, କପିଥ୍ୟ, ଠେଙ୍ଗ

(୧) ହାତଅଦଣ୍ଡା ଗ୍ରାମ ନିକଟସ୍ଥ ପୋଡାଗଡରେ ବହୁପୂର୍ବେ ଜଡ ଉପାଧ୍ୟାୟ ଋଷିମାନେ ସ୍ନାନ କରୁଥିଲେ । କୁଅଳିଝଣ୍ଟା ଗ୍ରାମରୁ ହାତଅଦଣ୍ଡା ପର୍ଯ୍ୟନ୍ତ ବ୍ରାହ୍ମୀ ନଦୀର ପ୍ରସ୍ତରବନ୍ଧୁର ଶଯ୍ୟା ଅତି ସଙ୍କଟାପନ୍ନ ।
(୨) କୁଲସର ଗ୍ରାମ ନିକଟରେ ଅଭ୍ର ଖଣି ଅଛି ।
(୩) କୁଲସର ଗ୍ରାମବିଶେଷ ।

ମାର ସନ୍ଧ୍ୟାସ୍ତ— ଅଶୋକ ମଞ୍ଜରୀ
ସନ୍ଧ ଜଡ଼ ଯହିଁ ବଢ଼ାନ୍ତି ପ୍ରଶ୍ନ ।
ଝଙ୍କାଳିଆ କୁଞ୍ଜେ ଶିଳା ଶଯ୍ୟାପରେ
ପତ୍ର ଆସ୍ତରଣ ଯହିଁ ମୋହନ
ସାଧୁଥିଲ ସଦା (୧) ପାଉଡ଼ ଲକ୍ଷ୍ମୀଙ୍କ
ମଧୁମସ୍ତ ଦ୍ରବ୍ୟ ମଧୁ ଶସ୍ୟନ ।
ଭୁୟାଁ ବାଳକାର ସ୍ୱର ଅନୁସାରୀ
ସାରିକା ମଧୁର ଗୀତ ଲହରୀ
ଶୁଣି ମନେ ହୁଏ ଥିଲ ପର ଯହିଁ
ସଙ୍ଗୀତ ବିଦ୍ୟା ତା ସ୍ୱମୂର୍ତ୍ତି ଧରି ।
ଊର୍ଦ୍ଧ୍ୱେ ଆରୋହିବା ସୋପାନ ପରମ୍ପେ
ଏକ ପରେ ଏକ ଗିରିଏ ଯହିଁ
ନିଜ ଅନୁପମ ମହିମା ପ୍ରକାଶି
ସୁଷମା ସମ୍ଭାରେ ଅଛନ୍ତି ରହି ।
ସେ ପାଉଡ଼ଭୂମି କଉଡ଼ ମାଳିଆ
ଭୁଡ଼ିଆ ନିବାସୀ ବରଙ୍ଗାଜୀବୀ
ଶୃଙ୍ଗ ବାଦ୍ୟଦକ୍ଷ ଭାଙ୍ଗୁସ୍ରୁତ ଲେଖି
ସୁଦେପସୁ ମହଲ ମଦିର ସେବୀ ।
ଦସ୍ୟୁମାୟା ଶୂନ୍ୟ ଭକ୍ତିଟେଲ୍ଲ ନିପୁଣ
କନ୍ଦଳିଆ ଗ୍ରାମ ଭୁୟାଁ ସଦନ
ସ୍ୱର୍ଣ୍ଣକୂଟ (୨) ପାଖେ ଝୁଲିଲେ ଯେସନ
ପବନ ତାଡ଼ିତ ନବୀନ ଘନ ।
ପୂର୍ବରେ ଯାହାର ପ୍ରାଚୀର ଅଦ୍ଭୁତ
ଗଗନ ପରଶି ଗିରିଶିଖରେ
ସ୍ଥିରୁ ତଡ଼ବାଲ ସୀମା ଦାରି ହୁଏ
ଧରଣୀ ତଳରୁ ବନ୍ଧ ଉପରେ ।

(୧) ଗଡ଼ଜାତ ପ୍ରଦେଶ । ପାଉଡ଼ରେ ଅଧିକାଂଶ ବନ, ଭୂୟାଁମାନେ ବାସ କରନ୍ତି । ଏମାନେ କରଙ୍ଗା ବୃକ୍ଷ ବହୁ ଆଦରେ ନିର୍ବାହ କରନ୍ତି ।
(୨) ସୁନାମ ପ୍ରସିଦ୍ଧ ସ୍ଥାନ ।

ଜାତ ଉତ୍ପୀଡ଼ନେ ଅଠମଲ୍ଲିକରୁ
ଆସି ଭକ୍ତଦାସ (୧) ବେହେରା ନାହା
ଆଗେ ଯହିଁ ରହୁ ବାମଣ୍ଡା ରାଜ୍ୟକୁ
ଫିଟାଇଲେ ଚଷାମାନଙ୍କ ରାହା ।

କଲ୍ଲ ନଦ୍ଦ ଜଳ ପାନେ ସୁପୁଷ୍ଟକୂଳ
ବଳାହକ କାନ୍ତ ଉଦ୍ଭେଦାକୁଳ
କ୍ଷୁଧାତୃଷା ଯହିଁ ପ୍ରାଣୀଙ୍କ ବାରନ୍ତି
ନାନାବିଧ ଫୁଲ ଫଳେ ମଞ୍ଜୁଳ ।

ସମାଜ ଶୃଙ୍ଖଳା ରକ୍ଷଣେ ଚତୁର
ସୁନାମ ସୁରଭ ବନ୍ଧୁ ନଚୟୁ
ଏବେ ଯହିଁ ରାଜେ ଶ୍ରେଷ୍ଠ ବେହେରାଙ୍କ
ସ୍ୱକୁଳଚନ୍ଦ୍ରିକା (୨) ବସୁରାଳୟୁ

(୩) କଳେଇ କଳଡ ଖଳା ଅଗଣାରେ
ବେଙ୍ଗଲା ବକ୍ଷିପ୍ତ ଶସ୍ୟ ଉପେକ୍ଷି
କଳ୍ପଶଇଡ଼ଆ (୪) ଖାଡ଼ଆ ଆସିଲେ
ହାବେଳୀ ସ୍ୱସ୍ଥର ସାବେଳୀ ଠେକ ।

ତାଲ ତୁଙ୍ଗ ତନୁ ଶିରାଳ ଶରୀର
ଭରାଳ ମୂରନ୍ତ ଉଦେୟ ଶୂରେ
ପରସ୍ପର ଯୁଝି ପଙ୍କୁ କରୁଥିଲେ
ଅସ୍ତ୍ରଶିକ୍ଷା ଯେହ୍ନେ ନଜ ଶିବରେ ।

---

(୧) ପୂର୍ବେ ବାମଣ୍ଡାରେ ଚଷା ନ ଥିଲେ । ଭକ୍ତଦାସ ବେହେରା ବାମଣ୍ଡାରେ ଚଷାମାନଙ୍କର ଆଦି ପୁରୁଷ । ଏହାଙ୍କ ବଂଶଧର ୧୬ ଜଣଙ୍କୁ ଜମିମାନ ମାଉ ଦେବାରୁ ଏ ବାମଣ୍ଡାକୁ ଅଠମଲ୍ଲିକରୁ ବାହାରି ଆସିଥିଲେ ।

(୨) ବାମଣ୍ଡାସ୍ଥ ଚଷା ସମାଜର ସଭାର ନାମ "ସ୍ୱକୁଳଚନ୍ଦ୍ରିକା" ଖଇଡ଼ା ଗ୍ରାମରେ ବାମଣ୍ଡାସ୍ଥ ସମସ୍ତ ଚଷାମାନଙ୍କର ମୁଖ୍ୟ ବେହେରାଙ୍କ ଅଧିଷ୍ଠାନ ସ୍ଥଳ ।

(୩) ଧାନବଢ଼ା ।

(୪) ବଣାଣ ଡାଠ ।

୧ ଅକ୍ଷର-ଶିଳାରେ ବୌଦ୍ଧ ଭିକ୍ଷୁସଙ୍ଘ
ଯେମାନେ ବିତଣ୍ଡା ତର୍କ ବଢ଼ାଇ
ସ୍ୱଧର୍ମର ଟେକ ରଖୁଥିଲେ ସଦା
ସେମାନଙ୍କୁ ରକ୍ତନୟନେ ଚାହିଁ ।
ବଣାଇଁ ବାମଣ୍ଡା ସୀମାନ୍ତୁଁ ସାମନ୍ତେ
ଆସିଲେ ୨ ଛୁମାନ୍ତ ଅସ୍ତ୍ର ସହିତ
ଢୁଅଇ ଯାହାଙ୍କ ବଇରୀ ଶୋଣିତ
ରଞ୍ଜିତ ନଶିତ ଅସି ଚୁଲତ ।
୩ ବୁଦ୍ଧଦେବଙ୍କର ଅବରୋଧ କାଳେ
ପାଙ୍ଗୁଲି ଶିଖରେ ଦୃଢ଼ ଦୁର୍ଗରୁ
ଛତ ରାଜରାଣୀ ଡେଇଁ ଓଢ଼ ଯହିଁ
ପ୍ରାଣଦେଲେ ଧୃତ ହେବା ପୂର୍ବରୁ ।
ସେ ଛତ ରାଜଙ୍କ ଶ୍ୱେତ ରାଜଛତ୍ର
ସୁବିମଳ ସ୍ନିଗ୍ଧ ମୂରତି ଗ୍ରହି
ଅଶ୍ୱିନ ମାସର ପୂଜାବଳି ଅଶେ
ଅଦ୍ୟାପି ଯେସ୍ଥାନେ ଦୂରୁ ଦିଶଇ ।
ପ୍ରଳୟ କାଳୀନ ସାନ୍ଧ୍ୟଘନ ସମ
ପ୍ରଲମ୍ବ କୁନ୍ତଳା ୪ ରମ୍ଭା ସୁନ୍ଦରୀ

(୧) ବୌଦ୍ଧମାନେ ଏଠାରେ ରହି ଗୋଟିଏ ପ୍ରସ୍ତରଶିଳା ଖୋଦିତକରି ଦେଇଯାଇଛନ୍ତି । ଶିଳାରେ ଅକ୍ଷର ଲେଖା ହୋଇଥିବାରୁ ଗ୍ରାମର ନାମ ଅକ୍ଷରଶିଳା ହୋଇଅଛି । ଏହି ଗ୍ରାମରେ ଦୁର୍ଦ୍ଧର୍ଷ ବୀରମାନେ ଥିଲେ ।

(୨) ଖଡ୍ଗର ସଙ୍କ୍ଷେପବାଚ ଅହୁଥିବା ପ୍ରକାଶବତ ଅନୁସନ୍ଧେୟ ।

(୩) ବାରବୋଟରେ ବୁଦ୍ଧନାରାୟଣ ଦେବଙ୍କ ସମୟରେ ଛତ ରାଜାଙ୍କର ଗଡ଼ ପାଙ୍ଗୁଲି ପର୍ବତ ଉପରେ ଥିଲା । ପୂର୍ବ ବାମଣ୍ଡା ଓ ପାଲ-ଲହଡ଼ା ମଧ୍ୟସ୍ଥିତ ସ୍ଥାନ "ଛତ" ରାଜବଂଶଙ୍କର ରାଜ୍ୟ ଥିଲା । ବାମଣ୍ଡା ଓ ପାଲ-ଲହଡ଼ା ଦ୍ୱାରା ପରାସ୍ତ ହୋଇ ସମସ୍ତ ରାଜ୍ୟ ହରାଇଥିଲେ । ଦଶହରା ମାସରେ ପାଙ୍ଗୁଲି ପର୍ବତ ଉପରେ ଗୋଟିଏ ଶୁଭ୍ର ବର୍ତ୍ତୁଳ ପ୍ରସ୍ତର ଦୃଷ୍ଟହୁଏ । ଅନ୍ୟ ମାସରେ ଏହି ପ୍ରସ୍ତର ଦୃଶ୍ୟ ହୁଏ ନାହିଁ । ଦଶହରା ମାସରେ ବଳିଶ୍ୱେତ ଅଶ୍ୱାରେ ଦୃଷ୍ଟହେବା କିମ୍ବଦନ୍ତୀ । ମାତ୍ର ସୂର୍ଯ୍ୟଗତି ଅନୁସାରେ ଏତାଦୃଶ ହେଉଥିବା ଅନୁମିତ ହୁଏ ।

(୪) ବାରବୋଟର ଅଧିଷ୍ଠାତ୍ରୀ ।

ଯାହାଙ୍କ ଉପଦେ ପଶନ୍ତି ସଂଗ୍ରାମେ
ରକ୍ତବନ୍ଧୁ ସ୍ୱାମୀ ଶକତି ଧରି ।
ହମାଦ୍ରି ତନୁଜା ପୂଜା ଭୋଗ ଆଣେ
ଶିଶୁଗ୍ରେର ବନ୍ଦରଆଙ୍କୁ ୧ ବଳେ
ବଧୁଥିଲେ ଯେହ୍ନ ଭୁଲାଇ କୌଶଳେ
ତେନ୍ତୁଳିଆ ଦହ ଗମ୍ଭୀର ଜଳେ ।
ଭୈରବୀ ପାଳତା ୨ ବଳଡାହୁଳର
ବନ୍ଧୁତାକୁ ଛେଦ ପାଗ୍ଲସନ୍ତ
ପାଗୁଅଭ୍ରହର ୩ ଚରଣ ପଖାଳି
ଦଉଡ଼ଇ ଯହିଁ ବ୍ରାହ୍ମଣୀପୟ ।
କୃତାନ୍ତର ଦନ୍ତ— ସମ ତୀକ୍ଷ୍ଣକୁନ୍ତ
ହସ୍ତେ ଠେକ ବ୍ରାହ୍ମୀ ତଟିନୀ ତଟୁ
ବାରକୋଠବାସୀ ଧୀବର ପାଇକେ
ଧାଇଁଲେ କଟୀରେ ଖୋଷି ୪ ଅଙ୍କାଟୁ ।
ଶିଶୁ ହମାଳୟ ପ୍ରାୟ ୫ ମାଲ୍ୟଗିରି
ନବଘନ ଭ୍ରମ ଦେଇ ମନରେ
ନିଜ ମହାକାୟା ଦୀର୍ଘତର ଛାୟା
ପକାଉଛି ଯହିଁ ବ୍ରାହ୍ମୀ ବକ୍ଷରେ ।
ସେ ଛାୟା ସନ୍ନିଧେ ନିଜ ପ୍ରତିଛାୟା
ଥୋଇ ତହିଁ ମେଘଚୁମ୍ବି ୬ ଚୂଳିଆ
ଗଜ ମୁଣ୍ଡାକୃତି ଶିଖ ଠେକ ପାଖେ
ସହୋଦର ପରି ହୋଇଛି ଠିଆ ।

---

(୧) ପାଉଡ଼ିରେ ନରବଳି ପ୍ରଥା ସଙ୍ଗ ।
(୨) ବଳିତା ଗ୍ରାମ ନିକଟରେ ଭୈରବୀ ଦେବୀ ଅବସ୍ଥିତ ।
(୩) ବ୍ରାହ୍ମୀବଣୀ ଗର୍ଭସ୍ଥିତ ଉଚ୍ଚପ୍ରସ୍ତର । ଏହା ବୁଡ଼ିଲେ ଝସମାନେ **ସଙ୍କଟାପନ୍ନ ଅବସ୍ଥା** ବୁଝି ନାଅ ଚଳାନ୍ତି ନାହିଁ ।
(୪) ଔଷଧ ବିଶେଷ । ଏହା ଦେହରେ ଥିଲେ ଶସ୍ତ୍ର କାଟେ ନାହିଁ ।
(୫) ପାଲ-ଲହଡ଼ାସ୍ଥିତ ଅତ୍ୟୁଚ୍ଚ ପର୍ବତ ।
(୬) ସ୍ୱନାମ ପ୍ରସିଦ୍ଧ ବାମଣ୍ଡାର ପର୍ବତ ।

ସ୍ବର ଗିରନଗ ଜନ୍ମ ଯା ବଜନ
ସୌରଭର ଶୂନ୍ୟ ସୂତିକାଘରେ
ଦକ୍ଷିଣ ବାହୁନୀ ବ୍ରାହ୍ମୀ ଅଙ୍ଗେ ଅଙ୍ଗ
ତାଳ ଦେଉଛନ୍ତି ମଧୁର ସ୍ବରେ ।
କଳନାଗ ୧ କଳା— ଜୀବ ଯେ ବଳମେ
ଶିବ ପାଦ ଧୋଇ ଲଭଇ ପ୍ରୀତ
୨ ଚନ୍ଦ୍ରାଶିଆ ଯହିଁ ଭଜାଇ ଉଖୁଡ଼ା
ଚୂଡ଼ା ପାନ୍ଥଶ୍ରେଣୀ ଖାଆନ୍ତି ନିତ ।
୩ ନଚୂଳା ପୁରତ ୪ ପିଚ୍ଛୁଳା ପିଚ୍ଛିଳ
ଶିଳାମାଳାରେ ଯେ ମାନସ ହରେ
୫ ଉତ୍ତାଳ ଭୂତାଳ ବାଲି ଠେକା ମାରି
ନଶୀଥେ ଯା ତଟେ ତରଙ୍ଗ ନରେ ।
ରଞ୍ଜନ ବରଣ ୬ ଚନ୍ଦନପୁରର
କଣ୍ଠେ ମୁକ୍ତାହାର ସମ ଯେ ବହେ
ପୃଥିବୀ ଦେବୀଙ୍କ ପୟୋଧରୁଁ ସ୍ରବ
ଗୋରସ ପ୍ରବାହ କଅବା ଶୋହେ ?
ସେ ଚୂଳିଆଗ୍ରାମ ୭ ଚୂଳିଆପାଠଙ୍କ
କଲ୍ୟାଣେ କୁଶଳ ଅଛି ସାହସୀ

(୧) କଲାଭସ ଜଳମ ଗମାର ନକଟରେ ପ୍ରବାହତା ।

(୨) ରଞ୍ଜଗାମ ନିକଟରେ ସସ୍ତାଦେଇ ପ୍ରବାହିତ, ଏହି ନଦୀରୁ ପାଣିକେଇ ପଥିକମାନେ ଏଠାରେ ପ୍ରାୟଶଃ ଚୂଡ଼ାବ ଖାନ୍ତି ।

(୩) ଦେଉ ।

(୪, ୫) ଏହିସବୁ ଚିରନଦୀ ଚୂଳିଆ ପଞ୍ଚତରୁ ଉଭବା ।

(୬) ବାଇଁଶିବାହାଳ, ଶ୍ରୀମାନ୍ ଲାଲମୋହନ ଦେବ ରାଜାଙ୍କ ଗମାର ଚନ୍ଦନପୁର ମଧ୍ୟରେ ପ୍ରବାହିତା । ବାଇଁଶିବାହାଳରେ ଅନେକାନେକ ରତ୍ନ ଥିବାର ପ୍ରାୟଶଃ ଲୋକଙ୍କର ବିଶ୍ୱାସ । ଏହି ବିଶ୍ୱାସରେ କେହି ଏହି ସ୍ଥାନରେ ଗୌରବ ସ୍ଥାପନ୍ତି ନାହିଁ । ତତ୍ପରିବର୍ତ୍ତେ କୋଟିଏ ଗମ୍ଭ ଗୌରବ ଜଳ ହୋଇଯାଇ ।

(୭) ଚୂଳିଆ ପଞ୍ଚତ ବସନ୍ତ ପ୍ରସିଦ୍ଧ ଦେବତା ।

ଅଡଣ୍ଡି ଲଟିଆ ୧ ଗୁବଣ୍ଡିଖୋଲତ
ପାଷାଣ ପୁରଟେ ମଧୁ କଳସୀ ।
୨ ମାଣ୍ଡିଆଭକ୍ଷକ ୩ ହାଣ୍ଡିଆ ଅମୋଘ
ପ୍ରାଂଶୁଳ ବେଣ୍ଡିଆ ୪ ମଙ୍କାରବୁଳ
ମିଳିଲେ ଘୁରୁଇ ଘନଘନ ଚଟ
ମିହିର ପରିଧି ପରି ବର୍ତ୍ତୁଳ ।
ସବ୍ୟେ ଶୋଭେ ନଳୀ ସବ୍ୟେତରେ ଧାର୍ଦ୍ଧ
ହୁତାଶନ ମୁଖୀ ଯାମୁକା ନ୍ୟସ୍ତ
ଏଲଙ୍ଗ ଦହରେ * ମାଛ ମାରି ମାରି
ଜଳଯୁଦ୍ଧେ ଯେହ୍ନେ ବହୁ ଅଭ୍ୟସ୍ତ ।
ଅଟ୍ଟହାସ୍ୟ ପଠୁ ୫ ଭଞ୍ଜମାନେ ଯହିଁ
ଅସାମାନ୍ୟ ମଲ୍ଲ ବିଦ୍ୟା ସମାଦ
ରାଜଦରବାରୁ ଲଭିଥିଲେ ପୂର୍ବେ
ପ୍ରଶଂସିତ ଭଞ୍ଜସିଂହ ଉପାଧି ।
ଛଗବଧେ ବାଘ— ବଡ ବହୁ ରାଗ
ଶାଳ ଉନ୍ନତ ସେ ସୁନାବଳିଆ
ଆସିଲେ ବାହାରି ବାଟ ଘାଟ ଭରି
ଯୁଦ୍ଧେ ଉଚାଟିତ ଗୁଞ୍ଜିଗିଆ ।
ଇଂରେଜ ରାଜଙ୍କ ନିମନ୍ତ୍ରଣେ ଯାଇ
ସମ୍ବଲପୁରକୁ କଲେଗ ବେଗେ
ଜୀବନ ଘଡ଼ନ୍ତେ ୬ ପୂଜ୍ୟପାଦ ପିତା
କାନ୍ଦି କାନ୍ଦି ଦୁଃଖେ ତାଙ୍କ ବିୟୋଗେ ।

(୧) ସ୍ୱନାମପ୍ରସିଦ୍ଧ ପର୍ବତଖୋଲ୍ । ଏଠାରେ ବିଶେଷ ପରିମାଣରେ ମଧୁରସ ଦେଖାଯାଏ ।
(୨) ଶସ୍ୟ ବିଶେଷ ।
(୩) ମଦ୍ୟ ବିଶେଷ ।
(୪) ମଧୁସଞ୍ଚୟକାରୀ ପକ୍ଷୀ ଜାତିବିଶେଷ । ଏମାନେ ଘୋଷିଲେ ଲୌହଦଣ୍ଡ ଧରଥାନ୍ତି ତଦ୍ଦ୍ୱାରା ଶତ୍ରୁଙ୍କୁ ବିନାଶ କରନ୍ତି ।
* ବ୍ରାହ୍ମୀର ଘଣ୍ଡ ବିଶେଷ ।
(୫) ଭଞ୍ଜମାନେ ଯୁଦ୍ଧବିଶାରଦ । ସେ ରାଜଦରବାରରୁ ପୂର୍ବାବଳୀ ସହିତ ସିଂହ ଉପାଧି ପାଇଥିଲେ । ତାଙ୍କର ଉପାଧି ଅନୁସାରେ ଗ୍ରାମ ନାମ "ଭଞ୍ଜସିଂହ" ହୋଇଅଛି ।
(୬) ରାଜା ବାଲୁକାବୃଷଭ ଦେବ ।

ଦେଶ ବିଧିମତେ ୧ ବସି ବଡ଼ଦାଦା
ପିତୃ ପରିତ୍ୟକ୍ତ ସେ ସିଂହାସନେ
ସହୋଦର ସହ ସେ ମଧ୍ୟ ଚଳିଲେ
ଅଠରଦିବସେ ପ୍ରେତ ସଦନେ ।
ସଦ୍ୟ ଅନାଥିନୀ ବିଧବା ୨ ଜନନୀ
ସହସା ଏ ବେଗ ଦେଖି ନଗରେ
ସନ୍ତାନମାନଙ୍କ ବାଲ୍ୟାବସ୍ଥା ଚିନ୍ତି
ଅଥୟ ହୋଇଲେ ସ୍ୱାମୀ ଭୟରେ ।
ନିରନ୍ତର ରୂପ ଗୁଣ ସ୍ମରି ସ୍ମରି
ଯମଜ ତନୁଜା ୩ ଯେଯେମଣିର
ଖିଆ ପିଆ ତେଜି ହଳଦ ବରଜ
ଦିନରାତ୍ର ଶୋକେ ହେଲେ ଅସ୍ଥିର ।
ଏବେ ପଞ୍ଚପୁତ୍ର ବିୟୋଗ ଯାତନା
ହୃଦେ ଆମ୍ଭେମାନେ ନିତାନ୍ତ ପିଲା
ସ୍ୱର ସ୍ୱର ସେହି ଦାରୁଣ ବିପଦ
ସ୍ନେହମୟୀ ମାତା ଚେତା ବୁଡ଼ିଲା ।
ଶେଷେ ଗଡ଼ ଛାଡ଼ି ପାଲିଙ୍କି ଆରୋହି
ସେହି ପାଲିଙ୍କିରେ ଝିଅଙ୍କୁ ଧରି
ଥୋକେ ପରିବାରି ସଙ୍ଗତେ ଚଳାଇ
ଚଳିଲେ ପ୍ରଦୋଷେ ପୁରୁ ବାହାରି ।
ବାସୁଦେବଙ୍କର ଉତ୍ତର ମନ୍ଦିର
ପ୍ରସ୍ତୁତ ଏହି ଯେ ନବ ଉଦ୍ୟାନ
ନାନାବିଧ ଦେଶୀ ବିଦେଶୀ କୁସୁମ
ସୌରଭେ ସୁଦୃଶ୍ୟେ ଦେଦୀପ୍ୟମାନ ।

(୧) ରାଜା ଛତ୍ରେଶ୍ୱର ଦେବ । ଏ ରାଜା ଅଠରଦିନ ମାତ୍ର ରାଜତ୍ୱ କରିଥିଲେ ।

(୨) ରାଜା ବାଳୁଙ୍କେଶ୍ୱର ଦେବଙ୍କ ଧର୍ମପତ୍ନୀ ରାଣୀ ଚନ୍ଦ୍ରମାଦେବୀ ।

(୩) ବାଳୁଙ୍କେଶ୍ୱର ଦେବ ରାଜାଙ୍କ ମହାରାଜା ବ୍ରଜସୁନ୍ଦର ଦେବାଦି ପଞ୍ଚପୁତ୍ର ଓ ଯୋଡ଼ିଏ କନ୍ୟା ଥିଲେ ତେମାଙ୍କର ନାମ ଯେଯେମଣି । ନନ୍ଦକିଶୋର ଦେବଙ୍କ ଯମଜା ଭଉଣୀ ଯେଯେମଣି କେନା ।

କାରୁ କାର୍ଯ୍ୟମୟ ପ୍ରାଣୀଙ୍କର ଶୃଙ୍ଗ
ଆକାର ଇଙ୍ଗିତ ବେଶ ଆଶୟ
ଦେଉଅଛି ତାଙ୍କ ଶିଳ୍ପୀଙ୍କ ସାଧନା
ବଚନ କୁଚର ସୁପରିଚୟ ।
ସେ ଉପବନର ଅଦୂର ଦକ୍ଷିଣେ
ଗୋସାଣୀପାଲର ଖମାର ଘରେ
ପ୍ରବେଶିଲ୍ ମାତା ଯହିଁ ଦୁଇବର୍ଷ
ସବେ କାଟିଲୁଁ ତା ସ୍ନେହ ଆଦରେ ।
ସ୍ୱପ୍ନାବେଶେ ସ୍ୱପ୍ନ ଭଣ୍ଡ ଶଙ୍କା ସ୍ମର
ତାହାର ୧ ମସ୍ତକେ ପାଠ ନ ଦେଇ
ନିଜେ ଶାଢ଼ୀ ବାନ୍ଧି ସେତେଦିନ ଯାଏ
ରାଜ୍ୟ ସ୍କୁଲରୁ ମା ଯେ ସ୍ଥାନେ ରହି ।
ସେ ଗୋସାଣୀପାଲ୍ ପ୍ରାଚୀନ ବାସିନ୍ଦା
ନିପଣ୍ଡ କାଲିଆ ଯେତେକ ଭୂୟାଁ
ଛଡ଼ ପ୍ରାଣମାୟା ଉଲ୍ଲାସିଇ ହୁଆ
ଯୁଝିବାକୁ ହେଲେ ସମରମୁହାଁ ।
ମହୋଲ୍ଲାସେ ଯେହ୍ନ କଲ୍ଲୋଳ କୁନ୍ତଳ
ବନମଲ୍ଲୀ ପ୍ରିୟ ପ୍ରିୟା ସହିତ
ଭଜନ ଭକ୍ତ ସ୍ଥାନେ ଗାଇ ଗାଇ
କୃଷ୍ଣ ପ୍ରେମରସେ ପୂର୍ଣ୍ଣ ସଙ୍ଗୀତ ।
୨ କୁମୁଡ଼ି ପ୍ରବାହା କଳ କଲ୍ଲୋଳିନୀ
ଶୀକର ଶୀତଳ ବାତେ ଶ୍ୟାମଳ
୩ ଫୁଲବାଡ଼ି ଗିରି ୪ ମୁଗାର ବନରେ
ଚରନ୍ତି ନିତ୍ତିନ୍ତେ ମହୁଷ ପଲ ।

---

(୧) ରତ୍ନମାଳୁମାସ ଦେବୀ ନିଜେ ଭିନବର୍ଷ ରାଜ୍ୟଶାସନ କରିଥିଲେ ।

(୨) କୁମୁଡ଼ି ପର୍ବତ ବଣାଇରେ ଅବସ୍ଥିତ । ଏହି ପର୍ବତରୁ କଲାବତୀ ଉଦ୍ଭବ ।

(୩) ରାଜା ସଚ୍ଚିଦାନନ୍ଦ ତ୍ରିଭୁବନଦେବଙ୍କ ରାଜରାଣୀ ଶ୍ରୀମତୀ ହ୍ରି, ପି, ଦେବୀଙ୍କ କେନାଲ ନିକଟରେ ଅବସ୍ଥିତ ।

(୪) ଘାସ ବିଶେଷ । ଏହା ମହିଷୀମାନଙ୍କର ପ୍ରିୟ ଖାଦ୍ୟ ।

ସୁମଣିଙ୍ଗା ବେଣୁ ବଇଁଶୀ ବଜାଇ
ଦୋହଲାଇ ଘଣ୍ଟି ଘାଗୁଡ଼ି ମାଳ
ବଙ୍କଠ କୁହାଟେ ବାଡ଼ ଖେଳ ଖେଳ
ମସ୍ତକରେ ମଣ୍ଡି ମୟୂର ଝାଲ ।
ସମବେତ ସେନା ବ୍ୟବହାର ପାଇଁ
ଘର ଘର ସାଦୁ ଗୋରସ ବହୁ ।
ଉପସ୍ଥିତ ହେଲେ ୧ ଜାଲ୍‌ସୁଆଁ ଗଡ଼
ଉଡଆ ଗଉଡ଼େ ଷଣେ ନ ରହୁ
ବାମଣ୍ଡା ଲକ୍ଷୀଙ୍କ ଅମାର ସ୍ୱରୂପା
ଆଠଗଡ଼ା ପ୍ରଗଣାରୁ ବହୁଳ
ମୁଗ ଚଣା ସହ ଆସିଲା ଅଚରେ
ସୁନ୍ଦର ସୁଖାଦ୍ୟ ଉଆ ଗୁଉଳ ।
ଘର ଘର ଘୃତ ଯୋଗାଇଲା ଆଣି
୨ ପରଡା ୩ ପାଲୁଣିପଡା ୪ କଂସର
ଘୋଡ଼ା ଦାନା ପାଇଁ ପ୍ରଦାନଲ୍ଲ କ୍ରି ହୁ
ଉଙ୍କର ପାଉଡ଼ ବାରକୋଠର ।
ଲବଣି ଜର୍ଜ୍ଜର ଚନ୍ଦ୍ରିକା ଲୁଚର—
ସର ଶୋଷ୍ଣ ଢୁମ ଗଉର ଦହୁ
୫ ସରୁଆଲୀ ବାସୀ ମହାକୁଳ ଧେନ
ପହୁଞ୍ଚିଲେ ଦୁର୍ଗେ କାହିଁ ନ ରହୁ ।
୬ ଆଉଁଲୀ କୋଲଥ ୭ ବଡ଼ବାର ମକ୍କା
୮ ବଡରମା ୯ ବନ୍ଧବାର ପାକୁଅ
୧୦ କୁସୁମୀ ହଳଦ ୧୧ ଠୁସୁଲା ହଳଙ୍ଗ
ଯୋଗାଇଲେ ଜଡ଼ାଡେଲ ଆଲୁଅ ।
୧୨ ଖିଲେଇ ଦୁକୁଡା ୧୩ ଗୋଗୁଆ ମସଲ
ଗୁଡ଼ ୧୪ ଗଙ୍ଗାନଣ ଖପ୍ୟା ୧୫ ଲଇଣ୍ଡା

(୧) ଗ୍ରାମ ବିଶେଷ ।
(୨, ୩, ୪, ୫, ୭, ୮, ୧୧) ସ୍ୱନାମ ପ୍ରସିଦ୍ଧ ଗ୍ରାମ ।
(୬, ୭, ୮, ୯, ୧୦) ବାମଣ୍ଡାର ଗୋଟିଏ ଗୋଟିଏ ପ୍ରଗଣା ।
(୧୨, ୧୩, ୧୪, ୧୫) ସ୍ୱନାମ ପ୍ରସିଦ୍ଧ ଗ୍ରାମ ।

ଅନ୍ୟାନ୍ୟ ଯେତେକ    ଆବଶ୍ୟକ ଦ୍ରବ୍ୟ
ଯୋଗାଇଲ ହେଲେ ଆଣି କୋଠଣ୍ଡା ।
ନାନା ବେଶଧାରୀ    ନାନାଜାତି ସେନା
ରୁଣ୍ଡୀଭୂତ ହେଲେ ଏରୂପେ ଆସି
ବନ୍ଧୁଗ୍ରାମ ଗିରି    କାନନ ପୁଳିନ
ପ୍ରାନ୍ତର ତଟିନୀ ତୀର ନିବାସୀ ।
ଦେଖୁଅଛ ଏ ଯା’    ଶିଶୁଏ ! ଆଗରେ
ମଞ୍ଜୁଳ ରସାଳ କୁଞ୍ଜେ ମଣ୍ଡିତ
୧ ଶୁଳିଆ ପଦାକୁ    ତହିଁ ଆସି ଶୀଘ୍ର
ସକଳେ ଏକଠେ ହେଲେ ମିଳିତ ।
ତୁଷାର ଗହ୍ୱର    ତୁରଙ୍ଗେ ଆରୋହି
ବୀର ବନ୍ଦନୀୟ ରାଜକୁମର
ସମର ସାଗରେ    ନାବିକ ପରିଏ
ଚଳାଇଲେ ପୋତ ବାହିନୀ ବାର ।
ଦୁଇଧାଡ଼ି ହୋଇ    ଦକ୍ଷିଣାଭିମୁଖେ
ଚଳି କୋଳାହଳେ ଚଳ ବାହିନୀ
ସଙ୍କୀର୍ଣ୍ଣ ବନ୍ଧୁର    ଏ ଅମ୍ବୁଲପାଣି
କନ୍ଦରର ହୋଇ ପାର୍ଶ୍ୱବର୍ତ୍ତୀ ।
ଅଳକାଇ ପଥେ ୨    ଶିଳା ଶୀଳି ଯୋଗେ
ସୁମାର୍ଜ୍ଜିତ ଶିଳା ଫଳକ ସ୍ତର
ଠାଇଲ ଅତ୍ରବ    ଘଷ୍ଟାଇ ଦଅଇ
ସଉଧମାନଙ୍କ ଦେବଦୁର୍ଗର ।
ସେ ଚକ୍କିଣୀ ଘଟି    ଶିଖରୁ ଏ ଯାଏ
ଦୁରରୋହ ଏହି ଶଇଳ ଶିରେ
ଉଭୟ ପାଖର    ଦମକ ଅଘୋର
ରହୁଲେ ନରେଲେ ନିଃଶବ୍ଦେ ବୀରେ ।

---

(୧) ଦେବଗଡ଼ର ଦକ୍ଷିଣସ୍ଥିତ ପ୍ରଶସ୍ତ ପଡ଼ିଆ । ଏଠାରେ ନରହତ୍ୟାକାରୀମାନଙ୍କୁ ପ୍ରାଣଦଣ୍ଡ ଦିଆ ହୁଏ ।

(୨) ଚିକଣି ଘଟିରେ ଟାଇଲ ପ୍ରସ୍ତର ତୋଳା ହୁଏ ।

ସତର୍କେ କୌଶଳେ   ରଣବ୍ୟୂହ ରଚ
ଯଥାସ୍ଥାନେ ସେନାଗଣ ସଜାଇ
ଦଳକୁ ଓଟ୍ଟାଇ   ବୁଦ୍ଧିଏ ପାଞ୍ଚିଲେ
ଅକ୍ଲେଶେ ଶତ୍ରୁଙ୍କ ବଧିବା ପାଇଁ ।
ଲମ୍ବ ହେବ ଏହୁ   ଶିଖର ପାଖରୁ
ଅଗର ସେ ଉଚ୍ଚ ପର୍ବତ ଯାଏ
ଓସାରରେ ଦୂର   ଚରଣ ପହଣ୍ଡ
ଗଭୀରେ ହୋଇବ ହାତ ହୋଡ଼ଏ ।
ଏସ୍ତବେ ସରବେ   ଏକ ଖାଲ କାଟି
ଭିତରୁ ଯେତକ ଶିଳା ଉଠାଇ
ଏକ ପରେ ଏକ   ଥୋଇ ତା' ତଳରେ
ପ୍ରାଚୀର ପଗ୍ରଏ ଦେଲେ ସଜାଇ ।
ଅକୁଣ୍ଠ ଉଦ୍ୟମେ   ରାତ୍ରଦିନ ଲାଗି
ଶୀଘ୍ର କାମସାରି ଘୂଞ୍ଚି ସ୍ୱସ୍ଥାନେ
ସ୍ୱ ସ୍ୱ ଅସ୍ତ୍ର ଶସ୍ତ୍ରେ   ସଜ ହୋଇ ତହୁଁ
ରଣ ପ୍ରଣାଳୀରେ ସଇନମାନେ ।
ସୁବିଶାଳ ସେହୁ   ଅଧିତ୍ୟକା ପୃଷ୍ଠ
ବେଢ଼ି ପିପୀଲିକା ଶ୍ରେଣୀ ସମାନ
ଚଉଦିଗୁଁ ଆଣି   ଠୁଳାଇ ବହୁତ
କାଠ, ଖୁଣ୍ଟା, ସାନ ବଡ଼ ପାଷାଣ ।
ଗଳଘଣ୍ଟା ଧ୍ୱନି   ଦୂରରୁ ଆକର୍ଣ୍ଣି
ଗୋ ଯୂଥର ଯଥା ବନ ଭିତରେ
ଆମିଷ ଉଦ୍ଦେଶ୍ୟେ   ଛପଇ ଶାର୍ଦ୍ଦୂଳ
ଅଲକ୍ଷେ ବେଣୁଆ ଝୁଙ୍କା ମୂଳରେ ।
ତେସନେ ସେ ବୀରେ   ନୀରବେ ଜଗିଲେ
କୌଶଳେ କାର୍ଯ୍ୟ ଉଦ୍ଧାର ପାଇଁ
ବେଢ଼ାଖୋଲିଆଙ୍କ   ଆଗମନ କ୍ଷଣେ
ପାଷାଣ ଅପଟେ ଲୁଚଲେ ଯାଇଁ ।

---

# ୩ୟ ସୋପାନ

ରଞ୍ଜି ଗିରିବନ           ତଟିନୀ ପୁଳିନ
ଉଜ୍ଜ୍ୱଳ ଲୋହିତ ଅସ୍ତାତପରେ
ପତ୍ତ୍ୱଡ଼ଲେ ସ୍ୱର୍ଣ୍ଣ           ଧ୍ୱଜା ପାହାଡର
ସୁକୋମଳ ତୃଣ ଆସ୍ତରଣରେ ।
ଅମନ୍ଦ ଗାମିନୀ—           ବଡଯୋର ନୀର
ହେମକର ରେଖା ବହୁ ବିଗ୍ରହେ
ରୁଚିର ବୀଚିର           କଣ୍ଠମାଳ ରଚି
ନାଚଇ ମୃଦୁଳବାତେ ଆଗ୍ରହେ ।
କଳ କଳ ଧ୍ୱନେ           ଗୋଧୂଳି ବନ୍ଦନ
ଉଚ୍ଚାରି ନିମ୍ନଗା ଗାୟତ୍ରୀ ଛନ୍ଦ
ସେ ସ୍ୱନେ ସ୍ୱତାନ           ମିଶାଇଲେ ନେଇ
ନୀଡମୁଖେ ଯାତ୍ରୀ ବିହଙ୍ଗବୃନ୍ଦ ।
ସନ୍ଧ୍ୟା ହେବା ଜାଣି           ସୁଖ ସଙ୍ଗ ଛାଡ଼ି
ଶୋକାତୁରେ କୋକ କୋକ ସୁନ୍ଦରୀ
ବିପରୀତ ତଟ           ପାଦପ ଆଶ୍ରିଲେ
କରୁଣ କୂଜନେ ଗଗନ ଭରି ।
ବିଲକାମ ସାରି           କୃଷିବଳଦଳ
ପଶିଲେ ଗ୍ରାମରେ ବିଶ୍ରାମ ପାଇଁ
ଉଡ୍ଡୀନ ପସ୍ୱଗେ           ଖୁରଦଗ ବୋଳି
ଗୋଠକୁ ଫେରିଲେ ପ୍ରାନ୍ତର ଗାଈ ।
ମୁଦିଲ ବିମଳେ           ବିମଳ ବଦନ
ସରସୀ ପଲ୍ଲୀଙ୍କ ଅଙ୍କଶାୟିନୀ
ପ୍ରଣୟୀ ବିରହେ           ଭ୍ରମର ଗୁଞ୍ଜନେ
କାନ୍ଦ କାନ୍ଦ ଫୁଲବର୍ଣ୍ଣୀ ନଳିନୀ ।
ସଉଧ କିରୀଟ—           ଧାସ୍ୱି ଦେବଦୁର୍ଗ
ସନ୍ଧ୍ୟାଲୋକ ପଡ଼ି ହୋଇଲା ପ୍ରତେ
ଗଇରିକ ଗିରି           କିସି ଯାଉଛି କି ?
ଧବଳ ସଲିଳ ଜାହ୍ନବୀ ସ୍ରୋତେ ।
ତମୋହା ସ୍ୱସ୍ତର           ବଢ଼େ ଧୀରେ ଧୀରେ
ସାନ୍ଧ୍ୟ ଅନ୍ଧକାର ପଦ ପ୍ରସାରି

ଭୂଧର କନ୍ଦର ଘନ ତରୁ ଲତା
ଛାୟାତଳୁ ଖଲ୍ଲ ପର ଦାହ୍ନାର ।
ଦେଖୁଁ ଦେଖୁଁ ତାର କ୍ଷୁଦ୍ର କଳେବର
ଚଉପାଖେ ବନ୍ଧୁଗୁଣେ ବଢ଼ାଇ
ଆକାଶ ପାତାଳ ଜଳସ୍ଥଳ ସୀମା
ପକାଇଲା ଏକାବେଳେ ଘୋଡାଇ
ସାଧୁ ଉପଦେଶ ଯୋଗରେ ଦମିତ
କୁକର୍ମୀର ପୂର୍ବ କୁକର୍ମ ରାଶି
କୁସଙ୍ଗ ଆଶ୍ରୟ ଲଭି ସଦାବେଳେ
ଉଠେ ଯଥା ଦ୍ୱିଗୁଣ ଶକ୍ତି ପ୍ରକାଶି ।
ତେସନେ ପ୍ରଖର ପ୍ରଭାକର ତରେ
ବିଲୁପ୍ତ ଦିବାନ୍ଧ ଉଲୂକ କୁଳ
ରଜନୀ ସଙ୍ଗେ ଆସି ଜନ୍ମାଇଲେ ଭ୍ରାନ୍ତି
ଧରଣୀ ରାଣୀର ଶ୍ରବଣ ଶୂଳ ।
ହରିଲେ ପ୍ରାଣୀଏ ଦିବସର ଘୋର
ଜୀବନ ଯୁଦ୍ଧର ଦୁଃସହ କ୍ଳେଶ
ଆଶ୍ରି ଅବହେଳେ ବିରାମ ଦାୟିନୀ
ନିଦ୍ରାଦେବୀଙ୍କର କୋଡ଼ ପ୍ରଦେଶ ।
ଅପରାକୁ ଦେଖି ନିଜ ନାଗରର
କୈଳାସ ପତିଙ୍କ ଅଙ୍କଶାୟିନୀ
ଛଳେ ନ ଆଦର ତୁଷ୍ଟି ବସେ ଯଥା
ଅଭିମାନେ ତାର ଅନୁରାଗଣୀ ।
ତେସନ ବିଜୟୀ — ଯଶ ଯୋଷିତର
ପ୍ରେମେ ଜରଜର ଶୂରଙ୍କୁ ଥରେ
ଆଲିଙ୍ଗିଲେ ନାହିଁ ଶାନ୍ତି ପ୍ରଦାୟିନୀ
ନିଦ୍ରାଦେବୀ ସିନା ଅଭିମାନରେ ।
ଚମଚଠାଙ୍କର ଉଦ୍ଦାମ ନୃତ୍ୟରେ
ଚରାଚରେ ଛଞ୍ଚିକା ବିକାଶେ
ପ୍ରଗାଢ ଅନ୍ଧାର ପୁଞ୍ଜୀଭୂତ ହେଲା
ଏ ଅମ୍ବୁଲପାଣି ଘଟିରେ ଆସି ।

ସହସା ଦେଖିଲେ ଶୂରଶ୍ରେଣୀ ଅଗେ
ତୀବ୍ର ତମିସ୍ରକୁ ଦୂରେ ଘଉଡ଼ି ।
୧ ବୁଡ଼ାବୁଢ଼ି ଶିରେ ଅନ୍ତରୀକ୍ଷ ଦୀପ
ଜ୍ୱଳିଲ ଅସଂଖ୍ୟ ତେଜିଲ ଦହୁଡ଼ି ।
ସଞ୍ଚରଣଶୀଳ ୨ ବାମନ ଶରୀରେ
ଜରୀଦାର ଝୁଲକାନ୍ତ ଧ୍ୱଜାର
ପ୍ରବଳ ଆଲୋକ ସେମାନଙ୍କ ଆଡେ
ଆସିଲା ଉଜ୍ୱଳ ପ୍ରଭା ପ୍ରସାର ।
ମଣିଣିଡା ଝର— ନାରେ ଅବଲୋକି
ମସାଲର ଏହି ମୋହନ ଛବି
ମନେ ହେଲା ନଳ ବ୍ୟାଜେ ବହୁଛି କି
ଅନଳ ଉତ୍ତାପେ ସୁବର୍ଣ୍ଣ ଦ୍ରବ ।
ତେଣ୍ଡାବନାକୀର୍ଣ୍ଣ ଦୁର୍ଗମ ପର୍ବତେ
କ୍ଷୀଣପଥ ରେଖା ଖୋଜି ସତ୍ୱର
କ୍ଷଣିକେ ସଳଖେ ଚଳି ଆସିଲେ ସେ
ଗଡ଼ବନ୍ତ ଗଣ୍ଡଶଇଲ ବଡ ।
ଦେଖି ହେଲା ପ୍ରତେ ସାନ୍ଧ୍ୟରଶ୍ମି-ରେଖା
ସତେକି ଚଞ୍ଚଳ ମେଘ ରନ୍ଧ୍ରରେ
କିଅବା ସଚଳ ପୁଷ୍ପିତ ସର୍ଷପ
କେଦାର ନିକର ଘନ ବନରେ ।
ଉଲ୍ଲାସେ ଉଚ୍ଚାଟେ ଆୟୁଧେ ସଜ୍ଜିତ
ଗଜ ବାଜି ସହ ସକଳ ଠାଟ
୩ ଲଣୀ ଖୋଲେ ପଣି ସହଜେ ଲଙ୍ଘିଲେ
୪ ଚକ୍କଣୀ ଘାଟିର ଗିରିସଙ୍କଟ ।
ଗୁପ୍ତଭାବେ ସ୍ଥିର ମହାପ୍ରତିଦ୍ୱନ୍ଦୀ
ବାମଣ୍ଡା ସୈନ୍ୟଙ୍କୁ ପଛରେ ରଖି

(୧) ସ୍ୱନାମ ପ୍ରସିଦ୍ଧ ପର୍ବତ ।
(୨) ଦକ୍ଷିଣ ଦଣ୍ଡୁଜ ।
(୩) ସ୍ୱନାମପ୍ରସିଦ୍ଧ ପର୍ବତ ଶୋଲ ।
(୪) ସ୍ୱନାମ ପ୍ରସିଦ୍ଧ ପର୍ବତଘାଟି ।

ନତାନ୍ତ ସଂକୀର୍ଣ୍ଣ — ଏ ଆମ୍ବୁଲପାଣି
ଭିତରେ ପ୍ରବେଶି ଗଲେ ଅଠକ୍କ ।
ଆଗରୁ ଖୋଦିତ — ଗମ୍ଭୀର କାସାର
ସଂଲଗ୍ନ ପ୍ରାଚୀର ନୀରନ୍ଧ୍ର ପଥେ
ବାଧା ପାଇ ସେହି — ବାହିନୀ କହ୍ଲ
ଆଘାତିତ ସର୍ପ ସମ ଆରତେ ।
ଦ୍ରୁତଗାମୀ ସ୍ରୋତ — ଖର ବେଗେ ଧାଇଁ
ଅଗ୍ରବର୍ତ୍ତୀ ଶୈଳେ ମସ୍ତକବାଡ
ପଚ୍ଛଘୁଞ୍ଚା ଦେଇ — ଅଣ୍ଡାଳି ହୁଅଇ
ଯଥା ତୀର ତରୁ ଲତା ଉପାଡ଼ି ।
ଅଶ୍ବ ଗଜ, ନରେ — ଆୟୁଧ ବର୍ମରେ
ସମାକୀର୍ଣ୍ଣ ତେଣୁ ସେହି ପୃତନା
ବାତ ବିଧୂନିତ — ତରଙ୍ଗ ତାଡ଼ିତ
ମହାସିନ୍ଧୁ ସହ ହେଲା ତୁଳନା ।
ସେନାପୃଷ୍ଠେ ସ୍ଥିତ — ନରେଶ ସମ୍ମୁଖେ
ସଭୟେ ଏକାଳେ ପ୍ରହରୀ ଧାଇଁ
ଗମ୍ଭୀର ଖାଇରେ — ନୀରନ୍ଧ୍ର ପ୍ରାଚୀରେ
ମାର୍ଗରୋଧ ବାର୍ତ୍ତା ଦେଲା ଜଣାଇ ।
ପ୍ରଚଣ୍ଡ ବାରଣ — ସୈନ୍ୟସହ ନୃପ
ସୈନ୍ୟସଙ୍କୁଳ ଏ ଗିରି ଗହ୍ୱରେ
ରହିରହି କଷ୍ଟେ — ବସି ଗଜ ପୃଷ୍ଠେ
ପ୍ରବେଶିଲେ ରୁଦ୍ର ରନ୍ଧ୍ରମୁଖରେ ।
ତୀବ୍ରଦନ୍ତେ କାଟି — ତୁଙ୍ଗ ତରଙ୍ଗକୁ
ନତାନତ ଶିଳାମାନେ ଅଠକ୍କି
ଉଭୟ ପାର୍ଶ୍ବର — ଲମ୍ବମାନ ତରୁ
ତୃଣ ପତ୍ର ପୁଷ୍ପ ପଛକୁ ରଖି ।
ଦୁଇ ଶଇଳର — ମଧ୍ୟରେ ଯେମନ୍ତ
ଲମ୍ବନଈ (୧) ବକ୍ଷେ ଚଳେ ତରଣୀ

(୧) ତାଳଚେର ରେଙ୍ଗାଳି ନିକଟସ୍ଥ ପର୍ବତସଙ୍କୁଳ ଗହ୍ବରଖଣ୍ଡ ।

ତେସନ ନଜର　　　ସେନା ଶ୍ରେଣୀ ଭେଦ
　　ଗଣିଲେ ହଷାଦେ ଖୋଲନ୍ମଣି ।
ଷଣକେ ସକଳ　　　ଭଜ୍ଞ ବିଶୃଙ୍ଖଳ
　　ଇତସ୍ତତ ହେଲେ ସୈନ୍ୟସମୂହ
ଫିରିଙ୍ଗିଙ୍କ ସେନା　　　ରଚନା ପ୍ରଣାଳୀ
　　ଫିରିଙ୍ଗିଙ୍କ ସେହି ସମରବ୍ୟୂହ ।
ଯାଉଥିଲେ ଆଗେ　　　ନାଚ ଅନୁରାଗେ
　　ଯେଉଁ ବାଦ୍ୟଙ୍କାରେ ସ୍ୱର ମଉଜେ
ତାଙ୍କୁ ପଛେ ରଖି　　　ଆଗକୁ ଉହ୍ଲଙ୍କି
　　ବାହାରିଲେ ଦ୍ରୁତଗାମୀ ଫଉଜେ ।
ରସଦ ସମ୍ଭାର—　　　ବାଘ୍ଘ ଓଠୁ ଘୋଡ଼ା
　　ବଳବର୍ଦ୍ଦଆଦି ଶତ୍ରୁ ପଛର
ହାତୀ ତଳେ ପଡ଼ି　　　କେ ମଲେ କିଏବା
　　ଦଉଡ଼ି ରଖିଲେ ପ୍ରାଣ ନଜର ।
ଚଣ୍ଡାଶୀ ବନ୍ଧୁତ　　　ବରତନ ଖିଆ
　　ପୃଷ୍ଠରକ୍ଷୀ ସେନା ଯେନାମଣିଙ୍କ
ଅଶ୍ୱାରୋହୀ ସୈନ୍ୟ　　　ସାଗରକୁ ତର
　　ନ ପାରି ରହିଲେ ପଛେ ସଭିଙ୍କ ।
ତାହାଙ୍କ ସମ୍ମୁଖେ　　　ଗୁଲ୍ମଥିଲେ ଯେତେ
　　ନାୟକେ, ପାଇକେ ମାରି କୁହାଟ
ଚକିତେ ଚମକି　　　ହେଲେ ସ୍ତମ୍ଭୀଭୂତ
　　କାହିଁଗଲା ତାଙ୍କ ଉଲ୍ଲାସ ନାଟ ।
ପ୍ରବେଶି ନରେନ୍ଦ୍ର　　　ରୁଦ୍ଧ ରନ୍ଧ୍ରମୁଖେ
　　ଏ ଭୀଷଣ ଦୃଶ୍ୟ ଦେଖି ସହସା
ରହିଲେ ନିର୍ବେଦେ　　　ଷଣେ ନିରୁତ୍ସାହେ
　　ଫିରିଙ୍ଗିଙ୍କ ଯେତେ ଆଶା ଭରସା ।
ମାନ୍ତ୍ରିକ ତାହାର　　　ଉପସ୍ଥିତ ସ୍ୱବ
　　ଦେଖାଇ ମୁଖରେ ଉତ୍ସାହେ ହସି
ଆଦେଶିଲେ ସୈନ୍ୟେ　　　ସେ ଜଳ ସନ୍ତରି
　　ଯିବାକୁ ପ୍ରସ୍ତର ପାଚେରି ଧସି ।

ଅଙ୍କୁଶ ଆଘାତେ କଣ୍ଟକୁଳ ଗୁଳ
ତେଜ ନଖାଗ୍ରେ ଗୁଳିଲେ ଖରେ
ସ୍ୱଚ୍ଛ ଶିଳାସ୍ତମ୍ଭ ଖୋଲିବାକୁ ବାଟ
ଦନ୍ତାବଳଙ୍କର ଦନ୍ତ ବଳରେ ।
ପକ୍ଷଚ୍ଛିନ୍ନକାଳେ ପୂରବେ ଯେସନ
ଇନ୍ଦ୍ରଙ୍କୁ ଆକ୍ରମି ଥିଲେ ଭୂଧରେ
ଦନ୍ତମୁଖ ଠେକି ବକ୍ର ଅଗ୍ରମୁଖେ
ଗରଜି ଧାଇଁଲେ ତଥା କୁଞ୍ଜରେ ।
ସୁଗମ୍ଭିର ଜଳୀ ଅଧାଯାଏ ପୂରି
ଦଶହାତ ତଳେ ରହିଛି ନୀର
ଉପରୁ ତଳକୁ କାନ୍ଥ ସମ ତୀର
ଚାହିଁଲେ ଭୟରେ ଘୂରଇ ଶିର ।
ପରବେଶ ତହିଁ ବଜୁଳୀ ବେଗରେ
ଦନ୍ତୀଏ ମାହୁନ୍ତ ଭୃତ୍ୟ ଇଙ୍ଗିତେ
ତଳକୁ ଅନାଇ ରହିଲେ ଅଟକି
ବ୍ୟଗ୍ରେ ଅଗ୍ରସର ନୋହି କ୍ଷିତେ
ତେଇଁବା ନିମନ୍ତେ ମାରିଲେହେଁ ବଳେ
ଅଙ୍କୁଶ ବଲ୍ଲମ ଭୃତ୍ୟ ବରଛି
କିଛି ନ ହୋଇଲା ମୁଣ୍ଡ ପିଣ୍ଡ ଝାଡ଼ି
ଘୂଞ୍ଚିଲେ ସେ ପଛେ କାୟ ସଂକୋଚି ।
ନୃପଙ୍କ ଆଦେଶେ ସମ୍ମୁଖର ଦୃଢ଼—
ପାଷାଣ ପ୍ରାଚୀର ଭାଙ୍ଗିବା ପାଇଁ
ଉତ୍ସାହୀ ଯୁବକେ ଦଳଦଳ ତେଇଁ
ଗମ୍ଭୀର ବାପୀରେ ପଡ଼ିଲେ ଧାଇଁ ।
ସନ୍ତରିବା ବେଳେ କରପଦ ଗୁଳ
ମୁକ୍ତକେଶ ଲଗ୍ନ ଶିର ତାଙ୍କର
ବରନେଲା ହେଲେ ଜଳେ ଭାସମାନ
ଘଡ଼ି ଉପମାକୁ ଘଟଆଳର ।
ସହସା ସଂଗ୍ରାମ ଶିଙ୍ଗା ନିନାଦିଲା
ଭେରୀ ଧ୍ୱନିସହ ଭୀଷଣ ଘୋଷେ

ଦଗ୍ଧ କୋଡ଼ଶାୟୀ ପ୍ରତିଧ୍ୱନି ଯୋଗେ
ଗିରୀନ୍ଦ୍ର ତାହାକୁ କମ୍ପାଇ ବେଗେ ।
ଫାଲ୍‌ଗୁନ ମାସର ଘୋର ବାତ୍ୟା ଯୋଗେ
ଖସଇ ଯେସନ କରା ପଥର
ଶଙ୍ଖରୁ ତେସନ ପୁଞ୍ଜପୁଞ୍ଜ ଶିଳା
ପଡ଼ିଲା ମସ୍ତକେ ସଇନଙ୍କର ।
ଶିରସ୍ଜନର ଗଣ୍ଡଶୀଳ ଶୀଳା
ମୂରଛି ପଡ଼ିଏ ପଦାତି ପନ୍ତି
ନିଜ ନିଜ ସ୍ଥାନ୍ନ ବାହାର ଭରଲେ
ଶିଖରର ବୈନ ପାର୍ଶ୍ୱ ତଡତି ।
ଦୁର୍ନିବାର ସେହି ଶିଳାଘାତେ ବ୍ୟସ୍ତ
ବେଢ଼ାଖୋଲ ବୀରକୁଳ ଅଶେଷ ।
କାହାର ମସ୍ତକ କାହା ହସ୍ତ ପଦ
ଭଙ୍ଗିଲା କାହାର ସ୍କନ୍ଧ ପ୍ରଦେଶ ।
ଦୁର୍ଭେଦ୍ୟ କବଚ ଯୁକ୍ତ କାହା ବକ୍ଷ
ଘର୍ଘରୀକା ଶୋଭି କାହାର କଟି
ଚୂନାହେଲା କାହା ଗୁରୁ ଉରୁଦେଶ
ସୁବଳିତ କାହା ଗୁଲ୍‌ଫକଟି ।
ଅର୍ଦ୍ଧଚନ୍ଦ୍ରାକୃତି କାହା ଦନ୍ତପାଟି
ଫିଟି ତଳେପଡ଼ି ଅଲଗେ କାନ୍ଧି ।
ରୁଧିର ଜର୍ଜ୍ଜର ରଣ ଲକ୍ଷ୍ମୀଙ୍କର
ଜିଭଛେଲା ଛବ ନେଲା ଚୋରଇ ।
ଲିଚୁ ମଞ୍ଜି ସମ ପିଚକିଲା କାହା
ଭ୍ରମର ବନ୍ଦିତ ନୟନ ଡୋଳା
ନିମ୍ନେ ନିପତିତ ପାୟସ ପଡ଼ିଏ,
କାହାର ମସ୍ତିଷ୍କ ଛଡ଼ିକା ଗଲା ।
ଦାରୁଆ ପାଷାଣ ଆଘାତେ କାହାର
ଉଦରୁ ରକ୍ତାକ୍ତ ନାଡ଼ୀ ବାହାର
ଦେଲସିନା ସେହୁ ପର୍ବତେ ପଣ୍ଡିତ
ଗୈରିକ ଶିଳାର ମହତ୍ତ୍ୱସାର ।

ଦଳହୋଇ ଯାହା ସର୍ବ କଳେବର
ମଜ୍ଜା, ମାଂସ, ଲୁଷି ମସ୍ତିଷ୍କ ସହ
ମିଶି ଏକତ୍ରରେ ଗୋବର ପିଣ୍ଡର
ପ୍ରାଏ ହୋଇଲା ନେତ୍ରଦୁଃସହ ।
ଶିଖ ଚ୍ୟୁତ ଶିଳା ପ୍ରଚଣ୍ଡ ଆଘାତେ
ଅସ୍ଥିରେ ଲୁଞ୍ଜରେ ଝଡ଼ିଲେ ତକା ।
ଫୋୟାରା ପ୍ରାଏ ଉବକି ଉଠିଲା
ସର୍ବାଙ୍ଗୁ ପ୍ରବଳ ରକ୍ତ ଉବକା ।
ସୁଦନ୍ତ ମାଢ଼ନ୍ତ ସହ ଯାହାରୂପ
ରମ୍ଭା ମଞ୍ଜସମ ଯାହା ଦଶନ
ଅମାଶ୍ରୀ ମଣ୍ଡିତ ଯାହା ପୃଷ୍ଟଦେଶ
ଫାଟିଲା, ଫୁଟିଲା ଯାହା ନୟନ ।
ଖୋରପାର ଠେକି ପଛପାଖେ ହଟି
ପଦାଣ୍ଡକ ଦଳେ ଚରଣେ ଦଳି ।
ସ୍ୱଣ୍ଡଦାୟୀ ଘୋର ଫେଟ୍ହେଙ୍କାଳ ନାଦେ
ଦଉଡ଼ ଦଉଡ଼ କଶ୍ୱୀ ମଣ୍ଡଳ ।
ମନ୍ଦ ସମୀରଣେ ଚଳ ଦଳବତ
ଥରଇ ଥରାଠ ତନ୍ତୁ ବକଲେ
ଭୂକମ୍ପ କାଳର ଗଣ୍ଡ ଶଇଳର
ଛବକ ଓଠାର ନେଲେ ସକଳେ ।
ଜୋଡ଼ା ପ୍ରହାରକୁ ନମାନ ଆଗକୁ
ଓଡାମାଣ ପୀଡା ଲଭି ଘୋଡାଏ
ପାହାଡେ ହାବୋଡ଼ି ଇତସ୍ତତ ପଡ଼ି
ଅଧୀରେ ରୁଧିର ରଞ୍ଜିତ କାୟେ ।
ଖର ଖୁରଘାତେ ସ୍ୱପକ୍ଷଙ୍କୁ ହାଣି
ଆରୋହୀଙ୍କୁ ଫିଙ୍ଗି ପିଠିରୁ ବଳେ
ନିକ୍ଷିପ୍ତ ଶିଳାର ଗୁରୁତର ଘାତେ
ପଡିଲେ କୃତାନ୍ତ କ୍ରୂର କବଳେ ।
ଧ୍ୱସ୍ତ ବିଧ୍ୱସ୍ତ ଛିନ୍ନ ଅନାୟୁତ
ରେଢ଼ାଖୋଳ ଜଡ଼ା ଚମୂ ନିଚୟ

ପ୍ରମାଦ ଗଣିଲେ ଜଣିବାର ଥାଉ
ପଳାଇବା ଏଥୁଁ ହେଲ ସଣସ୍ତ ।
କ୍ଷୀଣ ଦୀପାଲୋକେ ଗୃହିଲେ ଚକତେ
ଦୁସ୍ତେଜ ସେହୁ ଗିରିଶିଖରେ
ବାମଣ୍ଡିଆ ଦେଣ୍ଡା ଗଣ୍ଡା ଗଣ୍ଡା ହୋଇ
ଭ୍ରମୁଛନ୍ତି ଚଣ୍ଡ ଆୟୁଧ କରେ ।
ଗଛ ପତ୍ର ଛର୍ଦ୍ଦି ଦିଶୁଛି କେବଳ
ସଚଳ ମନୁଷ୍ୟ ମୁଣ୍ଡ ମଣ୍ଡଳ
କାହା ହାତେ ଢାଲ କାହା ହାତେ ଖଡ୍ଗ
କାଳଦଣ୍ଡସମ କା' ହାତେ ଭଲ୍ଲ
କିଏ ଧରିଥିଲେ ବନ୍ତୁ ଭଦୀପାଳ
କିଏ ଘେନିଥିଲେ ଶକ୍ତି କରାଳ
କିଏ ଫିଙ୍ଗୁଥିଲେ ନିଆଁ ଖଣ୍ଡା କିଏ
ଠେଲି ଦେଉଥିଲେ ଶିଳଢଶାଳ ।
କିଏବା ଖାବଡ଼ ମାରୁଥିଲେ ଠାଣେ
ବନ୍ଦୁଥିଲେ କିଏ ସୁତୀକ୍ଷ୍ଣ ବାଣ
ପେଷୁଥିଲେ କିଏ ଅମୋଘ ବାଠୁଳି
କିଏ ଯୋଖୁଥିଲେ ଭୀମ କମାଣ ।
ନିମ୍ନମୁଖେ ବାନ୍ଧି ହାବେଲୀ ବାଣକୁ
କିଏ ଦେଉଥିଲେ ନିଆଁ ଲଗାଇ
ଗମ୍ଭୀର ନାଦରେ ଗିରିଦରୀ ସହ
ଶତ୍ରୁ ମିତ୍ର ହୃଦସ୍ଥଳ କମ୍ପାଇ ।
ଧୂମକେତୁ ପୁଚ୍ଛ ସମାନ ସେ ବାଣ
ସ୍ୱ ଜ୍ୟୋତି ଆଲୋକେ ରଙ୍ଗି ଭୂତଳ
ବର୍ଷୁଥିଲ ସୈନ୍ୟ ଶ୍ରେଣୀରେ ମସ୍ତକ
ଉପୁଡ଼ାଇ ତହିଁ ଭୁମୁଲ ଗୋଳ ।
କିଏବା ସ୍ୱର୍ଗାର୍ଦ୍ଧ ବାରୁଦ ବଲତା
ଖଞ୍ଜି ଅବଲମ୍ବେ ଶୂନ୍ୟ ଚଟରେ
ଅନଳ ଲଗାଇ ମଧ୍ୟସ୍ଥଳ ଲକ୍ଷି
ଫିଙ୍ଗୁଥିଲେ ଆଣ୍ଠେ ତଳ ମୁଖରେ

(୧) ଉଲ୍ଲାସିତ ସେହୁ— ଚଳ ଉଲ୍ଲାବତ
ଯଥାସ୍ଥାନେ ପଡ଼ି ଘୂରି ବିଷମ
ଖଣ୍ଡି ଦେଉଥିଲା ଅସ୍ତ୍ରଙ୍କ ଦେହ
କାଠକୁ କରତ କାଟିଲା ସମ ।
କେହୁବା ସବଳେ ଫିଙ୍ଗୁଥିଲେ ଧରି
ଦାରୁଦରେ ଭରି କଠଙ୍ଗ ନଳ
ଫାଟୁଥିଲା ତାହା ଘୋର ଘନଘୋଷେ
ଚଉଦଗେ ବର୍ଷି ଜ୍ୱଳନ୍ତାନଳ ।
ପୋଡ଼ି ଯାଉଥିଲା କାହାର ଶରୀର
ଛିଣ୍ଡୁଥିଲା କାହା କର ପୟର
କାହା ଶିରଫାଟି ରକ୍ତ ବହୁଥିଲା
କଟି ଯାଉଥିଲା କାହା କମର
ହାତରେ ହାତୋଳି- ଥିଲା ଯାର ଯାହା
ଫିଙ୍ଗୁଥିଲେ ସର୍ବେ ତଳକୁ ଯୋରେ
ବୃଷ୍ଟି ଧାରପରି ଶତ୍ରୁ ସୈନ୍ୟମଧ୍ୟେ
ପଡୁଥିଲା ତାହା ବାତ୍ୟା ବେଗରେ ।
ଉପରୁ ନିକ୍ଷିପ୍ତ ପଥର ଖଣ୍ଡାର
ଆଘାତୁଁ ରଖିଲେ ଯେହୁ ଜୀବନ
ବୀରମାନଙ୍କର ଅବ୍ୟର୍ଥ ସନ୍ଧାନେ
ଚଳିଲେ ସେମାନେ ପ୍ରେତ ସଦନ ।
ବୁଜା ହୋଇଥିବା ନବଢ଼ ପଥର—
ପ୍ରାଚୀର ଭଙ୍ଗିବା ଥାଉ ତେଣିକି
ପ୍ରହାର ଭୟରେ ଖାଇରେ ପହଁରି
ଯାଇ ନପାରିଲେ ଛଳେ ତେଣିକି ।
ଭଗବାନ ଚନ୍ଦ୍ର ପାର୍ଶ୍ୱଚର ମୁଖୁଁ
ଥର ଥର ଏହୁ କଥା ଆକର୍ଣ୍ଣି
ଜ୍ୱଳିଲେ କ୍ରୋଧରେ ଜ୍ୱଳେ ଯଥା ଖରେ
ହୋମକୁଣ୍ଡେ ହବ ଲଭିଲେ ବହ୍ନି ।

(୧) ସର୍ଗ ।

ପରନ୍ତୁ.ନେହେ ସେ  କର୍କଶ ସ୍ୱରରେ
ବାରମ୍ବାର ତାଙ୍କୁ ଦେଇ ଧିକ୍କାର
ଦୃଢ଼ସ୍ୱରେ ଆଜ୍ଞା  ବନ୍ଧିଲେ ହକାର
ଭାଙ୍ଗିବାକୁ ସେହି ଶୈଳ ପ୍ରାକାର ।
ବାତ୍ୟା ବିତାଡ଼ିତ  ଧୂଳିରାଶି ସମ
ଗଜରାଜ ସହ ପୁଣି ହୁଙ୍କାରେ
ପ୍ରବେଶି ସୈନିକେ  ଘଡ଼ିଏ ନ ରହି
ବିପକ୍ଷ ନିକ୍ଷିପ୍ତ ଶିଳା ପ୍ରହାରେ ।
ପଳାଇଲେ ଭୟେ  ବୃଥା ହେଲା ତାଙ୍କ
ଉତ୍ସାହ ସାହସ ଶୌର୍ଯ୍ୟ ସକଳ
ତରଙ୍ଗ ତାଡ଼ନେ  ବାଲିବନ୍ଧ ଟଳେ ;
ଟଳିବ କାହିଁକି ସ୍ଥଳେ ଅଚଳ ?
ମୁମୂର୍ଷୁ ଦେହରେ  ସୂଚୀ ସାହାଯ୍ୟରେ
ଉତ୍ତେଜକ ଅର୍କ ପଶିବା କ୍ଷଣି
ନ ଫେରଇ ପ୍ରାଣ  କ୍ଷଣେ ମିଳି ମିଳି
ହୁଅଇ ଯେସନ ତାର ଧମନୀ ।
ଉତ୍ତେଜନା ବାତେ  ଜ୍ୱଳି ଉଠିଲେହେଁ
ତେସନ ତାହାଙ୍କ ଉତ୍ସାହାନଳ
ଉପଲ ବରଷା  ସଲିଳରେ ଲିଭି
ସେ ବହ୍ନି କ୍ଷଣକେ ହେଲା ଶୀତଳ ।
କାର୍ତ୍ତିବାଳା ଆଗେ  ଆସିଥିଲେ ଶୂରେ
ବରବେଶେ କାହା କଥା ନ ଶୁଣି
ମାତ୍ର ଏ ବିବାଦ  ମଧ୍ୟ ଶୟନର
ସଙ୍ଗିନୀ ହୋଇଲେ ଚକ୍ଷ ଶକୁନୀ ।
ଆଚମ୍ବିତେ ଏକ  ଭୀଷଣ ଘଟଣା
ଘଟିଲା ସେକାଳେ ଆସି ସେ ସ୍ଥଳେ
ମହାବେଗା କାଳ—  ପ୍ରବାହିନୀ ବେଗ
ଫେରାଇବ କହ କିଏ କୌଶଳେ ।
ଅଲକ୍ଷିତେ ଏକ  ନିକ୍ଷିପ୍ତ ଖୁଣ୍ଟାରୁ
ଜ୍ୱଳନ୍ତା ଅଙ୍ଗାର ଛିଡ଼କି ଖରେ

ପଡ଼ନ୍ତ ସହସା ଚଳ ତାରକାରେ
ବାରୁଦବାହକ କରୀ ପୃଷ୍ଠରେ ।
ଅଗ୍ନି କଣା ସ୍ପର୍ଶେ ଗଜ ପୃଷ୍ଠସ୍ଥିତ
ବାରୁଦ ଗୋଦାମ ଉଲ୍ଲଠ ନାଦେ
ଉପୁଜାଇ ତ୍ରାସ ସେ ଗିରି ଗହ୍ୱରେ
ପଳାଇଲେ ବୀରବୃନ୍ଦେ ପ୍ରମାଦେ ।
ପ୍ରବଳେ ପ୍ରଖରେ ଜ୍ୱଳନ୍ତ ଜ୍ୱଳନ
ସେ କରୀବରର ପୃଷ୍ଠ ପୋଡ଼ାଇ
ଭୟେ ରଡ଼ଛାଡ଼ ଧାଇଁଲେ ବାରଣେ
ଅନ୍ୟାନ୍ୟ କରୀଙ୍କୁ ସଙ୍ଗେ ଧୂଆଇଁ ।
ଭୈରବ ବୃଂହିତେ ତରୁଲତା ଦଳ
ସ୍ୱଦଳଙ୍କୁ ମାଡ଼ି ଚକଟି ପଦେ
ଥୋଡ଼ ହାତ ପିଟି ଦଉଡ଼ିଲେ ବେଗେ
ଅନଳ ଆତଙ୍କେ କ୍ଷିପ୍ର ଦ୍ୱିରଦେ ।
ଗଜ ମର୍ଦ୍ଦନରେ ଧକ୍କାଲାଗି ଅସ୍ତେ
ଶୈଳଚ୍ୟୁତ ଶିଳା ଖସିଲାବତ
ଉତ୍ପୁଚ୍ଛେ ଦଉଡ଼ି ଇତସ୍ତତ ହେଲେ
ନାତମାରି ହେଉଁ ହେଉଁ ସନ୍ତ୍ରତ ।
ଏ ଆଦି ବିପଦେ ଜଡ଼ି ଅବଶେଷେ
ନରେଶ ହତାଶେ ଦୁଃଖିତ ଚିତ୍ତେ
ଆଦେଶିଲେ ବୀରେ ଫେରି ଯିବାପାଇଁ
ସମର ଉପେକ୍ଷି ସେହି ନିଶୀଥେ ।
କ୍ଷୁଧାରେ କାତର ଶ୍ରମେ ଅବସନ୍ନ
ବ୍ୟୂହ ବିଶୃଙ୍ଖଳା ବଣେ ଆରତ
ନିବିଡ଼ ଅନ୍ଧାରେ ଘୂରି ଘୂରି ବୀରେ
ହାତରେ ଦରାଣ୍ଡି ଖୋଜିଲେ ପଥ ।
ସେ ବାଟ ବ୍ୟତୀତ ଆଉ ରାହା ନାହିଁ
ହାଲିଆ ହୋଇଲେ ସକଳେ ଫେରି
ଦୁର୍ଗରୋହ ଶୈଳ କାଟିଦେଲା ପରି
ଚଉଦିଗ ଯାକ ରହିଛି ଘେରି ।

ଏଣୁ ପଛପାଖେ ଫେର ସେ ଯୋଦ୍ଧାଏ
ସଧୀରେ ଅନ୍ଧାରେ ଅତି କଷ୍ଟରେ
ପଶିଥିଲେ ଯହିଁ ପ୍ରବେଶିଲେ ତହିଁ
ପୁଣି ସେହି ଗିରି ରନ୍ଧ୍ର ମୁଖରେ ।
ଦେଖିଲେ ଆଗରେ ପ୍ରତିପକ୍ଷମାନେ
ପ୍ରତ୍ୟକ୍ଷରୂପିଣୀ ମୃତ୍ୟୁ ସମାନ
ଉଗ୍ର ହୋଇଛନ୍ତି ବଦନ ବ୍ୟାଦାନ
ଗ୍ରାସିବାକୁ ତାଙ୍କ ପ୍ରିୟ ପରାଣ ।
ସକଳ ସମର— ବିଦ୍ୟା ପାରଦର୍ଶୀ
ବିଶ୍ୱନାଥ ଦେବ ଇନ୍ଦ୍ର ମଧ୍ୟରେ
ସେ ବାଟକୁ ସୁଦ୍ଧା ରୁନ୍ଧି ଦେଇଛନ୍ତି
ତରୁସଙ୍ଘ କାଟି ପୁଞ୍ଜି ସ୍ତବରେ ।
ମହା ମହୀରୁହେ ଧରାତଳ ଚୁମ୍ବି
ପ୍ରକାଣ୍ଡ କାଣ୍ଡରେ ପଥ ଆବୋରି
ଦଶନ୍ତ ସେ ସ୍ଥାନେ ଉଠିଲ ପର୍ବଏ
ଭୂଗର୍ଭର ଆଉ ଖଣ୍ଡେ ଶିଖରୀ ।
ବାଟକାଟି ତହୁଁ ବାହାରିବା ବିନା
ମୁକୁଳିବା ଅନ୍ୟ ଉପାୟ ନାହିଁ
ତହିଁ ରହିଥିଲେ ବିନା ଆୟାସରେ
ପ୍ରାଣ ଟାଣିନେବ ପରେତ ସାଇଁ ।
ଏହା ଚିନ୍ତି ସର୍ବେ ପଥମୁକ୍ତ ଅର୍ଥେ
ସମବେତ ହୋଇ ଏକ ବ୍ୟୂହରେ
ରଣପଙ୍କେ ପ୍ରାଣ ଆହୁତି ଦେବାକୁ
ଧାଇଁଲେ ଅଗକୁ ଶଲଭାକାରେ ।
ଗଛ କାଟି ବାଟ ମେଲାଇବା ପାଇଁ
ଟାଙ୍ଗିଆ ଫାଳସା ଶାବଳ ଧରି
ଧାଇଁ ସେ ସ୍ଥାନକୁ ଛଇଁ ଦେଲେକ୍ଷଣେ
ନବାତ ଖଣ୍ଡକୁ ପିମ୍ପୁଡ଼ି ପରି ।
ସବେଗେ ମାତ୍ତନ୍ତ ପଦନଖେ ଛିନ
ବାରଣକୁଳର ଶ୍ରବଣମୂଳ

ସୁତୀକ୍ଷ୍ଣ ଅଙ୍କୁଶେ ସଙ୍କେତଲେ ଦନ୍ତେ
ଧର୍ଷିବାକୁ ସେହୁ ପାଦପକୁଳ ।
ହସ୍ତୀପାଳଙ୍କର ତୀବ୍ର ତାଡନାରେ
ଉଚ୍ଚେ ପୁଚ୍ଛଟେକି ସଙ୍କୋଚ ଶୁଣ୍ଡ
ଆଣ୍ଠୁକୁ ବଙ୍କାଇ ନଖେ ମାଟି ଖୋଳି
ସଦମ୍ଭେ ତଳକୁ ନୁଆଇଁ ମୁଣ୍ଡ ।
ମୁନିଆ ଦଶନ ଯୁଗ୍ମେ ସେ ବାରଣେ
ଧରଣୀ ବକ୍ଷକୁ ଚପି ଚଷିଲେ
ନିଜ ମହାକାୟ— ଗୁରୁଭାର ପୁଣି
ଥୋଇ ସେ ସୁଦୀର୍ଘ ଦନ୍ତ ଯୁଗଳେ ।
ଅବିରତ ରତ ହେଲେ ଅବହେଳେ
ଖୋଲିବାକୁ ସେହୁ ପୁରର ସିଂହ
ଦ୍ୱାର ଅଭେଦ୍ୟ କବାଟ ପଟଏ
ରହିଥିଲା ତାଙ୍କ ଆଗରେ ଯାହା ।
ସେକାଳେ ସେସ୍ଥାନେ ଶ୍ରାବଣ ମାସରେ
ଗହୁଫଳେ ଯଥା ପାଚିଲା ତାଳ
ପତନ ଶବ୍ଦରେ କନ୍ଦର କମ୍ପାଇ
ପଡିଲା ଉପରୁ ଉପଲମାଳ ।
ସିଂହ ଶିକାରରୁ ଗଲେ ଦବାଙ୍କର
ଝଡ଼ରେ ବୁଡ଼ଇ ଶସ୍ୟ ଯେସନ
ପ୍ରାଣ ନାଶକାରୀ ସେ ଶିଳାବୃଷ୍ଟିରେ
ବିପକ୍ଷ ବାହିନୀ ହେଲେ ତେସନ ।
ନଇଁଗଲା କାନ୍ଥି ସେ ଗଡ ପ୍ରାଚୀର
ପୁରବ ପଟଏ ରହିଲା ଠିଆ
ଲଙ୍ଗଳ ବଳରେ ଘାସ ଉପୁଡ଼ଇ
ଉପୁଡ଼ ପଡ଼ିବ ପାଷାଣ କାହିଁ ?
ଅଥବା ବେଣୁଆ— ବୃକ୍ଷ ଉନ୍ମୂଳନ
ଫଣୀର ପ୍ରଚଣ୍ଡ ତାଳେ ଦୋହଲି
ଗଗନ ପରଶି ଭୂରୁହ ନିବହ
ପଡ଼ନ୍ତିକି ତଳେ ସହଜେ ଭଳି ?

ମସ୍ତୁର ଦର୍ଶନେ ଅହ୍ମବର ଯଥା
ରହଇ ମଣ୍ଡଳ ଦେଇ ଭୟରେ
ସନ୍ଧାସେ ପଳାଇ ଯୋଦ୍ଧାଏ ତେସନ
ପୁଞ୍ଜୀଭୂତ ହେଲେ ଏକ ସ୍ଥାନରେ ।
ଗିରିଦ୍ୱାରେ ରୁଦ୍ଧ ଗଜ ଯୂଥ ପରି
ଏକାବେଳେ ବନ୍ଧହେଲେ ସବେ
(୧) ପାର୍ଥଶର ବ୍ୟୂହେ(୨) ରୈବତକେଯଥା
ଦୋଷିଂହ୍ମ ଗନ୍ତୃକ ସହ୍ମ ଦାନବେ ।
ପ୍ଛର ପାଖେରୁଦ୍ଧ ସେ ଗିରି ଦରୀରେ
ପଥଖୋଜି ଖୋଜି ଖୋଲଭୂପାଳ
ଦେଖିଲେ କେବଳ ପଶ୍ଚିମକୁ ଅଛି
ଯିବାଭଳି ଏକ ସଂକୀର୍ଣ୍ଣ ନାଳ ।
ତା’ ଛଡ଼ା ଏ ଦୃଢ଼ ବନ୍ଦୀ ମନ୍ଦିରରୁ
ଫିଟିବା ଦ୍ୱିତୀୟ ଉପାୟ ନାହିଁ ।
ମଣବେ ନଜୁବା ରିପୁବକ୍ରେ ରଞ୍ଜି
ଯିବେ ସେ ପଙ୍କିଳ ପଥେ ଧସାଇ ।
ଭୟାନକ ସ୍ୱର— ଝିପଦ ବହ୍ନିରେ
ଝିଦଗ୍ଧ ହୃଦ ସେ ନୃପ ହତାଶେ
ନାୟକ ପାଇକ ସରଦାର ଯେତେ
ସଭିଙ୍କୁ ହକାରି ଆଦରେ ପାଶେ ।
କାହୃଣ ଝିନତି ସହ ମିଷ୍ଟବାକ୍ୟେ
ସେମାନଙ୍କ ମନ ତୋଷି ବିଧିରେ
ରଣ ଉଦ୍ଦୀପକ ପ୍ରଗଲ୍‌ଭ ବଚନେ
ଧିକ୍କାରି କହିଲେ ଗୁରୁ ଗମ୍ଭୀରେ ।
“ଛାଡ଼ ମନୁଭୟ ହେ ବୀରମଣ୍ଡଳ !
ଶୌର୍ଯ୍ୟଦୀପ୍ତ ଦମ୍ଭ ସାହସ ଧର

---

(୧) ସତ୍ୟଭାମାଙ୍କୁ ହରଣ କରିବା କାଳେ ଅର୍ଜୁନଙ୍କ ଶର ଦ୍ୱାରା ଗୋବିନ୍ଦ ଦେଇଁ ରୁଦ୍ଧ ହୋଇଥିବା ପ୍ରସଙ୍ଗ ଅନୁସନ୍ଧେୟ ।
(୨) ଦ୍ୱାରକାସ୍ଥ ରୈବତକ ନାମକ ପର୍ବତ ।

କିଏ ତୁମ୍ଭେମାନେ କେଉଁ ବଂଶଧର
ସ୍ୱବଂଶରେ ଅଛ କହ୍ନା କୁମର ।
ମାରିବା ମରିବା କ୍ଷତ୍ରିୟର ଧର୍ମ
ଯଶୋପଟେ ଏହି ବର୍ଣ୍ଣମାଳାକୁ
ଲେଖି ଢାଳିଦିଅ ରଣରଙ୍ଗେ ଦେହ
ରହିଥାଉ କଥା କାଳକାଳକୁ ।
ରଣେ ଭଙ୍ଗ ଦେଇ ଏ କଳଙ୍କ ବହି
ନିର୍ଜୀବ ପରାଏ ଘରକୁ ଯାଇ
ମୁଖେ ଲୁଗାଦେଇ ନାରୀଏ ବସିବେ
କେମନ୍ତ ସହିବ ସେ ଦୃଶ୍ୟ ଭାଇ !
କ୍ଷତ୍ରିୟ କୁଳରେ ଜନ୍ମିଛ ସକଳେ
କ୍ଷତ୍ରିୟ ସୁଲଭ ଗାରିମା ରଖ
ରିପୁରକ୍ତେ ଧୋଇ ପିତୃ ପୁରୁଷଙ୍କ
ଅଜେୟ କୃପାଣ ଦାଗୁଁ କଳଙ୍କ
ଆହେ ବୀରବୃନ୍ଦ ! ଦପଦେ ବୀରର
ଏକମାତ୍ର ଦୃଢ଼ ସାହସ ସାହା
ସେ ସାହସ ଅସ୍ତ୍ରେ ଆଗେହି ଧାଇଁଲେ
କେତେମାତ୍ର ଏହି ସଙ୍କୀର୍ଣ୍ଣ ବାହା ।
ଭୟରେ କୁକ୍କୁର ପରାଏ ପଳାଇ
ପୃଷ୍ଠେଦନ୍ତ ସ୍ଥାନ ଶତ୍ରୁଙ୍କ ନାଡ
କି ଲଜ୍ଜା ! ଖାଇବ ସିନା ଘରେଯାଇ
ଚୂଡ଼ି ଧୂଆଜଳେ ପଖାଳ ଭାତ ।
ଛାଡ଼ ସେ ସଙ୍କଳ୍ପ ମାତ ରଣରଙ୍ଗେ
ନିମିଷକେ ଶତ୍ରୁ ଅନିକିନୀକି
ଦଳ ବୀରଦର୍ପେ ସେମାନଙ୍କ କରୁଁ
ବଇଜୟନ୍ତୀ କି ଆଣିବା ଝିଙ୍କି ।
ନାହିଁକି ହେ ! ବଳ ଏ ଭୁଜେ, କେବଳ
ଆହାର ନିମନ୍ତେ ସୃଷ୍ଟି ତାହାର
ଭଗାରି ହସାରେ ନପଡ଼ି ବଇଶୀ
ମାରି ମର କର ଏକଥା ସାର ।

ନ ବୁଡାଅ କୁଳ     କଳଙ୍କ ସାଗରେ
    ଆସ ଆସ ନାଶି ଅରିଙ୍କ ଆଶା
ମେଣ୍ଟାଇବା ତାଙ୍କ     ଉତ୍ତପ୍ତ ରୁଧିରେ
    ରଣଚଣ୍ଡୀଙ୍କର ମହା ପିପାସା
ଜିଣିଲେ ଅଜସ୍ର     ସମ୍ପତ୍ତି ମିଳଇ
    ମଲେ ଅପ୍ସରୀଙ୍କ ଅଙ୍କ ପଲ୍ୟଙ୍କ
ତେବେ କାହିଁ ଏହି     ନଶ୍ୱର ଶରୀର
    ଲୋଭରେ କିଣିବା ଚିରକଳଙ୍କ ।
ବଇରୀଙ୍କୁ ବଳ     କି ଆଣିଛ ବୋଲି
    ପିଲାଏ ଯେବେହିଁ କରିବେ ଅଳି
କେମନ୍ତ ତାହାଙ୍କୁ     ଏ ଲଜ୍ଜିନା କଥା
    ଆହେ ଭାଇମାନେ ! କହିବା ଛଳ
ସ୍ୱାମୀ ପୁତ୍ରଙ୍କର     ଯଶେ ଆଚ୍ଛାଦନା
    ଗୃହିଣୀ ଭଗ୍ନୀ, ମା, ମାଉଁ ମାଉସୀ
କି କହିବେ କହ     ପ୍ରହାରେ ବକ୍ଷର
    ସସ୍ନେହେ ତୁମ୍ଭର ପିଠି ଆଉଁସି ।
ଗୋରୁଗୋଷ୍ଠେ ପଶି     ଶାର୍ଦ୍ଦୂଳ ଯେସନ
    ସେମାନଙ୍କୁ ନଖ ଦନ୍ତରେ ଚୀରେ
ଉଠ ହେ ! ଅରିଙ୍କ     ଶୂଳଦନ୍ତେ ଭୂଷି
    ନାଶିବା ବିଦାରି ନଖ-ଅସିରେ ।
ରଣଭଙ୍ଗେ ମନ     ନ ଦିଅ କେବେହେଁ
    ନ ପାରିବ ରହି ଶାନ୍ତ ସୁଖରେ
ଅପମାନ ଦେଇ     ଧିକ୍କାରିବେ ସଦା
    ଜନ୍ମପ୍ରିୟ ତୁମ୍ଭ ନଗରଜନରେ ।
ପୂର୍ବ ବୈରିଭାବ     ଶୋଧ ନେବା ପାଇଁ
    କରୁଥିଲ କେତେ ଦମ୍ଭ ଆଗରୁ
ଆଜି ତ ସମ୍ମୁଖେ     ପାଇଛ ଶତ୍ରୁଙ୍କୁ
    ଉଠ ଏକାବେଳେ ମାର ମୂଳରୁ ।
ଆସ ଭାଇମାନେ     ଜୟଲକ୍ଷ୍ମୀ କଣ୍ଠ
    ମଣ୍ଡିବା ଅରାତି ମୁଣ୍ଡ ମାଳରେ

ରଣ ହୁତାଶନେ ଅଙ୍ଗ ଢ଼ାଳିବାକୁ
କେବେ କି ସମ୍ମୁଖ ଖୋଲିଥା ଶାରେ ।
ଅଗ୍ନେୟ ପଥର ଘର୍ଷଣେ ଯେମନ୍ତ
ବଥାପିଲି ହୃଦେ ଉଠଇ ଜଳି
ଅଥବା ଯେସନ ଲଗୁଡ଼ ପ୍ରହାରେ
ଗର୍ଜ୍ଜେ ଫେର ଫଣା ଟେକି କୁଣ୍ଡଳୀ ।
ବାକ୍ୟ କୁଶଳ ସେ ନରପାଳଙ୍କର
ଉଦ୍ଦୀପକ ଗୀର ଶୁଣି ଚେତନ
ଜଡ଼ ପ୍ରାୟ ତାଙ୍କ ତନୁ ଉଲ୍ଲସିଲା
ହୃଦେ ସଞ୍ଚରିଲା ନବ ଜୀବନ ।
ଅଭିନବ ରଣ— ଉତ୍ସାହରେ ମାତି
ଉଲ୍ଲାସେ ନାଦିଲେ ବିକଟ ଥାଟ
କମ୍ପାଇ ଭୂଧର, କମ୍ପାଇ ଭୂଧର—
ସଙ୍କୋଚିତ ସେହି ବନ୍ଧୁର ବାଟ ।
ଭାସ୍ୱର ଅସ୍ତ୍ରର ସଞ୍ଚାଳନ ସହ
ସ୍ୱର୍ଣ୍ଣବର୍ଣ୍ଣ ବର୍ମ୍ମ ଚର୍ମ୍ମ ଜମକ
ବିଜୁଳି ପରାଏ ଘନ ଅନ୍ଧକାରେ
ନୟନ ବେନିକୁ ଦେଲା ଚମକ ।
ମେଘ ମନ୍ଦ୍ରନାଦେ ଗର୍ଜ୍ଜିଲେ ବାରଣେ
କନ୍ଦରକୁ ଦେଲାପରି ଫଟାଇ
ସ୍ୱମର ପରାଏ ଗ୍ରୀବ ପୁଚ୍ଛ ଟେକି
ହ୍ରେଷିଲେ ତୁରଙ୍ଗେ ଧୋଣା କମ୍ପାଇ ।
ବାଜିଲା ଦମାମା ନବ ଉତ୍ସାହିତ
ଅନୀକିନୀ ପ୍ରାଣେ ଉତ୍ସାହ ଭରି
ରକ୍ଷୀ ସୈନ୍ୟକୁଳ ଭୂପତିଙ୍କ ଆଗେ
ଡେଇଁଲେ ବୁଭୁକ୍ଷୁ ଶାର୍ଦ୍ଦୂଳ ପରି ।
ବୈତାଳିକ ସ୍ୱରେ ସ୍ୱ ସ୍ୱର ମିଶାଇ
ଗାଇଲେ ଗମ୍ଭୀରେ ସୈନିକଗଣ
"ଜୟ ଭଗବାନ— ଚନ୍ଦ୍ର ନୃପମଣି
ଜୟ ରେଢ଼ାଖୋଲ ମହୀମଣ୍ଡନ !

ଜୟମା ବରଦା    ମାହେଶ୍ୱରୀ ଦେବୀ
ବରାଭୟ ଦାତ୍ରୀ ଶତ୍ରୁ ନାଶିନୀ ! !
ଶଙ୍କର ମୋହିନୀ    ସଂକଟ ତାରିଣୀ
ଜୟ ଜୟ ମାତଃ ସିଦ୍ଧି ଦାୟିନୀ ! ! !"
ଶୂରମାନଙ୍କର    ଅସ୍ତ୍ରଝନତ୍କାର
ଦାରୁଣ ଘଠାର ଘଣ୍ଟା ଠମକ
ବାହାରିଲୁଁ ଆମ୍ଭେ    ସନ୍ନଦ୍ଧ ହୋଇ
ଚାମୁଣ୍ଡା ବୀରଙ୍କୁ ଦେଇ ଧମକ ।
ଦୂରେ ପ୍ରସାରିତ    ତେଣାର ହାସରେ
ପୁରବେ କାଏତେ ଯେସନ ଦୁଃଖେ
ପଳାଇ ପଶିଲେ    ବୈନତେୟଙ୍କର
ଶୈଳ ଖୋଲ ପର ସୁଦୀର୍ଘ ମୁଖେ ।
ଅଣ୍ଡ ଗଡ଼ାଣିଆ    ଅପ୍ରଶସ୍ତ ପଥେ
କୋଲାହଳେ ତେଣେ ସେହି ବାହିନୀ
ଧୀରେ ଧୀରେ ଉଠି    ଆଗକୁ ଯେମନ୍ତ
ହେଲ (୧) ଖଙ୍ଗି ମୁଣ୍ଡ ପାର୍ଶ୍ୱବର୍ତ୍ତିନୀ ।
ସେହିକ୍ଷଣି ତାଙ୍କୁ    ଘେରିଲେ ବିପକ୍ଷେ
ଚୌଦିଗୁଁ ଦଉଡ଼ି ଶିଖର ଛାଡ଼ି
କରେ ଘେନି ଧନୁ    ଖଡ଼ଗ କୁଠାର
ଭଲ୍ଲ, ଭିନ୍ଦିପାଳ, ବଲ୍ଲମ ବାଡ଼ି ।
ଲାଗିଲା ତୁମୁଳ    ସଂଗ୍ରାମ ସେ ସ୍ଥାନେ
କେହିତ କାହାକୁ ନୁହନ୍ତି ଊଣା
ପୂରୁଣା ବୈରତା    ସ୍ମରି ଫୁରୁଣାରେ
ଉଲ୍ଲାସେ ପଶିଲେ ଛାଡ଼ି କରୁଣା ।
ବେଳା ଧର୍ଷିବାକୁ    ଦଉଡ଼ଇ ଯଥା
ସାଗର ଲହରୀ-ବାହୁ ବିସ୍ତାରି
ଦେନ ଅନୀକିନୀ    ମୁହାଁ ମୁହିଁ ହୋଇ
ଧାଇଁଲା ତେସନ ଦମ୍ଭେ ହୁଙ୍କାରି ।

(୧) ପର୍ବତର ଶିଖର ପ୍ରଦେଶର ନିମ୍ନାଂଶ ସ୍ଥାନବିଶେଷ ।

ପ୍ରବଳ ପବନେ ଦୁଇପାର୍ଶ୍ୱେ ଉଡ଼ି
ଚମକାଇ କ୍ଷଣେ ନଭ ଅଙ୍ଗଣା
ପରସ୍ପରେ ମେଘେ ଠେସାଠେସି ହୋଇ
ସୃଜନ୍ତି ଯେସନ ବଜ୍ରାଗ୍ନି-କଣା ।
ପ୍ରତିପକ୍ଷେ ଲକ୍ଷି ଉଭୟ ବାହିନୀ
ପ୍ରବେଶି ତେସନ ଶୌର୍ଯ୍ୟ ଗୌରବେ
ଆୟୁଧ ଘାତରେ ରଣସ୍ଥଳୀ ରଞ୍ଜି
ମାଣ୍ଡଲେ ଆହବେ ଭୀମ ତାଣ୍ଡବେ ।
ଦୁଇ ସୈନ୍ୟ ମଧ୍ୟେ ଅର୍ଦ୍ଧ ଚନ୍ଦ୍ରାକୃତି
ସରଣୀଏ ନଭସ୍ଥଳେ ସରଜ
ଛୁଟିଲେ ଚଞ୍ଚଳେ ଶର ସନସନେ
ଆଘାତିତ ନାଗପରି ଗରଜି ।
ନାନା ପକ୍ଷୀ ପକ୍ଷ— କଙ୍କପତ୍ର ଶୋଭି
ସେ ତଇଲପକ୍ୱ ତୀକ୍ଷ୍ଣ ମାର୍ଗଣେ
ଲଗାଲଗି ହୋଇ ରହିଲେ ଏକନେ
ନ ଦିଶିଲେ ଗ୍ରହ ତାରା ଗଗଣେ ।
ଅନ୍ଧକାରେ କେହୁ କାହାକୁ ନ ଚିହ୍ନି
ଡକାଡକି ହୋଇ ନାମ ଉଚ୍ଚାରି
ଶବ୍ଦ ଲକ୍ଷି ବଳେ କାଳାନଳ ସମ
ସାୟକ ପେଷିଲେ ଧନୁ ଟଙ୍କାରି ।
ପଦାତି ସହିତ ପଦାତି ଯୁଝିଲେ
ଅଶ୍ୱାରୋହୀ ସହ ଯୁଝିଲେ ସାଦୀ
ଧନୁର୍ଦ୍ଧାରୀ ସହ ଧନୁର୍ଦ୍ଧାରୀ ପୁଣି
ଲଗିଲେ ନିଷାଦୀ ସହ ନିଷାଦୀ ।
କିଏ କ୍ଷିପ୍ରକରେ କରବାଳ ଚାଳି
ସମ୍ମୁଖେ ଶତ୍ରୁର ମସ୍ତକ କାଟି
ଅନ୍ୟର ଅବ୍ୟର୍ଥ ଅର୍ଦ୍ଧଚନ୍ଦ୍ର ଶରେ
ପଡ଼ଇ ପଲକେ ସାଉଁଟି ମାଟି !
ହୁଁଅ ମାର ମାର ଅନ୍ୟୋନ୍ୟକୁ ଚାହିଁ
କେଉଁ ବେନି ବୀରେ ଚାଳି କୃପାଣ

ରଣ ଜୟୋଚ୍ଛ୍ୱାସେ　　ମାତିଲେ ଉଲ୍ଲାସେ
　ଚରଣାୟୁଧଙ୍କ ଯୁଦ୍ଧ ସମାନ ।
ପ୍ରଚଣ୍ଡପକ୍ଷ ବକ୍ଷ　　ଲକ୍ଷି ପକ୍ଷୀପର
　ତାହା ଦକ୍ଷକରୁ ଶଲକ୍ଷ ଧାଇଁ
ହୃଦସ୍ଥଳେ ଭେଦ　　ଭୂମିରେ ପ୍ରବେଶି
　ଦୋହଲିଲା ତାଳୁ ତଳେ ଶୁଆଇ ।
କୁନ୍ତ ପ୍ରହାରରେ　　ମତ୍ତଦନ୍ତୀ ଦନ୍ତୁଁ
　ଜନମି ଅନଳ କଣିକା ମାନ
ଆସ୍ଫାଳି କ୍ଷଣେ　　କ୍ରୋଧାନ୍ଧ ଶୂରଙ୍କ
　ରକ୍ତାକ୍ଷ ରେଖାଗ୍ନି ଶିଖା ସମାନ ।
ମଲ୍ଲକୁଳ ଯଥା　　ବାହାସ୍ଫୋଟ ମାରି
　ମଣ୍ଡଳ ଆକାରେ ଘୂରି ଚଳିଲେ
ଅନ୍ୟାନ୍ୟଙ୍କୁ ଦେଖି　　ଆଗକୁ ଉଚ୍ଛୁଳି
　କଚଡ଼ା କଚଡ଼ି ହୁଅନ୍ତି ବଳେ ।
ତେସନ ଦ୍ୱିଦନ୍ତ　　ଦନ୍ତ ସମସ୍ତରୁ
　ଗଦାଧର କେଉଁ ଯୁବା ଯୁଗଳ
ଚକ୍ରାକାରେ ବୁଲି　　ପିଠାପିଠି ହେଲେ
　କୁହାଟେ କମ୍ପାଇ ସମର ସ୍ଥଳ ।
ଅପର ଯୋଦ୍ଧାକୁ　　ନିରସ୍ତ୍ର କରେଖି
　ରଣକାଣ୍ଡ ସ୍ୱଚ୍ଛ କେବଣ ବୀର
ସ୍ୱୀୟ ଖଡ୍ଗ ଫିଙ୍ଗି　　ପ୍ରବଳ ବେଗରେ
　ଅଟକି ଧରନ୍ତି ତାର ଶରୀର ।
ସେସେ ବେନ ତନ୍ତୁଁ　　ଦୃଢ଼େ ଧସ୍ତାଧସ୍ତି
　ମର୍ମର ହୋଇ ଏକନେ ଜଡ଼ି
ମୁଖେ ମୁଖମାରି　　ରଗଡ଼ା ରଗଡ଼ି
　ହେଲେ ଅବଶେଷେ ଭୂତଳେ ପଡ଼ି ।
ହୃଦେ ହୃଦ ଚାପି　　ମୁଣ୍ଡେ ମୁଣ୍ଡ ଯୋଡ଼ି
　ପଡ଼ି ଉଠି, ଉଠି ପଡ଼ି ନିର୍ଭୟେ
ଜଣକର ପ୍ରାଣ　　ଶେଷ ହେବାଯାଏ
　ଛାଡ଼ିଲେ ମମତା ଘଟ ନିର୍ଦ୍ଦୟେ ।

ଜ୍ୱଳନ୍ତା ଅନଳ ସମ ଜ୍ୟୋତିଃଶାଳୀ
ଗଙ୍ଗକୁଳୋଦ୍ଭବ ମାଳବଣ୍ଡଙ୍କ ୧
ସମ୍ମୁଖରେ ଯୁଝି ସ୍ପର୍ଦ୍ଧିର ବଞ୍ଚାଇ
ନପାରିଲେ କଲ୍‌ପାଲ୍ ୨ ନାୟକ
ଖାଣ୍ଡୋଦ୍ଧୂଳ ତାଙ୍କ ଶୋଣିତ ପିପାସୁ
କୃପାଣ ଚୋଟରେ ମସ୍ତକ ଝଡ଼ି
ତାଳ ସ୍କନ୍ଧକାନ୍ତ ପକ୍ୱ ତାଳଫଳ
ପରାଏ ଗଡ଼ଲା ଭୂତଳେ ପଡ଼ି ।
୩ ନାଉ ନାୟକର ନିଶୂଳୀ ନିଶୂଳ—
ସମଶୂଳମୂନେ ହୋଇ ହାଲିଆ
ରୁଧିର ଉଦ୍‌ଗାରି ହସ୍ତପାଦ ଯୁଗ
ଶୋଇଲେ ଅଖଡା ଦାଣ୍ଡ ୪ ବରହା ।
ଗଣ୍ଡକୁଳ କେତୁ ୫ ବଲଣ୍ଡାର ସ୍ୱାମୀ
୬ ଧୂପ ଖଣ୍ଡାକୁଳ ରମ୍ଭା ପରାଏ
କାଟିଲେ ଅଣ୍ଡାଳ ୭ ମଣ୍ଡା ମହାକୁଳ
ବେଙ୍କର ସଳଖେ ପଞ୍ଜରା ଯାଏ ।
୮ ଗମ୍ଭାରି ଗାଡ଼ିଆ ୯ ଖାଡ଼ିଆ ବାହାକୁ
ବାହୁବଳେ ବେଗେ ମାରି କଠାରୀ
ଅଟ୍ଟହାସେ ମତ୍ତ ୧୦ କଡ଼ଙ୍ଗ ପାଣିଆ-
ପ୍ରଧାନର ପ୍ରାଣ ନେଲେ ଓଟାରି ।

(୧) ମାଳବଣ୍ଡ ଦେବ ବାମଣ୍ଡା ରାଜବଂଶୀୟ ବଳିଅଁ ବରଣ୍ଡା ଜମିଦାର ।
(୨) କଲପାଲ ଗ୍ରାମର ବାସ୍ତବ । ରେଢାଖୋଲ ପକ୍ଷୀୟ ।
(୩) ରେଢାଖୋଲ ପକ୍ଷୀୟ ।
(୪) ବରହା-ସର୍ଦ୍ଦାରବିଶେଷ ।
(୫) ବଲଣ୍ଡା ଜମିଦାର ।
(୬) ଧୂପଖଣ୍ଡା । ଗଡଗ ବିଶେଷ ।
(୭) ରେଢାଖୋଲ ପକ୍ଷୀୟ ଜନୈକ ମଣ୍ଡା ନାମଧାରୀ ସୈନିକ ।
(୮) ଗ୍ରାମବିଶେଷ ।
(୯) ଯବନଜାତି ବିଶେଷ ।
(୧୦) ବାମଣ୍ଡାର ଗ୍ରାମ ।

କର୍ପୂର ମାଳଅ ୧ କଡର କେଲ୍ଅ
୨ ଦେବ୍ଭଗ, ଶୁଭ୍ରଭ ଗଗପ୍ତ ଗଦା
ଦଳଲେ ଅଶ୍ୱଙ୍କୁ ମତ୍ତକଶ୍ୱ ଯଥା
କଦଳୀ କାନନ କରଇ ସଦା ।
୩ ଜରୁଗୋଡ଼ା ଗଡ଼ ବାସୀ ବଣିବ୍ରେଜ ୪
ସୁଦୃଢ଼ ଘଣ୍ଟରେ ଭୂଷି କାଣ୍ଡକ
ଗୁଦୁସ ଗଡର ୫ ଗୁଦୁସ ନେତାଙ୍କୁ
ପଦ୍ମଶ୍ୱାଇ ଦେଲେ କାଳ କଣ୍ଟକ ।
ସଦାନନ୍ଦ ଚଣ୍ଡ ସଦାଶିବ ଭକ୍ତ
୬ ସଦାନନ୍ଦ ଶଣ୍ଡ ବଲେ ମରଦ
ଶାଣିତ କୃପାଣେ ଘଣ ଘଣେହାଣି
ବୁହାଇଲେ ତହିଁ ଶୋଣିତ ନଦୀ ।
ଯେନାମଣିଙ୍କର ରକ୍ଷୀ ସେନାଶ୍ରେଣୀ
ବଇଶ୍ୱ ପ୍ରହାର ଢ଼ାଳେ ନବାର୍
ଚଞ୍ଚଳେ ଅଶ୍ୱଙ୍କୁ ତଳେ ଶୁଆଇଲେ
ଖରଶାଣ ଶରେ ଗୁଣ ଟଙ୍କାର୍ ।
ନାଗେ ବସିଅଗେ ଭଗବାନ ଚନ୍ଦ୍ର
ଭର୍ଗଭ୍ୱଲ ସ୍ତ୍ରୈତ ସ୍ୱେଗୀ ସମାନ
ଗର୍ଜ୍ଜି ଶଣ୍ଡୁ ଶିର କୁସୁମେ ପୁଜିଲେ
ରଣଚଣ୍ଡୀଙ୍କର ରକ୍ତ ଚରଣ ।
ଦଢ଼ତ ତରଳ ତୁରଙ୍ଗେ ଆରୋହି
୭ ବିଶ୍ୱନାଥ ଦେବ କୃତାନ୍ତ ବତ

---

(୧) କଟରବେଲ୍ଲ ବାମଣ୍ଡାର ଜମିଦାସ ।
(୨) କଭରବେଲ୍ଲ ଜମିଦାରଙ୍କ ବଂଶଗତ ଉପାଧି ।
(୩) ରେଢାଖୋଲର ଏକ ଗ୍ରାମ ।
(୪) ଗୌଡ଼ଜାତର ସଙ୍ଖ୍ୟାବଶେଷ ।
(୫) ଗୁଦୁସ ଯବନଜାତ ବଶେଷ ।
(୬) ସଦାନନ୍ଦ ଦେବ ରାଜକୁମାର ଶ୍ରୀ ମୁକୁନ୍ଦମଣ୍ଡନ ଦେବ ରଜାଙ୍କ ଦ୍ୱିତୀୟପୁତ୍ର ।
(୭) ବାମଣ୍ଡା ଯୁବରାଜ ।

ଉଚ୍ଚ ବଚନରେ ଉତ୍ସାହ ପ୍ରଦାନ
ସେନାଙ୍କୁ ମାତିଲେ ରଣେ ସନ୍ତତ
ବାୟୁବେଗେ ଧାଇଁ ଅଶ୍ୱ ଅନୁଯାୟୀ
ଅଶ୍ୱାରୋହୀ ବୀରବୃନ୍ଦ ତାଙ୍କର
ମନ୍ଥିଲେ ଝଟିତି (୧) ପରିପନ୍ଥି ହଲ୍ଦୀ-
ଘାଟିଆର-ଦଣ୍ଡେ ସୈନ୍ୟ ସାଗର ।
ଇଙ୍ଗିତ ମାତ୍ରକେ (୨) ପ୍ରତାପ ଚନ୍ଦ୍ରଙ୍କ
(୩) ଚୈତକ ପରିଏ ଆଗକୁ ଡେଇଁ
ତାଙ୍କପ୍ରିୟ ହସ୍ତୀ ଥୋଇଦେଲା ସ୍ୱୀୟ—
ପାଦ, ନୃପ କୁମ୍ଭୀ କୁମ୍ଭରେ ନେଇ ।
ପ୍ରହାରିଲେ ଭଲ୍ଲ ଲକ୍ଷି କ୍ଷିତିପାଳ
ରାଜାଙ୍କ ମୁକୁଟ ମଣ୍ଡିତ ଭାଲ
ଅମାରୀରେ ଠିକ ଦେଦେହ ବାଜିଲା ତା
କେବଳ ଲକ୍ଷ୍ୟଠୁ ଛିଣ୍ଡାଇ ଗଲ
ପଶ୍ଚାତର ଠାଣ ସେ ଅସ୍ତ୍ର ତାଡ଼ନ
ଲଭି ନରମଣି ଚେତନା ହାର
ଚକ୍ଷୁବୁଜି କ୍ଷଣେ ରହିଲେ ମଉନେ
ଅବଶେ ଅମାରୀ ଖମ୍ବ ଆଦର ।
ହସ୍ତୀ ଲୁପ୍ତଦେଖି ଫେରାଇ ବାରଣ
ଚଳିଲେ ଚତୁର ଦାରଣ-ପାଳ
ବିପକ୍ଷ ସାୟକୁଁ ଜୀବନ ରଖିଲ
ଘୋଡ଼ାଇ କୌଶଳେ ଅଭେଦ୍ୟ ଢାଲ ।
ଏ ସୁଯୋଗ ଲଭି ଧସିଲେ ଅଗ୍ରେ
କୁମାର ଉତ୍ସାହେ ସଇନ ଦଳ
ବାୟୁକୁ ସାରଥୀ ପାଇ ଷଡେଦାୟୀ
ନିଦାଘେ ଯେସନ ବନ ଅନଳ ।

(୧) ଶତ୍ରୁ ।
(୨) ରାଣାପ୍ରତାପସିଂହ ।
(୩) ରାଣାପ୍ରତାପଙ୍କ ପ୍ରିୟ ଘୋଡ଼ାର ନାମ "ଚୈତକ" ।

ସମବେତ ଭାବେ          ଏକତ୍ରିତ ହୋଇ
    ଏକାବେଳେ ଏକ ବିକ୍ରମେ ଧାଇଁ
ନାନା ଅସ୍ତ୍ରେ ଏକ          ଉତ୍ସାହେ ହାଣିଲେ
    ସେମାନଙ୍କ ପ୍ରାଣ ମାୟା ଛଣ୍ଡାଇ ।
ନିରୁତ୍ସାହ ହୋଇ          ଥିଲେ ଖନ୍ଦୁଆରେ
    ନରମଣିଙ୍କର ଅବସ୍ଥା ହେରି
ସେ ବିକ୍ରମ ଏଣୁ          ନ ପାରି ସମ୍ଭାଳି
    ପଳାଇଲେ ଭୟେ ପଛକୁ ଫେରି ।
ଯେବାଟେ ଉପରେ          ଉଠୁଥିଲେ ଦମ୍ଭେ
    ସେହିବାଟେ ପୁଣି ନମ୍ର ମୁଖରେ
ଉପଳ ବନ୍ଧୁର          ପଥେ ପଡ଼ିଉଠି
    ଧାଇଁଲେ ସକଳେ ପ୍ରାଣ ଭୟରେ ।
ସୁତୀବ୍ର ଅଙ୍କୁଶ          ଘାତକୁ ନ ମାନି
    ଆରୋହିଙ୍କ ସହ ଘୋର ଚିତ୍କାରେ
ପଳାଇଲେ କରୀ          ଦଳି ଅକାତରେ
    ସମ୍ମୁଖେ ପ୍ରାଣିଙ୍କୁ ପଦ ପ୍ରହାରେ ।
ଦ୍ୱିରଦମାନଙ୍କ          ନାଦେ ବିଚଳିତ
    ଅବସନ୍ନ କ୍ଳାନ୍ତ ତୁରଙ୍ଗଗଣ ।
ଉତ୍ପୁଚ୍ଛେ ଉତ୍ପ୍ଲବ          ଦଉଡ଼ିଲେ ଖରେ
    ଖୁରରେ କମ୍ପାଇ ଗିରି କାନନ ।
ପଳାତକ ସୈନ୍ୟ          କେହି କେହି ପଡ଼ି
    ଉତ୍ତାନେ ରହିଲେ ସେହି ସ୍ଥବରେ
ପଛ ସଙ୍ଗୀମାନେ          ଚଳିଲେ ସରଣୀ
    ରଚି ସେମାନଙ୍କ ବୁକୁ ଉପରେ ।
ଗୁରୁ ପଦଭରେ          ପିଳିହା ଯକୃତ
    ମଳଭାଣ୍ଡ ବୁଷୀ ବିଦୀର୍ଣ୍ଣ ହୋଇ
ପଞ୍ଜରର ଅସ୍ଥି          ଭାଙ୍ଗି ମୁଖବାଟେ
    ଭକ ଭକ ରକ୍ତ ପଡ଼ିଲା ବହି ।
ବନ୍ଧୁ ପୁରାତନ          ଲତାଗୁଳ୍ମାବୃତ
    ହାଗାଧରା ଠୋପେ କିଏ ନାଁ ଡାକି

ଅନାସ୍ଥଭେ ପଡ ଶୂଳରେ ବସିଲ
ଘାସ୍ରେ ଗୋଜାକାଠେ ରହିଲା ଲାଗି ।
କେଡ୍ଡ ବା ଝୁଲିଲା ଧଇସ୍ର ମଞ୍ଚର
ଶୁଖା କେନାଲଗ୍ନ ଜୁଡ଼ା ବଳରେ
ଦୋହଲଇ ଯଥା ଦୂର୍ଭର ସେହିତ
ବଡଶୀ ଲଠିର ସୁଦୃଢ଼ ଡୋରେ ।
ଯେତେ ଡାକଲେହେଁ ହାସେ ପଳାସ୍ଥିତ
ତାର ସଙ୍ଗୀମାନେ ଖୁନ୍ଦି ପଛକୁ
ନ ଦେଖିଲେ କେହି ନୋହିଲେ ଆଗକେ
ତାରିବାକୁ ଏହି ବିପଦୁଁ ତାକୁ ।
ପଥର ଉଡ଼ାଲେ ପଡ ଅନ୍ତରାଳେ
ଶୋଇ କେ ସଭସ୍ତେ ନିର୍ଜୀବ ପର
ରୁଦ୍ଧଶ୍ୱାସେ ଦୁଃଖେ ଲୁଚ ରହିଥିଲା
ଇଷ୍ଟଦେବ ନାମ ମନେ ସ୍ମରି ।
ଧାବତ ହସ୍ତୀର ଚରଣେ ଚକିତେ
ଶିଳାସ୍ଫିତ ଶିର ଚକଟି ହୋଇ
ମସ୍ତିଷ୍କ ସହିତେ ବାହାରି ପଡଲା
ଜଳଅସ୍ଥି ଫାଟି ନୟନ ଦୁଇ ।
ମସ୍ତକ ବିହୀନ କବନ୍ଧ କେବଳ
ନାଚ ନାଚ କ୍ଷଣେ ଛାଡଲା ପ୍ରାଣ
ଅଷ୍ଟମୀ ରଜନେ ବଳପୀଠେ ଯଥା
ସଦ୍ୟଶିରଚ୍ଛିନ୍ନ ଛାଗ ସନ୍ତାନ ।
ପଛକୁ ନରହିଁ ବାହିନୀ ସହିତ
ଏ ଭବେ ପଳାଇ ମାନବସାଇଁ
ସ୍ୱସୈନ୍ୟ ରୁଧିର ପ୍ରବାହେ ପଙ୍କିଳ
ପୁଟ ଗିରିରନ୍ଧ୍ରେ ରହିଲେ ଯାଇଁ ।
ପାହିଲା ରଜନୀ ମହାମାୟା ଉଷା
କୁଙ୍କୁମ ପରାଗ ବର୍ଷି ଏକାଳେ
କଳାପାକ ପୋଛ ଘଲ୍‌ଟୀକା ଦେଲେ
ଖରହୁଣୀ ପ୍ରାଚୀ ବାଳା କପାଳେ ।

ଶଶିଙ୍କ ବିଦାଶେ ଶଶି ବିଲାସିନୀ
ବିସ୍ତବସ୍ତ୍ର ଧରି ବିଧବା ଭେକ
ବାଳ ରବିକର ଅନଳେ ଝାସେ କି
ରଖିବାକୁ ତାର ସତୀତ୍ୱ ଟେକ ।
ଶିଶୁ ଦିବସର ସରଳ ସୁନ୍ଦର
ମୃଦୁହାସ୍ୟଭରି ପ୍ରାତଃ ଆଲୋକ
ଶୋଭିଲା ଶିଶୁର ନିର୍ମଳ ନିଶ୍ୱାସ
ପରିଏ ବହିଲା ବାତ ଜାଳକ ।
ହିମଜଳେ ମଜ୍ଜି ବିମୁକ୍ତ ବ୍ରତତୀ
କେଶକୁ କୁସୁମ-ଫଟେ ସଜାଇ
ଭଲେ କୁଆତାରା ଚନ୍ଦନର ଟୀକା
ଦେଇ ଏକମୁଖେ ପୂର୍ବକୁ ଚାହିଁ
ଶୁଚିମନ୍ତ ବନ ମଣ୍ଡି ଅଙ୍ଗଘନ
ଊଷା ରକ୍ତାଂଶୁକ ରଞ୍ଜିତ ବାସେ
ମଧୁପ ଗୁଞ୍ଜନ ଛଳେ ପ୍ରଭାତରୁ
ଗାଇଲାକି ସୂର୍ଯ୍ୟାଷ୍ଟକ ଉଲ୍ଲାସେ ।
ପ୍ରାଚୀ ପରିଚୀର ପାଟଳ ଧବଳ
ଶବଳିତ କରି ଗଗନେ କ୍ରମେ
ବିରଚିଲ ଶ୍ୱେତ ଭାଗୀରଥୀ ସ୍ରୋତ
ବହିଲା କିଅବା ଶୋଣ ସଙ୍ଗମେ ।
ପକ୍ଷୀମାନଙ୍କର ମଧୁର କୂଜନେ,
ଭ୍ରମରଗଣର ମୃଦୁ ଝଙ୍କାରେ,
ଦୁରନ୍ତ ଭଲ୍ଲୁକ ବିକଟ ଚିତ୍କାରେ,
ତରୁବାସୀ ଶାଖାମୃଗ ହୁଙ୍କାରେ,
ଉଛୁଳି ଉଠିଲା କାନନ ପ୍ରକୃତି
ନିର୍ଜ୍ଜନତା ତହୁଁ ଭାଙ୍ଗିଲା କ୍ଷଣେ
ପାଟଳରୁ ଶ୍ୱେତ ବର୍ଣ୍ଣେ ହରିଦଶ୍ୱ
ଉଠିଲେ ସଧୀରେ ନୀଳ ଗଗନେ ।
(୧) ତଡ଼ିକମ୍ବରି ଶିଖୁଁ ରବିକର
ପଦଜାଳେ ଗଳଗଳ ସଧୀରେ

(୧) ସ୍ୱବାମପାର୍ଶ୍ୱ ସହିତ ।

ବିରୁଦ୍ଧ ପକ୍ଷଏ ପ୍ରବେଶିଲା ଆସି
ରୁଧିର ଜର୍ଜ୍ଜର ଯୁଦ୍ଧ ଭୂମିରେ ।
ରଙ୍ଗ ପ୍ରାଙ୍ଗଣର ହୃଦ ବିଦାରକ
ଦୃଶ୍ୟ ଦିବାଲୋକେ. ହେଲା ପ୍ରକାଶ
ଦିଶିଲା ଶୂରଙ୍କ ସଦ୍ୟ ଛିନ୍ନଶିର
ହସ୍ତ ପଦ କୁକ୍ଷୀ ରକତ ମାଂସ ।
ପୁଷ୍ପିତ ପଲାଶ ବନରାଜି ପରି
ପଡ଼ିଥିଲେ କୁଡ଼ କୁଡ଼ ସଇନ
ସ୍ୱାର୍ଥାନ୍ଧ ନରର ଆତ୍ମ ଦ୍ରୋହିତାର
ଏ ଦୃଶ୍ୟ ପ୍ରାଚୀନ ପୁଣି ନବୀନ ।
ଦରମଲା କେତେ ଆହତ ଚମୂଏ
ରହିଥିଲେ ଭୂମେ ଅଚେତା ହୋଇ
ଅଇସି ଆଘାତେ କାହାଶିର ଫାଟି
ଯାଉଥିଲା ତନ୍ତୁ ରକତ ବନ୍ଧି ।
ଲୋମଶୂନ୍ୟ ପକ୍ଷୀ ପରି ଦିଶୁଥିଲା
ହାତ ଗୋଡ଼ ଛିଡ଼ି କାହାର ତନୁ
ଅଣ୍ଟା ଭଙ୍ଗାହୋଇ ଘୁସୁରୁଥିଲା କେ
ପରାଣ ମମତା ଉପେକ୍ଷି ମନୁ
କୋମଳ ତୁଳିରେ ନିଦ ନୋହେ ଯାଙ୍କ
ଦିବ୍ୟଶାଳୀ ଅନ୍ନେ ନରୁଚେ ମଣ୍ଡ
ସେ ଏବେ ଭୂତଳ ଶଯ୍ୟା ସୁଖେଲେଢ଼ି
ରକ୍ତାକ୍ତ ବଦନେ ମାଟି ଗୁଣ୍ଠନ୍ତି ।
ଦଶଜଣ ପାରି— ପଦଙ୍କୁ ନ ଧରି
ବାହାରୁ ନଥିଲେ ଯେମାନେ ଘରୁ
ହାୟରେ ! ଆଜି ସେ ପଡ଼ିଛନ୍ତି ଏକା
ଘୋରବନେ ଭୟଛାଡ଼ି ମନରୁ ।
ସୁବାସ ଚନ୍ଦନ ପୁଷ୍ପେ ମଣ୍ଡି ତନୁ
ଯେମାନେ ନିରତ ହୁଅନ୍ତି ଖୁସୀ
ଆହା ସେ ନିର୍ଦ୍ଦେ ଏବେ ଭସ୍ୱଜନ୍ତି
ଦୁର୍ଗନ୍ଧ ରୁଧିରେ ବସାଙ୍ଗ ଭୂଷି ।

ନ ଶୁଅନ୍ତି ଯେଉଁ ମୃଦୁଳା ବାଳାଙ୍କ
ଚମ୍ପକାଙ୍ଗୁଳୀର ମର୍ଦ୍ଦନ ବିନା
ମହାନନ୍ଦେ ତାଙ୍କ କର୍କଶ ଶିଳାରେ
ଯେତନଏ ପଦ ଗୁପିବେ ସିନା
ଯେମାନେ ଆନନ୍ଦେ କାଳ କାଟୁଥିଲେ
ବପ୍ରମୁଖୁଁ ପୁତ ପୁରାଣ ଶୁଣି
ଏବେ ତାଙ୍କୁ ଅହ୍ନା ଶୁଣାଇବେ ପାଠ
କର୍କଶ ସ୍ୱରରେ ଚଣ୍ଡ ଶକୁନି ।
ଲଭିବାକୁ ଯାଙ୍କ ଅଙ୍କ ପଲଙ୍କକୁ
ଅପ୍ସରାଏ ସ୍ପୃହା ହୋଇବେ ରଙ୍କ
ଏବେ ତାଙ୍କ ଅଙ୍ଗେ ନିଃଶଙ୍କେ ଗ୍ରଜନ୍ତି
ବାଲିଜନ୍ଦା ଭାଇ ପିମ୍ପୁଡ଼ି ପୋକ
କାଞ୍ଜିସମ ସ୍ୱାଦୁ ଦ୍ରବ୍ୟଲୋଭେ ଯେଉଁ
ଗୁଡ଼ି ଗୁଡ଼ି ପାନ ୧ ଦନ୍ତୁରସୁନ୍ତି
ସେ କୃପଣେ ଏବେ ବହୁଛନ୍ତି ଭ୍ରମି
ନଜର ଯେତେକ ମହାସମ୍ପତ୍ତି ।
ପଡ଼ିଥିଲା ଭାଙ୍ଗି ବିଶାଳ ବାରଣ
ବନ୍ଧସ୍ଥାନମାଡ଼ି କାଯ୍ୟବିସ୍ତାର
ବଦନ ନିସୃତ ଜଳକ୍ଳେଦ ରକ୍ତ
ଗନ୍ଧରେ ମକ୍ଷିକାକୁଳ ହୁଙ୍କାର ।
ଯେଦନ୍ତ ଯୁଗ୍ମର ତୀବ୍ର ତାଡ଼ନାରେ
ଚୂନାହେଉଥିଲା ଶ୍ୟାମଭୂଧର
ହାୟରେ ! ସେଦନ୍ତ ଭୂମିତଳେ ପଡ଼ି
ହେଉଅଛି ଏବେ ଧୂଳିଧୂସର ।
ସଘନ ସାଗରେ ବାଡ଼ବାଗ୍ନି ପରି
ଗ୍ରଜୁଥିଲାସୁଖେ କାଲି ଯେ ବାଜୀ
ଅଶ୍ୱାରୋହୀ ସହ ପଡ଼ିଛି ପାଷାଣ
ତଳରେ ଆଉଛି ସେ ବାଜୀ ଆଜି ।

(୧) ଖାଲ କରନ୍ତି ।

ଏ କରୁଣ ଦୃଶ୍ୟ ବିଲୋକି ନରେଶ
ମହାମନସ୍ତାପ ବହିଲେ ମନେ
ଜ୍ୱଳଇ ଅବ୍ୟକ୍ତ ଶୋକ ହୁତାଶନ
ଶିଖାତୋଳି ତାଙ୍କ ହୃଦୟବନେ ।
କାହିଁଗଲା ସେହି ରାଜକୀୟ ଦମ୍ଭ
କାହିଁଗଲା ସେହି ସମ୍ପତ୍ତି ନିଶା
କାହିଁଗଲା ସେହି ଆଧିପତ୍ୟ ତେଜ
କାହିଁଗଲା ସେହି ଘୋରଜିଗୀଷା ।
ନିଜର ଗାରିମା ଠେଲେ ଠେଲିହୋଇ
ଆସିଥିଲେ ସିଏ ଉଲ୍ଲାସେ ଧାଇଁ
ମାନ୍ୟ ବଳବାନ ଦୈବ ଏକାବେଳେ
ଭାଙ୍ଗିଲା ତାହାଙ୍କ ସେହି ବଡ଼ାଇ ।
ଅବଶେଷେ ଜାଣି ସେ ମହା ବୀଭତ୍ସ
ପାଣବମାଡିର କ୍ରୂର ନର୍ତ୍ତନ
ଉଡ଼ିଲା କନ୍ଦରେ ଉଚ୍ଚତରୁ ଶିରେ
ରଣନିର୍ବାପକ ଶ୍ୱେତକେତନ ।
ସେ ଧ୍ୱଜ ଦର୍ଶନେ ସଦାଶାନ୍ତିପ୍ରିୟ
ବିଶ୍ୱନାଥ ଦେବ ଯୁବନରେଶ
ସମରୁ ନିବୃତ୍ତି ପାଇଁ ସମୁତ୍ସୁକେ
ସେନାପତି ବୃନ୍ଦେ ଦେଲେ ଆଦେଶ ।
ବାଜିଲା ସଙ୍କେତ ଭେରୀ ଘନଘନ
ଜୟୋଲ୍ଲାସେ ବନସ୍ଥଳୀ ମୁଖର
ପ୍ରତିଧ୍ୱନି ତୋଳି ତହିଁ ଯୋଗ ଦେଲେ
ନିକଟସ୍ଥ ଯେତେ ଗିରିଶିଖରୀ ।
ପଠାଇ ଅମାତ୍ୟ ସେନାପତି ବୃନ୍ଦ
ରାଜମର୍ଯ୍ୟାଦାରେ ଖୋଲରାଜନେ
ଅଣାଇ ନିକଟେ ସମାଦରେ ବୀର
ତୋଷିଲେ ତାହାଙ୍କୁ ସ୍ନେହାଳିଙ୍ଗନେ ।
ନିଜେ ଅଶ୍ୱେ ବସି ବସାଇ ଭୂପଙ୍କୁ
କାରୁକାର୍ଯ୍ୟମୟ ପାଲଙ୍କି ପରେ

ସ୍ୱ-ସୈନ୍ୟ ବିପକ୍ଷ ସଇନ ମିଶାଇ
ବାହୁଡ଼ିଲେ ଦେବଗଡ଼ ମୁଖରେ ।
ତେଣେ ମାଲ୍ୟଗିରି ପତିଙ୍କ ଗରବ
ମହାଯୁଦ୍ଧେ ଗଞ୍ଜି ମୃଗୀନ୍ଦ୍ରବର (୧)
ବନ୍ଦୀଭାବେ ତାଙ୍କୁ ସଙ୍ଗତରେ ଘେନି
ପ୍ରବେଶିଲେ ଆସି ନିଜ ନଗର ।
ବାଜିଲା ମଙ୍ଗଳ ବାଜଣା ମାଦଳେ
ବିଜୟ ଉତ୍ସବେ ବାମଣ୍ଡା ବାସୀ
ଅତିଥି ସତ୍କାରେ ଶିଷ୍ଟ ବ୍ୟବହାରେ
ଖାଦ୍ୟପାନେ ତାଙ୍କ ମାନସ ତୋଷି ।
ଶପଥ କରାଇ ଏମନ୍ତ ଅମାନ୍ତ
ବାଟେ ନ ଯିବାକୁ ଆଉ କେବେହେଁ
ଉପହାର ସହ ଦୟାଳୁ ନରେଶ
ସେମାନଙ୍କୁ ବିଦାଦେଲେ ସସ୍ନେହେ ।
ଗୀତ ହେଲା ଶେଷ କୃପାକଲେ ମାତା
କଳ୍ପନା ସଙ୍ଗିନୀ ବରଦା ବାଣୀ
ବାଲ୍ୟ ସ୍ମୃତି ପୁଣି ଗାଇବ ଉଲ୍ଲାସେ
ସ୍ମୃତି ଗରଭୁଁ ଘଟଣା ଛାଣି ।



(୧) ନୃପ ଶ୍ରୀମୃଗମଣ୍ଡବଙ୍କୁ ଅପଭ୍ରଂଶରେ ମୃଗୀ ବୋଲି କହୁଥିଲେ ।

# ସ୍ନେହାଞ୍ଜଳି

ଶ୍ରୀମାନ୍ ଯୁବରାଜ ଲକ୍ଷ୍ମୀନାରାୟଣ ଦେଓ ଟିକାୟତ
ସ୍ନେହାସ୍ପଦେଷୁ

ସଖେ ହେ !

ଭଞ୍ଜ, କବିସୂର୍ଯ୍ୟଙ୍କର ପୂତ ନିକେତନ
ଅତୁଳ ଉତ୍କଳଭୂଷା ସାଧନା ଆଶ୍ରମ,
ମହିମସ୍ଥାନ ମହୋଦଧେ, ମହୋଚ୍ଚ ମହେନ୍ଦ୍ରେ
ମହାମହାନଦୀମାଳେ ମଞ୍ଜୁଳ ଗଞ୍ଜାମ
ତୁମ୍ଭ ପ୍ରିୟ ଜନ୍ମସ୍ଥାନ ନୁହଇ ବିଚିତ୍ର
ସ୍ୱପ୍ନମୟୀ କଳ୍ପନାର ପ୍ରିୟ ରଙ୍ଗସ୍ଥଳ—
ସାହିତ୍ୟ ଅମୃତରସ ଆସ୍ୱାଦନ ଆଶେ
ତୁମ୍ଭର ମାନସ ସଦା ହେବ ଲାଳାୟିତ ;
ଗୌରବିଣୀ ସ୍ନେହମୟୀ ତବ ଜନ୍ମଭୂମି
ଅନଶ୍ୱର ନୈସର୍ଗିକ ସୌନ୍ଦର୍ଯ୍ୟ ମଞ୍ଜୁଷା—
ଦେଖାଇ, ଦ୍ୱିଗୁଣେ ସିନା ଦିଅଇ ବଢ଼ାଇ
ଅଲକ୍ଷିତେ ତବ ନବ ସାହିତ୍ୟାନୁରାଗ.
ହେଉ ତବ ମନୋବାଞ୍ଛା ପୂର୍ଣ୍ଣ ଗୁଣମଣି !
ଦୟାମୟ ବିଭୁପଦେ ଏତିକି ମାଗୁଣି ।

କେବଗଡ଼
୧୯୧୫ ସାଲ ।

ରଚକ—

# ସୁନାମୁଣ୍ଡା



ସଗ—ଚଳଣା

ଛବିଳ ନିସର୍ଗ—ଲକ୍ଷ୍ମୀଦେବୀ ଶୋଭା ଭୂଷା
ତୁହି ସୁନାମୁଣ୍ଡା ! ସର୍ବ ସୁଷମା ମଞ୍ଜୁଷା ।
ଦ୍ରୁମରାଜି ସମାକୀର୍ଣ୍ଣ ମନୋଜ୍ଞ କାନ୍ତାର
ଶସ୍ୟ ଉତ୍ପାଦନ କ୍ଷମ-ପ୍ରଶସ୍ତ କେଦାର ।
ଅନାବିଳ ଜଳେପୂର୍ଣ୍ଣ ଦୀର୍ଘ ସରୋବର
ମର୍କତ ମଣ୍ଡପାକୃତି ଅନୁଚ୍ଚ ଭୂଧର ।
ପତ୍ରଫଳ ଫୁଲଶୋଭୀ ସୁନ୍ଦର ଉଦ୍ୟାନ
ପୁଳିନ ପାଳିତା କ୍ଷୁଦ୍ର ଗିରି ନଦୀମାନ ।
ନାନାଜାତି ମାନବରେ ଗହଳ ବସତି
ଏ ସୁଷମାବଳି ତୋର ସୌନ୍ଦର୍ଯ୍ୟ ସମ୍ପତ୍ତି ।
କୋମଳ କର୍କଶ ଶାନ୍ତ ସୁମଧୁର ରସେ
ସୁଖସ୍ମୃତି ଉପୁଜାଇ ଦର୍ଶକ ମାନସେ ।
ତୋ ସୁଷମା ପୁଲକାଏ ନିରତ ପ୍ରାଣକୁ
ବିଭୁଙ୍କ ମହିମା ଯଥା ଭକ୍ତ ହୃଦୟକୁ ।
ଥିଲୁ ସୁନାମୁଣ୍ଡା ! ତୁହି ଦୂର ଅତୀତରେ
ଶରୀର ଘୋଡ଼ାଇ ଘନ ଘୋର ଅରଣ୍ୟରେ ।
ମହାମହୀରୁହ ବ୍ୟୂହ ଲତାଜାଳେ ଜଡ଼ି
ଦେଉଥିଲେ ମସ୍ତକୁଁ ରବିକର ତଡ଼ି ।
ବନବିହଙ୍ଗମେ ସୁଖେ ତୋଳୁଥିଲେ ସ୍ୱର
ପ୍ରଶଂସା ଗାଇଲପରି ବନଲକ୍ଷ୍ମୀଙ୍କର ।
ବିକୃତ ଗର୍ଜ୍ଜନାଦେ ତୋ ତନୁ କମ୍ପାଇ
ଶାର୍ଦ୍ଦୂଳ ଭଲ୍ଲୁକ ବୃକ ବୁଲୁଥିଲେ ଧାଇଁ ।
ଲୋକଚକ୍ଷୁ ଅନ୍ତରାଳେ ଥିଲୁ ସଂଗୋପନେ
ତୋର ଏହି ଦଶା ଭାବି ନ ଥିଲୁ ସ୍ୱପନେ ।

ଗଛଲତା ତୃଣଗୁଳ୍ମ କୀଟ ପଶୁ ପକ୍ଷୀ
ସେବୁଥିଲେ ତୋତେ ନିତ୍ୟ ତୋ ସମ୍ପତ୍ତି ଭକ୍ଷି ।
କରତରେ ଫାଳ ଫାଳ ହୋଇ ଅକାତରେ
ବହୁଥିଲେ ଯେହ୍ନେ କୋଠା ଛାଦକୁ ସ୍ତମ୍ଭରେ ।
ଫୁଲ ମୁକୁତାର ଝରା ଫଳ ଲଳନାଙ୍କ
କର୍ଣ୍ଣଫୁଲ ଉପମାକୁ ଧିକ୍କାରେ ଯାହାଙ୍କ ।
ବନବାସୀ ଦୈତ୍ୟ ସମ ଶ୍ୟାମ କଳେବର
ପ୍ରକାଣ୍ଡ କାଣ୍ଡରେ ରମ୍ୟ ଶାଳ ତରୁବର ।
ନିକଟସ୍ଥ ଆତ୍ମୀୟଙ୍କ ଆଦରେ ଆବୋରି
ସର୍ବେ ଲଗାଲଗି ହୋଇ ଝିଙ୍କ କାଠି ପରି ।
ରହୁଥିଲେ ବେଢ଼ି ତୋର ତନୁକୁ ବିଶେଷେ
ମୂଳସ୍ଥିତ ଗୁଳ୍ମ ଘାସ ଦଳ ନିର୍ବିଶେଷେ ।
ବସନ୍ତ ବେଣୀକୁ ନିନ୍ଦ ବନ୍ଧୁର ଶିଖରେ
ଅଳକୁ ବରଣ ବଙ୍କା କେନ୍ଦୁଏ କାନ୍ଧରେ ।
ଫଳଛଳେ ସୁମଧୁର ଉପାଦାନ ଗୋଳ
ବଢୁଥିଲେ ମନୋହର ସୁବର୍ଣ୍ଣ ବାଠୁଳି ।
ମନୁଷ୍ୟମାନଙ୍କ ପ୍ରିୟ ପଲ୍ଲବ ବହୁଳ
ଗଗନ ଗାତ୍ରକୁ ଭେଦ ପିଆଶାଳ କୁଳ ।
ଶୋଭୁଥିଲେ, କୁଟଜର ସୁନୀଳ ପ୍ରସ୍ତରେ
ଅନ୍ୟାନ୍ୟ ତରୁଙ୍କୁ ଗଞ୍ଜି ଗହନ କାନ୍ତାରେ ।
ଯାହାଙ୍କ କୁସୁମସମ ଦେହେ ଧରି ଦାଗ
ବହୁଛି ବଜାଫୁଲିଆ ନାମ ଚଡ଼ାବାଢ଼ ।
ଗାଢ଼ ଚନ୍ଦ ରକ୍ତେ ଘୂରି ଯେହ୍ନେ ପରହତେ
ନରଙ୍କୁ ବହନ୍ତ୍ୟ ତାଙ୍କ ସମ୍ପତ୍ତି ସହିତେ ।
ଧବଳ ଦୁକୂଳଧାରୀ ଧଉରାଏ ବନେ
ବାହୁମଣ୍ଡି ମହାଙ୍ଗର ମର୍କତ କଙ୍କଣେ ।
ନୀଳ ପନ୍ଥମୁକୁଟରେ ଶିରଦେଶ ଭରି
ପୁରାତନ ସୁପ୍ରସିଦ୍ଧ ଧବନାମ ଧରି ।
ତୋର ତନୁ ବେଢ଼କାକୁ ଆବୋରି ନିରତ
ଦିଶୁଥିଲେ ବ୍ରତୀଙ୍କ ଯୋଗ୍ୟ ବର ବ୍ରତ ।

ଭ୍ରମର ପରିଏ ପୁଷ୍ପ ଗୁଚ୍ଛ କରେ ନେଇ
ବ୍ୟଜୁଥିଲେ ତୋ ତନୁକୁ କାନ୍ଧିବା ତିଳେଇ ।
ଗମ୍ଭାରୀ ଗାଇକୁ ଶାଖା ବାହୁରେ ବୁଣ୍ଟାଇ
ନଅଳୀ ଲତାଏ ରଙ୍ଗେ ଜଡ଼ଥିଲେ କାନ୍ଧି ।
ଯାହାଙ୍କ ସୁରଭି ଶ୍ୱାସେ ପଦ୍ମାକର ଛାଡ଼ି
ସରଘାଏ ଦେଉଥିଲେ ସମାଦରେ ଧାଡ଼ି ।
କଠିଣ କର୍କଶ ରୁକ୍ଷ କୁଟିଳ ଶରୀର
ଛାଡ଼ି ତୋର ସଙ୍ଗସୁଖ ପାଦପ ଖଦିର ।
ଦେହଦାହ ହୁତାଶନେ ନରତ ନିର୍ଭୟେ
ଖଇରଙ୍କ ସହାୟରେ ପଶି ଲୋକାଳୟେ ।
ପାନଚୂନ ସହ ସ୍ନେହେ ମିଶି ନିର୍ବିବାଦେ
ଚୁମ୍ବୁଥିଲେ ନାଗରୀଙ୍କ ଅଧର ଆହ୍ଲାଦେ ।
ବିଶାଳ ବପୁରେ ଖଞ୍ଜି ପନ ସରୁସରୁ
ହଳଦିଆ ବକଳରେ ଘୁରୁଭେର ତରୁ ।
ଖଳ ରଗଡ଼ିଆ ତୋର ବନ୍ଧୁର ପ୍ରାନ୍ତରେ
ଶୋଭୁଥିଲ ମୃତ୍ତିକାର ତାତ୍ରମାନଙ୍କରେ ।
ଯାହାର ସଲଖ କାଣ୍ଡ ତୈଳଜୀବୀଦଳ
ଘଣାରେ ଘୂରିବା ପାଇଁ ରଚନ୍ତି ମୂଷଳ (୧) ।
ପୁଷ୍ପିତା ମାଧବୀ ନବ ସାଧବୀର ଛବି
ବିସ୍ମାଗଛର ପ୍ରେମେ କାହିଁ ଅବାଦ୍ରବ ।
ଧବଳଅସିତ ଦେହେଁ ଜଡ଼ି ଅହରହ
କହୁଥିଲ ରାଧାକୃଷ୍ଣ ମଧୁର ପ୍ରଣୟ ।
ଯାହାର ଉପରେ ବସି ଛଇଳ କହ୍ନାଇ
ମୋହୁଥିଲେ ଗୋପିକାଙ୍କୁ ମୁରଲୀବଜାଇ ।
ହାତୀକାନ ପରି ବହୁ ଓସାର ପତର
ଝରଳ ବାହୁରେ ମଣ୍ଡି ଦୀର୍ଘକଳେବର ।
ପାଦସ୍ଥିତ ଜୀବେଦେଇ ଛାୟାଅନଳପ
ରାଜୁଥିଲ ଠାବେ ଠାବେ କୁରୁମପାଦପ ।

(୧) ଭେରୁଗଛ ମଞ୍ଜରେ ଭଲ ମୂଷଳ ହୁଏ ।

ପୂଜାଶେଷେ କୋଷ୍ଠେପାର ଶାଖାବନ୍ଧ ସ୍କନ୍ଧେ
ମନ୍ଥନ୍ତି କରମାନୃତ୍ୟେ ଗାଇ ନାନାଛନ୍ଦେ ।
ବାଙ୍ଗସି ବନ୍ଧୁରଗାଢ଼ ଗଉର ମୂରତ
ଧବଳ ପ୍ରସୂନ ମୁକ୍ତାମାଳ ମଞ୍ଜୁଦନ୍ତୀ ।
ସ୍ବରୁ ବନ ପ୍ରକୃତର ପ୍ରିୟସଙ୍ଗଟସି
ଫଳସ୍ତନେ ନତା କୃଶା ଖରଙ୍ଗା ମଞ୍ଜରୀ ।
ପବନ ସୃଙ୍ଗଳକରେ ଶିଶୁକୁଷେ ଠାଣି
ଦେଉଥିଲେ ମାତୃ ସ୍ନେହେ କିଅବା ନତାନ ?
ପୁଷ୍ପିତ ପଲ୍ଲବେ କାହିଁ ରହୁ ତୋ ଶସ୍ତ୍ରେ
ସାନ୍ଧ୍ୟଆକାଶକୁ ହସୁଥିଲେ ପ୍ରକାନ୍ତରେ ।
ବାମଣ ତରୁକୁ ବାନ୍ଧି ପ୍ରେମରେ ମାଳତୀ
ସ୍ୱରଭିନଶ୍ୱାସେ କାହିଁ ତୋଷୁଥିଲେମତ୍ତ ।
ପୁଷ୍ପମଞ୍ଜୁଳକାଣ୍ଡ ପଲ୍ଲବବନ୍ଧୁଳ
ପୁରୁଥିଲେ ଠାବେ ଠାବେ ଅଗଣା ମନ୍ଥୁଲ ।
ଶୁଣ୍ଡିଙ୍କର ସାହାଯ୍ୟରେ ଫୁଲ୍ଲି ରସକାଢ଼ି
ଦେଉଥିଲେ ମଦ୍ୟପଙ୍କ ମୁଖେ ଯେ ଅଜାଡ଼ି ।
କୌଶଳେ ଯାହାଙ୍କ ଫକ୍ତ ନଗାଡ଼ିତଇଲ
ପିଷ୍ଟକରେ ଢ଼ାଳୁଥିଲେ ସୁଖେ କୋଷ୍ଠ ଭଲ୍ଲ ।
ରୁପାବୁଠାଦାର ଗୀଳପାଠେ ଦେହ ମଣ୍ଡି
ରସିଥିଲେ କାହିଁ ଲୋଧ୍ର ସହତେ ଅତଣ୍ଡ୍ରୀ ।
ପନସଶୂନ୍ୟ ସୁକୋମଳ ତନ୍ତୁ ଗନ୍ଧଆସି
ରକ୍ଷକରେ ଲଭୁଥିଲେ କାହିଁ ପିଢ଼ାମ୍ବର ।
ଯାହାଙ୍କ ଲକ୍ଷ୍ମୀଆ ମଣ୍ଡା ଦଳଜଳେ ଗୋଳ
ଗଢ଼ନ୍ତି ବାମାଏ ସ୍ୱାଦୁ ସପୁରଚକୁଳ ।
ପାଷାଣର ସ୍ତମ୍ଭସମ ବନ୍ଧୁ ମହାଖଣ୍ଡି
ଅର୍ଜ୍ଜୁନତରୁଏ ତୋର ନାଳଖଣ୍ଡିମଣ୍ଡି ।
ଦୀର୍ଘକାଣ୍ଡେ ବନଦେବୀ ଅଙ୍କାଳକାମୃକ୍ଷ
ଘନପର୍ଣ୍ଣେ ସ୍ପର୍ଶିକର ନମ୍ର ଗନ୍ଧବୃକ୍ଷ ।
କାଣ୍ଡସରଣିକି ବସାଦେଇ ସମାନରେ
ଉଦ୍ଧାରଣ୍ଡି ସ୍ୱମୂଳକୁ ସୁଦ୍ଧା ଗ୍ରୀଷ୍ମରେ ।

ଅନନ୍ତକାଳରୁ ଶିରେ ଖରା ବର୍ଷା ସହି
ଥିଲେ ଯାହିଁ କାନନର ସର୍ବଦ୍ରଷ୍ଟା ହୋଇ ।
ବିପଦେ ଜନନୀ ଯଥା ପୋଷନ୍ତି ଆଦରେ
ସ୍ୱପୁତ୍ରକନ୍ୟାଙ୍କୁ ରଖେ ଲୁଚାଇ ଅଙ୍କରେ ।
ପାଳଧୂଆ ପାଦପରେ ଜଡ଼ି ସୁଆଁ ଲଇ
ସ୍ଥାନଦେଇ ଗୁଳ୍ମଘାସେ ତେଜନ୍ତେ ଦୟାବହି ।
ପ୍ରଭୁଙ୍କର କରସଙ୍ଗେ ସନ୍ତତ ଝଡ଼ବାତ୍ୟା
ରଖୁଥିଲେ ସ୍ୱୀୟପକ୍ଷ ଛାୟାରେ ଆଚ୍ଛାଦ ।
ପାଟଳୀ ନଅଳୀ ଲତା ଛନ୍ଦାଛନ୍ଦି ହୋଇ
ଯାହିଁଅବା ଜାୟାପତି ପରି ଥିଲେ ରହି ।
ସୂତ୍ରଧରମାନଙ୍କର ଆଦରର ଧନ
ଶୋଭୁଥିଲା ଯାହିଁ ଶିଶୁ ବୃକ୍ଷଅପଘନ ।
ଯାହାର ଚିକ୍କଣତ୍ୱରୁ ପଟା ନିର୍ମଳଙ୍କ
ହୁଏ ରମ୍ୟ ଯାମ୍ପାସନ ବାକସ ପଲଙ୍କ ।
ସ୍ୱାଦୁପନେ କବିକୂଳ ମାନସ ମତାଇ
ନବ ପୁଷ୍ପାଭୃଣ ଚୂଳ ଧୀରେ ଦୋହଲାଇ ।
ଉଥସପର୍ବେ ତୋର ଶାଳସୁଁ ବାଉଁଶ
ପବମାନେ ଦେଉଥିଲେ ଯାହିଁ ମୃଦୁଘୋଷ ।
ଦୁଷ୍ଟ ଅଭିସନ୍ଧିସମ ଖର ପୀଡାଦାୟୀ
ସୁତୀକ୍ଷ୍ଣ କଣ୍ଟକମାନେ ଦେଉଥାଇ ଛାଇଁ ।
ଏକନେ ନରହି ଯାହିଁ ଖଳଟର ସଣେ
ଗୁହ୍ୱରାଏ ତୋର ମାଠେ ଥିଲେ ଏଣେ ତେଣେ
ସୁଗୁଣୀ ଉର୍ମୀବାଲା ରୂପସୀ ହେଲେହେଁ
ତା ସହ ବିବାହେ ଯଥା କାହାମନ ନୋହେ ।
ସେହିପରି ଲଜକୁଳ ପଡ଼ିଥାନ୍ତି ତଳେ
ତରୁଏ ଧରୁ ନଥିଲେ ତୋଳି ତାକୁ କୋଳେ ।
ବନ୍ଧୁକ ଅଧମା ବନସ୍ଥଳୀସହ ସୁଖେ
ଠେଲିକ ତରୁଏ ରଙ୍ଗେ ସ୍ୱଫଳ କନ୍ଦୁକେ ।
ମୃଦୁବାତେ ହଲିହଲି ଗୁଳ୍ମ ବାହୁବାହି
ଅବିରତ ଖେଳେମତ୍ତ ହୋଇଥିଲେ ଯାହିଁ ।

ବୈକର୍ତ୍ତନ ପୂର୍ବେ ଯଥା ଛଣ୍ଡାଇଦେହରୁ
କବଚକୁଣ୍ଡଳ ଦେଇଥିଲେ ଦେବେନ୍ଦ୍ରଙ୍କୁ ।
ତେସନ୍ତେ ସରହତେଙ୍କାଟି ସ୍ୱଦେହରୁ ଛାଲ
କୁମ୍ଭୀପଟିଆଙ୍କୁ ଦଏ ଯେ ବଳ୍କଳମାଳ ।
କୁମ୍ଭୀକୁମ୍ଭ ପରିସ୍ଫୁଟେ ଆବୁ ସବୁ ଧର
ଗଜୁଥିଲେ କାହିଁ କୁମ୍ଭୀ ତୋବକ୍ଷ ଆବୋର
ସମାନ ଅକୁଣ୍ଠ ଭୁଇଁ କୁରୁଆଁ ଚକ୍ଷୁଣି
ସମବାସ ଦେଉଥିଲେ କାହିଁ ମନ କିଣି ।
ତୋର ରମ୍ୟ ଲଲାଟରେ ରଞ୍ଜି କଳାଚିତା
ଶ୍ୟାମଳ ମଞ୍ଜୁଳକାନ୍ତି ସେ ଅପରାଜିତା ।
ନବବେତ କାହିଁ ବା ଧଳା ଶିଳାକୁ ଅବୋର
ଦିଶୁଥିଲା ଦନବସ୍ତ ସମାଗମ ପର ।
ମାର୍ଜିତ ମାରଗ କାନ୍ତ କୁସୁମନିକର
ଭ୍ରମ ଉପୁଜାଉଥିଲେ ନବ ନୀରଦର ।
ସେମାନଙ୍କ ଘନ ନୀଳସୁଷମାକୁ ଦେଖି
ନାଚୁଥିଲେ ସ୍ଥାନେ ସ୍ଥାନେ କେକାପୁଚ୍ଛ ଟେକି
କଳେବର କଷ୍ଟଦାୟୀ ଗାଣ୍ଠି ଶିଙ୍କୁଳାରେ
ପୁରିଥିବ ତୋ ପ୍ରାନ୍ତରମାନ କେଉଁଠାରେ
କୃଷକେ ସେ ଘାସ ନେଇ କୁଡ଼ିଆ ଅଚ୍ଛାଦ
ହେଉଥିଲେ ଇନ୍ଦ୍ରଙ୍କର ସହିତେ ବିବାଦୀ ।
ନତାନତ ଭୂମିତଳ ପନାସୀ ଅବୋର
ଦିଶୁଥିଲା କାହିଁ ତୋର କେଶଭାର ପର ।
ହଂସରବ ଛଳେ ଝଞ୍ଜି କିଙ୍କିଣି କଟୀରେ
ଝଙ୍କାର ଝୁଣ୍ଟିଆମଣ୍ଡି ଚମ୍ପକାଙ୍ଗୁଳରେ ।
ଫୁଲ୍ଲ କାଶତଣ୍ଡିଫୁଲେ ମନ୍ଦମନ୍ଦ ହସି
ପଢନ୍ତି ମଧୁରସ୍ୱର ସଙ୍ଗୀତରେ ରସି ।
ଶାଖାମୃଗ ଆନ୍ଦୋଳିତ ଶାଖାଦାକ୍ଷ୍ଟଳ
ନାଚୁଥିଲା ମନ୍ଦବାତେ ସଦା ବନସ୍ଥଳୀ ।
ଭୂଷଧର ବାସଯୋଗ୍ୟ ତମ୍ବୁ ସୁବିଶାଳ
ଶିଖା ଟେକିଥିଲେ କାହିଁ ବାମଲୂର ମାଳ ।

ଶ୍ୱେତ ପିପୀଲିକାଶ୍ରେଣୀ ଯାଉ ଶିଳକାର
ଗଢ଼ିଥିଲେ ମାଟିଖୋଳ ବୋହୁ ବାରବାର ।
ଘଡଘଡ଼ ଶବ୍ଦେ ଯନ୍ତ୍ର ଶୀଲନ୍ତ୍ରା ବାହାଣ
ସାନ ଦେଉଳର ମାନ ଦେଉଥିଲେ ସାର ।
ଏଣେତେଣେ ବୁଲ୍‌ବୁଲ୍ ଶିଙ୍ଘାଳ ସମ୍ବରେ
ଶିଙ୍ଘମାଜୁଥିଲେ କାହିଁ ପେନ୍ଥଣୀ ଗଛରେ ।
ସେ ଶିଙ୍ଘର ଘରଷଣେ ଉଠିଯାଇ ଛାଲ
ଦୁରକୁ ତା କାଣ୍ଡମାନ ଦଶୁଥିଲା ଜଳି ।
କନଡ଼ାବନରେ ତୋର ନିଃଶବ୍ଦେ ବହଇ
ଖଲ ଲବଣାକ୍ତ ଜଳେ ସୁଖେ ପେଠଭରି ।
ଗବୋନତ ଶିରଠେକ ସହତସ୍ତ ମେଲେ
କାହିଁବା ଗବଯେ ମାତଥିଲେ ମାଟିଖେଳେ
ଘନଲତା ମୂଳେ ଛପି ମହାବଳ କାହିଁ
ରହୁଥିଲା ପଶୁଙ୍କର ଗନ୍ଧବାଧି ସୁହୁଁ ।
ସୁଯୋଗରେ ଡେଇଁ ତାଙ୍କ କଣ୍ଠ ଦନ୍ତେ ଧର୍ଷି
ସେଇଁସ୍ୱବେ ଅନ୍ୟପାଖେ ପଡ଼ିବାରୁ ଖସି ।
ନ ସହି ତା ଗୁରୁତର ଦେହର ଓଜନ
ଦେହଭଙ୍ଗି ମରୁଥିଲେ ଝଟେ ପଶୁଗଣ ।
ଲୁଠେମ୍ବ ସହଜେ କାହିଁ ମଦମତ୍ତ କସି
ଲୁଲୁଥିଲା ଗଇରିକ ପରବତ ପରି ।
ପାଇ ତାର ଶରୀରର ଠାଣ ଘରଷଣ
ମୁଣ୍ଡୁଥିଲେ ଫଳଫୁଲ କାହିଁ ତରୁଗଣ ।
ଉଇ ଖାଇବାକୁ କାହିଁ ଅନନ୍ଦେ ଭଲ୍ଲକେ
ଗାତ ଖୋଳୁଥିଲେ ନଖେ ଖୀଷଣ ଭଲ୍ଲୁକେ ।
ଦେଖି ହେଉଥିଲେ ମନେ ଅନ୍ଧାର ପଟଳ
ସୂର୍ଯ୍ୟ ଉଦ୍ୟେ ପଶୁଥିଲେ ଅବା ବଲଖୋଳ ?
ନଖେ ଧରି ଅଣ୍ଡେ ଖଣ୍ଡି ଶୁକେ ନାନାଫଳ
ମଞ୍ଜିଗୁଡ଼ ଖାଉଥିଲେ ତା ଶସ କେବଳ ।
ସୁକଣ୍ଠୀଳ କପୋତର ପକ୍ଷ ତାଡନରେ
ପଡୁଥିଲା ଜମ୍ବୁଫଳ କାହିଁ ଭୂତଳରେ ।

ଶାରିକାଏ ଗାଉଥିଲେ କାହିଁ ସମ୍ମୁଖେ
ଫୁଲଚୁଇଁମାନେ ମଧୁ ଚାଖୁଥିଲେ ସୁଖେ ।
ପତ୍ର ଭକ୍ଷିବାକୁ କାହିଁ କରୀ ଶିଶୁମାଳ
ଶୁଣ୍ଡଟେକି ଭାଙ୍ଗୁଥିଲେ କ୍ଷୁଦ୍ରଗଛ ଡାଳ ।
ନିର୍ଝରିଣୀ ନୀରେସ୍ନାତ ଶୀତଳ ଅନିଳ
କରୁଥିଲା କାହିଁ ଶୁଷ୍କ ପତ୍ରକୁ ଶିଥିଳ ।
ବହୁଥିଲା ବାତ କାହିଁ ପଲ୍ଲବ କମ୍ପାଇ
ନୃତ୍ୟକାରୀ ଶିଖୀଙ୍କର ଶିଖା ଦୋହଲାଇ ।
ଏଣିକେ ତୁ ସୁନାମଣ୍ଡା ! ଥିଲୁ ପୂର୍ବେ ହେଲେ
ବିବିଧ ପାଦପ ଲତା ପଶୁ ପକ୍ଷୀମେଳେ ।
ଦିନକେ ଘଟନାକ୍ରମେ ଦେବ ହରିହର
ସଙ୍ଗେ ନେଇ ଉପଯୁକ୍ତ ଥୋକେ ଅନୁଚର ।
ଏକଦସ୍ୟୁ ବଧିବାକୁ ତା ସଙ୍ଗେ ଗୋଡାଇ
ତୋ ବିସ୍ତୀର୍ଣ୍ଣ କଳେବରେ ପଶିଲେ ଧସାଇ ।
ବଡଯୋର ତଟେ ତଟେ ଶୁଗୁଡା ପର୍ଯ୍ୟନ୍ତ
ଧାଇଁଲେହେଁ ସେ ଧୂର୍ତ୍ତର ନ ପାଇଲେ ଅନ୍ତ
ତାହାଙ୍କୁ ପଛରେ ଥୁଇଁ ସଭୟେ ପଳାଇ
ଗହନବନେ ମୃତବତ ଲୁଚିଲା ସେ କାହିଁ ।
ଫେରିବା ସମୟେ ନେନେ ରହିଲା ଅଟକି
ପାରିଷଦଗଣ ସହ ସହସା ଚଲ୍କି ।
ସୁପାଠବ ସମତଳ ତୋର କଳେବର
ଶସ୍ୟ ଉତ୍ପାଦନକ୍ଷମ ମୃତ୍ତିକା ଉର୍ବର ।
ସେ ଶସ୍ୟକୁ ରଖି ତାଙ୍କୁ ବଞ୍ଚାଇବା ଭଳ
ଚତୁର ସକଳେ ପୂର୍ଣ୍ଣ ସରିତ ଆବଳ ।
ଖମାରର ଉପଯୁକ୍ତ ସ୍ଥାନ ତୋତେ ମଣି
ଆରମ୍ଭିଲେ ଯଥାଯୋଗ୍ୟ କାର୍ଯ୍ୟ ଗୁଣମଣି ।
ଅବିରତ ତୋର ଘୋର ନିର୍ଜନତା ଭାଙ୍ଗି
ପ୍ରକଟିଲା ଠାଙ୍ଗିଆର ଠାଣ ଶ୍ରେଷ୍ଠ ସଜ ।
ସେ ଶବଦେ ଲଙ୍ଘି ଟେକି ମୃଗେ ଡିଆଁ ମାରି
ଦଉଡିଲେ ଅନ୍ୟସ୍ଥାନେ କାନନ୍ତୁ ବାହାରି ।

ପଶୁଙ୍କୁ ବଧିବା ପାଇ ସ୍ୱପ୍ରାଣ ପାଇଁକି
ପଳାଇଲେ ବ୍ୟାଘ୍ରେ ଦଳ ଗୁଳ୍ମ ବ୍ରତତୀକୁ
ଖୋଲାଇ ବୁହାଇ ମାଟି କୃଷାଣଙ୍କ ଭୁଜରେ
କେଦାର ନିକର ରଚି କାସାର ଆକାରେ
କର୍ତ୍ତିତ ପାଦପମୂଳ ଶାବଳେ ଧରଣି
ପୋତକୁଳ ସାହାଯ୍ୟରେ ସେ କ୍ଷେତ୍ରକୁ ଚଷି ।
କୋରଡରେ ଉଚ୍ଚ ସ୍ଥାନୁଁ ମୃତ୍ତିକା ଓଟାରି
ନିର୍ମିଣିଲେ ସମତଳ ସୁନ୍ଦର କିଆରି ।
ମହାନନ୍ଦେ ନୀଡରଚି ଉଚ୍ଚ ତରୁ ଡାଳେ
କଳରବେ ବନଭୂମି ପୁରାଇ ସେକାଳେ ।
ସ୍ୱକାନ୍ତରେ ସୁବର୍ଣ୍ଣର ଜେ୍ୟାତିକି ଘଉଡ଼ି
ଅସଂଖ୍ୟ ସୁବର୍ଣ୍ଣମୁଣ୍ଡି ବୁଲୁଥିଲେ ଉଡ଼ି ।
ତାଙ୍କ ନାମ ଅନୁସରି ଦେବ ହରିହର
ସୁନାମୁଣ୍ଡା ବୋଲି ନାମ ରଖିଲେ ତୋହର ।
ବଣିଆଁଏ ପୂର୍ବେ ଯନ୍ତ୍ରେ କରୁଥିଲେ କ୍ରୀଡା
ତୋ ଉତ୍ତର ପାଖେ ସେହି ବଣିଆଁ କୁଲଣ୍ଡା ।
ବନ୍ଧୁତ ବଉଳେ ଯହିଁ ସ୍ୱଜେ ନାଗବଲ୍ଲୀ
ପଶ୍ଚିମକୁ ଆବୋରିଛି ସାମନ୍ତସପଲ୍ଲୀ ।
ଭୂସୁର ମନ୍ଦର ଯହିଁ ବିରାଜେ ପ୍ରଚୁର
ଦକ୍ଷିଣରେ ସଖୀପଣି ବାସୁଦେବପୁର ।
ରୁଗୁଡାଛଡ ସଙ୍କୁଳ ଶୃଗୁଡା ଗଡର—
ସୀମାରେ ମିଶିଛିସୀମା ଅଗ୍ନି କୋଣେ ତୋର ।
ନିକଟ ଡସ୍ୱଜୁପରି ଯହିଁ ବିଜକଠା
ସେ ନିକଟ ମାଳେ ମଞ୍ଜୁ ତୋ ପ୍ରାଚୀ ପାଖଠା ।
ଯା ବକ୍ଷେ ଦଉଡ଼ିଅଛି ବଣାଇ ସଡକ
ସ୍ଥିରୁ ସୌଧେ ଯା କଣ୍ଠେ ହୁଏ ଜକଜକ ।
କଳାମାଟି ମାଳେ ଯାଇ ତନ୍ତୁ ପରିପାଟି
ସ୍ୱଜଇ ଐଶାନ କୋଣେ ଗ୍ରାମ କଳାମାଟି ।
ମଞ୍ଜୁ ମରକତମଣି ପଦକ ପସ୍ୱଏ
ବେଳ ପୁଷ୍କରଣୀ ତୋର ବକ୍ଷେ ଶୋଭାପାଏ ।

ଜଳ ପୃଷ୍ଠ ଶତଦଳ କୁମୁଦ କହ୍ଲାରେ
ତାରକିତ ଗଗନକୁ ନିରନ୍ତ ଧିକ୍କାରେ ।
ପ୍ରଫୁଲ୍ଲ କମଳମୁଖୀ କୁମୁଦ ହାସିନୀ
ଚଲ୍ଲୀଲସ୍ୟ ଲୀଳାସ୍ଥିନା ପଲ୍ଲୀ ସୀମନ୍ତିନୀ ।
ମସ୍ତନ୍ତ ସେ ଜଳେ ତାଙ୍କ କୁନ୍ତଳନିବନ୍ଧ
ବାରିନୋହେ ସଲିଳର ନୀଳବୀଚି ସନ୍ଧ ।
କମଳ, ମୃଣାଳ ବାହୁ ସଙ୍ଗତେ ମିଶନ୍ତି,
ଚଞ୍ଚଳ ସଫରୀ, ନେତ୍ର ପରାଏ ଦିଶନ୍ତି ।
ଶରୀର ଲାବଣ୍ୟଲୀଳା ଜଳ ମାଧୁରିମା
ଏକ ହୁଏ, ବାରିବାକୁ ନରହଇ ସୀମ ।
ମୁଖେ ଚଳଲୋଚନ ବେନି ଦିଶେ ମନୋହର
ଫୁଲ୍ଲତାମରସେ ଯଥା ନୀଳଇନ୍ଦୀବର ।
ବାଘମାର ଶଇଳର ଛାଇ ହ୍ରଦେ ବହି
ନୀଳିମାକୁ ସେ ସଲିଳ ଦ୍ୱିଗୁଣେ ଘେନଇ ।
ପନ୍ଥ ପୃଷ୍ଠେ ଘନ ଏଣୁ ପଦ୍ମବନ କାନ୍ତି
ଲୋକ ମନେ ଜନମାନ୍ତି ସନ୍ଧ୍ୟାକାଳ ଭ୍ରାନ୍ତି ।
ସେତ ଶ୍ୟାମଳ ଗାତ୍ରଦିଶେ ଲୋହିତ ଚଦଳ
ଚନ୍ଦନାର ଉପମାକୁ ବହୁଛି ଏ ଜଳୀ ।
ମାଣିକ୍ୟ ସ୍ତବକ ବନ୍ୟ-ଫଳରେ ନମିତ
ଖର୍ଜୁର ବିପିନ ତୀର ଚୌପାଖେ ରଜିତ ।
ପ୍ରକୃତିର ଧ୍ୟାନରତ ଯୋଗୀବରପରି
ଖର୍ବ ବର୍ଷା ନିବାରକ ପତ୍ରଛତ୍ର ଧରି ।
ପଞ୍ଚୀବୃତେ ବିଭୁଙ୍କର ମହିମା ପ୍ରକୃତି
ରହିଛନ୍ତି କାଣ୍ଡଶ୍ରିତ ବାହାଙ୍ଗା ପ୍ରସାରି ।
ମଞ୍ଜୁଳ ମନ୍ଦିର ହେଉ ତାର ଅଭ୍ୟନ୍ତରେ
ସ୍ଥାପିବେ ଏଥିବ ଏସେ ଶିବୁକ ଅନ୍ତରେ ।
ରଜତ ରୁଚିର କାନ୍ତି ବୋଲି ଅପଘନେ
ଶୋଭନ୍ତି ଶରଦଭ୍ରେ ସୁନୀଳ ଗଗନେ ।
ଅବା ତାର ନର୍ମ୍ମଦାର ସୁକୃତ ଆକର୍ଷି
ଥୋଇଛି ଦେଉଳ ବ୍ୟାଜେ ସ୍ୱହସ୍ତେ ସରସୀ

ଉତ୍ତର ପାରୁଶ ତୋର ଶୋଭର ସଦନ
ଲଖିପାଏ ତନ୍ତୁ କେବେ ନଛାଡ଼ଇ ମନ ।
ଅପରଛିତାର କାନ୍ତ କଳେବରେ ଦୋଳ
ଛବଧ ଅକୃତ୍ତବନ୍ତ ଶଇଳ ମଣ୍ଡଳ ।
ପଲ୍ଲବ ପ୍ରସୂନ ଫଳସ୍ତରେ ଦେହମଣ୍ଡି
ନୀଳନବଘନ କାନ୍ତି ଦେଉଛନ୍ତି ଖଣ୍ଡି ।
ଦେଉଳ ସଦୃଶ କିଏ କେ ପ୍ରାଚୀର ସର
ଗୃରୁଚନ୍ଦ୍ରଶାଳା ଛବି କେ ଛନ୍ତି ଆଦର ।
ବନ୍ଧୁର ପାଷାଣରୂପ ଶଯ୍ୟାଲ୍ଲଲସୀ ଟେକ
କୋମଳ ମୃତ୍ତିକା କେତ୍ତୁ ବଦ୍ଧଛନ୍ତି ଶିଖେ
ବୃକ୍ଷ ଠ ବୃହ୍ଲାଠେ ଯାଇ କନ୍ଦର ମୁଖର
ସେ ବୃକ୍ଷ ଠ ଖାଇଗିରି ଜନ ମନୋହର ।
ଯହିଁ ଶିଳାସଦୃଶାୟୀ ଶାର୍ଦ୍ଦୂଳଙ୍କୁ ହେର
ଭୟେ ଭୂମିକା ଛାଡ଼ି ଗଛପରେ ଢେର ।
ଚଞ୍ଚଳ ପ୍ଲବଙ୍ଗକୁଳ କାଣ୍ଡ କାଣ୍ଡେ ଧାଇଁ
ଗମ୍ଭୀର ହୁଙ୍କାର ନାଦେ ଦିଗ୍‌ଦେଶ କମ୍ପାଇ ।
ଅତର୍କିତ ବନ୍ୟଙ୍କବେ ସତର୍କ କରନ୍ତି
ସିଟି ସଙ୍କେତରେ ଯଥା ପାରିଧିଆ ପନ୍ତି ।
ପରସ୍ପର ସାହାଯ୍ୟରେ ପ୍ରାଣିଏ ଏଭବେ
ଏସ୍ତବେ ସୁଦୃଢ଼ ସନ୍ଧି ବାନ୍ଧି ଗଉରବେ ।
ଜୀବନ ସଂଗ୍ରାମ-ଜୟୀ ଉନ୍ନତ ଜାତିର —
ଅତ୍ୟାଚାରୁ, ରକ୍ଷି ନିଜ ବିପନ୍ନ ଶରୀର,
ବଞ୍ଚାନ୍ତି ଜାତୀୟ ପ୍ରାଣ ବିଦ୍ୟା ପରିଚ୍ଛଦ
ସାହିତ୍ୟ ସମାଜ ଶିଳ୍ପ ବାଣିଜ୍ୟ ସମ୍ପଦ ।
ମାତ୍ର ଯେ ଜାତିର ନାହିଁ ଏକତାର ଠାଣ
ବାଞ୍ଛନ୍ତି ଯେ ସ୍ୱଜାତିର କିମ୍ବା ଅକଲ୍ୟାଣ,
କିମ୍ବା ଯେତ୍ତୁ ବ୍ୟକ୍ତିଗତ ଉନ୍ନତି ସକାଶେ
ସ୍ୱଜାତି ଅହିତେ ଯାନ୍ତି ଅନ୍ୟଜାତି ପାଶେ
ସେଜାତି ଉନ୍ନତି କେବେଁ ନୁହେ ସର୍ବାଙ୍ଗୀନ
ପଶୁ ସମାଜରୁ ତାହା ସବୁରୂପେ ହୀନ ।

ଧନ୍ୟ ସେହୁ କ୍ଷଣଜନ୍ମା ଭୁବନ ଭୂଷଣ
ଦେଶ ମାତାଲାଗି ଯେହୁ ଦିଅନ୍ତି ଜୀବନ ।
ଚଢାବାଘ ଛାଗମାର ଯହିଁ ନିକାଞ୍ଚନେ
ଗୁଳ୍ମ ଗହଳରେ ଲୁଚିଥାଏ ଅନୁକ୍ଷଣେ,
ସଜଇ ସେ ବାଘମାର କଣ୍ଟେଇ କୋଳର
କଣ୍ଠରେ ଆବୋରି ତାର ଶ୍ୟାମଳ ଶରୀର,
କାଙ୍ଗର ବାଉଁଶ କୁଞ୍ଜବନେ କୁତୂହଳେ
ନିର୍ଭୟେ ବସନ୍ତେ ଯହିଁ ଭ୍ରମନ୍ତି ନିରୋଳେ,
ଯେଣୁ ନେତ୍ରଖଣ୍ଡ ଦାୟୀ କୀଚକ କଣ୍ଟକ
ଯିବାପାଇଁ ମୃଗଙ୍କୁ କରଇ ଅଟକ ।
ଘନକଳା ଖଳାହୁଳ ବଳାଖଣ୍ଡେ ପର
ସୁନୀଳ କାନ୍ତିକ ତୋର ରହିଛି ଆବୋରି ।
ଝର୍ଣ୍ଣକେ ସଳଖେ ବଳେ ବବଧ ଗଣ୍ଡରେ
ଚରଗୁଣି ଖୋଜି ଆସି କୁକୁଠ ଖାଇରେ,
ମିଶିଅଛି ଫଣି ଫଣାକୃତି ଶିରଠେଙ୍କ
ଫଣୀ ମଣିମାଳେ ଧାପି ଅନ୍ଧାର କୁଣ୍ଡିକ ।
ବାହ୍ୱାର ତୋଡର * ଗଛୁଁ ରଙ୍ଗେ ଶିରତୋଳି
ନଶୀଥେ ଦିଅନ୍ତି ଯହିଁ ଲୁଚି ହୁଳହୁଳି,
ଲକ୍ଷ୍ମୀଙ୍କ ବାହାନ ପ୍ରିୟ, ସନି ସହଚରୀ
ମାଣିକ୍ୟ ମଞ୍ଜୁଳ ନେତ୍ରା ଉଲ୍ଲୁକ ସୁନ୍ଦରୀ ।
ଯହିଁ ଶ୍ୱେତ ପିପୀଲିକା ଅନ୍ୱେଷଣେ ଲିପ୍ତ
ଚଞ୍ଚଳ ଚରଣାୟୁଧ ପଦଯୁଗେ କ୍ଷିପ୍ର,
ଝଣ୍ଟୁଷ ପଲ୍ଲବ ସହ ମୃତ୍ତିକା ନିବହ
ପଡ଼ୁଥାଏ ଝର ଝର ଶବ୍ଦେ ଅହରହ,
କାନନର ନିର୍ଜନତା ସହଜେ ଘୁଞ୍ଚାଇ
ଭୂତ ଭୟେ ଭୀତ ଜନେ ଭୀତି ଉପୁଜାଇ ।
ଶ୍ୟାମକ୍ଷେତ୍ର ରାଜତୋର ଜଳରାଶି ପର
ଏଗେରମଣ୍ଡଳ ତାର ତଟଭୂମିସର ।

* ତୋଡ଼ର— ଝମ୍ପା, ଯୋଡ଼ା ।

ଶରତ ସମୟେ ଯେବେ ମନ୍ଦ ସମୀରଣେ
ନାଚଇ କେତାରେ ଶାଳୀ ଆବଳ ସଘନେ,
ପ୍ରତେ ହୁଏ ତନ୍ତୁ ଉଠି ଫଳ ବୀଚମାଳ
ଏମାନଙ୍କ ଦେହେ ଅବା ଦେଉଛନ୍ତି ତାଳ ।
ଉତ୍ତରଶାରୋଧୀ ତୋର ଏହୁ ଶୈଳରାଜି
ମାରନ୍ତି ପ୍ରାଚୀର ସମ ଅଛନ୍ତି ବିରାଜି ।
ଚୈନମାନେ ମହାଦମ୍ଭେ ବହୁ ଅବ୍ଦରହୁ
ଉତ୍ତରର ଗ୍ରାମବାତ୍ୟା ପୂର୍ବେ ତାଙ୍କସହୁ ।
ପରଶାମେ କ୍ଲୀବହୁକୁ ଭଜ ବାରବାର
ନ ପାରେ ସେ କେବେ ସାଧି ତୋର ଅପକାର ।
ଉତ୍ତରଭିମୁଖେ ଏକ ସରଳ ସରଣି
ଗଇରକ ଶିଳାଶାୟୀ ତଟିନୀକୁ ଜିଣି,
ତରୁଲତା ଭେଦଧାଇଁ ସେ ଗିରି ସଙ୍କଟେ
ମିଶିନ୍ତି ବଣାଇଁ ଗାମୀ ଘାର୍ଘ ରାଜବାଟେ ।
ପ୍ରତେହୁଏ ଶୋଭାମୟୀ ଶୋଭାରଣୀ ଶିରେ
ସୁନ୍ଦର ସିନ୍ଦୁର ଗାର ଫୁଟି ଦଶେ କିରେ ?
ସୁନାମୁଣ୍ଡା ! ପଖାଳବା ପାଇଁ ଦେହତୋର
ବର୍ଷ ଉପକାରେ ବ୍ରତୀ ବର୍ଷାପତଙ୍କର.
ହୃଦୟ କନ୍ଦର ମଧ୍ୟେ ଅବିରତ ଝର
ମୂର୍ତ୍ତିମତୀ କରୁଣାର ନିର୍ଝରଣୀ ପର,
ନଳ ବନାକୀର୍ଣ୍ଣ (୧) ନଳବନ ପ୍ରବାହନୀ
ସ୍ୱଚ୍ଛଜଳା ବେଣ୍ଟୁଶୂଳା ଗିରି ନିର୍ଝରଣୀ ।
(୨) କଳାମାଟି ସେତୁବନ୍ଧେ ଉଠି ଅନାୟାସେ
ଖଣ୍ଡାଧୂଆ ନାମଧରି ଆସଇ ତୋ ପାଶେ ।
ଲକ୍ଷ୍ମୀ ତଳାସରେ (୩) ପଶି ସେ ପବନ ଜଳ
ଗ୍ରୀଷ୍ମତପ୍ତ ତନୁ ତୋର କରଇ ଶୀତଳ ।

(୧) ଜଙ୍ଗଲମୟ ଗ୍ରାମ ନଳବନ, ଏଠାରୁ ବେଣ୍ଟୁଶୂଳା ନାମକ ଜଳସ୍ରୋତ ପ୍ରବାହିତ ହେଉଅଛି ।

(୨) ଶ୍ରୀମାନ ଲଳିତ ମୋହନ ଦେବଙ୍କ ଖମାରଗ୍ରାମ ।

(୩) ସୁନାମୁଣ୍ଡାର ଏକ ବୃହତ୍ ବନ୍ଧର ।

ପବିତ୍ର ଫଳମୂଳ ଶସ୍ୟାବଳୀ ସ୍ୱଚ୍ଛ
ସେ ପୂତଃ ସ୍ଥାନରେ ମୁଖ୍ୟ ତୋ ସୁତ ନିବନ୍ଧ
ବୀରକୁଳ ଶିରୋମଣି ବାମଣ୍ଡା ଭୂଷଣ
ବିଜୟୀ ଉଲ୍ଲାସେ ଦିନେ କ୍ଷତ୍ରିୟ ରାଜନ ।
ହଳଦ ପାଣିଆ ଦୁଷ୍ଟ ଗଣ୍ଡ ପଛେ ଧାଇଁ
ପ୍ରଚଣ୍ଡ ଖଡ୍ଗ ଚୋଟେ ତା ମୁଣ୍ଡ ଛିଣ୍ଡାଇ ।
ରୁଧିରକ୍ତ ସେହି ଖଣ୍ଡା ଧୋଇଁ ଏ ଉଦକେ
ଖଣ୍ଡାଧୂଆ ନାମେ ଖ୍ୟାତ ଲଭିଅଛି ଲୋକେ ।
ଦନ୍ତୁରିତ ଶିଳାପଥେ ବହି ଧୀରେ ଧୀରେ
ମିଶି ପୁଣି ପ୍ରବାହିନୀ ବଢ଼ଯୋର ନୀରେ,
ସଙ୍ଗିନୀ ଗୋହିରୀ ହ୍ରଦେ ଢାଳି ନିଜ ପୟ
ବନ୍ଧୁରେ ବ୍ୟାପ୍ତି ଅଙ୍ଗେ ଭଜିଛି ବଳୟ ।
ଉଷାର ଅସ୍ପଷ୍ଟାଲୋକ ମିଶଇ ଯେସନେ
ତମିସ୍ରର ତପନଙ୍କ ପ୍ରଭାତ କିରଣେ ।
ଅବା ଧୂମରାଶି ଯେହ୍ନେ ଅନନ୍ତ ଗଗନେ
କିବା ଯଥା ଭକ୍ତମନ ଅନନ୍ତ ଚରଣେ ।
ସ୍ୱପ୍ନମୟୀ ଭାରତର ଲୀଳାଭୂମି ପର
ନାତିଉଚ୍ଚ ବାଘମାରି ମନୋଜ୍ଞ ଶିଖରୀ,
ସାଧାରଣ ପରିଶ୍ରମେ ଆରୋହି ତହିଁରେ
ଶ୍ରମକ୍ଲେଶ ହରି ରମ୍ୟ ସୁରଭି ସମୀରେ,
ନିଷ୍କାଞ୍ଚନ ନିବାସରେ * ବିରାଜିଲେ କ୍ଷଣେ
କି ଗମ୍ଭୀର ନୀରବତା ଜନମଇଁ ମନେ ।
ଲୀଳାମୟୀ ପ୍ରକୃତି ତା ସଉନ୍ଦର୍ଯ୍ୟ ପେଡ଼ି
ସେହିକ୍ଷଣି ସ୍ୱବୁଦ୍ଧିର ନେତ୍ରେ ଦିଏ ଫେଡ଼ି ।
ଉଲ୍ଲାସେ ଉତ୍ଫୁଲ୍ଲେ ନାଚ ପୁଲକିତ ଚିତ୍ତ
ହେବାକୁ ଇଚ୍ଛଇ ସ୍ରଷ୍ଟା ପାଦେ ସମର୍ପିତ ।
ଅନନ୍ତ ଆକାଶ ଘନ ଅରଣ୍ୟାନୀରାଜି,
ଚକ୍ରବାଳେ ମିଶି ଯହିଁ ଏକାକାର ଭଜି,

* ବାଘମାରି ପର୍ବତ ଶିଖରସ୍ଥ ନିବାସ ।

ଗାମ୍ଭୀର୍ଯ୍ୟ ସହିତ ଶୌର୍ଯ୍ୟ ମିଳନ ସୁଷମା
ଉପମାକୁ ହେଜି ତହିଁ କରିଛନ୍ତି ଜମା ।
ସେ ଛବି ଈଶଙ୍କ ସୃଷ୍ଟି ଚାତୁରୀ ପ୍ରକାଶି
ଆତ୍ମକୁ ପବନ କରେ ଅହମିକା ନାଶି ।
ମାନବ ଅଗମ୍ୟସ୍ଥାନ ଅତି ମନୋହର
ଆରାଧନା ଯୋଗ୍ୟସ୍ଥଳ ବୀଣାପାଣିଙ୍କର ।
କାମଦାନୀ କଳ୍ପନାର ଉଦ୍‌ବୋଧନ ପାଇଁ
ଛନ୍ତି ତହିଁ ନବରସ ମୂର୍ତ୍ତିପରିଗ୍ରହ ।
ଅଳଙ୍କାରେ ବିମଣ୍ଡିତା ରସିକା ଯେସନ
ପ୍ରକାଶି କରକାଶୁଭ୍ର ସୁନ୍ଦରଦଶନ,
ଘୋଡାଇ ମଧୁରମନ୍ଦ ସ୍ମିତ ରଦ (୧) ବାସେ
ପ୍ରଣୟୀକୁ ମଣ୍ଡିଦିଏ ପ୍ରଣୟଁ ଉଲ୍ଲାସେ,
ବାଳରବି କିରଣରେ ବିକାଶି ସୁବାସ
ବିତରନ୍ତି ତରୁରାଜି କେସନ ସୁବାସ ।
ନାନାଜାତି ପକ୍ଷିମାନେ ବସି ତଥିପରେ
ଗାଆନ୍ତି ବିପଞ୍ଚୀଜିଣା ସୁଲଳିତ ସ୍ୱରେ ।
ରସିକନାଗର ପରି ମନ୍ଦଗନ୍ଧବହ
ପ୍ରସୂନକୁ ଦେଉଥାଏ ଚୁମ୍ବ ଅହରହ ।
ଚଉଦିଗେ ପ୍ରକୃତିର ଶ୍ୟାମକାନ୍ତ ଛବି
ବିଲୋକି ମାନସ ଯାଏ ନାନା ରସେ ଦ୍ରବି ।
ବହୁ ଦୂରବର୍ତ୍ତୀ ଶ୍ୟାମ ସୁନ୍ଦର ପ୍ରକୃତି
ସହଜରେ ହୁଏ ଆସି ନୟନ ଅତିଥି ।
ତରଙ୍ଗିତ ଶୈଳଶ୍ରେଣୀ (୨) 'ଲୂକଡସିତାର'
ଆଗେ ଫେଡ଼ିଦିଏ ତାର ସୌନ୍ଦର୍ଯ୍ୟ ଭଣ୍ଡାର ।
ଗଗନକୁ ଉଠିବାର ସୋପାନ ପଙ୍କତି
ପ୍ରାୟେ ପରେ ପରେ ଯହିଁ ଶଇଳେ ଶୋଭନ୍ତି
ଦିଶନ୍ତି ଅବାଟୀ ଭଳେ ଯେତେ ସାନୁମାନ
ମସୃଣ ମର୍କତରମ୍ୟ କାନ୍ତିଠସମାନ ।

(୧) ରଦବାସ ଅଧରୋଷ୍ଠ ।
(୨) ଶୋଗୂଅ ନବଷ୍ଟୁ ପର୍ବତ ଶ୍ରେଣୀ ।

ସ୍ୱର୍ଗପୁଣ୍ଡି (୧) ଗାଙ୍ଗନଣ ମଞ୍ଜୁଆଳୀ ତଟେ
ଆସ୍ୱସଇ ସ୍ନୃଷ୍ଟ ଦେଖେ ଦୂରପ୍ରାଚୀ ପଟେ ।
(୨) ମୁଣ୍ଡାଳଅ କୁଣ୍ଡାପୀଠା ବସାଳଇଗ୍ରାମ
ଉପରେ ନୟନସୁଖେ କରଇ ବିଶ୍ରାମ ।
ପ୍ରକଟଇ (୩) କାଲକାଠ ଧବଳଅଟ୍ଟାଳ
ଘନବନାନ୍ତେ ଯଥା ସ୍ୱସଇ ମରାଳୀ ।
ମଦନଚ୍ଛୁଣ୍ଡେମସମ ଦ୍ୱିଧାକେକା ଧ୍ୱନେ
କର୍ଣ୍ଣକୁହର ଉପୁଜାଇ ବରହୁଣୀକଣ୍ଠେ,
ମୀରଦ ଆଗମେ ଯହିଁ ଶିଖାବଳଦଳ
ଶିଖାମେଲ ଚଞ୍ଚଦେଗେ ପଙ୍କାନ୍ତ ଚଞ୍ଚଳ,
(୪) ବାଲମତଟିମା ରୁସ୍ତ କ୍ଷୁଧାର୍ତ୍ତ ଶାର୍ଦ୍ଦୂଳ
ଗର୍ଜ୍ଜନେ ହୁଅଇପାର ବିଗ୍ରହ ଆକୁଳ,
ଧକ୍କା ଲଭି ସେ ପ୍ରଖର ଶବ୍ଦ ତରଙ୍ଗର
ଗର୍ଜ୍ଜି ଉଇ ମାଟି ଯହିଁ ପଡେ ଝରଝର,
ସେ ଶୈଳ (୫) ନକ୍ରଣ୍ଡମାଳ ତାପରେ ବଣଇ
ଗୁମ୍ଫଜ ଅକ୍ଷ୍ୟଶିର ଗଗନରେ ଥୋଇ ।
କାଞ୍ଚୀପରି ବେଢ଼ି ଯାର କଟିକୁ ଆହ୍ଲାଦେ
ବହେ ଖଣ୍ଡାଧୂଆ ନାଳ କଳକଳନାଦେ,
ସେହି ଖଣ୍ଡାଧୂଆ ଗ୍ରାମ ଶ୍ୟାମ କଳେବର
ହୁଏ ଏଥୁ ସୁନାମୁଣ୍ଡା ନୟନଗୋଚର ।
ଇନ୍ଦ୍ରନୀଳ ସୁଷମାକୁ ଚନ୍ଦାକାରେ ବୁଣି
ରାଜଇ ଲକ୍ଷ୍ମୀକଦମ୍ବ ଶୋଭା (୬) ଉଚ୍ଛୁଣୀ ।
କଟୀରେ ଗୋହ୍ମିର ସ୍ୱାସ * ମେଖଳା ଲମ୍ବାଇ
ଭଗଜାନ୍ତ ଶିଶୁଶୈଳ ବେନ "ଗୁଡ଼ିଝାଡ଼ି ।"

(୧) ସ୍ଥାନ ବିଶେଷ ।
(୨) ପଶ୍ଚିମର ଜଳଜମିକୁ ଏଦେଶରେ ମୁଣ୍ଡା କହନ୍ତି ।
(୩) ଶ୍ରୀମାନ ଗୋଲ ଜସ୍‌ବାସ୍ତବ ଦେବଙ୍କ ସମାରଗ୍ରାମ
(୪) ବଲାମାଟିର ପୂର୍ବଜଙ୍ଗଲର ନାମ ବାଲମ ।
(୫) ଗ୍ରାମବିଶେଷ ।
(୬) ନଦୀବିଶେଷ । * ଗୋହ୍ମିର ନଦୀ ବିଶେଷ ।

ଦେଖି ମନେ ହୁଏ ପୁର୍ବେ ଯୁଝି ଧଗସନ୍ଧ
ହିଭୁବନ ବଳେକଣି ଭୁକମଦୁଃସନ୍ଧ ।
ବଜସ୍ଥ ଦୁନ୍ଦୁଭିଯୁଗ ତଳେ ଓଲଟାଇ
ଥୋଇ ଦେଇଅଛୁ କି ସେ ଠେକ ରଖା ପାଇଁ ।
ଗୁଣ୍ଡୁରୁପଣିରୁ ଉଠି (୧) ଝାଡେଶ୍ୱର ଯାଏ
ଚରସୁପ୍ତ କଳଜୀବୀ ଡମ୍ଭିଗିଳ ପ୍ରାଏ ।
ଅଚଳ (୨) ଚଡ଼କମସ୍ତ୍ରୀ ରହିଛି ଆବୋର
ଦ୍ୱି ଅନ ଯୋଜନ ବ୍ୟାପି ଭ୍ରମକାୟା ଧର ।
ବନ୍ଧୁଙ୍ଖ୍ୟ କ୍ଷୁଦ୍ରଶୈଳ ପାଖେ ବସ୍ତଜନ୍ତ
ଛୀତାରତ ଯେଷ୍ଟେ ତାର ସ୍ତନ୍ୟପାୟୀ ପନ୍ତ ।
ହୁଦୟସ୍ଥ ଓଠାର ନାନାଜାତ ଫୁଲଫଳେ
(୩) କଳଣ୍ଡା (୪) ବଲଣ୍ଡା ବସ୍ତଜନ୍ତ ତାର ତଳେ ।
କଦମ୍ବ କଦମ୍ବେ ମଞ୍ଜୁ ଜାଙ୍ଗଲ କଦମ
ଦଶଇ ଦୂରରୁ ବହୁ ମୂର୍ତ୍ତି ମନୋରମ ।
ଭିଲ୍ଲୀକ ଚକ୍ରାରେ ପୂର୍ଣ୍ଣ ଆନନ୍ଦପସସ୍ତ
ସ୍ତଜଇ ସ୍ତଉଡମସ୍ତ ଧସ୍ତନ୍ତନ ପର ।
ଅନନ୍ତ ପ୍ରେମରେ ମତ୍ତ ଅନନ୍ତ ଗୋପର
ଙ୍କାରିନେ କମ୍ପୁଥିଲ୍ଲ ପୁର୍ବେ ଯା ଶିଖର ।
ଶୁକପକ୍ଷୀ କହ୍ୱାଚ୍ଛବ ପୁଷ୍ପସ୍ତବକତ
ମୃଗକୁଳ ପ୍ରିୟଭକ୍ଷ୍ୟ ଶାଖାବମଣ୍ଡିତ ।
ଗିଲ୍ଲର ନିକୁଞ୍ଜ ଯହିଁ ଅମନ୍ତିଛି ବଳେ
ସମାଦରେ କୃଷ୍ଣପକ୍ଷ ଅକାର ପଠଳେ,
ଲୁଣିଆଁ ମୃତ୍ତିକାଯେନେ ଧାନଗଛପନ୍ତ
ଘଡଘଡ଼ ନାଦେ ଯହିଁ ପାତାଳେ ପଶନ୍ତ ।
ଗର୍ଭିଣୀ ହରଣୀଙ୍କର ପ୍ରସବର ସ୍ଥଳ
ପାଖେ ତୋର ସ୍ତଜଇ ସେ ଚୀରଗୁଣୀ ଖୋଳ ।

---

(୧) ଦେବଗଡ଼ର ଦକ୍ଷିଣସ୍ଥିତ ମହାଦେବ ମନ୍ଦିର ।
(୨) ପର୍ବତବିଶେଷ, ଦେବଗଡ଼ର ପୂର୍ବରେ ଅବସ୍ଥିତ
(୩) ଶ୍ରୀମାନ୍ ଇଲ ଦସ୍ୟାକଣ୍ଠଦେବଙ୍କ ଶମାରସ୍ଥାନ ।
(୪) ଶ୍ରୀମାନ୍ ଇଲ ଦୁଷ୍ମନ୍ତଦେବଙ୍କ ଶମାରସ୍ଥାନ ।

ମୂଷାଗାତେ ପୂର୍ଣ୍ଣ ମୂଷାଗୁଡ଼ ଗିରପାଦେ
ଆମ୍ବ କାମ୍ବୁଗଛେ ଦେଖ ମଣ୍ଡି ନିର୍ବିବାଦେ,
ଗୋଲିଆ "ଘାସିବନ୍ଧଇ" ସଲିଳବସିଆ
ଶୋଭଇ ମସିହ୍ନାଲତା ଶ୍ୟାମ (୧) ସିମିଳିଆ
ଘାରମାମଦରେ ମଜ୍ଜି ଅଭିମାନଭରେ
ଯେ ରୁପେ ମାନବେଭ୍ରଷ୍ଟ ଅର୍ବାଚୀନ ନରେ
ଆୟୁ, ବଳ, ଆଭିଜାତ୍ୟ ବଳମଦେ ମାତ୍ତ
ଅପରଦୁର୍ବଳଜନେ ଆଟୋପ ଦେଖାନ୍ତି ।
ମହାମାଣସାରୁଶୈଳ ଛୁଇଁ ନଭଃସୀମା
ତେଣେ ସ୍ଥଳମାଳେ ତାର ପ୍ରକାଶି ବଢ଼ିମା ।
ରହିଅଛି ପ୍ରସ୍ତରର ଜୟସ୍ତମ୍ଭ ପରି
ଝରଝ ବରଗେହ ଦୀର୍ଘ ଭୂଖଣ୍ଡ ଆବୋରି ।
ବାଘଦନ୍ତା ନାଲ ପାଖେ ଶୋଭେ ସତୀଘାଟ
ଅଭିମତ ହୁଏ ଏଥି ମହାପାନ୍ଥା ନାଟ ।
ଝିଲ୍ଲୀ ସହଚରୀସହ ଚିର ନିର୍ଜ୍ଜନତା
ସଞ୍ଚରଇ ପରକାଶି ଭବ ଭଙ୍ଗୁରତା । '
ଗତାୟୁ ସ୍ୱାମୀଙ୍କ ସଦା ବିରହେ ଅଧୀର
ବନେ ସତୀ ତିଳୋତ୍ତମା ସୀମନ୍ତିନୀ ସ୍ଥିର,
ଯମପୁରେ ସ୍ୱାମୀ ପାଶେ ଅଭିସାର ଲୋଡ଼ି,
ଘୋର ଚିତାନଳ ପଥେ ନିର୍ଭୟେ ଦଉଡ଼ି ।
ଦାମ୍ପତ୍ୟ ପ୍ରେମରପୂତ ଗୌରବ କେତନ
ଟେଙ୍କି ହୋଇଥିଲେ ଆହା ଭସ୍ମେ ସମାଚ୍ଛନ୍ନ
ସେ ପ୍ରେମର ସୁପବିତ୍ର ପରିଣାମସହ
ଘଟୁଥିଲା ଏଥି ପୁଣି କାର୍ଯ୍ୟ ଭୟାବହ ।
ସେ କଥା ସ୍ମରିଲେ ହୃଦ ଉଠଇ ଚମକି
ଧମନୀରେ ରକ୍ତ ରହେ ଅବଶେ ଅଟକି ।
ଘାଉଲା ଶାର୍ଦ୍ଦୂଳ ସହ ଯୁଝି ବଳେବଳେ
ପଡ଼ନ୍ତେ ହୃଦସୁଦେବ କୃତାନ୍ତ କବଳେ,

(୧) ଘାସିବନ୍ଧନାମକ ଜଳାଶୟ ସିମିଳିଆ ନାମକ ଗ୍ରାମରେ ଅବସ୍ଥିତ ।

ତାହାଙ୍କ ବାଗ୍‌ଦତ୍ତା ସ୍ୱର୍ଣ୍ଣା ମାଳତୀସୁନ୍ଦରୀ
ବୈଧବ୍ୟ କରୁଣନାଦେ ଗଗନ ମୁଖର ।
ବାଳିକା ବୟସେ ସର୍ବ ଦୁଖ ଘଢ଼ ମନ୍ତ୍ର
ବାହାରିଲେ ଚିତାନଳେ—ତେଜିବାକୁ ତନୁ
ଶୁଣିଏ କରୁଣମୟ ଦାରୁଣ ଅବସ୍ଥା
ସ୍ୱାର୍ଥିକ ବ୍ରାହ୍ମଣେ ଦେଲେ ଉତ୍କଟ ବ୍ୟବସ୍ଥା,
ମୃତଶବ ସହିତରେ ବନ୍ଧାଇନା ଅନ୍ତେ
ଚିତା ହୁତାଶନେ ଦେହ ଦହିବା ନିମନ୍ତେ ।
ଧର୍ମପ୍ରାଣ ତାଙ୍କ ତାତ ସରଳ ବିଶ୍ୱାସୀ
ଏ ବ୍ୟବସ୍ଥା ପ୍ରତିବାଦେ ନୋହିଲେ ସାହସୀ ।
ଆତ୍ମୀୟ ସ୍ୱଜନଙ୍କର ବିଷାଦ କ୍ରନ୍ଦନ—
ସ୍ୱରେ ଚହଲାଇ ଗିରି ତଟିନୀ ଗଗନ ।
ହାୟରେ ! ସେ ସୁକୁମାରୀ କୋମଳା ବାଳିକା
ଅବଶେଷେ ଆଲିଙ୍ଗିଲା ଚିତାନଳ ଶିଖା
ହା ମାତଃ ! ବ୍ରାହ୍ମଣୀଦେଈ ନିରତେ ହୁହୁତ
ବାଞ୍ଛୁ ଥାଉ ସଂସାରରେ ପ୍ରାଣୀଗଣ ହିତ ।
ତୋର ଆଗେ ହେଲା ଏହି କ୍ରୂର ଅଭିନୟ
କେମନ୍ତ ସହିଲୁ ମା ! ତୋ ଦୟାର୍ଦ୍ର ହୃଦୟ ।
ନ ଥିଲା କି ବରଛିକେ ସୁତୀକ୍ଷ୍ଣ କଟାରୀ
କଦାଶୟଙ୍କର ହୃଦ ଦେବାପାଇଁ ଫାରି ।
ପଥିକ ନୟନେ ଆଜି ପଡ଼ିଲେ ଏ ସ୍ଥାନ
ହୃଦେ ଜାଗେ ପୂର୍ବସ୍ମୃତି ଝଲସାଇ ପ୍ରାଣ ।
ମନେ ହୁଏ ସତେ କିବା ବିଜନ ପ୍ରାନ୍ତର
ଏ ଯାଏ ସେ କ୍ରୂରକାର୍ଯ୍ୟେ ହେଉଛି କାତର ।
ଉତ୍ତପ୍ତ ନିଶ୍ୱାସ ମୁଞ୍ଚି ଦ୍ରୁମଶୂନ୍ୟ ମାଠେ
ଶିଶିରାଶ୍ରୁ ତେଜି ଅବା ବାଷ୍ପାକୁଳ କଣ୍ଠେ,
ପାର୍ଶ୍ୱସ୍ଥା ତଟିନୀର କଳକଳ ସ୍ୱନେ
ଏ ମହାବିଷାଦ ଗାଥା ଗାଏ ଅନୁକ୍ଷଣେ ।
ସୁନାମୁଣ୍ଡା ! ଏବେ ତୋର ହୁଏ କି ସ୍ମରଣ
ବୀରତ୍ୱବ୍ୟଞ୍ଜକ ସେହି କଥା ପୁରାତନ ।

ବାମଣ୍ଡାମଣ୍ଡନ ଦୁନ୍ଦା ଦେବ ନରପନ୍ତ
ଯେବେ ବୀର ପାଦଭରେ କମ୍ପାଇ ଧରଣୀ,
ଗୃପବାହାଲକୁ ଲଙ୍ଘି ବଣାଇଁରେ ପଶି
ସେଦେଶ ସୈନକଗଣ ସମୂଳେ ଧରଷି ।
ଜଗବନ୍ଧୁ ଭୂପନ୍ତଙ୍କ ସହ ରଣେ ମଚ୍ଚି
ଦୁଃସହ ଆହବେ ତାଙ୍କ ବଳବୀର୍ଯ୍ୟ ଗଞ୍ଜି ।
ଅଗ୍ରଜଙ୍କ ପଣ ପଣ ମୁଣ୍ଡ ଦମ୍ଭେ କାଟି
ସେ ଶିରେ ଗଡ ପାଖରେ ସରସୀଏ (୧) ପାଟି
କୃପାଣ ଲେଖନ ମୁନେ ଯଶଃପଟେ ଖୋଳି
ଅଙ୍କଯାଏ (୨) "ମୁଣ୍ଡଗଡା" ନାମେ ବର୍ଣ୍ଣାବଳି
ସ୍ୱବଯଜ୍ଞକୁଣ୍ଡେ ଶତ୍ରୁ ରକ୍ତ ଘୃତଢାଳି
ସେ ଘଟେ ଜୟଲକ୍ଷ୍ମୀଙ୍କ ରସନା ଓଖାଳି
ଦୁର୍ଗବାସୀ ଜନେ ଦେଇ ବଷମ ଝପଟ
ଉଡ଼ାଇ ଆକାଶେ ନିଜ ଜୟ ବୈଜୟନ୍ତୀ,
ଜଗବନ୍ଧୁ ଭୂପାଳଙ୍କ ହୃଦୟ ପ୍ରତିମା
ସୀମନ୍ତିନୀ ସଉନ୍ଦର୍ଯ୍ୟ ସୃଷ୍ଟି ଶେଷ ସୀମା
ସୁରମା ଜେମାଙ୍କୁ ଘେନି ବାହୁଡ଼ିଲେ ବଳେ
ଚମକାଇ ଦିଙ୍ମଣ୍ଡଳ ଜୟବାଦ୍ୟ ରୋଳେ,
ସୁବର୍ଣ୍ଣ ପ୍ରବେଶୀ ଶୋଭା ଅମାତ୍ରମଣ୍ଡିତ
ଉଚ୍ଚତାରେ ଗଣ୍ଡଶୈଳ ସହ ଉପମିତ ।
ପ୍ରଚଣ୍ଡ ବଚନ ମୁଣ୍ଡ ଶୃଣ୍ଡାଳ ନିକର
ଝୁଲୁଝୁଲୁ ଦୁନ୍ଦାସହ ହେଲେ ଅଗ୍ରସର ।
ପରିଶ୍ରମ ଜାତ ଫେନ ନିବହେ ଧବଳ
ଅତି ତେଜୀୟାନ ଅନବରତ ଚଞ୍ଚଳ ।
ଆସୁଥିଲେ ଅଶ୍ୱମାଳ ରଙ୍ଗେ ଢଳଢଳ
ବେଳା ସମ୍ମୁଖୀନ ସିନ୍ଧୁ ବୀଚଲୀଳା ଛଳ ।
ତାଳୀବଳେ ଶିଳାବୃଷ୍ଟି ସମାନ କଠୋର
ଶୁଭୁଥିଲା ଠାପୁଶବ୍ଦ ସେ ଅଶ୍ୱକୁଳର ।

(୧) ପାଟି (ଦେଶଜ)ଉର ।
(୨) ବଣାଇଗଡ଼ରେ ମୁଣ୍ଡଗଡ଼ା ଅଦ୍ୟାପି ବର୍ତ୍ତମାନ ।

ଖଡ଼ଶରସନେ ନଭେ ଜଳଦ ଯେସନ
ଦିଶୁଥିଲେ ହସ୍ତିପୃଷ୍ଠେ ତେବନ୍ତେ ବୀରଗଣ ।
ପାଇକେ ଭୂଷଣେ ତାଙ୍କ ସର୍ବାଙ୍ଗ ଆବୋରି
ଧାଉଁଥିଲେ ଅଗେ ଆଗେ ଫରି ଖଣ୍ଡାଧରି ।
ଆସୁଥିଲେ ସିପାହିଏ ନବଘନ ସରି
ଆନନ୍ଦ ଉତ୍ସାହେ ମାତି ବନଗିରି ଭରି ।
ଆସୁଥେ ବଜୁଲସବୁ ଭରୁଥିଲେ ବାଦ
ଶୁଭୁଥିଲା ଘଡ଼ଘଡ଼ି ସମ ସେନାନାଦ ।
ସୈନ୍ୟପଦେ ଅଶ୍ୱଖୁରେ ଗଜ ଚରଣରେ
ଉଠି ସାନ୍ଦ୍ର ରେଣୁରାଶି ବ୍ୟାପି ଗଗନରେ,
ମତ୍ତମାତଙ୍ଗଙ୍କ କର୍ଣ୍ଣ ବତାସେ ଚଞ୍ଚଳ
ଚଉଦିଗେ ଉଡୁଥିଲା ସନ୍ଧ୍ୟାଗ୍ରଗଭଳି ।
ବୀରଙ୍କର କଣ୍ଠରେ ସେ ଧୂଳି ଧୂସର
ଦିଶୁଥିଲା ମାଙ୍ଗଳିକ ଗୋରଚନାପରି ।
କୁଞ୍ଚିତଳ ତାଙ୍କେ ଯଥା କମଳକାନନ
ମଣ୍ଡୁଥିଲା ତେବନ୍ତେ ରେଣୁ ସେନାଙ୍କ ବଦନ ।
ହେମ ଅମାରୀରେ ବସି ଦୁର୍ଜ୍ଜା ନରବର
ଦିବ୍ୟସ୍ୱର୍ଣ୍ଣ ପରିଚ୍ଛଦେ ଭୂଷି କଳେବର,
ଉଦୟ ଅଚଳଶିରେ ଦିନମଣି ପରି
ଥିଲେ ସିନା ଅପରୂପ ସୁଷମା ଆଦରି ।
ଓସାର ସୁଦୃଢ଼ବକ୍ଷ ଉନ୍ନତ ଶରୀର
ଆଜାନୁଲମ୍ବିତଭୁଜ ଶ୍ରୀମୁଖସୁନ୍ଦର ।
ସେମୂର୍ତ୍ତି ସୁନାକୁ ଗଢ଼ି ଶୌର୍ଯ୍ୟ ଉପାଦାନେ
ରଖିଥିଲେକି ଧାତା ବୀରତ୍ୱର ସାଖେ ?
ସୁଦୃଢ଼ଙ୍କଳ ରେଖା ଅଙ୍କିତ କପୋଳେ
ସାହସର ଚିହ୍ନସ୍ଫୁଟ ବଦନମଣ୍ଡଳେ ।
ସମରେ ନିର୍ଭୀକ ସଦା ସ୍ୱଧର୍ମରେ ମତ୍ତ
ଆସୁଥିଲେ ରଣଜୟୀ ଦୁର୍ଜ୍ଜାମହାମନ୍ତ ।
ପାର୍ଶ୍ୱରେ ୧ ସନ୍ତୋଷ ୨ ସୁନା ବେନିସରଦାର
ଧାଉଁଥିଲେ ବାଜିପୃଷ୍ଠେ ଖୋଲି ତଲବାର ।

ହେମଶୈଳେ ସ୍ୱର୍ଣ୍ଣଦୀର ଲହରୀ ଯେସନ
ସେବକେ ଚାମର ଚାଳୁଥିଲେ ଘନଘନ ।
ତୁଚ୍ଛ କରି ପୂର୍ଣ୍ଣମାସୀ ଚନ୍ଦ୍ରମା ମୂରତି
ଶୋଭୁଥିଲା ହେମଦଣ୍ଡ ରମ୍ୟଶ୍ୱେତଛତ୍ର ।
ଅଙ୍କାରେ ମନୋରମ ସୋମରଶ୍ମିପରି
ଅଳିଶ୍ୟାମ କମନୀୟ କୁନ୍ତଳଉପରି,
ମହୋଜ୍ଜ୍ୱଳ ଶିରପେଞ୍ଚ ଦିବ୍ୟପ୍ରଭା ଉଠି
ସେ ଶ୍ୱେତଛତ୍ର ଭିତରୁ ଦିଶୁଥିଲା ଫୁଟି ।
ଶୁକପକ୍ଷୀ ପକ୍ଷସମ ହରିତ ଚାଦରେ
ଝାଡ଼ୁଥିଲେ ଧୂଳି ଦେହୁଁ ଯତନେ ଚାକରେ
ଢପି ଚାଲୁଥିଲେ ଧୀର ସୈନ୍ୟଙ୍କୁ ସଧୀରେ
ଝଲସାଇ ଅମାତ୍ୟଙ୍କୁ ଦଶନ କାନ୍ତିରେ ।
ପାଟ ଆଚ୍ଛାଦନେ ଚାରିପାଖ ଆଚ୍ଛାଦିତ
ହେମ ଦୋଳା ସୁଶୋଭିତ ବାହକେ ବାହିତ ।
ଯାଉଥିଲା ଆଗେ ଆଗେ ସେନା ସାଗରରେ
ବାଡ଼ଅଗ୍ନି ବକ୍ଷଭେଦି ବହ୍ନି ସରାଗରେ ।
ବେଢ଼ିଥିଲେ ଶିବିକାକୁ ସେବିକା ନିକର
କା’ ହାତେ ଆଲଟ ଥିଲା କା’ ହାତେ ଚାମର
କିଏ ଘେନିଥିଲେ ପାନ ରତନଡିବିରେ
କାହା କରେ ଥିଲା ନୀର ସୁବର୍ଣ୍ଣ ଝରିରେ ।
ଶିବିକାରେ ବସିଥିଲେ ସୁରମା ସୁନ୍ଦରୀ
ବାଳାତପ ଦୀପ୍ତମେଘେ ସୌଦାମିନୀ ପରି ।
ଲପନ ଲାବଣ୍ୟପ୍ରଭା ମାଳେ ଅଚ୍ଛଣସ୍ତ
ହେଉଥିଲା ଦୋଳାଗର୍ଭ ପୂର୍ଣ୍ଣଚନ୍ଦ୍ରମସ୍ତ ।
ନୟନେ ପଡ଼ିଲେ ଥରେ ସେରୂପ ମାଧୁରୀ ।
ପବିନ ଆଙ୍ଗେକେ ହୃଦ ଦେଉଥିଲା ପୁରି ।
ଶ୍ୱେତପଦ୍ମ ମାଳ ସମ ନିର୍ମଳ ଦୃଷ୍ଟିରେ
ଚାହୁଁଥିଲେ ଚାରୁଶୀଳା ଥର ଥର କରେ ।
ଜଗତର ସୁନ୍ଦରୀସ୍ତ ଯେତେ ରୂପରାଶି
ତୁଳନା ହେବାକୁ ତହିଁ ଠୁଳ କିବା ଆସି

କମଳ ମାଳରେ ଯଥା ଶୋଭଇ ସରସୀ
ସଜାଏ ଶଙ୍ଖଶ୍ରୀମୁଖ ଯେସନ୍ତେ ପୂର୍ଣ୍ଣଶଶୀ,
ବଢ଼ଇ ବ୍ରତତୀକାନ୍ତି ଯେସନ ଫୁଲରେ
ହସୁଥିଲା ଦୋଳା ତେସନ୍ତେ ତାଙ୍କ ସୌନ୍ଦର୍ଯ୍ୟରେ
ମହୋଜ୍ଜ୍ୱଳ ଯୁଗ୍ମତାରା ପୁନର୍ବସୁ ତୁଲ
ମାଣିକ୍ୟ ମଞ୍ଜୁଳଗୁରୁକଣ୍ଠେ କର୍ଣ୍ଣଫୁଲ,
କଶୋରୀଙ୍କ ଗଣ୍ଡସ୍ଥଳେ ଦିଶୁଥିଲା ଝଲ
ଫୁଲ୍ଲ ଶତଦଳେ ପ୍ରାତେ ବାଳାତପ ଭଳି ।
କନକ କରଣବାଳ କରଜରୁ ଉଠି
ଲାବଣ୍ୟ ସଲିଳରାଶି କରୁଥିଲା ବୃଷ୍ଟି ।
କୋମଳାଙ୍ଗୀ ଅଙ୍ଗ ଦେଖି ହେଉଥିଲା ପ୍ରତେ
ଫୁଟିଥିଲା କମଳ କି କ୍ଷୀରସରେ ସତେ ?
ଦଶନ ପ୍ରଭାରେ ଶୋଭୁଥିଲା ରକ୍ତାଧର
ହୀରକହାରରେ ଯଥା ଜ୍ୟୋତି ମାଣିକ୍ୟର ।
ଅଷ୍ଟମୀର ଚନ୍ଦ୍ରସମ ଲଲାଟଫଳକ
ତାପରେ ସିନ୍ଦୁର ବିନ୍ଦୁ ଦିଶେ ଜକଜକ ।
ଦେଖି ମନେ ଆସୁଥିଲା ଦର୍ପଣସୁନ୍ଦର
ବହୁଥିଲା ବିମ୍ବ କିବା ନବ ତପନର ।
କୁନ୍ଦପୁଷ୍ପ ଅନୁଗାମୀ ଭ୍ରମର ଯେସନ
ଚକ୍ଷୁତାରା ଦେନକଣି ନେଉଥିଲେ ମନ ।
ସୁମେରୁ ଶଖରେ ଯଥା ସୁବର୍ଣ୍ଣ ବ୍ରତତୀ
ଶୋଭା ପାଉଥିଲେ ତଥା ସେ ମଞ୍ଜୁଳମତୀ
ସୁନ୍ଦରୀ ସହ ଶିବିକା ସ୍କନ୍ଧେ ବହିଦୂରେ
ଏକନେ ଚରଣେ ଘୂଳ ବାହକ ଗଉତେ,
ଦୀର୍ଘପଥରେ ହାକ ଶ୍ରମ ଉପଶମ ପାଇଁ
ଆସୁଥିଲେ ସ୍ଥାନେ ସ୍ଥାନେ କାନ୍ଧ ବଦଳାଇ ।
ଏସବେ ଯଶସ୍ୱୀ ଶୂରେ ପରମଉତ୍ସୁକେ
ଗୁଳିମତା ଅନାକନା ପୁରମୁଖେ ସୁଖେ,
ପୁଣ୍ୟମୟ ତାଙ୍କ ପଦ ଧୂଳିରେ ସନ୍ତତ
ସୁନାମୁଣ୍ଡା ! ତୋ ଶରୀର କର ପବିତ୍ର,

ଯଥାକାଳେ ପ୍ରବେଶିଲେ ଦେବଗଡ଼େ ଯାଇ
ଶଙ୍ଖ ହୁଳହୁଳି ସହ ଅଭ୍ୟର୍ଥନା ପାଇଁ ।
ସୁନାମୁଣ୍ଡା ! ସବ୍ୟେ ତୋର ଦୀର୍ଘ ଖାଇପର
ସ୍ୱଚ୍ଛଜଳେ ବଡପୋର ବହେ ହୃଦଭର ।
ଶିଳାମାନେ ନତାନତ ଘଡ଼ୋର ଘାଟିରେ
ଅଣ୍ଡକାସୁ (୧) ଦାନ୍ଦରର ବିସ୍ତୃତ ପାଟିରେ
ରଜତ ଉଜ୍ଜ୍ୱଳ କାନ୍ତିମୀନ ସ୍ତର ସ୍ତର
ଅକ୍ଷୟ ଭଣ୍ଡାରୁ ତାର ଦିଏ ଉପହାର ।
ଅଟଳଦନ୍ତୁର ଶିଳା ଘାଟେ ଅସମ୍ଭାଳ
ବରଷା କାଳରେ ଯହିଁ ପ୍ରବଳ କଲ୍ଲୋଳ ।
ଅବିରତ ନାଚନାଚ ଘଡ଼ଘଡ଼ି ଘୋର ଘୋଷ
ବଧିର ତାନରେ ତୋର ଉଚ୍ଛୁଳାଏ ତୋଷ ।
ସ୍ୱାପଣ ଦର୍ଶନ ନହକୁଲେ ଭସ୍ମାବଶ୍ୟ
ତଳରେ ତା ବିରାଜଇ ଦୀର୍ଘଚକ୍ରଦହ ।
ସଦାକେଳି କଳାପ୍ରିୟା ଜଳଦେବୀଙ୍କର
ମୁକୁର ପରାଏ ଦୂରୁ ଦିଶେ ଯା ସୁନ୍ଦର ।
ତାର ସନ୍ନିକଟେ ରମ୍ଭାଦେବୀ ପୀଠ ତଳେ
ପନସ ରସାଳ ଜମ୍ବୁ କପିତ୍ଥ ଶ୍ରୀଫଳେ ।
ମନୋହର ୨ ବାସୁଦେବପୁର ବିରାଜଇ
ମହାରାଜ ବାସୁଦେବଙ୍କର ନାମବହି ।
ନବଢ଼ିକରତାବଣ ଘୋଡ଼ାଇ ଦେହରେ
କରଡାଖମଣେ ଖ୍ୟାତ ଥିଲା ଏ ପୂର୍ବରେ ।
ପୁଣ୍ୟଶ୍ଳୋକ ଲୋକପ୍ରିୟ ବାମଣ୍ଡା ଗୌରବ
ଗ୍ରାମ ରଚି ବସାଇଲେ ଏଥିରେ ମାନବ ।

---

(୧) ମତ୍ସ୍ୟଧର ବାଉଁଶର ଯନ୍ତ୍ର ବିଶେଷ ।

(୨) କରଡାଖମଣ ପୂର୍ବେ ଜଙ୍ଗଲମୟ ସ୍ଥାନ ଥିଲା, ସର୍ଦାସାହେବ ବାସୁଦେବ ସ୍ୱଭଳଦେବ ଏହାକୁ ବହୁପରିଶ୍ରମ ଓ ଅର୍ଥବ୍ୟୟ କରି ଗ୍ରାମରେ ପରିଣତ କରି ବ୍ରାହ୍ମଣମାନଙ୍କୁ ଶାସନ ଦାନ ଦେଇଥିଲେ, ସେହିଦିନୁଁ ଏହି ଗ୍ରାମର ନାମ ବାସୁଦେବପୁର ହୋଇଅଛି ।

ଷୋଳଘର ବପ୍ର ଆଣି ଷୋହଳ ସ୍ବଗରେ
ଦେଇଥିଲେ ଏ ଗ୍ରାମକୁ ଷୋଡ଼ଶୋପଚାରେ ।
ଯହିଁ କେଶେ ଫୁଲଝର ହସ୍ତେ ଫୁଲବଳା
ନାକେ ଫୁଲଗୁଣା ମଧ୍ୟେ ଫୁଲର ମେଖଳା ।
କଣ୍ଠେ ଫୁଲହାର କର୍ଣ୍ଣେ ଫୁଲ କର୍ଣ୍ଣଫୁଲ
ଭୂଜେ ଫୁଲତାଡ ପଦେ ଫୁଲର ନୂପୁର ।
ଖଞ୍ଜି ଫୁଲସ୍ନାନନା ଫୁଲ ସୁହାସିନା
ଫୁଲଶର ଫୁଲଶର ଫୁଲ ବନୋଦନା ।
ମନୋହର ସହକାର କୁଞ୍ଜବହାରଣୀ
କିଶୋର କୁରଙ୍ଗଦୃଶା କର୍ପୂର ହାସିନୀ ।
ମାର୍ଜିତମଞ୍ଜୁଳ ଗଜା ଗଜଦନ୍ତ କାନ୍ତ
ମୃଦୁ ବୀଣାଜଣା ବାଣୀ ଦ୍ବିଜବାଳାପନ୍ତ ।
ନବ ଅଙ୍କୁରିତ ମୃଦୁ କିଶଲୟସ୍ରଜ
ବାଲାର୍କ ପାଟଳକର ଚରଣରେ ଗଞ୍ଜି ।
ଫୁଲ୍ଲଜ୍ୟୋସ୍ନା ଢଳଢଳ ତରଳ ସଙ୍ଗୀତେ
ଫୁଲମଞ୍ଜୁ କାନନକୁ ହସାଇ ଭୂଶତେ ।
ଫୁଲସଖା ଫୁଲମାସେ ସଦା ଉପୁଜାନ୍ତ
ସଞ୍ଚାରିଣୀ ଫୁଲମୟୀ ବ୍ରତଶରଭ୍ରାନ୍ତ ।
ସ୍ରଜଭ ଅନଙ୍ଗଦୂରେ ତାର ଉପକଣ୍ଠେ
ପ୍ରସ୍ତର ପୁଳକେ ମଞ୍ଜୁ ବଡଯୋର ତଟେ ।
କୁଙ୍କୁମ କେଶର କାନ୍ତ ଫଳେ ଆନମିତା
କୃଶାଙ୍ଗୀ କମଳାବଳ୍ଲୀ ଜଗତ ବାଞ୍ଛିତା ।
ରସିକା ବଚନବେଶା ବଭ୍ରମରଙ୍ଗିଣୀ
ନଟୀ ଯଥା ନାଚ ନାଚ ନଏ ମନ କିଣି ।
ଦୋହଲି ଦୋହଲି ତେଣ୍ଟେ ମନ୍ଦ ସମୀରଣେ
ଜନ୍ମାନ୍ତ ସେ ନାନାସ୍ବବ ଦର୍ଶକର ମନେ ।
ଚମ୍ପାଫୁଲ ରମ୍ୟରେଣୁ ସ୍ରକରେ ପିଙ୍ଗଳ
ଗନ୍ଧୁ ଗଲେ ଉଡ଼ଉଡ଼ ହରଡ ସକଳ ।
କଣ୍ଟଥାନ୍ତ ଠକଠକ ଯହିଁ ସ୍ତ୍ରୀସୁ ଅଣ୍ଟେ
ବଉଳଫଳକୁ ମଞ୍ଜି ସହଜେ ଅକଟେ ।

କସ୍ତୁମ୍ବ ବଦାରକ କେଶରୀ କରଜ —
ମୁକ୍ତା ପରି ଦଶେ ଶୁକ ଚଞ୍ଚୁରେ ଯା ବୀଜ ।
ସେ ଦାଡ଼ିମ୍ବ ଗଛେ ଯହିଁ ଚଟକ ଶାବକେ
ଚଞ୍ଚୁ ମେଲି ଚେଁଏ ଚେଁଏ କରୁଥାନ୍ତି ସ୍ନେହେ ।
ସ୍ମରୁଛବ ସୁନାମୁଣ୍ଡା ! ତାର ନିକଟରେ
ଘନ ତରୁଲତା ପୂର୍ଣ୍ଣ ନିର୍ଜ୍ଜନ ସ୍ଥାନରେ ।
ବିସ୍ତୀର୍ଣ୍ଣ ଗାଡ଼ୁଆ ଗାଡ ପାଳ (୧) ବିରାଜଇ
ତହିଁ ମହାକାୟ ଏକ ପାଦପ ଶୋଭଇ ।
ଯା ଶାଖାରେ ନଳବାସି ଫୁଟିଅଛି ଛତ୍ର
ତାପରେ ଜଡ଼ିଛି ମଞ୍ଜୁ ମଦାଙ୍ଗବ୍ରତତି ।
ଧ୍ୟାନରତ ତପସ୍ୱୀର ଜଟାଜାଳ ଭଳି
ଯାର ସ୍ଥୂଳଚେର ତଳେ ପଡ଼ିଛି ଓହଳି ।
ସେ ବିଟପ ବୀରଦ୍ରୁମ ଅଟ୍ଟାଳିକା ପରେ
ସହଚରୀଗଣ ସହ ନିଶ୍ଚିନ୍ତ ମନରେ ।
ବସନ୍ତି ତୋ ଶୋଭ ଧ୍ୟାୟୀ (୨) ମିସରୀ ସୁନ୍ଦରୀ
ଯେତେ ଅମଙ୍ଗଳ ଦୃଷ୍ଟି ଦୁର୍ବିପାକ ହରି ।
ସେହିପରି ନିକେତନେ ସ୍ୱପ୍ନେ ଚନ୍ଦ୍ରାଲୋକେ
ମଣ୍ଡନ୍ତି ମିସରୀ କେବେ କେବେ (୩) ହଲ୍ଲୀଶକେ ।
ଯୋଗଦେବା ପାଇଁ ତହିଁ ନିମନ୍ତ୍ରଣ ଲଭି
ଚଉଦିଗୁଁ ବିରାଜନ୍ତି କେତେ ବନଦେବୀ ।
ଧ୍ୟାନପୀଠର ନୀଳ ମସ୍ତକରୁ ସ୍ରବି
ଜଳଶ୍ରେଣି ଧୋଏ ଯାର ଶ୍ୟାମଳଅଟବୀ ।
ସେ ପବନ ସ୍ଥାନୁ ଶତ୍ରୁ ବଧେ ପରଚଣ୍ଡୀ
ସ୍ୱସ୍ତରସମ ସ୍ୱସ୍ତର ଦେବୀ (*) ପଞ୍ଚଖଣ୍ଡୀ ।
ବ୍ରାହ୍ମୀଗିରି ନାଳୋପୃଲେ ମଣ୍ଡି ନୀଳଗଣ୍ଡ
ବିରାଜନ୍ତି ଜଗଦମ୍ବା ବିମ୍ବାଧରୀ (‡) ରମ୍ଭା ।

---

(୧) ଗ୍ରାମବିଶେଷ ।
(୨) ଗ୍ରାମସ୍ଥ ଗ୍ରାମ ଦେବତା ।
(୩) ନୃତ୍ୟ ।
(*) ଦେବଗଡ଼ର ଗ୍ରାମେଶ୍ୱରୀ ।
(‡) ଶୁଚୁଡ଼ାଗଡ଼ର ଅଧିଷ୍ଠାତ୍ରୀ ଦେବୀ ।

ଘୁରବେଶନ୍ତ (୧) ବନାକାଲ ଛଡ ମହେଶ୍ୱର
ଦେବାଙ୍କୁ ଅଭୟବର ସଦା ଯେ ତତ୍ପର ।
ଶରଣ୍ୟ (୨) ଶରଣୀପାଠ ଆସନ୍ତ ଉଚାଟେ
ନଈକୂଳଆଙ୍କୁ ଯେତ୍ନ ରଖନ୍ତି ସଙ୍କଟେ ।
ଦଶଘରିଆର ଇଷ୍ଟଦେବୀ ମାହେଶ୍ୱରୀ
ବିରାଜନ୍ତି ସୁଖେ ସଖୀବୃନ୍ଦ ସଙ୍ଗେ ଧରି ।
ଏ ଆଦି ଦେବଦେବୀଏ ମିଳି ସେ ଉତ୍ସବେ
ମତ୍ତନ୍ତି ଉଲ୍ଲାସେ ମାତି ମଧୁରତାଣ୍ଡବେ ।
ମଣ୍ଡଳ ଆକାରେ ହସ୍ତ ଧରାଧରି ହୋଇ
ଚରଣ ଚଳାନ୍ତି ଧୀରେ ଏକାବେଳେ ଲଇଁ ।
ହୃଦୟ ପ୍ରମୋଦଦାୟୀ କର୍ଣ୍ଣ ରସାୟନ
ମଧୁର ସଙ୍ଗୀତ ତହୁଁ ଉଠି ଅନୁକ୍ଷଣ ।
ଫୁଲ୍ଲବାସେ ସୁରଭିତ ଅନିଳ ହିଲ୍ଲୋଳେ
ବ୍ୟାପି ଅବଲୀଳାକ୍ରମେ ଦୂର ଦିଙ୍ମଣ୍ଡଳେ ।
ଲୀନ ହେଉଥାଏ ସେହି ଗଗନରେ ପଲକେ
ସୁଧାମୟ ସୁଧାକର ଅମୃତ ଆଲୋକେ ।
ତୃଣ କବଳିତ ମୁଖେ ମୃଗେ ଏକମନେ
ମହାନନ୍ଦେ ଗ୍ରୀବା ଟେକି ଅଧୀରେ ଶ୍ରବଣେ ।
ପିଉଥାନ୍ତି ସେ ଦିଗକୁ ଅଗ୍ରସର ଦ୍ରୁତେ
ପ୍ରାଣ ପୁଲକିତକାରୀ ସେହି ଗୀତାମୃତେ ।
ଉଚ୍ଚତରୁ ନୀଡ଼ଶାୟୀ ପତତ୍ରି ନିକର
ସ୍ୱପନରେ ଲଭି ସେହି ସୁଧା ସ୍ୱାଦୁସ୍ୱର ।
ନିଦ୍ରିତରେ ଥାଇ ସୁଦ୍ଧା ସୁପ୍ରୋତ୍ଥିତ ପରି
ଯୋଗ ଦେଉଥାନ୍ତି ତହିଁ ମୃଦୁତାନ ଧରି ।
ଦେବରଙ୍ଗ ଭୂମି ଥିଲା ଆଗେ ଯେଉଁ ସ୍ଥଳ
ଏବେ ତହିଁ ନିର୍ଜ୍ଜନତା ବିରାଜେ କେବଳ ।
ଥରେ ଥରେ ମଞ୍ଚା ଜଗି ଉନ୍ନିଦ୍ରେ କୃଷକେ
ଶସ୍ୟ ରକ୍ଷାଇବା ଅର୍ଥେ ନିଶୀଥେ ନିଃଶଙ୍କେ ।

(୧) ଗ୍ରାମବିଶେଷ ।
(୨) ନୈକୂଳଗଡ଼ର ଅଧିଷ୍ଠାତ୍ରୀ ଦେବୀ ।

ବଢ଼ାନ୍ତି ଉତ୍କଣ୍ଠ ବୋଧ ଜଣ୍ଠ ବୁଦ୍ଧାଠେ
ମସୀମୟୀ ରଜନୀର ଚକ୍ଷୁଷିକା ଅଣ୍ଠେ ।
ଆରେ ସୁନାମୁଣ୍ଡା ! ତୋର ରୁଚିର ଶରୀରେ
ଦୁଟା ଆସ୍ତରଣେ ଶ୍ୟାମ ଅମ୍ବର ପଲ୍ଲିରେ ।
ମହାକୂର୍ମ ପୃଷ୍ଠାକାର ପ୍ରାନ୍ତର ଉପର
ସ୍ୱଚ୍ଛେଣ୍ଡୁ (୧)·ଅଟ୍ଟାଳିକା ହାସ୍ୟଲୀଳା ପର ।
ମନେହୁଏ ପ୍ରକୃତିଙ୍କ ଶିବାର୍ଚ୍ଚନ ପାଇଁ
ପଇଶସୁମନସ୍ତକ ରଖିଛି ଠୁଳାଇ ।
ଦ୍ରବ୍ୟ ଆଚ୍ଛାଦନ ଶୋଭି ବାତାୟନପନ୍ତି
ଦର୍ପଣଫଳକ ସହ ତହିଁ ବିରାଜନ୍ତି ।
ଜଣାଏ ପ୍ରସାଦନେତ୍ର ମେଲିଅଛି ପର
ଦେଖିବା ପାଇଁକି ସବ ଅଶାନ୍ତି ପାଶୋରି ।
ଫୁଲ୍ଲବାଣ ହାସମୟୀ ଅତ୍ୟନ୍ତ ପବନ
କୋମଳ ମଧୁରକାନ୍ତି ତୋ ଅମୂଲ୍ୟ ଧନ ।
ଅନାବୃତ ବାଷ୍ପମୁକ୍ତ ସ୍ୱାସ୍ଥ୍ୟ ଅନୁକୂଳ
ଉପାଦାନମାନ ତହିଁ ହୋଇଅଛି ଠୁଳ ।
ଅବଚନ ମକରନ୍ଦ ଗନ୍ଧ ଅଙ୍ଗେ ବହି
ମୃଦୁ ମୃଦୁ ଗନ୍ଧବହ ଅବିରତ ବହି,
ଲଭି (୨) ମାଦଳଅ ଜଳୀ ଜଳକଣା ସଙ୍ଗ
ବାତାୟନ ପଥେ ପଶି ଶୀତଳାଇ ଅଙ୍ଗ ।
ମଧୁକ ପ୍ରସୂନ, ମଦମତ୍ତ ହରିତର
ତା ସହ ମିଶଇ ଧୀର ସୁଲଳିତ ସ୍ୱର ।
ସେ ସମୀର ଅହରହ ସୁମନ୍ଦେ ସଞ୍ଚର
ବ୍ୟଜନ ଅଭାବ ଦୁଃଖ ନେଉଥାଏ ହର ।
କେବେକେବେ ବସି ଏହି ନିର୍ଜ୍ଜନ କୋଠାରେ
ରସୁଥିଲି ରସଦାୟୀ ସାହିତ୍ୟ ଚର୍ଚ୍ଚାରେ ।

(୧) ମହଲ ।
(୨) ପଣ୍ଡିତ ଶ୍ରୀ ମଧୁସୂଦନ ମିଶ୍ର ଓ ଚର୍ଚ୍ଚବୀରପ୍ଲଭ ବାମଣ୍ଡା ସଭାସଦ ପଣ୍ଡିତମାନେ ।

ପୁଣ୍ୟାତ୍ମା (୧) ମଧୁସୂଦନ ସୁଧୀଙ୍କ ସଙ୍ଗତେ
କୁତୁହଳେ ଭ୍ରମୁଥିଲି ନନ୍ଦନ * ଜଗତେ ।
ମନୋମୁଗ୍ଧ କରି ଦିଲ୍ଲୀ (୨) ପତାକାମାଳିନୀ
ମାନସକୁ କେବେ ମୋର ନେଉଥିଲା କିଣି ।
କେବେ ବା (୩) କିରାତ ମୂର୍ତ୍ତି ମୃତ୍ୟୁଞ୍ଜୟ ସହ
ଦେଖୁଥିଲି ବିଜୟଙ୍କ ଯୁଦ୍ଧ ଉତ୍ସାବଦ୍ଧ ।
ପୁଣି କେବେ (୪) ଭୀମପୁରେ କେଳି ଉପବନେ
ଶୁଣିଥିଲି ସରୋବର ତୀରୁଁ ଏକମନେ ।
ନଳଙ୍କ ପ୍ରେରିତ ଶ୍ୱେତ ମରାଳରାଜର-
ସହ ଗୁପ୍ତ ପରାମର୍ଶ ଦମୟନ୍ତୀଙ୍କର ।
ଯଶୋଲିପ୍ସୁ (୫) ରାମଙ୍କର ନିଷ୍ଠୁର ଆଜ୍ଞାରେ
ଅନାଦରେ ପରିତ୍ୟକ୍ତା ଭାଗୀରଥୀ ତୀରେ ।
ଅନାଥିନୀ ଶୋକାକୁଳା ମୈଥିଳୀଙ୍କ ଶୋକେ
କେବେ ଅବା କାନ୍ଦୁଥିଲା ମୋ ପ୍ରାଣ ଆତଙ୍କେ ।
ପ୍ରତାରିତ (୬) ଲିଅରଙ୍କ କେବେ ପରମାଦ
ହେରି ହେଉଥିଲା ହୃଦ ବ୍ୟାକୁଳ ବିଷାଦ ।
କେବେ (୭) କାଳୀଚରଣଙ୍କ ସହ ଏକାନ୍ତରେ
ଗାଉଥିଲି ମେଘଦୂତ ମେଘମନ୍ଦ୍ର ସ୍ୱରେ ।
ଛନ୍ଦଶ୍ରେଷ୍ଠ ମନ୍ଦାକ୍ରାନ୍ତା ମୁଖରି ଗଗନ
ଉଠୁଥିଲା ପଣ୍ଡିତଙ୍କ କଣ୍ଠୁ ଘନଘନ ।
ଏକେ ମେଘଦୂତ ଦୂଜେ କବି କାଳିଦାସ
ତହିଁପରେ ଘନ ଘଟାଛନ୍ନ ଘନମାସ ।

(୧) ପଣ୍ଡିତ ମଧୁସୂଦନ ତର୍କବାଚସ୍ପତି ବାମଣ୍ଡାର ସଭାସଦ୍ ପଣ୍ଡିତ ଥିଲେ ।
(୨) ମହାଯାତ୍ରା କାବ୍ୟ ପ୍ରତି ଲକ୍ଷ୍ୟ । * ତାର ଶଶାଙ୍କ ପ୍ରତି ଲକ୍ଷ୍ୟ ।
(୩) କିରାତାର୍ଜୁନୀୟ କାବ୍ୟ ।
(୪) ନୈଷଧ କାବ୍ୟ ।
(୫) ଉତ୍ତର ରାମଚରିତ ପ୍ରତି ଲକ୍ଷ୍ୟ ।
(୬) ସେକସପିଅର ଅନୁସ୍ତେୟ King lear
(୭) ବାମଣ୍ଡାର ସଭାପଣ୍ଡିତ କାଳୀଚରଣ ଦ୍ୱିବେଦୀ ବିଦ୍ୟାଭୂଷଣ—

ସୌଦାମିନୀ ଝଟକରେ ଦିଗ ଚମକାଇ
ଦେଉଥିଲି ଦ୍ୱିଗୁଣରେ ମାନସ ରଞ୍ଜାଇ ।
ସୁଧା ନିଷ୍ୟନ୍ଦିନୀ ସେହି ରସେ ମଣ୍ଡିସଣେ
ଉଲ୍ଲାସେ ଆସେହି ନବ ମେଘ ବର୍ଷନେ ।
ହରଷିର ଚନ୍ଦ୍ରିକାରେ ଧୌତ ହର୍ମ୍ୟ ଲେଖି
ଦେଖିବାକୁ ଯାଉଥିଲି ଅଳକାର ଶୋଭା ।
ଗୁନ୍ଥୁଁଥିଲି କୃଶକାନ୍ତ ଯକ୍ଷକୁ ଆଗରେ
କନକ ବଳୟ ଭ୍ରଂଶରିକ୍ତ ପ୍ରକୋଷ୍ଠରେ ।
ଝରଣାରେ ଅର୍ଘ୍ୟ ଦେଇ, କୁଟଜ ମୁକୁଳେ
ପୂଜୁଥିଲି ମେଘକୁ ସେ ବିରହି ବ୍ୟାକୁଳେ ।
କେବେ ହେଉଥିଲେ ମୋର ନେତ୍ର ସହଚର
ଆକାଶେ ଆବଦ୍ଧମାଳା ବଳାକା ନିକର ।
ବିଷ କିଶଳୟ ଛେଦ ପାଥେୟ ଆହରି
ଯାଉଥିଲେ ରାଜହଂସେ କେବେ ପଂକ୍ତି ଧରି ।
ଘଡଘଡ଼ ଘୋରଘୋଷେ ଅତ୍ୟନ୍ତ ଉନ୍ମନା
କେବେ ଦୂଶ୍ୟାମଳ ଶୈଳେ ମୁଗ୍ଧ ସିଦ୍ଧାଙ୍ଗନା ।
ଦିଗ୍ନାଗର କରଗଞ୍ଜି ଘନକୁ ବିଲୋକି
ଚଞ୍ଚଳ ଚକୋରଦୃଶା ଚକିତେ ଚମକି ।
ଗୁହାମୁଖେ ଧାଇଁ ଭୟେ ଊର୍ଦ୍ଧ୍ୱମୁଖୀ ହୋଇ
ବୋଲୁଥିଲେ ମାଁ ଗୋ ! ବାୟୁଶୃଙ୍ଗ ନିଏ ବହି ।
ଭ୍ରୂବିଳାସ ଅନଭିଜ୍ଞ ଜନପଦ ବାଳା—
ଗୃହାଣି କେବେ ବା ମୋର ନେତ୍ରେ ନାଚୁଥିଲା ।
ସାନୁମାନ ଆମ୍ରକୂଟ ଶାନ୍ତ ଦାବାନଳ
ଦେଖିଲି ଲିଭିଲା କେବେ ଲଭି ବର୍ଷାଜଳ ।
ପାଚିଲା ଝରଣ ଆମ୍ର-କନକ କାନ୍ତିରେ
ରୁଚିର ସେ ଶୈଳଶିରେ ବିଲୋକି ମୁଦରେ
ଅମର ମିଥୁନ ସହ କେତେବେଳେ ଅବା
କରୁଥିଲି ମନ ମୋର ଧରାସ୍ତନ ଶୋଭା ।
ବନଚର ବଧୂଙ୍କର କେଳି କୁଞ୍ଜେ ପଶି
ଗୁନ୍ଥୁଁ ଥିଲି ସେ ସୁଷମା କେବେ ତହିଁ ବସି

ଗଜ ଅଙ୍ଗେ ବିରଚିତ ବିଭୂତି ଯେସନ
ଉପଳ ବିଷମେ ରେବା ତଟିନୀ ନର୍ତ୍ତନ
ବିନ୍ଧ୍ୟଗିରି ପାଦେ କେବେ ଦେଉଥିଲା ବାଉ
ସ୍ଫୁତଗାମୀ ଅଶ୍ୱକୁଳ ମହତ୍ତ୍ୱକୁ ସାର ।
ହରିତ କପିଶ ମଞ୍ଜୁ କଦମ୍ବ କେଶର
ଭୂମି କନ୍ଦଳୀର ସ୍ଥୂଳ ମୁକୁଳ ସୁନ୍ଦର ।
ନବଜଳ ସେକେ ବନଭୂମିର ଆଘ୍ରାଣ
ଅନୁଭବ କାଟୁଥିଲା କେବେ ମୋର ପ୍ରାଣ ।
କେବେ ମୋ ଅଗ୍ରତେ ସ୍ନେହୀ ସିଦ୍ଧ ସୀମନ୍ତିନୀ
ଅଙ୍ଗୁଳି ଉଠାଇ ଊର୍ଦ୍ଧ୍ୱେ ବକ ଗଣିଗଣି ।
ରହୁଥିଲେ ବଲ୍ଲଭଙ୍କ ପାଶରେ ଆଦରେ
ଏକାଳେ ଅଦୂର ନାଦେ ଚମକି ଭୟରେ ।
ଅଧୀରେ ବଳାଏ ବାହୁ ବଲ୍ଲୀରେ ସଘନେ
ବାନ୍ଧିଲେ ପ୍ରିୟଙ୍କୁ ଦୃଢ଼େ ଗାଢ଼ ଆଲିଙ୍ଗନେ ।
ଅପ୍ରାର୍ଥିତ ଆଲିଙ୍ଗନେ ପ୍ରିୟତମାଙ୍କର
ଧଲେକଲ୍ ସିଦ୍ଧେ ହେଲେ ପ୍ରେମେ ଜରଜର ।
ଦଶାର୍ଣ୍ଣର ରାଜଧାନୀ ବିଦିଶା ପୁରୀରେ
ରସିକନାଗର ଘନ ନାଦ ଧୀରେଧୀରେ ।
ଭ୍ରୂଭଙ୍ଗି ଭୂଷିତା ବାମା ଅଧର ସମାନ
ବେନବତୀ ସ୍ରବନ୍ତର ଚଳୋର୍ମ୍ମି ଶୋଭନ ।
ବଦନକୁ ଚୁମ୍ବ ଦେଉଥିଲା ଘନଘନ
କେବେ ଅନୁଭବୁଥିଲି ସେଛବି ମୋହନ ।
ନୀପପୁଷ୍ପେ ପୁଲକିତ କେବେ ନୀଚଗିରି
ପଣ୍ୟସ୍ତ୍ରୀ କୁନ୍ଦର କେଳି ସୌରଭ ଉଦ୍‌ଗାରି-
ସୁଲଳିତ ଶିଳାସଦ୍ମେ ବିହାର ଗ୍ରାହକ
ସେ ଦେଶରେ ସୁରଭକ୍ତ ଯୁବକ ମାନଙ୍କ
ଉଦ୍ଦାମ ଯଉବନର ଦେଇ ପରିଚୟ
କରୁଥିଲା ମୋ ମନରେ ଆନନ୍ଦ ଉଦୟ ।
ସେ ସୁନ୍ଦର ଶିଳାସଦ୍ମେ ଆନନ୍ଦରେ ଘୂରି
ଦେଖୁଥିଲି ସମ୍ମୁଖରେ ଉଜ୍ଜୟିନୀ ପୁରୀ ।

ସୌଧୋତ୍ତୁଙ୍ଗ ପ୍ରଣୟିନୀ ପ୍ରଣୟ ବହୁଳା
ବିଦ୍ୟୁଦ୍ଦାମ ସ୍ଫୁରଣରେ ଚକିତା ଚପଳା
ଲୋଲ ଅପାଙ୍ଗୀଙ୍କ ଚଳ ଅପାଙ୍ଗର ଲୀଳା
ଚପଳାକୁ ନିନ୍ଦି ମୋର ନେତ୍ର ନାଚୁଥିଲା ।
ପରିଣତ ଫଳଶ୍ୟାମ ଜମ୍ବୁ ବିପିନରେ
ବୁଲିବୁଲି କେତେବେଳେ ମନ ଆନନ୍ଦରେ ।
ଦେଖୁଥିଲି ଶୀତ ନବ ଜଳକଣା ସିକ୍ତ
କମଳ ସୌରଭ ସଙ୍ଗୀ ଅନୁକୂଳ ବାତ ।
ପ୍ରାର୍ଥନା ସ୍କଠୂକାର ସେ ପ୍ରିୟତମ ପର
ବାଳାଙ୍କ ସୁରତ ଗ୍ଲାନି ନେଉଥିଲା ହରି
ଭବନ ଶିଖୀଙ୍କ ନୃତ୍ୟ ଉପହାର ଲଭି
ଓ ନବ ବାରିଧର ସହ କୁସୁମ ସୁରଭି
ଲଳିତ ବନିତା ପାଦ ରାଗାଙ୍କେ ମୋହନ
କରୁଥିଲି ସେ ପୁରର ଛବି ଅତୁଳନ ।
ପୁନଃ କ୍ରୀଡାରତା ବ୍ରୀଡାବତୀଙ୍କ ସ୍ନାନରେ
ସୁରଭିତ ଗନ୍ଧବତୀ ତରଙ୍ଗ ତଟରେ
କେତେବେଳେ ନମୁଥିଲି ଭକ୍ତି ଗଦଗଦେ
ତ୍ରିଭୁବନ ଗୁରୁ ପୂତ ଚଣ୍ଡୀଶ୍ୱର ପଦେ ।
ଗମ୍ଭୀର ଗମ୍ଭୀରା ନଦୀ ସଦା ସୁପ୍ରସନ୍ନା
ନର୍ତ୍ତିତ ଚଟୁଳଶୁଭ୍ର ସଫରୀ ନୟନା ।
ବହୁତ ଯୋଜନ ତଳେ ସେ ନଦୀ ଦର୍ପଣେ
ଘନ ପ୍ରତିବିମ୍ବ ମୋର ଜାଗୁଥିଲା ମନେ ।
ଶର ପରିଚିତ ଭ୍ରୁ ବିଭ୍ରମେ ସୁନ୍ଦର
ଚଳକୁନ୍ଦ ଅନୁସାରୀ ଭୃଙ୍ଗ କାନ୍ତି ସ୍ଫେର
ଦଶପୁର ବଧୂଙ୍କର ନେତ୍ର କୌତୁହଳେ *
ମେଘବିମ୍ବ ବୃନ୍ଦୁଥିଲି କେବେ କୁତୂହଳେ
ଭୃଗୁପତି ଯଶୋବର୍ତ୍ମ କ୍ରୌଞ୍ଚ ରନ୍ଧ୍ରେ ଘନ
ପଶିକେବେ କରୁଥିଲା ବାମନ ଚରଣ ।

* ନେତ୍ର କୌତୂହଳେ—ସ୍ପୃହାଣି ।

କେବେ ଅବା ସୁଷ ନ ସଞ୍ଚସ୍ୱରା ଘରେ
ମତ୍ତୁଥିଲି କଳଗ୍ରାମ ସଙ୍ଗୀତ ପ୍ରୀତିରେ ।
ଭ୍ରମୁଥିଲି ଅମ୍ବରର ସଙ୍ଗେ କୁତୁହଳେ
ଚନ୍ଦ୍ରାବତେଁ କୁଟୁଞ୍ଜେନ କେବେ କନଖଳେ ।
କୁମୁଦ ଷଣ୍ଡ ଉଚ୍ଚ ଶୃଙ୍ଗେ ମନୋହର
ସଦ୍ୟ ଛିନ୍ନ ଦ୍ୱିରଦର ରଦନରୁ ଗୌର ।
ତ୍ର୍ୟମ୍ବକଙ୍କ ରାଶୀଭୂତ ଅଟ୍ଟହାସ୍ୟ ସମ
ନବୋଦିତ କଳାକର କର ମନୋରମ ।
ତ୍ରିଦଶ ବନିତାଙ୍କର ଦର୍ପଣ ସ୍ୱରୂପ
ଛକ୍ତୁଥିଲି କୈଳାସର ଦୃଶ୍ୟ ଅପରୂପ ।
ତ୍ରିନୟନ-ବୃଷ ଦେହେ ଯଙ୍କ ଅଙ୍କ ଛବି
ବହୁଥିଲା ମେଘ କେବେ ସେ ଶୈଳକୁ ଲଭି ।
କେବେ ଶୁଣୁଥିଲି ବସି ପୁର ଉପକଣ୍ଠେ
ତ୍ରିପୁର ବିଜୟ ଗୀତ କିନ୍ନରୀଙ୍କ କଣ୍ଠେ ।
ସେ ଭବନ ଶିଖରେ ସୁପ୍ତ ପାରାବତ ସ୍ୱନ
ନିଶା ଦ୍ୱିପ୍ରହରେ କେବେ ମୋହୁଥିଲା ମନ ।
ନାଗରଙ୍କ ପ୍ରେମ ସ୍ମୃତି ବିରହ ବିଚାରେ
କେବେ ବା ବାହାର ସ୍ନେହ ପ୍ରେମ ଅନୁସାରେ ।
ସୂଚୀଭେଦ୍ୟ ତମଭେଦୀ ବିଜୁଳି ଆଲୋକେ
ଯାଉଥିଲେ ମୋ ସମକ୍ଷେ ବାଳାଏ କୌତୁକେ ।
ନୈବେଦ୍ୟପାବନ ଦେବୀ ସୁପବନା ଧନ୍ୟା
ଉଦ୍ଦାମ ଯୌବନେନ୍ଦ୍ରେଲା ଜହ୍ନୁଋଷି କନ୍ୟା ।
ଧୂର୍ଜଟିଙ୍କ ଜଟାଗ୍ରରେ ଧାଇଁ ସମାଦରେ
ସ୍ଥିରସ୍ଥିତ ଚନ୍ଦ୍ରମାକୁ ଚୁମ୍ବି ଉର୍ମିକରେ ।
ଗୌରୀଙ୍କ ଭ୍ରୁ କୁଟି ଭଙ୍ଗୀ ଅବହେଳି ବ୍ୟଙ୍ଗେ
ଫେଣ ପରିହାସ ଛଳେ ଖେଳୁଥିଲେ ରଙ୍ଗେ ।
ସଗର ତନୟ ସ୍ୱର୍ଗସୋପାନ ସମାନ
ସେ ସ୍ୱର୍ଣ୍ଣଦୀ-ନୀର କେବେ କରୁଥିଲି ପାନ ।
କୁସୁମ ଭୂଷଣ ପ୍ରିୟ ସୀମନ୍ତିନୀ ଦଳ
ଶ୍ରୀ ହସ୍ତରେ ସଜେ ଯହିଁ ଲୀଳା ଶତଦଳ ।

ଚୂଡାପାଶେ କୁରୁବକ କର୍ଣ୍ଣରେ ଶିରୀଷ
ଲୋଧ୍ରଫୁଲ ରଜେ ପାଣ୍ଡୁ ଦଶେ ଗଲଦେଶ ।
ନିତ୍ୟ ପୁଷ୍ପରସେ ଯହିଁ ମଧୁପ ଉନ୍ମନା
ହଂସଶ୍ରେଣୀ ବିରଚିତ ନିତ୍ୟ ଯା ରସନା ।
ମାନ ବିନା ନାହିଁ ଯହିଁ ଅପର କଳହ
ମାନଜ ବ୍ୟତୀତ କ୍ରୋଧେ ସ୍ପନ୍ଦନ ବିରହ ।
ଅମର ପ୍ରାର୍ଥିତା କନ୍ୟାମାନେ ଖେଳେ ମାତ୍ର
ସ୍ୱର୍ଣ୍ଣ ସିକତାରେ ଯହିଁ ମାଣିକ୍ୟ ଲୁକ୍କାନ୍ତ ।
କେତେ ସେହି ଅଳକାର ସୁଷମା ମାଧୁରୀ
ଦେଉଥିଲା ମୋର ମନ ନୟନକୁ ପୂରି ।
କୁବେରପୁର ଉତ୍ତରେ ଯକ୍ଷର ଆଗାରେ
ସୁରପତି ଧନୁ ସରୁ ତୋରଣ ବାହାରେ ।
ସ୍ତବକନମିତ ବାଳ ମନ୍ଦାର ବୃକ୍ଷକୁ
ଫୁଲ ତୋଳୁଥିଲି କେବେ ଉଠି ପ୍ରତ୍ୟୁଷରୁ ।
କନକ କଦଳୀ ମାଳେ ମନ ନେଇ ଲୋଭି
ଇନ୍ଦ୍ରନୀଳ ଚୂଡ଼ା କ୍ରୀଡ଼ାଶୈଳେ ହୋଇ ଉଭି ।
ମରକତ ଶିଳାଶୋଭି ସ୍ଫଟିକ ବେଦୀରେ
ବିସ୍ତୃତ ହେମମୟୂ ନିବାସ ଯଷ୍ଟିରେ ।
ଯକ୍ଷ ବନିତାର ଶିଞ୍ଜା ବଳୟର ତାଳେ
ନର୍ତ୍ତିତ କେକାକୁ ଚାହୁଁଥିଲି କେତେବେଳେ ।
ଶିଖରିଦଶନା ଶ୍ୟାମା ପକ୍ୱ ବିମ୍ବାଧରୀ
ଚକିତ ହରିଣୀଦୃଶା ସୁମୁଖୀ ସୁନ୍ଦରୀ ।
ଗୁରୁତର ଶ୍ରୋଣୀ ଭରେ ଅଳସ ଗମନା
ସ୍ଥୂଳ ସ୍ତନେ ସ୍ତୋକ ନମ୍ରା ଯକ୍ଷର ଅଙ୍ଗନା ।
ମୋ ସମକ୍ଷେ କେତେବେଳେ କୋଳେ ଘେନି ବୀଣା
ମୂର୍ଚ୍ଛନାକୁ ସ୍ୱର ସ୍ୱର ସଙ୍ଗୀତ ପ୍ରବୀଣା ।
ଅନ୍ୟମାନେ ତାହା ପୁଣି ପାଶୋର ଚକିତେ
ଗାଉଥିଲା କାନ୍ତ ନାମ ବିରହ ସଙ୍ଗୀତେ ।
ଦେଖୁଥିଲି କେବେ ଅବା ପ୍ରିୟ ମୂର୍ତ୍ତି ଅଙ୍କ
ଅନିମିଷେ ପ୍ରେମାତୁରେ ତହିଁ ନେଇ ବକ୍ଷ ।

ପୂରବେ ଗ୍ରଥିତ ଶୁଷ୍କ କୁସୁମମାଳରୁ
ଫିଟାଇ ପ୍ରସୂନମାନ କରେ କରସ୍ନେରୁ ।
ଦ୍ୱାରେ ଗୋଟି ଗୋଟି ଥୋଇ ସେହ୍ନ ସୁମନସ
ଗଣୁଥିଲ ଶାପ ଶେଷ ବରଷ ଦିବସ ।
ହୃଦବେଦନାରେ କେବେ ଭୂମିତଳେ ଲୋଟି
ଶୀର୍ଣ୍ଣ କରପଦ୍ମେ ଥୋଇ ଚନ୍ଦ୍ରମା ମୁଖଟି ।
ପିଞ୍ଜରେ ସାରିକାକୁ ମଧୁର ସ୍ୱପନେ
କହୁଥି ସ୍ୱାମୀର୍ କଥାମାନ କ୍ଷଣେ କ୍ଷଣେ ।
ପ୍ରାଚୀମୂଳେ ହିମାଂଶୁର ଶେଷ କଳା:ପରି
କୃଶକାନ୍ତି ହଉଥିଲ କନକ ଗଉରୀ ।
ସନ୍ଧ୍ୟାସ୍ତ ଚନ୍ଦ୍ରପରି ମଳିନ ବଦନ
ରାତ୍ର ଜାଗରଣେ ଫିକା ଜଳାର୍ଦ୍ର ନୟନ ।
ରୁକ୍ଷସ୍କନ୍ଧେ ଅମାର୍ଜିତ କର୍କଶ କୁନ୍ତଳ
ଅଲକ୍ତକରାଗ ଶୂନ୍ୟ ଚରଣ ଯୁଗଳ ।
ପ୍ରଖର ଉତ୍ତପ୍ତ ଶ୍ୱାସେ ବିବର୍ଣ୍ଣ ଅଧର
ବିକ୍ଷିପ୍ତ କପୋଳ ଲମ୍ବି ଅଳକ ନିକର ।
ଭୂଷାହୀନ ପାଣ୍ଡୁବେଶ ଯକ୍ଷ ପ୍ରେୟସୀର
ଦେଖି କେବେ ନେତ୍ରୁ ମୋର ଝରୁଥିଲା ନୀର ।
ଧନ୍ୟ ସେହି କବିବର ବିଖ୍ୟାତ ଭାରତ
ଯାହାଙ୍କର ଇଚ୍ଛାବଳେ ଜନମି ସ୍ୱରଗ ।
ନବ ରସେ ଅବତରି ପାଠକର ହୃଦେ
କନ୍ଦାନ୍ତି, ହସାନ୍ତି, କେବେ ନଚାନ୍ତି ପ୍ରମୋଦେ ।
ନୟନ୍ତୁ-ବୁହାନ୍ତି କେବେ କରୁଣା ନିର୍ଝର
କେବେ ବା କରନ୍ତି ହୃଦ ବେଗେ ଜରଜର ।
ଯେ କବିକୁଳର ପଦେ ସଦା ରଖି ଲୟ
ନେଉଥିଲ ସୁନାମୁଣ୍ଡା ! ତୋ କୋଳେ ଆଶ୍ରୟ ।
ପୁଣ୍ୟପ୍ରସୂ ସୁନାମୁଣ୍ଡା ! ତୋ ପଶ୍ଚିମଭାଗେ
ଉପଲ ବନ୍ଧୁର ଖଣ୍ଡ "ଖଲାଧୂଳି ଆଗେ ।
କୁଟର 'ଖଳା' ଅଗଣା ସମତଳ ଦେଶେ
ବସାଇ ଧନ୍ଦ୍ର ମାସେ ଅଭିନବ ବେଶେ ।

ଗଣ୍ଡର ମୃତ୍ତିକାଭେଦ ଖଦର (୧) ରୂପ୍ୟାରେ
ଉଚ୍ଚାଭଙ୍ଗ ହୋଇ ବସ୍ତୁ ଭୁଜଙ୍ଗ ଆକାରେ ।
ବାଉଁଶ ବଲ୍ଲ ମାଳ ସୃଜନ୍ତି ଯାହାର
ଚଉପାଶେ ବେଢ଼ି ନବ ଅଦ୍ଭୁତ ପ୍ରାଚୀର ।
ପଦ୍ମଶାଳୀ କେଦାରରୁ କଷ୍ଟେ ଆହରିତ
ଧାନ୍ୟମାଳ ଆସି ଯହିଁ ହୁଅନ୍ତି ସଞ୍ଚିତ ।
ବିଶାଳ ମୃତ୍ତିକା ସ୍ତୂପ ସମାନ ସୁଢ଼ଳ
ଏକ ପରେ ଏକ ରହି ସେ ଧାଡ଼ା ସକଳ ।
ଦିଶନ୍ତି ମଣ୍ଡଳାକାରେ ଚୌଦିଗ ଅବୋର
କମଳାଦେବୀଙ୍କ ଯେମନ୍ତେ ବିଳାସ ଚଉଁର ।
କଳଇଡ଼ା ସୁବିଶାଳ ଗଜାବରୋଧନ
ଲଳସା ବାରଣେ ଯହିଁ ଭଜନ୍ତି ବନ୍ଧନ ।
କୋଳଥ ହରଡ଼ ମୁଗ ବ୍ରୀହି ଚଣା ରାଶି
ଚଉପାଶୁଁ ଆସି ଯହିଁ ଜମି ରାଶିରାଶି ।
ଯଥାକାଳେ 'ମଳା' ହୋଇ ଯହେଁ ସେ ସରବ
ସୁଜାମୁଣ୍ଡା ! ଅଶ୍ରାନ୍ତ ତୋ ଭଣ୍ଡାର ଗରବ ।
ସେହି ଖଳା ଅଗଣାର ଅଦୂର ଉତ୍ତରେ
ବିରାଜଇ ତାଳପଦା ପ୍ରଶସ୍ତ ପ୍ରାନ୍ତରେ ।
ହରିହରଙ୍କର ଭଗ୍ନ ଚଉଘରର ଚିହ୍ନ
ଅଦ୍ୟାପି ଯା ପବିତ୍ରତା କରୁଛି କୀର୍ତ୍ତନ ।
ହାତୀଙ୍କର ବାଡ଼ବତ ଦୃଢ଼ ହାତୀବାଡ଼
ଅବରେ ଯାହାକୁ ବେଢ଼ି ପକାଇଛି ବାଡ଼ ।
ହସଇ ଯେ ଏବେ ପୂର୍ବ ଗୌରବ ସକଳ
ଲୁଟସି କରୁଣସ୍ୱରେ ଝୁରେ ଅବିରଳେ ।
ମନ୍ଥର ଶବଦେ ଶାଖା ଭୁଜେ ନବକଳ
କହି ଏ ଭବରେ କାହିଁ ସ୍ଥିର ନୁହେ ବୋଲି ।
ସ୍ଥାନେ ସ୍ଥାନେ ସ୍ଥିତ ଯହିଁ ମହୀରୁହ ପନ୍ତି
ନାନାବିଧ ଫଳଫୁଲେ ମାନସ ହରନ୍ତି ।

(୧) ସ୍ଥଳ ବାଲୁକାମୟ (ଦେଶଜ) ।

ଗୁଣଯୁକ୍ତ ଧନ୍ୱସମ ବଙ୍କା ଯାର ଫଳ
ପ୍ରସୂନ ଯା' ଜମ୍ବୁନଦ ନାଗଚଣା-ତୁଳ ।
ମଇନା ଠେସରକଣ୍ଠା ଗୁଡେ ଝଙ୍କାରନ୍ତ
ସବୁସବୁ ପତ୍ରେ ଶାଖା ମାଳ ଆଚ୍ଛାଦନ୍ତ ।
ସ୍ୱଜନ୍ମ ତେନ୍ତୁଳତରୁ ଅମ୍ଳରସେ ଭରା
ଜର୍କରକୁ ଫଗୁଭବେ ଯାହାଙ୍କ ଶର୍କରା ।
ଶୋଭେ ଜାହ୍ନି ଉଦଯାଉଁ, ସମୀର ସ୍ପରଶେ
ପୁଲକିତ ହେଲପରି ମୃଦୁ ମୃଦୁ ଘୋଷେ ।
ଗୀତଗାଏ ଯେ ଲଳିତ ବଂଶୀଧ୍ୱନି ପରି
ମଧୁର ଅମର୍ତ୍ତ୍ୟସ୍ୱରେ କର୍ଣ୍ଣବେନି ଭରି ।
ଯାର ଛାୟା ଉପବିଷ୍ଟ ଯୋଗେଶ୍ୱର ହର
ଭାଳ ନୟନରୁ ଜନ୍ମ ପୁନଃ ବୈଶ୍ୱାନର ।
ତପତରେ ହାସି ଘୋର ପ୍ରବଳ ଆବେଗେ
ଚକ୍ରତେ ଦହିଲ ପୂର୍ବେ କେଲଣୀ ନାୟକେ ।
ଜମାୀୟୁ କଣ୍ଠେ ବନ୍ଧି କଜ୍ଜଳର ଗାର
ସାଇବା ଶୁଆ ସମୂହ ଉଡ଼ି ବାରବାର ।
ସେହି ଦେବଦାରୁ ଦ୍ରୁମେ ଆଲ୍ହାଦରେ ବସି
ବାଗନୋହି ପନ ସଙ୍ଗେ ଯାଉଥାନ୍ତି ମିଶି ।
ସ୍ୱାଦୁ ପୟଃପୂର୍ଣ୍ଣ ଯାର ବର୍ତ୍ତୁଳ ଫଳହେ
ବାଳକେ ବାତ୍ସଲ୍ୟସ୍ନେହ ବର୍ଦ୍ଧିତ ଆଗ୍ରହେ ।
ନିର୍ମାଣିଲା ପ୍ରସୂତିର ବେନ ପ୍ରୟୋଧର
ଶୁଭ୍ରଦୁଗ୍ଧ ରସେ ଭରି ଅମୂଲ୍ୟ ସୁନ୍ଦର ।
ସ୍ନେହମୟୀ ଜନନୀର ଜଠରୁ ସମ୍ଭବ
ମର୍ତ୍ତ୍ୟେ ଜନ୍ମ ହେଉ ହେଉ ଜୀବ ଯାହା ଲଭ ।
ଅନାୟାସେ ସବୁ ଦୁଃଖ ଦଅଇ ପାଶୋରି
ସେ ସ୍ୱାଦୁ ନଡ଼ିଆଫଳ ଜାହିଁ ଥିଲା ଭରି ।
ଶୂଳବେଗ ଉତ୍ପାଦକ ଫଳ ଶିରେ ବହି
ମାଳମାଳ ତାଳତରୁ ଜାହିଁଥିଲେ ରହି ।
ମରକତ ପରି ସେହୁ ଧନ୍ୟ କଉଣଟେଲ
ବର୍ଷାଖର ଶରଶ୍ରେଣୀ ନିବାରନ୍ତି ବଳେ ।

ବସୁଥିଲେ ଯା' ପଞ୍ଜରେ ପୂର୍ବେ ମଞ୍ଜୁମତୀ
ସୁଧାସୁହାସିନୀ ଦେବୀ ଭାରତ ଭାରତୀ ।
ପିକକୁ ବସନ୍ତେ କାହିଁ ପିଆଇ ଆସିବ
ହସୁଥିଲେ ମୁକୁଳିତ ରସାଳ ସରବ ।
ଯାଙ୍କ ସୁକୁମାର ନବ ଅଙ୍କୁର କଳାପ
ଶରରୂପେ ଫୁଲରୂପେ ଖଞ୍ଜି ଫୁଲସ୍ତୂପ ।
ନବାନୁରାଗିଣୀ ଧନୀ କୋମଳ ହୃଦୟେ
ଦ୍ୱିଗୁଣେ ବଢ଼ାଇ ଖେଦ ପ୍ରହାରେ ନିର୍ଦ୍ଦୟେ ।
ସେ ରସାଳ ଦ୍ରୁମରାଜି ଅନ୍ଧକାର ତଳେ
ମଳିନ ମୁଖଢ଼ାଙ୍କି ତା ଗୁଳ୍ମ ଘାସଦଳେ ।
ଏକ ଜୀର୍ଣ୍ଣକୂପ ପୂର୍ବ ଭାବ ସ୍ମରି ସ୍ମରି
କାନ୍ଦଇ ଲୋତକମାରେ ନିମ୍ନଦେଶ ଭରି ।
ନାହିଁ ତା ପ୍ରାଚୀନଶିରୀ ଚୂନପାକ ଛଡ଼ି
ଗଳିତ ମୃତ୍ତିକାଗର୍ତ୍ତେ ହୋଇଛି ଅଜାଡ଼ ।
କୁକୁଠଖାଇର ତୃଣ ଶଯ୍ୟା ପରିହରି
ଧୂମ୍ରବନାଳୀ ଶସ୍ୟଲୋଭ ଶୂକର ଶୂକରୀ ।
ଅବତରି ବେଳେ ବେଳେ ବଳସ୍ମୀ ତାଡ଼ନେ
ଫଗଲ୍ଭ ସେ କୂପଗର୍ଭେ ଦଉଡ଼ ସଘନେ ।
ମୃଗସ୍ଥ କୂଳର ମନେ ଉପୁଜାଇ ମୋଦ
ଗର୍ଭର ମୃତ୍ତିକା ଠୋପେ ଯେମନ୍ତ ଦ୍ୱିରଦ ।
ଶୋଭେ ବପ୍ରିତେ ତାର ଚତୁଷ୍କୋଣ ବେଷ୍ଟି
ପାଷାଣବେଦୀର ଚେର ଯା' ବକ୍ଷହେ ଭେଦ ।
ବିବରବହ୍ନାସି ଦୁଷ୍ଟ ଭୁଜଙ୍ଗ ନବହେ
ନରଙ୍କୁ ବଡରି ହିଂସା ରଖିଛି ଆଗ୍ରହେ ।
ତଥିପରେ ଅର୍ଦ୍ଧଭଗ୍ନ ତୁଳସୀ ଚଉରା
ପୂର୍ବପୂତ ସ୍ମୃତିମାଳେ ଜନମନୋହରା ।
ସ୍ତମ୍ଭମାଳ ଜାଲ ଯାର ସର୍ବାଙ୍ଗ ଆବୋରି
ଦଣ୍ଡାନ୍ତ ଶିବଗାନ୍ଧ ଗଜାଙ୍କନ ପରି ।
ହେଲେହେଁ ଏସ୍ଥାନ ଏବେ ଲୋକ ବାସଶୂନ୍ୟ
ଜନକୋଳାହଳେରେ ପୂର୍ବେ ଥିଲା ପରିପୂର୍ଣ୍ଣ ।

ପୁଣ୍ୟଧାମ ବଦ୍ରୀନାଥ ତୀର୍ଥବାସୁଁ ଫେରି
ହରିହରଦେବ ଏହି ଦିବ୍ୟସ୍ଥାନ ହେରି ।
ଯାପିବାକୁ ଗୁଣମଣି ପଶ୍ଚିମ ଜୀବନ
କରିଥିଲେ ଏ ସୁରମ୍ୟ ସ୍ଥଳ ନିରୂପଣ ।
ଅବଶେଷେ ବିନଶ୍ୱର ଶରୀର ଆନନ୍ଦେ
ଛାଡ଼ି, ଲୀନ ହେଲେ ପ୍ରଭୁ ପରମେଶ ପଦେ ।
ସୁପବିତ୍ର ସେ ପୁରୁଷର ଶେଷ ସାକ୍ଷୀ ପରି
ରହିଛି "କରୁଣାଗିରି" ୧ ସେବକ ତାଙ୍କର ।
ଜରାଜୀର୍ଣ୍ଣ କଳେବର ପଳିତ ମସ୍ତକ
ଦନ୍ତହୀନ ଶୁଷ୍କତୁଣ୍ଡ ନିଷ୍ପାପ ନିର୍ଭୀକ ।
ଶୁଣି ଯେବେ ଘନକାଳେ ବିଜୁଳି ବିବାଦେ
ଭୀଷଣ ଭିଦୁର ମନ୍ଦ୍ର, ସ୍ଫୁରଇ ବିଷାଦେ ।
ଉଦ୍‌ବେଳିତ ସ୍ରୋତସ୍ୱୀର ଗମ୍ଭୀର ଗର୍ଜନା
ସହି ସ୍ୱପ୍ରଭୁର ସାନ୍ଧ୍ୟ ପୂଜାନୀରାଜନା ।
ନିର୍ଜନେ ଏକାକୀ ବୃଦ୍ଧ ମୁଣ୍ଡଇ ନେତକ
ପାଦୁକ ପରାଏ ପୂତ ସିନା ସେ ଉଦକ ।
କଳଙ୍କୀବ ବର୍ଷୀୟାନ ସୁନାମୁଣ୍ଡା ରହି
କାଳ କାଳ ଅହର୍ନିଶିରେ ଶୀତ ବର୍ଷା ସହି ।
ବହୁତ ପରିବର୍ତ୍ତନ ଦେଖୁଛି ବିଶ୍ୱର
ଜାଣିଅଛି ପାପ ପୁଣ୍ୟମାନ ମାନବର ।
ଭୟାନକ ଭୂମିକମ୍ପ ଘୋରଘୋଷେନାଦ
ଭୂପୃଷ୍ଠସ୍ଥ ଜୀବଗଣେ ପ୍ରଦାନ ସମାଧି ।
ଶିରେଶିରେଗୀ ଶିରପରି ଅରଇ ଧରାକୁ
କନ୍ଦୁକ ପରାଏ ଉର୍ଦ୍ଧ୍ୱେ ଫୋପାଡ଼ ଶିଳାକୁ ।
ସମତଳ ପ୍ରଦେଶକୁ ନତାନତ କରି
ଖେଳାଇ ସମୁଚ୍ଚସ୍ଥାନେ ତଟିନୀ ଲହରୀ ।
ରସାତଳେ ମହା ମହା ଶୈଳେ ଦେଇ ସ୍ଥାନ
ତା' ବଦଳେ ତହିଁ ଥୋଇ ଦୀର୍ଘ ହ୍ରଦମାନ ।

(୧) କରୁଣାଗିରି—ହରିହର ଦେବଙ୍କର ବିଶ୍ୱସ୍ତଭୃତ୍ୟ ।

ବ୍ରତତୀ ପାଦପପୂର୍ଣ୍ଣ ମନୋମୁଗ୍ଧକର
ଉର୍ବର ମୃତ୍ତିକାଯୁକ୍ତ ଶ୍ୟାମଳ ପ୍ରାନ୍ତର ।
ପରିବର୍ତ୍ତେ ସୂକ୍ଷ୍ମ ସ୍ଥାନ ଖଳାଆ ଲୁଣିଆ
ଘାସଶୂନ୍ୟ ଅନୁର୍ବର ମ୍ଳାନ ରଗଡ଼ିଆ ।
ଧରିଦେବୀ ସତ୍ୱ ଯେବେ ମାଡିଥିଲ ରଣେ ।
ସେ ଭୀମ ତାଣ୍ଡବ ଘୋର ପଡ଼ୁଛି ନୟନେ
ଦୁର୍ବିସହ ଧୂମଜାଲେ ଆକାଶ ଆଚ୍ଛାଦ
ପ୍ରଳୟ ପୟୋଦ କାନ୍ତି ସ୍ୱଅଙ୍ଗେ ସମ୍ପାଦ ।
ବର୍ଷାକାଳେ ଉଦ୍ବେଳିତ ନଦୀ ପରି କାହିଁ
ଉତ୍ତପ୍ତ ପ୍ରବଳ ଧାତୁ ସ୍ରୋତ ଦଉଡ଼ାଇ ।
ଶୁଭ୍ରସୌଧ ସୁହାସିନୀ ପତାକା ମାଳିନୀ
ସୁରକ୍ଷିତ ପୁଷ୍ପେ ରମ୍ୟ ଉଦ୍ୟାନ ଶୋଭିନୀ ।
ଜନପରିପୂର୍ଣ୍ଣ ମହା ନଗରୀକୁ ଖରେ
ପୋଡିଦେଇ କାହୁଁ ଖାର ଧାତବ ଦ୍ରବ୍ୟରେ ।
ଯେ କାଳେ ଆଗ୍ନେୟଗିରି ଛାଡ଼ୁଥିଲ ଘୋଷ
ବଳେଇକୁ ତୁହି ସେଥି ଭୟାବହ ଦୃଶ୍ୟ ।
କେତେ ପତିବ୍ରତା ସତୀ ରମଣୀରତନ
ବିଷାଦ କରୁଣନାଦେ କମ୍ପାଇ ଗଗନ ।
ଦୁର୍ବୃତ୍ତ ଲମ୍ପଟ ହାତେ ପଡ଼ି ଅନାୟତ୍ତେ
ଅମୂଲ୍ୟ ସତୀତ୍ୱଧନ ରକ୍ଷିବା ନିମନ୍ତେ ।
ଉଦ୍‌ବନ୍ଧନେ, ଅନଳରେ, ଜଳେବୁଡ଼ି ପ୍ରୀତ
ହୋଇଛନ୍ତି ତୋ ଆଗରେ କୃତାନ୍ତ ଅତିଥି ।
'ସ୍ୱଧର୍ମେ ନିଧନ ଶ୍ରେୟ' ଭାବି ଏହି କଥା
ଧର୍ମପରାୟଣ କେତେ କେତେ ମହାରଥୀ ।
ନ ଛାଡ଼ି ଆପଣା ଧର୍ମ, ବିଧର୍ମୀ ହସ୍ତରେ
ତୋ ସମ୍ମୁଖେ ପଶିଛନ୍ତି ଶମନ ନଗରେ ।
ସ୍ୱଦେଶ ପ୍ରେମିକ ଧନ୍ୟ କେତେ ମହାମନା
ଘୁଞ୍ଚାଇବା ପାଇଁ ଜନ୍ମଭୂମି ବିଡ଼ମ୍ବନା ।
ଉତ୍କଟ ଉତ୍ସାହେ ମାଡି ବୀରତ୍ୱ ତାଣ୍ଡବେ
ଛାଡ଼ି ପ୍ରିୟତମ ତନୁ ବିଷମ ଆହବେ ।

ସାଢ଼େ ତନି ହାତ ତଳେ ଯାଇଛନ୍ତି ଲିଭି
ସେସବୁର ଚିହ୍ନ ବିନା ପୁରାତନ ସାକ୍ଷୀ ।
ସୁନାମୁଣ୍ଡା ! ପାରୁଛୁ କି ଆଜି ଅନୁଭବ ?
ଏ ଦେଶର ସେ ଜଘନ୍ୟ ଦାସତ୍ୱର ଛବ ।
ମାତ୍ର ମୋ ମାନସେ ସ୍ମୃତି ଉଠୁଅଛି ଆଣି
କ୍ଷୁଦ୍ରଜମିଦାରଙ୍କ ସେହି ଦୁର୍ଦ୍ଦିନ କାହାଣୀ ।
ସଦା ଆତ୍ମସୁଖରତ ପର ଅପକାରୀ
ହାଡୁ ନୃପବର ୧ ଥିଲେ ଘୋର ଅତ୍ୟାଚାରୀ ।
ନ ସହ୍ଯ ଅତ୍ୟନ୍ତ ବହ୍ନିତେଜ ଯଥା ଫଳ
ଉତ୍ତପ୍ତ ଭାଣ୍ଡରୁ ସ୍ୱୟଂ ପଡ଼ଇ ଉଛୁଳ ।
ତେଣୁ ତାଙ୍କ ଅତ୍ୟାଚାରେ ଚିର ଜର୍ଜ୍ଜରିତ
ପ୍ରଜା ଜମିଦାରକୁଳ ହେଲେ ବିଚଳିତ ।
କାଳେ କେଶରୀକୁ ଘେରି କିପାଦେ ଆଚ୍ଛାଦେ
ତା ଶିଶୁକୁ ଘେନ ଯଥା ଯାନ୍ତି ନିର୍ବିବାଦେ ।
ତେସନ କୌଶଳେ ସର୍ବେ ଧରି ନୃପବରେ
ଦୃଢ଼ସ୍ୱରେ ବନ୍ଦ କରି କୁଲେଇ ଗଡ଼ରେ ।
ତାଙ୍କ ଶିଶୁ ତନୟଙ୍କୁ ୨ ନଗରୁ ଘୁଞ୍ଚାଇ
ଅପର ଅଲକ୍ଷ୍ୟସ୍ଥାନେ ଗୁପତେ ଲୁଚାଇ ।
ଲୋକପ୍ରିୟ ବହୁଦର୍ଶୀ ମଦନ ଦେବଙ୍କୁ
ଅହ୍ୱାନଲେ ଏ ବଣାଳ ରାଜ୍ୟ ଚାଳିବାକୁ ।
ମଦନ ମୋହନ ଦେବ ସ୍ୱଜାତି ଗୌରବ
ଧର୍ମ୍ମପ୍ରାଣ ଶୁଦ୍ଧଚେତା ପ୍ରଜାଙ୍କ ବାନ୍ଧବ ।
ସେମାନଙ୍କ ମୁଖୁଁ ଶୁଣି ଏ ମନ୍ତ୍ରଣାମାନ
ଅବଜ୍ଞା ଘୃଣାରେ କ୍ଷଣେ କଲେ ପ୍ରତ୍ୟାଖ୍ୟାନ ।
ସ୍ୱାର୍ଥପର ଧନବନ୍ତ ଅଟଇ ଯେ ଜନ
ପୁଣି ଗର୍ବେ ଶିର ଯାଇ ଠେକଇ ଗଗନ
ରାଜ୍ୟ ଲୋଭେ ବିନା ପାପ ପାରେ ସେ ଆଚରି
କଳୁଷ କର୍ଦ୍ଦମେ ମଜ୍ଜି ବରସ ଶତଂସ୍ରୀ ।

(୧) ମାଦଳା ପଞ୍ଜୁସନ୍ଦେଶ୍ ।
(୨) ରାଜା ଚନ୍ଦ୍ରଶେଖର ଦେବ ।

ଅକଲ୍ୟାଣି ମୁକ୍ତାଦେବୀ ମୂରତି ମାଧୁରୀ
ଦେଖି ଦେଖି ଏ କାତର ପେଟ ଯାଏ ପୂରି ।
ମାତ୍ର ମଦନଙ୍କ ନାହିଁ ତେମନ୍ତ ପ୍ରକୃତି
ପାପରେ ମଜ୍ଜିବ କାହିଁ ସେ ବିଶୁଦ୍ଧମତି ।
ନିର୍ଲୋଭ ନିଷ୍କପଟୀ ନିର୍ଭିକ ସ୍ୱଭାବ
କଦର୍ଯ୍ୟ ସ୍ୱଭାବ ତହିଁ ଏକାନ୍ତ ଅଭାବ ।
ଆସକ୍ତ ଧୃତକୁ ଢାଳି ସଞ୍ଜମ ଅନଳେ
ନିଜର ମନୁଷ୍ୟତାକୁ ରକ୍ଷନ୍ତି ସେ ବଳେ ।
ଉତ୍ତେଜିତ ପ୍ରଜାଙ୍କର କ୍ରୋଧାନଳ ଧୀରେ
ଉପଶମ ବୀରବର ଉପଦେଶ ନୀରେ ।
ତାଙ୍କ ପାଣି ବନ୍ଧୁଯତ୍ନେ ବାଜୁତ ରତନେ
ଲେଉଟାଇ ଧୀରମଣି ସ୍ୱଜ ନିକେତନେ ।
ଜନକ ପତ୍ନୀଏ ଶିକ୍ଷାଦେଇ ନାନା ମତେ
ସମ୍ଭ୍ରମରେ ଚଳାଇରେ ରାଜନୀତି ପଥେ ।
ମାନବ ଏସବେ ଦାନ ନ କଟିଲ୍ଲ ସଦା
କେ ନ ଜାଣେ ଶ୍ରେୟ କାର୍ଯ୍ୟେ ଆଗେ ପଡେ ବାଧା ।
ଦୁଷ୍ଟ ପରିଜନଙ୍କର ହୀନ କୁମନ୍ତ୍ରଣେ
ଜ୍ୱଳିଲା ବିରାଗ ବହ୍ନି ୧ ମହିଷୀଙ୍କ ମନେ ।
ଘୋର ଈର୍ଷାନଳେ ହେଲା ମାନସ ଅଥୟ
ମନ୍ଥରା ମନ୍ତ୍ରରେ ଯଥା କୈକେୟୀ ହୃଦୟ ।
ସ୍ୱଭାବେ ଅବଳାବାଳା ଶୁଦ୍ଧାନ୍ତ ବାସିନୀ
ଭବିଷ୍ୟତ ଜ୍ଞାନଶୂନ୍ୟା ଅଦୂର-ଦର୍ଶିନୀ ।
କେମନ୍ତ ବୁଝିବେ ସାଧୁ ମଦନଙ୍କ ଚିତ୍ତ
ନିଷ୍କପଟ ମାୟାଶୂନ୍ୟ ବିଶୁଦ୍ଧ ଚରିତ ।
କ୍ରମେ ପ୍ରଧୂମିତ ବହ୍ନି ଉଠିଲା ପ୍ରଶିଖା
ପ୍ରକାଶିଲା ସ୍ୱରୂପରେ ମହାବହ୍ନିଶିଖା ।
ଜନରବ ବାଟେ ତାହା ମନ୍ଦିର ପାଖରେ
ପଶିଲା ମଦନ କର୍ଣ୍ଣେ କର୍ଣ୍ଣୁ କର୍ଣ୍ଣାନ୍ତରେ ।

(୧)— ଷଷ୍ଠ ମହିଷୀ ସାହେବ କୁମାରୀ ଦେବୀ ।

ଚହାନ୍ତ ସାଗର ମହାଊର୍ମିମାନ ତୋଳି
ମଦନଙ୍କ ଧୈର୍ଯ୍ୟ ତଟ ଦ୍ରୁମ ଦେଲା ଦଳି ।
ଧାର୍ମିକ ନିସ୍ୱାର୍ଥପର ରାଜଭକ୍ତ ବୀର
ବିଷମ ଅସୂୟାବଶେ ହୋଇଲେ ଅଧୀର ।
ଅବଶେଷେ ଦେବଗଡ ଛାଡ଼ିବା ମନାସି
ଖୋଜେ ସଙ୍ଗୀ ସହହେଲେ ଢଳବୁଦବାସୀ ।
ସ୍ୱଦେଶ ପ୍ରେମିକ ଯେହୁ ପ୍ରଭୁ ହିତେ ବ୍ୟସ୍ତ
ସତ୍ୟ କହିବାକୁ ଯାଙ୍କ ରସନା ଅଭ୍ୟସ୍ତ ।
ସ୍ୱାର୍ଥପରାୟଣ ସ୍ଥାନ ଲୁଣ୍ଠିବାର ପର
ସେ କାହିଁ ରହିବେ ଆତ୍ମ ମର୍ଯ୍ୟାଦା ପାଶୋର ।
ପ୍ରଭାମୟ ପ୍ରଭାକର ବସ୍ତୁ ଗଲେ ଛାଡ଼
ଅନ୍ଧକାର ଆସେ ଯଥା ସହଜରେ ମାଡ ।
ତେହ୍ନେ ତାଙ୍କ ଅଦର୍ଶନେ ଶାସନ ବ୍ୟତୀତ
ରାଜ୍ୟେ ବିଶୃଙ୍ଖଳା ବାତ ହେଲା ପ୍ରବାହିତ ।
ସେ ରାଜମହିଷୀ ଥିଲେ ବଘେଲ କୁମାରୀ
ବଘେଲ ବାବୁଏ ଏଣୁ ସ୍ୱରାଜ୍ୟ ବାହାର ।
ଦେବଗଡ଼େ ଦଳେଦଳେ ପ୍ରବେଶିଲେ ଆସି
ଦୂର 'ମଡ଼ି' ଅନୁସରେ ଯେମନ୍ତ ମାଂସାଶୀ ।
ଅନାହୂତେ ରାଜପୁରେ ହୋଇ ସେ କୁଣିଆଁ
ଦେଖାଇଲେ ଅନ୍ଧଶସ୍ତୁ ସୁହୃଦ ପଣିଆଁ ।
ବାମଣ୍ଡାବାସୀଏ ହେଲେ ତାଙ୍କ ଚକ୍ଷୁଶୂଳ
ବୋଲାଇଲେ ନବ ଶିଶୁ ନୃପଙ୍କ ମାତୁଳ ।
ଛଳନା ପୂରିତ ମିଷ୍ଟ ବ୍ୟବହାରେ ଭୁଲି
ତାଙ୍କ ହସ୍ତେ ରାଣୀ ଦେଲେ ସବୁଘର ତାଳ ।
ରାଜକାର୍ଯ୍ୟ ଗୃହକାର୍ଯ୍ୟ ସମାଜ କାର୍ଯ୍ୟରେ
ଚଳିଲା କ୍ଷମତା ତାଙ୍କ ସମାନ ଭାବରେ ।
ବୁହନ୍ତି ଯେସନ ଯେତୁଁ କେଣ୍ଡା ଠାଣି ଶୁଆ
ବାମଣ୍ଡାର ଧନହେଲା ତାଙ୍କ ଘରେ ବୁହା ।
ଅନ୍ତରେ ହେଲେହେଁ କ୍ଷୁବ୍ଧ ସଭିଏଁ ସବଂଶା
ମହିଷୀଙ୍କ ଭୟେ କେହି ନ କହିଲେ କଥା ।

ନିଃସ୍ୱାର୍ଥ ହୃଦୟ ବିନା କିଏ ସହଜରେ
ରାଜାଙ୍କ ଅପ୍ରିୟ ହୁଏ ସ୍ୱଦେଶ ହିତରେ ।
ଏରାଜ୍ୟର ବଇଭବ ଉନ୍ନତ ଗୌରବ
ଦେଖି ସେମାନଙ୍କ କ୍ରମେ ପ୍ରକଟିଲା କ୍ଷୋଭ ।
ସଂଯମ ଶାସନଶୂନ୍ୟ ମନ କେଉଁଠାରେ
ଅସତ୍ୱର ଲାଳସାକୁ ବାନ୍ଧିଡାଇ ପାରେ ?
ଚନ୍ଦ୍ରଶେଖରଙ୍କୁ ଦେଖି ରାଜ ସିଂହାସନେ
ଅଭିଷେକ ବେଳେ ବସି ମାମୁ ମନେ ମନେ ।
ସେ ଆସନ ଲଭିବାକୁ ଚଳାଇ କଳ୍ପନା
କରୁଥିଲେ ଭଣଜାଙ୍କ ଅନିଷ୍ଟ କାମନା ।
ଈର୍ଷାବୃତ୍ତି ବହ୍ନିପରି ତାଙ୍କ ସେହିସବ
କ୍ରମେ କ୍ରମେ ପ୍ରକାଶିଲା ନିଜର ପ୍ରଭାବ ।
(୧) ମଲମ୍ୱା ସୁହାଗ ଟିକି ଅଳପ ଦିବସେ
କଷି ହେଲା ଅଲକ୍ଷିତେ ଆକାଂକ୍ଷ୍ୟା ନିକଷେ ।
ଅତ୍ୟନ୍ତ ଅନିଷ୍ଟ ଶଙ୍କା ଜନ୍ମିଲେହେଁ ଆସି
ନଗରବାସୀଏ କେହି ନୋହିଲେ ସାହସୀ ।
ହେବାକୁ ସେ ବଘେଲଙ୍କ ସଙ୍ଗେ ସମ୍ମୁଖୀନ
ଯେହେତୁ ଶାସନ ଥିଲା ତାହାଙ୍କ ଅଧୀନ ।
ପାଇକ ନାଇକ ସେନା ସିପାହି ସହିତେ
ଚଳୁଥିଲେ ସେମାନଙ୍କ ସଙ୍କେତ ଇଙ୍ଗିତେ ।
ଭିତରେ ଭିତରେ ପଡିଗଲା ହାହାକାର
ପୋଲଗଛ ଗର୍ଭେ ଯଥା ଅଗ୍ନିର ସଞ୍ଚାର ।
ଜନ୍ମିଲା ପ୍ରବଳ ଭୟ କ୍ରମେ ରାଜ୍ଞୀ ମନେ
ବୁଡ଼ିଲେ ସେ ଅନୁତାପ ଜଳଧି ଜୀବନେ ।
ଅକସ୍ମାତ ଚଉଦିଗ ଦିଶିଲା ଅନ୍ଧାର
ନିରେଖିଲେ, ଅଟ୍ଟହାସ୍ୟ-ଘୋର ଅତ୍ୟାଚାର
ରହିଛି ଗିଳିବା ପାଇଁ ବ୍ୟାଦାନ ବଦନ
ଚାହିଁଯିବେ ଏଥୁ କିଏ ରଖିବ ଜୀବନ ।

(୧)— ଲବଂମ ।

ଅବଶେଷେ ମଦନଙ୍କ ନିଃସ୍ୱାର୍ଥପରତା
ରାଜଭକ୍ତି ନିର୍ଭୀକତା ଶୌର୍ଯ୍ୟ ଉଦାରତା ।
ଏକ ଏକ ସବୁ ସ୍ମରି କାନ୍ଦିଲେ ବିକଳେ
ଦହିଲା ହୃଦୟବନ ଅନୁତାପାନଳେ ।
ବେଗେ ପଡ଼ି ଯଥା ଲୋକେ ଧର୍ମ ସୁମରନ୍ତି
ମଦନଙ୍କ ପ୍ରତି ହେଲା ତେହ୍ନେ ତାଙ୍କ ମତି ।
ଗୁପତେ ଦେବର (୧) ସନ୍ଥ ପାଠ ମନ୍ତ୍ରାଦେଇ
ପରମ ବିଶ୍ୱାସେ କୋଳେ ତନୟଙ୍କୁ ଦେଇ
ମଧୁର ବଚନ୍ୟ ସ୍ନେହେ ପରିତୋଷି ମନ
ସମର୍ପିଲେ ସସ୍ନେହରେ ରାଜ୍ୟ-ପ୍ରାଣଧନ ।
ଉଦାର ମଦନ ଦେବ ଧାର୍ମିକ ପ୍ରବର
ବିଲୋକି ରାଜ୍ୟର ଏହି ଦୁରବସ୍ଥା ଘୋର ।
ଉଠିଲେ ପ୍ରଖର ବେଗେ ଜଳି ବୀରଚିତ୍ତ
ନାଚିଲା ପ୍ରତି ଶିରାରେ କ୍ଷତ୍ରିୟ ଶୋଣିତ ।
ପଳାଇଲା ହୃଦୟରୁ ପୂର୍ବ ଅଭିମାନ
ଦେଶ ବୈରୀବଧେ ଏକା ଦଉଡ଼ିଲା ପ୍ରାଣ ।
ସୁନାମୁଣ୍ଡା ! ସେହି ଘୋର ବିପଦ ସମୟେ
ଶତବୀର ଯେନ ତୋର ବିଜନ ଆଳୟେ ।
ଗଙ୍ଗାଧର ନିରଞ୍ଜନ (୨) ଦେବଙ୍କ ସହିତେ
ଏକତ୍ରିତ ହୋଇ ସର୍ବେ ଗମ୍ଭୀର ନିଶୀଥେ ।
ସମୀଗଛ ମୂଳେ ଯଥା ପାଣ୍ଡୁଙ୍କ କୁମରେ
ତେସନ ମନ୍ତ୍ରଣା କଲେ ଗୁପତ ବେଶରେ ।
ସଭିଙ୍କୁ ସମ୍ବୋଧି ଧୀରେ ମଦନ ମୋହନ
କି କହିଥିଲେ ତା ତୋର ହୁଏ କି ସ୍ମରଣ ?
କହିଥିଲେ ଦୃଢ଼ ସ୍ୱରେ ହେ ଭାଇ ନିକର !
ଦେଶ ପ୍ରେମନୀରେ ପୂର୍ଣ୍ଣ ତୁମ୍ଭ ହୃଦ-ସର ।
ଆହେ ରାଜଭକ୍ତ ଯେତେ କ୍ଷତ୍ରିୟ ମଣ୍ଡଳ
ରାଜା ରାଜ୍ୟହିତେ ପ୍ରାଣ ଦେଉଅଛ ବଳି ।

(୧) ମଦନ ମୋହନ ଦେବ ରାଜା ଦାଡ଼ୁଦେବଙ୍କ ଭ୍ରାତୃଷ୍ପୁତ୍ର
(୨) ବଣିଅ ବହିଣ୍ଡାବାସୀ ପ୍ରସିଦ୍ଧ କ୍ଷତ୍ରିୟ ସର୍ଦ୍ଦାରଦ୍ୱୟ

ଜାଣୁଛ ତ ଏବେ ସର୍ବେ ଦେଶର ଅବସ୍ଥା
ଦେଖୁଛ ବଘେଲଙ୍କର କଦର୍ଯ୍ୟ ବ୍ୟବସ୍ଥା ।
ସକଳେ କୌଶଳେ ଛଳେ ପଶି ଏ ରାଜ୍ୟରେ
ବୀଜନକ ପର ରଖି ମନ୍ତ୍ରୀଙ୍କୁ କରେ ।
ଏରାଜ୍ୟକୁ ଧୀରେ ଧୀରେ ବସିଲେଣି ମାଡ଼ି
ସ୍ବହାନ୍ତ ନେବାକୁ ଏବେ ସିଂହାସନ କାଡ଼ି
ମନ୍ତ୍ରୀ ସମ୍ମତେ ଏଣୁ ନବେଦୁଛି ମୁହିଁ
ସ୍ଥୂଲ ସର୍ବେ ଏ ରାଜରେ ଦୃଢ଼ତେ ପଶି ତହିଁ ।
ଅବଲମ୍ବେ ବଘେଲଙ୍କୁ କରିବା ନିର୍ମୂଳ
ଗୋଷ୍ଠେ ପଶି ବାଘଯଥା ନାଶେ ଗୋରୁକୁଳ
କମ୍ପା ବୃକୋଦର ଯଥା ବିରାଟ ନଗରେ
ନାଶିଲା କୀଚକ ସହ ତାର ସହୋଦରେ ।
ମଦନ ମୋହନଙ୍କର ଶୁଣି ଏ ଭାଷଣ
ନବେଦିଲେ ନିରୁତ୍ସାହେ ଦେବ ନିରଞ୍ଜନ ।
ସତ୍ୟ କଥା ବଘେଲଙ୍କ ଅତି ଅତ୍ୟାଚାରେ
କାନ୍ଦୁଛି ଏ ରାଜ୍ୟ ଆଜି ମହା ହାହାକାରେ ।
ଜାଣେ ମୁହିଁ ଏ ରାଜ୍ୟର ସ୍ବପରିଜ ଅଙ୍କ
କଳଙ୍କିତ ହୁଏ ଲଗି ତାଙ୍କ ପାପଙ୍କ ।
ସତ୍ୟ ଏହା ସେମାନଙ୍କ ସ୍ବାର୍ଥପରତାରେ
ଭୀଷଣ ଅରାଜକତା ନାଚେ ହୁଁ ହୁଁ କାରେ ।
ଗୌରବ ଗାରିମା ଯେତେ ଗଲଣି ପଳାଇ
ଲୋକଙ୍କ କେବଳ ଚନ୍ତା ଧନପ୍ରାଣ ପାଇଁ ।
ଏ ଦେଶେ ଏମନ୍ତ କହ ଅଛି କେଉଁଜନ
ଶୁଣି ଦୁଃଖେ ନ କାନ୍ଦିବ ଯାହାର ଜୀବନ ।
ମାନ ଶତ୍ରୁମାନେ ଥରେ ବସ୍ତିର ହୃଦୟେ
ଲୁଚି ଲୁଚି ଯାଇ ରହେ ନିର୍ଜନ ସମୟେ ।
ଚିନାଶିବା ବଇରୀଙ୍କୁ ଗୁପ୍ତଦସ୍ୟୁ ପରି
ସହିଯିବ ଉଚିତ କି ହେ ଏ କଥା ଅମ୍ଭର ?
ପୁଣି ଦେଖ ଶତଯୋଦ୍ଧା ଏକା ଆମ୍ଭେମାନେ
ହଜାର ହଜାର ବୀର ତାହାଙ୍କ ଗହଣେ ।

ତୃଣଗୁଚ୍ଛି ସାହାଯ୍ୟରେ ଅଗ୍ନିଚକ୍ରସହ
ଯୁଝିଲେ ତାହାର ମୃତ୍ୟୁ ସିନା ସୁନିଶ୍ଚୟ ।
ସାମାନ୍ୟ ଗଣ୍ଡୁଷଜଳେ ବନାଗ୍ନି ଭୀଷଣ
ଦେଖିଛ କେବେ କି କାହିଁ ହୁଏ ଉପଶମ ?
ଦୁଃସାହସେ ତହିଁ କେହୁ ହେଲେ ଅଗ୍ରସର
ତାର ଉଦ୍ୟୋଗକୁ କହ କି ବୋଲିବେ ନର ।
ଶୁଣି ଏ ନିରାଶ ବାଣୀ ଦୁଃଖ ଅଭିମାନେ
କମ୍ପିଲେ ମଦନ ମହାବ୍ୟଥା ଲଭି ପ୍ରାଣେ ।
କେମନ୍ତ ହେ ବୀର ! ଏହୁ ଆଶ୍ଚର୍ଯ୍ୟ କଥା
ଉଚାରୁଛ ନିର୍ଭିକଲେ ଠେକି ବୀରମଥା ।
କହିସ୍ତ ହୃଦସ୍ତ ତୁମ୍ଭ କହି ଶିଖାବତ
ନିମ୍ନମୁଖୀ ଆଜ ତାହା କାହିଁକି କହ ତ ?
ବୀରତ୍ୱବଢ଼ିମା ଯେତେ ପୂର୍ବପୁରୁଷର
ଏକାବେଳେ ମନୁ କହେ ହେଲାଣି ଅନ୍ତର ।
ଗୁପ୍ତ ଆକ୍ରମଣେ କପାଁ ହେଉଛ ଲଜ୍ଜିତ
ଦାସତ୍ୱରୁ ଦସ୍ୟୁତା କି ଅଟଇ ଘୃଣିତ ?
ନିଜକୁ ସାମାନ୍ୟଭାବ ନ ଥିରୁଅ ଛାଡ
ଆସ ଅଗ୍ରସର ହୁଅ ବୀରମଦେ ମାତ ।
ଦେଖିବ କ୍ଷଣକେ ଶତ୍ରୁ ହୋଇବେ ବିକଳ
ମହାବଳ ବାଘ ଆଗେ ଯଥା ଛେଳିପଲ ।
ଏକା ହନୁମାନ ଯାଇ ଦହିଥିଲା ଲଙ୍କା
ଏକା ପାର୍ଥ ଦେଇଛନ୍ତି ଯଦୁକୁଳେ ଶଙ୍କା ।
ତେବେ କପାଁ ଏକା ହେଲୁଁ ବୋଲି ଡର ମନେ
ଶୌର୍ଯ୍ୟ ଥିଲେ ଶହେ ଯୋଦ୍ଧା ହେବା ଜଣେ ଜଣେ ।
ଉତ୍କଳର ଦୁର୍ନିବାର ବିରାଠବାହିନୀ—
ସବୁ ରଣେ ମାତ ତାଙ୍କୁ ଯାଇଛନ୍ତି ଜିଣି ।
କେଶରୀ ବଂଶର ଶେଷ ନୃପ ଯମଆଲେ
ପଠାଇ ଅନନ୍ତବର୍ମା ଯୁଝିଲେ ଯେକାଳେ ।
ସେକାଳେ ବହୁତଯୋଦ୍ଧା ଥିଲେ କି ତାଙ୍କର
ସ୍ୱଳ୍ପସୈନ୍ୟେ ମନ୍ଥିଲେ ସେ ଅରାତିସାଗର ।

କେବଳ ସାହସ ଭାଇ ବୀରର ସମ୍ବଳ
ସାହସୀଙ୍କୁ ରଣଲକ୍ଷ୍ମୀ ସଦା ଅନୁକୂଳ ।
ଧର୍ମକୁ ସୁମର କେବେ ନ ହୁଅ ବିରସ
ଶଠେ ଶାଠ୍ୟ ଆଚରଣେ ନାହିଁ କିଛି ଦୋଷ ।
ସିଂହ କି ଗଜକୁ ଯୁଦ୍ଧେ ପାଇଲେ କବଳେ
ନିର୍ଦ୍ଦୟେ ଅସ୍ତ୍ରଙ୍କୁ ମାରିବାର ଯେ କୌଶଳେ ।
ଯୁକ୍ତିପୂର୍ଣ୍ଣ ମଦନଙ୍କ ବୀରତ୍ବ ଭାରତୀ
ମାତିଲା ଉତ୍ସାହେ ଶୁଣି ସମସ୍ତଙ୍କ ମତି ।
ବିନା ବାକ୍ୟବ୍ୟୟେ ସର୍ବେ ହେଲେ ସନମତ ।
୧ ପାଦୁକା କଣ୍ଟକାଘାତେ ତୁରଙ୍ଗମ ବତ ।
ଅନଳ ଉତ୍ତାପେ ଯଥା ଫାଟି ଉଠେ ପୟଃ
ବୀରତ୍ବେ ଉଠିଲା ନାଚ ତେସନ ହୃଦୟ ।
ସୁନାମୁଣ୍ଡା ! ଦେଖିଅଛୁ ସେକାଳରେ ତୁହି
ବନ୍ଧ ଭାଙ୍ଗି ଜଳ ଯେହ୍ନେ ବେଗେ ଯାଏ ବହି ।
ତେହ୍ନେ ଶୂରେ ଧାଇଁ ଦୁର୍ଗେ ପ୍ରବେଶି ଚକିତେ
ବିନାଶି ବଧେଲକୁଳ ସେ ସ୍ଥାନେ ତୁରିତେ ।
ହରି ପରଜାଙ୍କ ଦୁଃଖ ରାଜାଙ୍କ କଷଣ
ରଖିଲେ ରାଜ୍ୟର ମାନ ରାଜସିଂହାସନ ।
ଉପବୀତଛଳେ ତୋର ଦେହକୁ ବେଢାଇ
ପରିଷ୍କୃତ କ୍ଷୁଦ୍ରପଥ ପଶ୍ଚିମକୁ ଧାଇଁ ।
ଦୂର ତାଳଚେରଗାମୀ ମାର୍ଗ ସାମନାରେ
ମିଶିଛି ସରଳଭାବେ ପଞ୍ଚମହଲରେ ।
ମହାନଦୀ ପ୍ରବାହରେ ମିଳନ୍ତି ଯେସନ
ପାର୍ଶ୍ବଦେଶୁଁ ଆସି ତାର ଶାଖାନଦୀଗଣ ।
ଶିଶୁକାଳୁଁ ପାଞ୍ଚଗୋଟି ମଙ୍ଗଳ ପାଦପ
ଏକାବେ ଜନମି ବଢ଼ୁ ସମାନ ସଂକଳ୍ପ ।
ଆଦର ପରସ୍ପରକୁ ଭ୍ରାତୃପ୍ରେମେ ଦ୍ରବ
ବୟୋବୃଦ୍ଧିସହ କ୍ରମେ ପୁଷ୍ପ ଲତା ଲଭ ।

(୧) ସମ୍ବରେକ୍

ପଞ୍ଚମହଲ୍ଲ ଦେବୀଙ୍କ କ୍ରୀଡାମଣ୍ଡପତ
ହୋଇଛନ୍ତି ଏବେ ଏକ ଦ୍ରୁମେ ପରିଣତ ।
ଏହିରୂପେ ସିନା ଘନ ବାଞ୍ଛଣା ତାର
ଫଳବଳେ ଜନମାଇଁ ଖ୍ୟପଣ ତୁଷାର ।
ସୁପବନ ଗୌରୀଗୁରୁ ମହୋନ୍ନତ ଶିରେ
ଧବଳ ଉଷ୍ଣୀଷସମ ରାଜଇ ରୁଚିରେ ।
ସୂର୍ଯ୍ୟଙ୍କ ସହାୟେ ଗଳି ପୁଣି ତା ଚଡ଼ନ୍ତ
ସୃଜି ଖର ପ୍ରବାହିନୀ ଜାହ୍ନବୀ ମୂରତ ।
ମହେଶଙ୍କ ଜଟାଯୁକ୍ତ ମସ୍ତକମଣ୍ଡଳେ
ଫେନପୁଞ୍ଜ ହାସରସେ ନାଚେ କଲକଲେ ।
ଏକତାର ଶକ୍ତି ଭବେ କେ ପାରିବ କହି
ସାମାନ୍ୟ ତୃଣରେ ଯାଏ ମତ୍ତକରୀ ରହି ।
ସୁଗନ୍ଧର ସଲିଳରେ ନୀରଜମାଳିଆ
ସେ ସତକ ପାଖେ ପାଖେ ରାଜେ ମାଦଳିଆ ।
ଯା' ଗନ୍ଧର ହୃଦୟରେ ଶାନ୍ତିସୁଖ ଲଭି
ଅଶ୍ରିଛି ତୋ ଅଟ୍ଟାଳର ଶ୍ୱେତ ପ୍ରଭଛବି ।
ବରୁଣର ଚନ୍ଦ୍ରଶାଳା କାନ୍ତିକି ବେଗଇ
ସଲିଳ ଗରଭେ ଦିଶେ ସେହି ସ୍ୱଚ୍ଛ ଛାଇ ।
ମଧୁପ ମାର୍ଜିତ କୋଞ୍ଚବାଲାଙ୍କ ମସ୍ତକେ
ଯା' ବକ୍ଷ ମଣ୍ଡିତ ହୁଏ ନାଲୋତ୍ପଳ ବନେ ।
ପଦ୍ମମଧୁ ପାନେ ମତ୍ତ କଳହଂସଗଣ
ବିହରନ୍ତି ଯୂଥ ଯୂଥ ଯହିଁ ଅନୁକ୍ଷଣ ।
ମରାଳେ କୁମୁଦବନେ ବୁଲନ୍ତି ପହଁର
ଦେହ ଦିଶେ କୁମୁଦର ଶ୍ୱେତ କଢ଼ୀ ପରି ।
ପ୍ରକାଶ ପାଆନ୍ତି ସ୍ୱରୁ ଏକା ହଂସଗଣ
ନୂପୁର ସରୀଏ ସ୍ୱର ଯାହାଙ୍କ ମୋହନ ।
ଇକ୍ଷୁସାର ରସସମ ସୁନ୍ଦର ଶୀତଳ
ଗ୍ରୀଷ୍ମ ରଜନୀରେ ମୃଦୁ ସମୀର ହିଲ୍ଲୋଳ
ଭୁଇଁ କରୁଆ ର ବାସ * ସଙ୍ଗେ ସଦାବହି
ତଟବର୍ତ୍ତୀ ପ୍ରାଣୀମନ ନେଉଥାଏ ମୋହି

* ଏକ ପ୍ରକାର ସୁଗନ୍ଧ ବାସନ୍ତିକ ପୁଷ୍ପ ।

କାହ୍ନି ଜଳ ଲଭି ଶ୍ୟାମ ତରୁଲତା କାନ୍ତ
ଉପୁଜାଏ ମନୋହର ଶଇବାଳ ଭ୍ରାନ୍ତ ।
ଅଳକୂଳେ ଫୁଲେଫଳେ ଦଳେ ପଦ୍ମାକର
ଆଣେ କାହ୍ନି ସାନ୍ଧ୍ୟଭ୍ରମ ମନେ ରଥାଙ୍ଗର ।
ଶୂକରମାନଙ୍କ ଗ୍ରାସ ସଗ୍ରାମେ ସଲିଳ
ଦିଶୁଥାଏ ପ୍ରସ୍ତରରୁ କାହ୍ନିବା ପଙ୍କିଳ ।
ବହୁଦୂର ବ୍ୟାପି କାହ୍ନି ଜଳଆସ୍ତରଣ
ଅନୁସରି ତୀରଭୂମି କେଦାର କାନନ
ନାନାବିଧ ଆକାରରେ ବିଚିତ୍ର ଗଢରେ
ଶୋଭଇ, ନୀଳଗଗନେ ଯେମନ୍ତ ମୁଦରେ ।
ଉତ୍ତରାଭିମୁଖୀ ଜଳ କାହ୍ନିବା ତଠକୁ
ଘୂରି ଦୂରି ଯାଇଅଛି ପଶ୍ଚିମ ପଠକୁ ।
କାହ୍ନିବା ପଶ୍ଚିମୁଁ ଫେରି ଦକ୍ଷିଣାଶା ଦେଇ
ପୂର୍ବକୁ ଧାଇଛି କୁଳ୍ୟା ପଥମାନ ଫେଇ ।
ଚକ୍ରବାକ ମାଛରଙ୍କା ପାଣିକୁଆ ବକ
ଠେଣ୍ଟେଇ, ଗାଙ୍ଗୋଇହଂସ, କାଦୋଖୁମ୍ପି, କଙ୍କ
ଆନନ୍ଦେ ବିହରି ସେହି ନିକାଞ୍ଚନ ସ୍ଥଳେ
ସକାଳେ ସନ୍ଧ୍ୟାରେ ଡାକ ଘୋର ରବଛଳେ
ବଜାଇ ଦିଅନ୍ତି ଠାଣେ ଶ୍ରମଜୀବୀଙ୍କର
ଉପସ୍ଥିତ ଅବକାଶ ଘଟିକା ନିକର ।
ପଲ୍ଲବ ସମ୍ପତ୍ତିଶାଳୀ ରମ୍ୟ ନାଗବଲ୍ଲି—
ବରଜ ଦୂରରୁ ଶ୍ୟାମ ବର୍ଣ୍ଣେ ପ୍ରଭାଫଳ
ବଇଦୂର୍ଯ୍ୟ ବିତାନ ଜଳ ଦର୍ପଣର
ହୋଇଅଛି ସ୍ଥାନେ ସ୍ଥାନେ ନେତ୍ରାନନ୍ଦକର ।
ରସନା ଆମୋଦ କାହ୍ନି ଆଖୁକ୍ଷେତ୍ର ଶ୍ରେଣୀ
ଧାବିତ ଅଶ୍ୱର ନାଦ ପୃଷ୍ଠାସନ ଧ୍ୱନି ।
ତାଳୀବନ ମରମର ଶବଦକୁ କଳି
ସ୍ୱନନ୍ତି ମଧୁର ବାତେ ଧୀରେ ହଲି ହଲି ।
କୁଧହଂସ କେଳିସର ଶ୍ରୀଦେବ ଦୁର୍ଗର
ମହାର୍ଘ୍ୟ ମାରଗମଣି ମୁକୁଟ ସୁନ୍ଦର

ଗିରୀନ୍ଦ୍ର ପ୍ରଧାନପାଟ ତହୁଁ କେଶେ ଦୂରେ
ସୁକାମ୍ଯ ଶରୀର ରଞ୍ଜି ଦିବ୍ୟପ୍ରଭା ପୂରେ ।
ତାର ଅଭ୍ୟନ୍ତରେ ରମ୍ୟ (୧) ବସନ୍ତ ନିବାସ
ଉଜ୍ଜ୍ୱଳ ସ୍ଫଟିକସମ ହୁଅଇ ପ୍ରକାଶ ।
ସ୍ଖଳିତ ତୁଷାରଖଣ୍ଡ କାନ୍ତିକି ଧିକ୍କାରି
ସେ ଗିରି ଗାତ୍ରରେ ଶୋଭେ ସୁଷମା ବିସ୍ତାରି ।
ସ୍ୱରତ ବିଖ୍ୟାତ କୀର୍ତ୍ତି ଅସ୍ରାନ୍ତ ବିଜୟୀ
ପୁଣ୍ୟାତ୍ମା ଗାଙ୍ଗେୟଙ୍କର ସଉରଭମୟୀ ।
କୀର୍ତ୍ତିରୁ ଭୂତଳେ ଖଣ୍ଡେ ଅବା ଛିଡ ସଙ୍ଗ
ରହିଅଛି ମଣିଶୈଳେ ସୁଷମାକୁ ତଡ଼ି ।
ଅଥବା ତରଳଶୁଭ୍ର ଚନ୍ଦ୍ରକର ଖସି
ପ୍ରଧାନ ପାଟର ଶୀତେ ଯାଇଛି କି ବସି ।
ନାନାବିଧ ଦିବ୍ୟଶିଳ୍ପ କଳାରେ ସଜ୍ଜିତ
ସେ ଅଟ୍ଟାଳ ହରଇ ଦର୍ଶକର ଚିତ୍ତ ।
ବଳୟ ମଣ୍ଡଳାକାର ସ୍ତମ୍ଭେ ଥୋଇ ସ୍ତର
ଶୋଭଇ ଅଳିନ୍ଦ ବୃନ୍ଦ ପଂକ୍ତିକା ପ୍ରକାର ।
ଦିଗ୍‌ଦନ୍ତୀର ଦନ୍ତଦଣ୍ଡେ ହୋଇଛି କି ଠିଆ
କାରୁକାର୍ଯ୍ୟ ମନୋହର ଧବଳ ଗୃହୁଆ ।
ଦେହଭୂଷି ଜପକଣ୍ଠ ଉପବନ ଫୁଲେ
ସ୍ତ୍ରୀୟ ଦଳ ବଳେ ଯହିଁ ବସନ୍ତ ପ୍ରଫୁଲ୍ଲେ ।
ବିହରି, ସେ ସ୍ଥାନ ଛାଡ ଯିବା ପାଇଁ କାହିଁ
ସ୍ୱପନରେ ସୁଦ୍ଧା ତାର ମନେ ଆଣେ ନାହିଁ ।
ଅବିରତ ପ୍ରସ୍ରବଣ କର ଉଦ୍‌ଗ୍ରସିତ
ଇନ୍ଦ୍ରଧନୁ ସୀମନ୍ତତ ବନ୍ଧୁ ବର୍ଣ୍ଣାଙ୍କିତ ।
ଜଳକଣା ଉଡୁଥାଏ ତହିଁ ଦିବାସ୍ୱଗେ
ତରୁଲତା ନବହକୁ ରଞ୍ଜି ସନ୍ଧ୍ୟାରାଗେ ।
ସୁପବନ ପୀଠସ୍ଥାନ ଯହିଁ ଦ୍ୱିଜପନ୍ତି (୨)
ଶିଖାପୁଚ୍ଛ ଧୀରେ ଧୀରେ ଦୋହଲାଇ ନାଚି ।

(୧) ଦେବଗଡ଼ର ପ୍ରଧାନ ପାଟ ପର୍ବତରେ ବସନ୍ତ ନିବାସ ନିର୍ମିତ ହୋଇଅଛି । ଅଗେ ପ୍ରଧାନପାଟ ମଠରେ ପ୍ରାୟ ବ୍ରାହ୍ମଣଭୋଜି ହୁଏ । (୨) ବ୍ରାହ୍ମଣ ଓ ପକ୍ଷୀ ।

ପ୍ରକୃତର କଳବ୍ୟାପୀ ମହାପଙ୍କ ସ୍ଥଳେ
ନିମନ୍ତ୍ରଣ ରକ୍ଷା ଆଣେ ଧାଇଁ ଦଳେ ଦଳେ ।
ଶୁଭ୍ର ଝର ଶ୍ମଶ୍ରୁବାହୁ ବୃଦ୍ଧ (୧) ଜଟାଧାରୀ
ଆଗ୍ରର୍ଯ୍ୟ ପ୍ରଧାନ ପାଠ ଆଗେ ଅବତରି ।
ନିସର୍ଗ ପ୍ରଦତ୍ତ ନିତ୍ୟ ଅନ ଆସ୍ୱାଦିତ
ବହୁବିଧ ଖାଦ୍ୟପାନେ ତୋଷନ୍ତି ସ୍ୱଚିତ୍ତ ।
ପରିଷ୍କୃତ କାଚଡ଼ମ୍ବ ଗର୍ଭ ବିଳାସିନୀ
ଉଜ୍ଜ୍ୱଳ ବିଦ୍ୟୁତ ବାଲା ଆଲୋକଦାୟିନୀ ।
ରଜନୀରେ ଦେହେ ନାନା ରତ୍ନଭୂଷା ଭରି
ପ୍ରସାଧନ କରେ ତାଙ୍କୁ ପ୍ରସାଧିକା ପରି ।
ଜ୍ୱାଳାମୟ ସେ ପ୍ରବଳ ଆଲୋକମାଳାର
ପ୍ରତିବିମ୍ବ ପଡ଼େ ଏହି ଜଳରେ ତୋହର ।
ଏଣୁ ସୁନାମୁଣ୍ଡା ରୁଦ୍ଧ ବିନା ଆୟାସରେ
ଅପତ୍ର ମଣ୍ଡନସୁଖ ଲଭନ୍ତି ନିରନ୍ତରେ ।
ପଶୁଜିତ ଦୀପ୍ତି ସେହି ଆଲୋକ ବିଲୋକି
ଆଖୁରସ ଲୋଭ ଛାଡ଼ି ସ୍ୱଳ୍ପଏ ଚମକି ।
ମହାଭୟେ ପଚ୍ଛପାଖେ ବାହୁଡ଼ନ୍ତି ଫେରି
ବଜାଇ ବିପଦ ଘୋର ବଙ୍କାପକ୍ଷ ଭେରୀ ।
ଅଗ୍ନି କୃଷକର ସନ୍ନିପାକ ଉପଦ୍ରବେ
କୁହାଟି ହେବାକୁ ଏଣୁ ନ ପଡ଼େ ଶୀତରେ ।
ଉଜ୍ଜ୍ୱଳ ଆଲୋକ ମୁଗ୍ଧ ପତଙ୍ଗ (୨) ଗୁହଡ଼ି
ଶ୍ୟାମଳ ପ୍ରାନ୍ତର ଦେଖି ଯୂଥ ଯୂଥ ଉଡ଼ି ।
ବହୁର ବର୍ଦ୍ଧିତ ବିମ୍ବ ଆଲୋକ ନିରେଖି
ଉଦ୍ଭିଦ କୋମଳ ଗଜା ପଲ୍ଲବ ଉପେକ୍ଷି ।
ଦୂର ବନ୍ଧୁ ତୀରବେଗେ ଅନାୟତ୍ତେ ଆସି
ଜଳେ ଅଗ୍ନି ପ୍ରତିବିମ୍ବେ ପ୍ରବେଶନ୍ତି ଝାସି ।
ତାହାଙ୍କୁ ଭକ୍ଷିବା ଲାଗି ଧାଆନ୍ତି ମୀନାଳି
ସ୍ୱଦେହ ଘର୍ଷଣେ ସହୁ ସଲିଳକୁ ଗୋଳି ।

(୧) ଚେର ।     (୨) ସମୂହ ।

ଦୋହଲଇ ନୀରବେଣି ସେଉଁକ ବେଗରେ
ତେଉଁ ତେଉଁ ବୀଚମାଳ ତେଜକ ପ୍ରଖରେ ।
ସେ ବଜ୍ରୂଳ ଅଲୋକର ବମ୍ବକୁ ଚଞ୍ଚଳେ
ବହୁଗୁଣେ ବଢ଼ି ଦିଏ ଚଞ୍ଚପାଖେ ଜଳେ ।
ଛହାଲ ଜ୍ଵଳନ ଜାଳ ଜଳାଇ ଜୀବନେ
ଅକର୍ଷଇ ପୁନଃ ପୁନଃ ପଙ୍କପାଳଗଣେ ।
ମାଳଙ୍କୁ ନ ପଡ଼େ ଏଣୁ ସହୁ ପ୍ରାତବାତ
କାଠ କାଠଡ଼ମ୍ବ ନାଶି ଭୃଷ୍ଣାୟୀ ବ ଷାକ୍ତ ।
ନୀରଘଟ ସଙ୍ଗେ ପ୍ରଚ୍ଛ ଗଛ ଅନୁସର
ବୁଲିବାକୁ ଭୁହନାର୍ଜ୍ଜ କ୍ଷେତେ ଥର ଥର ।
ପୀଡ଼ାଦାୟୀ ବ୍ୟାଧିକୁଳ ଅବସାନ କର
ସୁନାମୁଣ୍ଡା ତୁହୁ ଅଟୁ ଭୈଷଜ୍ୟ ଭଣ୍ଡାର ।
ବୈଦ୍ୟରାଜମାନଙ୍କର ଆଦରଣ ଧନ
ସେ ଭଣ୍ଡାର ପୁର୍ଣ୍ଣ ସଦା ଔଷଧି ରତନ ।
ସୁଦୃଢ଼ ବ୍ରତତୀ ଡୋରେ ତରୁ ତନୁ ଛନ୍ଦ
ଗଜମଦ ସମଗନ୍ଧେ ଚୌଦିଗ ଆମୋଦ ।
ଭୂତଳକୁ ଓହଳରେ ଆଲିଙ୍ଗି ଆଦରେ
ଗୁଳୁଛ ଲତାଏ ତହିଁ ଝୁଲନ୍ତି ଉପରେ ।
ଯାହାଙ୍କ ପାଚନ କ୍ଵାଥ ଜ୍ଵରକୁ ସବଳେ
ତଡ଼ାଇ ପକାଏ ଯଥା ବୃକ ମୃଗବଳେ ।
ମଞ୍ଜୁ ମରକତ ବୃନ୍ତେ ପଦ୍ମରାଗ ଫୁଲେ
ଯାହାର ଶ୍ୟାମଳ କାୟ ଦ୍ଵିଗୁଣେ ଉଜ୍ଜ୍ଵଳେ ।
(୧) ଡ଼ାଫଣସମ କଣ୍ଟକେ ଦେହ ଯା ମଣ୍ଡିତ
କଳାଜାର ପର ଫଳ ଅତ୍ୟନ୍ତ ଅଶୀତ ।
ତୋ ଜନ୍ମଭୂମିରେ ଜନ୍ମି କୁଇଲଖା ରାଜ
ଦମନ୍ତି ପାଣ୍ଡୁ କାମଳ ରୋଗଦର୍ପ ଭାଜ ।
ଶଙ୍କର ଶିରରେ କୃଷ୍ଣ ଭୁଜଙ୍ଗମ ଭଳି
ବିରାଜଇ ସ୍ଥାନେ ସ୍ଥାନେ ବାରଣ ପିପ୍ପଳୀ ।

(୧). ଏକ ବଡ଼ ସୁଆ ।

ବାଳ ବୟସ୍କେ ଷାସ୍ ଷର ଯା ରସ ପ୍ରେରଣେ
ଅନାୟତ୍ତେ କଣ୍ଠରୋଗ ପଳାଏ ରଭସେ ।
ଛଷ ଛଶିଖରୁ ବଳ ଦେହେ ବହୁଶୁଙ୍କ
ସିକତା ପ୍ରାନ୍ତରେ କାନ୍ଧି ରଜେ ବାଇଭୂଙ୍କ ।
ସୈନ୍ଧବ ଅଳକ୍ତ ହିଙ୍ଗୁସହ ଯେଣ୍ଟୁ ମିଶି
ଗୋରସ ସହ ମହିଷୀ-ଶିଶୁ ପେଟେ ପଶି ।
ହିଙ୍ଗୁ ଯଥା କସ୍ତୁରୀ ପକାଏ ଛଡାଉ
ତତକ୍ଷଣେ କୃମିମାନଙ୍କୁ ପ୍ରାଣେ ଦଏ ମାରୁ ।
ମନୋହର ନୀଳକାନ୍ତ ଭ୍ରମର ଧାରକ
ଗ୍ରୀଷ୍ମକାଳେ ବିଳାସୀଙ୍କ ହୃଦୟ ହାରକ ।
ଜଳ ସହବାସେ ଯାର ସୂକ୍ଷ୍ମ ଚେରମାନ
ମୃଦୁ ପବନରେ ବଣ୍ଟେ ହୃଦାମୋଦ ଘ୍ରାଣ ।
ଦ୍ରାକ୍ଷା ଧାଇଫୁଲ ଚିନି ସଙ୍ଗେ ସଙ୍ଗ ହୋଇ
ଶ୍ରାନ୍ତ ନାଶିନୀ ଯେ ସ୍ୱାଦୁ ସୁରା ଝଡରଇ ।
ସେ ଉଷୀରେ ତୋର ସ୍ନେହ ହେଉ ଅଗଣନ୍ତ
ଶଣ ପନ୍ତ ଛନ୍ନ ପର ଠେକି ବର୍ଜନ୍ତ ।
ଚିତ୍ରକୂଟବାସୀ ଯକ୍ଷ ବିହ୍ୱଳ ଆକୁଳେ
ଜଳଦକୁ ପୂଜି ଯାର ସୁରଭିତ ଫୁଲେ ।
ପ୍ରେରି ଥିଲା ଦୂର ରୂପେ ବାର୍ତ୍ତା ଦେବା ଆଶେ
(୧) ଅଳକାରେ ବିଷାଦିନୀ ପ୍ରିୟତମା ପାଶେ ।
କୁଟଜ ଅମ୍ବୁଜ ସେହି ତିକ୍ତ ଇନ୍ଦ୍ରଜବ
ଭଙ୍ଗିଦଏ ଅନାୟାସେ ଅତିସାର ଗର୍ବ ।
ସଦାଶିବଙ୍କର ପ୍ରିୟ ପବନ ଧୁଦୁରା
ପଳାଏ ଯାହାକୁ ହେରି କଣ୍ଠରୋଗ ତ୍ୱରା ।
ପିଶଙ୍ଗ ତ୍ରସୁନେ ଯାଙ୍କ ପୀତରଜ ସନ୍ତ
କପିଶ ବାସିନୀ ବାମା କାନ୍ତିକ କଳନ୍ତ ।
କଣ୍ଟାରେ ଆବୃତ୍ତ ଯାଙ୍କ ସର୍ବ କଳେବର
ବାକୃତ ବାର୍ତ୍ତାକୀ ସମ ଫଳ ଯା ସୁନ୍ଦର ।

(୧) ମେଘଦୂତ ବର୍ଣ୍ଣିତ ଅଳକାପୁରୀ

ରହିବାକୁ ଶୁଷ୍କସ୍ଥାନ ଖୋଜନ୍ତି ଯେ ନିତ୍ୟ
ଛେଳି ପରି ପାଣି ପ୍ରତି ସଦା ଯାଙ୍କ ଭୀତି ।
ସେହି ଅଙ୍କବନ୍ତ ଲତା ତୋ ଦେହରେ ଜଡ଼ି
ରହିଛନ୍ତି ନୀରଶୂନ୍ୟ ପ୍ରଦେଶରେ ପଡ଼ି ।
ଷବନରେ ମେଘଯଥା ତଏ ଛନ୍ଦଭଙ୍ଗ
ତାଙ୍କୁ ଦେଖି ସେହିପରି ହୁଏ ହୃଦବେଗ ।
ପକ୍ବମାଂସ ସମ ଗନ୍ଧ ଚଉଦିଗେ ବୁଣି
ବସ୍ତଜଇ ଠାବେ ଠାବେ ତୋର ପସାରୁଣି ।
ଅଶ୍ୱଗନ୍ଧା ଶତମୂଳୀ ସହିତେ ଯେ ରହି
ହୁତାଶନେ ତୈଳଭାଣ୍ଡେ ନିଜ ତନୁ ଦହି ।
ବାତବ୍ୟାଧି ସହି ରଣେ ହୋଇ ସମ୍ମୁଖୀନ
ଏକାବେଳେ ନାଶି ତାକୁ କରେ ଛିନ୍ନଭିନ୍ନ ।
ବାଲଆ ମାଛର ନଖ ପରି ଯାର ଡାଳ
ମାର୍ଜାର ପାଦୁଲ ସମ ଯା ପଲ୍ଲବମାଳ ।
ମନମୁଗ୍ଧକର ଯାର ହଳଦିଆ ଫୁଲ
ପ୍ରଭାତ କିରଣେ ଦିଶେ ନିଆଁ ଝୁଲ ଝୁଲ
ସେ ଅମ୍ଳବେତସ ବୃକ୍ଷ ଆଶ୍ରି ଶୀଳା ମୂଳ
ବିଶାଳ ବିସ୍ତୃତେ ତୋର ହୋଇଛନ୍ତି ଠୂଳ ।
ନିଃଶେଷଇ (୧) ଶୂଳଯଥା ହେଲେ ଶଲ୍ଲକୁଳ
ତାଙ୍କ ସ୍ପର୍ଶେ ଶୂଳ (୨) ତେଣ୍ଟେ ହୁଅଇ ନିର୍ମୂଳ
ହିରଣ୍ମଣି ରଶ୍ମି ରେଖାସମ ଯାର କାନ୍ତି
ସ୍ୱଭାବରେ ଜନ୍ମାନ୍ତି ଯେ ମକାସାପ ଭ୍ରାନ୍ତି ।
ମୌକ୍ତିକ ଉଜ୍ଜ୍ୱଳ କ୍ଷୁଦ୍ର ପ୍ରସୂନ ଯାହାର
ସଉରଭେ ଆକର୍ଷଇ ଦୂରୁ ମଧୁକର ।
ମାଟିଭେଦ ଝଗଜଇ ଯାର ଶତମୂଳ
ସେ ଶତମୂଳୀରେ ତୋର ବନ ସମାକୁଳ ।
ଥରଇ ତରଣୀ ଯଥା ତରଙ୍ଗ ଧକ୍କାରେ
କମ୍ପଇ ପ୍ରମେହ ତେଣ୍ଟେ ତାହାର ଶଙ୍କାରେ

(୧) ପକ୍ଷୀବିଶେଷ ।
(୨) ବୃକ୍ଷବିଶେଷ ।

ବଭୂଷିତା ବାରବାମା ସମ ଧୀରେ ଧୀରେ
ବସନ୍ତେ ନାଚେ ଯେ ବାଡେ ବବଧ ଭଙ୍ଗୀରେ
ମଣ୍ଡିତ ମାଣିକ୍ୟ ମଞ୍ଜୁ ଯାହାର ସ୍ତବକ
ବାଳରବ ପର ତୁରୁ ଦଶେ ଜକ ଜକ ।
ବଯୋଗୀ ବଧୂକୁ କୋନେ ଦେଲେହେଁ ଯାତନା
ସଦମ୍ଭେ ନାଶଇ ଯେହ୍ନ ପ୍ରଦର ବେଦନା
ଚମ୍ପଶର ପାଞ୍ଚଶର (୧) ମଧ୍ୟେ ଯେ ପ୍ରଧାନ
ତୋ ଉଦ୍ୟାନେ ସେ ଅଶୋକେ ଲଭନ୍ତ ସ୍ଥାନ
ହଳଦିଆ ମଣି ସମଫୁଲେ ମନୋହର
ଗୋଖର ସନ୍ନିଭ ଫଳ ରୁଚିର ଗୋଖୁର ।
ଚକ୍ରାମୂଳ ଦନ୍ତୀଅଦା ଗନ୍ଧକ ବଡ଼ଙ୍ଗ
ହରଡକା ଭଲ୍ଲାତକା ସହ ଲଭି ସଙ୍ଗ ।
ଅର୍ଶକୁ ମୂଳରୁ ଧର ଉପାଡ଼ଇ ଖରେ
କଦଳୀ କାଣ୍ଡକୁ ଯଥା କଶ୍ୱର କରେ ।
ଏ ଆଦ ଦୁର୍ଲ୍ଲଭ ଦବ୍ୟ ବନୌଷଧିଙ୍କର
ସମାବେଶେ ପରପୂର୍ଣ୍ଣ ତୋର ଗନ୍ଧାଗର ।
ପ୍ରୀତ ଉପହାର ଦେଇ ତହୁଁ ବାରେ ବାରେ
ଅଭନବ ବଳଭଦ୍ର ଭୈଷଜ୍ୟ (୨) ଭଣ୍ଡାରେ
ତୋର ଗ୍ରାମ ବାସୀଙ୍କର ବଞ୍ଚାଇ ପରାଣ
ସାଧୁଅଛୁ ସଦାବେଳେ ଅଶେଷ କଲ୍ୟାଣ ।
ସୁନାମୁଣ୍ଡା ! ଗର୍ବେ ଥୋଇ ବନପ୍ରାଣୀମାନ
ଥିଲୁ ପୂର୍ବେ ମୃଗୟାର ଉପଯୁକ୍ତ ସ୍ଥାନ ।
ନରେନ୍ଦ୍ର କନ୍ଦର୍ପ ତୋର ନର୍ଜ୍ଜନ ଗହ୍ୱରେ
ମତ୍ତ ହେଉଥିଲେ ସଦା ମୃଗୟା ଉତ୍ସବେ ।
କେବେ ନରମଣି ବସି ସୁଶିକ୍ଷିତ ଗଜେ
ଅନୁସରୁଥିଲେ ବନେ ଚଳ ମୃଗବ୍ରଜେ ।
ଦୂରେ ଏକଚିତ ହୋଇ ହାତଗଣେ ଧାଇଁ
ବଙ୍କାଇ ରୁଚିରଗ୍ରୀବା ଅଧୀରେ ଅନାଇଁ ।

(୧) ଅଶୋକ, ଅରବନ, ଚୂତ, ନବମଲ୍ଲିକା ଏସବୁ ମଦନର ଶର ।
(୨) ସୁନାମୁଣ୍ଡାର ଔଷଧ ଭଣ୍ଡାର ।

ସାଧ୍ୱସ ତରଳ ନେତ୍ରେ କୃଷ୍ଣସାରଚୟ
କରୁଥିଲେ ବନଭୂମି କୁବଳୟମୟ ।
ଚମକି ଚଞ୍ଚଳେ ପୁଣି ଦେହ ସଙ୍କୋଚିଇ
ଡେଇଁଥିଲେ ସମ୍ମୁଖକୁ କାନ ସପଟାଇ ।
ଡଆଁ ମାରି ଶୂନ୍ୟେ ଉଠି ଅଳ୍ପ ଭୂଇଁ ଛୁଇଁ
ଛୁଟୁଥିଲେ ଖୁରପଦ ଏକତ୍ରରେ ଥୋଇ ।
ଘନ ଖଗ ଆକାଶରେ ଖଗେ ରଖି ତଳେ
ଯାଉଥିଲେ ରଙ୍କୁକୁଳ ପବ୍ନଶ ବଳଳେ ।
ସୁ ନିପୁଣ ମେଣ୍ଢା ଏକାପଦ ଇସାରେ
ନେଉଥିଲା ମାତଙ୍ଗଙ୍କୁ ବଦ୍ଧ ପ୍ରକାରେ ।
ସମ୍ମୁଖସ୍ଥ କଣ୍ଟାଗଛୁଁ ଦୂରରେ ଫେରାଇ
କେବେ ବା ଶିକ୍ଷିତ କତ୍ରିକରରେ ଭଗାଇ ।
ବଳ୍ଲକପତ୍ରଏ ଭୂପ ଖରଶର ମାରି
ଆଣୁଥିଲେ ସେମାନଙ୍କ ପତ୍ରଣ ଓଟାରି ।
ନଖ ଆଘାତରେ ଦଳି ତୃଣ ଲତା ମୂଳ
ପଡ଼ୁଥିଲା କାନ୍ଦି କାନ୍ଦି ଶାର୍ଦ୍ଦୁଳ ପାଦ୍ମଳ ।
ସିକତା ସହିତ ଠାଣ ମୃତ୍ତିକା ବଦାରି
ସହଜେ ସେ ଚିହ୍ନଚୟ ହେଉଥିଲା ବାରି ।
ତରଳ ଶୋଣିତ ମୃତ ପଶୁ ଦେହୁଁ ଖସି
ମଣ୍ଡଳ ଆକାରେ ତଳେ ଯାଇଥିଲା ବସି ।
ସେ ମୃତଗଣ୍ଡିର ଗୁରୁତର ଭାର ବହି
ଘାସଗଜ ଚକ୍ରାକାରେ ରହୁଥିଲା ଶୋଇ
ହଳବଳେ ଓଟାରିବା ବାଉଁଶ ଗୋହଲ ।
ଛନ୍ତ ପରେ ଦୀର୍ଘଦାଗ ଦେଖି ଅବିକଳ
ବୁଝୁଥିଲେ ଶୂର ତହିଁ ବ୍ୟାଘ୍ର ପଶୁ ମାରି ।
ଘୁସୁରିଇ ଗୁପ୍ତସ୍ଥାନେ ନେଇଛି ଓଟାରି
ସତର୍କରେ ସେ ସଙ୍କେତ ସ୍ଥଳ ଅନୁସରି ।
ନାଳ ଖାଲ କଣ୍ଟାଲଟା ବନେ ଅଗ୍ରସରି ।
ଲକ୍ଷୁଥିଲେ ମୃଗାଦନେ ବାରଣ ଅଗ୍ରତେ
ଲତାମୁକ୍ତ ଉଠି ଟିଏ ହେଉଥିଲା ଦ୍ରୁତେ ।

ନିତାନ୍ତ ଅବଷ୍ଟଭରେ ସବୋଧ ହୃଦୟେ
ମସ୍ତକଘୂରାଇ ତାଙ୍କୁ ଅନାଇ ନିର୍ଭୟେ ।
ଦେଉଥିଲା ଥରେ ଥରେ ଚକ୍ଷୁ ମଲକାଇ
ଚଣ୍ଡିତୋଳି ପୁନଃପୁନଃ ମେଞ୍ଚ ଚଣକାଇ ।
ଅଶ୍ୱେହୁ ଅମାତ୍ୟହାତୀ ଏକାନ୍ତ ସଭଙ୍କି
ଏକ ଜନ ଜୀବ ବୋଲି, ଅନ୍ତରରେ ଲକ୍ଷି ।
ସ୍ୱବଳ କାମୋଡ଼ ଯେବେ କ ଉପାୟୁ ବଳେ
ପସ୍ରଣ ହୁରବ ତାଙ୍କୁ ପକାଇ ଭୂତଳେ ।
ସେହୁ ଅବସରେ ବୀର ବକ୍ର ସମ ବାଣେ
ଲକ୍ଷୁଥିଲେ କ୍ଷିପ୍ରେ ତାକୁ ଅବ୍ୟର୍ଥ ସନ୍ଧାନେ
ଅସ୍ତ୍ରାଘାତେ ଘୋରଘୋଷେ କାନନ କମ୍ପାଇ
ଶୁଷ୍କ ପାଦପରୁ ଉଇ ମୃତ୍ତିକା ଖସାଇ ।
କେବେ ତହିଁ ଦେଉଥିଲା ପ୍ରାଣ ଉପହାର
କେବେ ଡେଇଁ ଦଳି ଗୁଳ୍ମଦଳ ଲଣ୍ଠକାର
ଯାଉଥିଲା ଅନ୍ୟପାଶେ ଗମ୍ଭୀର ଗର୍ଜ୍ଜନେ ।
ଜଙ୍ଗଲର ଚହଲକୁ ନସ୍ତବଧ୍ୱସଣେ ।
କଣ୍ଟିପୃଷ୍ଠୁଁ ଅବତରି ବୃକ୍ଷେ ରକ୍ତଚକ୍ଷୁ
ପୁଣି ତହିଁ ଅବଲମ୍ବେ ହୋଇ ସମାସୀନ ।
ଅନ୍ତ୍ରସର ନୃପ ସଦା ଶୋଣିତର ଧାର
ଦେଖୁଥିଲେ ଆଗେ ଦୂରେ ରୌଦ୍ରମୂର୍ତ୍ତି ତାର
ହାକୁଟି ସହିତେ ମେଲ୍ ସ୍ୱମ ଦନ୍ତପାଟି
ଘୂର୍ଣ୍ଣୁଥିଲା ବାର ବାର ନୟନ ତସ୍ରଟି ।
ବକ୍ତ୍ରାସ୍ୟରୁ ବର୍ଷି ଘୋର ରୋଷାନଳକଣା
ସାକ୍ଷାତ ଶମନସମ ଯାଉଥିଲା ଜଣା ।
କ୍ଷିପ୍ରେ ଗୁଳି ମାରୁଁ ମାରୁ ସେ ନରଶାର୍ଦ୍ଦୁଳ
ଛଣକଙ୍କାବତ ଡେଇଁ ପଲକେ ଶାର୍ଦ୍ଦୁଳ
ତାହାଙ୍କ ଅମାତ୍ୟ ପାଶେ ପଡ଼ୁଥିଲା ଯାଇ
ନଖ ଦନ୍ତାଘାତେ ଜଣ୍ଟି କମର କମ୍ପାଇ ।
ସୁଯୋଗ ନ ଦେଇ ଝଟେ କରବାଳ ଠାଣି
ଦ୍ୱିଖଣ୍ଡେ ତାହାକୁ ଭୂପ ଦେଉଥିଲେ ହାଣି ।

ସମୁଜ୍ଜ୍ୱଳ ଚନ୍ଦ୍ରାଲୋକେ ଗବାକ୍ଷ ଶୀଙ୍କାରେ
କେବେ ଭୂମିପତି ଆସି ନିର୍ଜ୍ଜନ ମଞ୍ଚାରେ ।
(୧) ଚହ୍ଳଗ ସଲିଳ ପାଖେ ବସି କଉତୁକେ
ରହୁଥିଲେ ସେ ପାଣିକୁ ଅନାଇଁ ଉତ୍ସୁକେ
ଗହ୍ୱରୁ ଅନ୍ଧାରମାଳ ବାହାରିଲା ପରି
ଗହନ୍ତୁ ଗବୟକୁଳ ଧୀରେ ଚରି ଚରି ।
ପ୍ରବେଶି ସେ (୨) ଛପଲର ଶାନ୍ତି ନାଶି କ୍ଷଣେ
ସଲିଳଗୋଳାଇ ଖୁର ଚରଣମର୍ଦ୍ଦନେ ।
ଶିଙ୍ଗରେ ମୃତ୍ତିକା ତୋଳି ମସ୍ତମରି ହୋଇ
ପିଉଥିଲେ ଲୁଣିମାଟି ଜଳ ରହି ରହି
ଏ ସୁଯୋଗେ ଶୂରମଣି ଶିଶୁ ଗବୟର ।
କଟୀଦେଶ ଅନୁସରି ପେଶୁଥିଲେ ଶର ।
ଅଣ୍ଟାକଣ୍ଟା ହୋଇ ଶିଶୁ ସୁତୀକ୍ଷ୍ଣଶାୟକେ
ଭୁଞ୍ଜୁଥିଲା ନିର୍ଜ୍ଜନତା ବନର କ୍ଷଣକେ
ଶିଙ୍ଗେ ଗଛଲତା ଭଙ୍ଗି ବେଗେ ଯୂଥଫେରି
ନାକମାରି ଧାଉଁଥିଲେ ବାଜୁଣିକୁ ଘେରି ।
ସାନଠାରୁ ବଡଯାଏ ସହଜେଭୂମିପ
ଏ ସୁଯୋଗେ ପ୍ରେରୁଥିଲେ ଶମନ ସମୀପ ।
କେବେ ସଙ୍ଗମେଳେ ନୃପ ରଚୁଥିଲେ ଆଢ଼
କୁକୁଠଖାଇରେ ତୋର ସଜାଡିସୁଦୃଢ଼ ।
ପୁଟେଂ ବସୁଥିଲେ ବେଢ଼ି ବାଣୁଆମଣ୍ଡଳ
କାଳନା ହୁରିରେ ପହୁଁ ପୁରୁଥିଲା ସ୍ଥଳ ।
କାଳିଆମାନଙ୍କ ଡାକ ଠମକଚମକ
ପ୍ରତିଧ୍ୱନିବଶେ ଆଣେ ହୃଦୟେ ଚମକ ।
ମାର ମାର ଧର ଧର ପଳାଇଲା ଦେଖ
ସମ୍ମୁଖେ ଧପାଇ ଆସେ ଧାଇଁ ଛେକ ଛେକ

---

(୧) ଲବଣାକ୍ତ ଜଳସ୍ରାବ । ଏହି ମାଟିର ଜଳ ଖାଇବାକୁ ବନ୍ୟଜନ୍ତୁମାନେ ବିଶେଷ ପସନ୍ଦ କରନ୍ତି ।

(୨) କର୍ଦ୍ଦମାକ୍ତ ଖାଲୁଆ ସ୍ଥାନ ।

ଏ ଅବ ଦ୍ରୁମୂଳ ଗୋଳ ଶୁଭଇ କେବଳ ।
ଥରେ ଥରେ ପୁଣି ଉଠେ ଫଟକାର ରୋଳ
ସହାସରେ ପଣ୍ଟକୁଳ ଇତସ୍ତତଃ ଧାଇଁ
ଖୁରଘାତେ ଦେଉଥିଲେ ଭୂଧର କମ୍ପାଇଁ ।
ଏ ଦଗୁଁ ଶୁଭଇ ପୁଣି ବନ୍ଧକରସ୍ୱନ
ଘାଉଗ ଜନ୍ତୁଙ୍କ ଘୋର ଚହ୍ଲାର ଭୀଷଣ
ଚୂଆଲ ଭଲ୍ଲୁଏ ଚୂଆ ଲେଷେ ଘଡଘଡ
ଛଡ଼ଥିଲେ ଶିଳାତଳେ ଗଡ଼ଗଡ ରଡ ।
ଏ ଗଛୁ ସେ ଗଛେ ତେଇଁ ହୁଙ୍କାର ବାନରେ
ବାଣୁଆମାନଙ୍କୁ ଲଘି ପଳାନ୍ତି ପ୍ରଖରେ ।
ନ ବଧନ୍ତି ତାଙ୍କୁ କେହି ଯମଦୂତ ବୋଲି
ମହଦାଶ୍ରୟେ ବିପଦ ଯାଏ ଏହିଭଳି ।
ମଦ୍ମତ୍ତକରିକ ଭୃଙ୍ଗି ଦମ୍ଭେ ଦନ୍ତତାଡ଼
ପରଚଣ୍ଡ ଶଣ୍ଡଦଣ୍ଡେ ପାଦପ ଉପାଡ଼ ।
ଶୈଳସ୍ଥିତ ଶିଳାମାନ ଦଉଡ଼ାନ୍ତି ବତ
ଚରଣେ ପାଷାଣ, ବୃକ୍ଷ ଦଳି ଅବିରତ ।
ବାରଣେ ପଳାଉଥିଲେ ଭୀଷଣ ତର୍ଜ୍ଜନେ
ବନେ ମହାଭୂମିକମ୍ପ ଜନ୍ମାଇ ସଘନେ ।
ଏରୂପେ ସୁନାମୁଣ୍ଡାତୋ ସଦନେ ଆନନ୍ଦେ
ରସନ୍ତି କନ୍ଦର୍ପଦେବ ମୃଗୟା ବିନୋଦେ ।
କୁଙ୍କୁମ ପରାଗରାଗେ ରଞ୍ଜି ଦଗ୍‌ବଳୟେ
ପଶିଲେଣି ପ୍ରଭାକର ବାରୁଣି ଆଳୟେ ।
ନବ ଅନୁରାଗ ରସେ ପ୍ରଣତୀ ପାଟଳ
ଦିଶିଲାଣି ପ୍ରାଚୀ କାମିନୀ କପୋଳ ।
ମୂବର୍ଣ୍ଣେ ଚହିତ କ୍ରମେ ଅସ୍ତାଚଳେ ଧରା
ତାପତେଜ ତେଜହୀନ ହୋଇଲାଣି ଖରା ।
ସିନ୍ଦୁରେ ରଞ୍ଜିତ ଗୁଞ୍ଜ ଫଳକାନ୍ତି ଧରି
ନବବେଶେ ଅସ୍ତାଚଳେ ବସିଲେଣି ହରି ।
ପାଦପ ପର୍ଣ୍ଣରେ ପଡ ସାନ୍ଧ୍ୟ ରକ୍ତମୂର୍ତ୍ତି
ଦୂରୁ ଦିଶିଲାଣି କେଶ୍ୟା ଚନ୍ଦ୍ରିକା ଅଳୁଷ୍ଟ ।

ଅସ୍ତାତପ ନୀଳବ୍ୟୋମସ୍ଥଳେ ପ୍ରତିଫଳ
ଦିଶିଲାଣି ଜମ୍ବୁନଦ ଗଳ୍ପର ଝଳ ।
ଚଇତର ଖୁରେ ପୂତ ପରାଗ ଉଡ଼ାଇ
ଅଟବୀରୁ ଗୋଷ୍ଠମୁଖେ ଫେରିଲେଣି ଗାଈ ।
ଅସ୍ତ ଆଲୋକରେ ଦୋଳା ସେ ରେଣୁ ପଟଳ
ଉଡ୍ଡୀନ ଅମ୍ବରଶୋଭା ନେଲାଣିତ କଳ ।
ବତ୍ସତରୀ ହମ୍ବାରବ ଗାଭୀଙ୍କ ଡାକାରେ
ମୁଖର ହେଲାଣି ଗୋଷ୍ଠଭୂମି ବାରେ ବାରେ ।
ମହିଷାଳଙ୍କର ତୀବ୍ର ହୁଙ୍କାରେ ଘୂରି
ପ୍ରବଳ ଠିଙ୍କାନାଦେ ବନଦେଶ ପୂରି ।
ମହିଷୀଏ ମଣ୍ଡିଧ୍ରୁ ଉତ୍ତର ବହନ
ଧୀରେ ଧୀରେ ହୋଇଲେଣି ଗୋଷ୍ଠସମ୍ମୁଖୀନ ।
ନୀରଆହରଣ ଆଶେ ହୋଇ ଗୋଟି ଗୋଟି
ପଲ୍ଲିସୀମନ୍ତିନୀମାଳ ଘଟାଙ୍କିତ କଟୀ
ଜମିଲେଣି ଏକତ୍ରରେ ଯାଇ ବନ୍ଧଘାଟେ
ସ୍ୱରୂପ ପସରିଫେଇ ସଉନ୍ଦର୍ଯ୍ୟ ହାଟେ
ବାରଣର ନୀରପାନ ଶବ୍ଦକୁ ଜିଣି
ଶୁଭିଲାଣି ତାଙ୍କ କୁମ୍ଭ ପୂରଣର ଧ୍ୱନି ।
ବକ୍ଷ-କକ୍ଷ କଟୀଶିରେ ବହି ଘଟମାଳ
ଚଳଣେ ଅବୃତ୍ତ ହେଲ ପରି ବାମାଜାଳ ।
ଆସିଲେଣି ତୀରସ୍ଥିନେ ଦୋହଲି ଦୋହଲି
ଫଳେନତା ସଞ୍ଚାରିଣୀ ଚେଳିଲତା ଭଳି ।
ଚତୁଷ୍ପଥ ସନ୍ନିକଟେ ଶ୍ୟାମଦୂର୍ବାସନେ
ଝାଣ୍ଟି ପ୍ରଧାନକୁ ବେଢି ଗ୍ରାମବାସୀଗଣେ ।
ଦିବସର କ୍ଲାନ୍ତିଚୂର୍ଣ୍ଣ ବିନୋଦନ ଆଶେ
ହେଲେଣି ନିଯୁକ୍ତ ନାନା ହାସ ପରିହାସେ ।
ବାମତର୍ଜ୍ଜନୀରେ ମୋଦେ ଚଢ଼ାଇ ବସାଇ,
ଦକ୍ଷିଣେ ସୂଚୀକୁଟେଣି ସଧୀରେ ଘୂରାଇ ।
ନବଧୃତ ଚମ୍ପାମାନ ପତ୍ରପୁଟେ ଭରି
ପଥିକେ ପାଦପ ତାଙ୍କ କାଣ୍ଡିଆ ଉପରି ।

ପଶ୍ଚିମରେ ରଙ୍ଗବର୍ଣ୍ଣ ରବବମ୍ବ ହେଉ
(୧) ଋଷିମୂର୍କ୍ତ ଘାସିବାରୁ ଆସିଲେଣି ଫେର ।
ପାଠିଆ ଓଳିଆହ୍ୱାକେ ହଳପ୍ରେ ଭୂରତ
ନଜ ନଜ କାର୍ଯ୍ୟ ଫେର ହୋଇ ଏକହିତ ।
ଦେବା ପାଇଁ ଅବସର ତାଏସ୍ତ ଖବର
ବଦ୍ୟାଧର ଆଗେ ସର୍ବେ ହେଲେଣି ହାଜର ।
ଗୋପାଳେ କୁନ୍ଦୁରଦୂରୁଁ ଖର୍ବମୂର୍ତ୍ତି ଦେଖି
ଗାଞ୍ଚଛନ୍ଦ ତରତରେ ଧରଲେଣି ଠେକ
ଗୁଣ୍ଡୁର କପୋତ ଶଷ ପାରବାତ ସ୍ୱନ
ଏକସଙ୍ଗେ ମିଶି ପ୍ରାନ୍ତୁଁ ଶୁଭଇ ଯେସନ ।
ଗୋଦୋହନ ସମୟର ସୁମଧୁରସ୍ୱର
ଗୁହାଳ ଭୂମିକ ତେଣ୍ଡେ କଲଣି ମୁଖର ।
ସୁବସ୍ତୃତ ସଡ଼କରେ କାଠି ଚୁନଗାର
ମହା କୋଳାହଳେ ମିଳ ମାଣବକବାର ।
(୨) ଛେକଦାଣ୍ଡି ଲୁଣସ୍ତେର ଡୁଡୁଖେଳେ ମନ୍ତି
ଧାଇଁଲେଣି ଅବରତ ଆଳସ୍ୟ ବରଜ ।
ପ୍ରଭଚୀ ଅଚକ୍ତ ରଵ ଖସୁଁ ଖସୁଁ ତଳେ
କୁମାରପୂର୍ଣ୍ଣିମାଚନ୍ଦ୍ର ଉଦୟ ଅଚଳେ
ପ୍ରାଚୀଗିରଶୃଙ୍ଗ ଶ୍ରେଣୀ ମଣ୍ଡପର ଉଇଁ
ଜ୍ୟୋତ୍ସ୍ନେକେ ଦେଲେଣିତ ଧରଣୀକ ଧୋଇ
ଈଷତ ଆରକ୍ତ କରେ ବୋଲାହୋଇ ଶଶୀ
ଉଠିଲେଣି ନଭେ ଧୀରେ ସୁମଧୁରେ ହସି ।
ସୁଖାକର ସେହ ସୁଧାକରେ ଅବଗାହ
ରହିଲେଣି କଇଁବୃନ୍ଦ ପ୍ରାଣେଶଙ୍କୁ ଚାହିଁ ।
ପୁଷ୍କରଣୀ ନାଳବକ୍ଷେ ସୁଧାଧାର ପଡ଼
ଦ୍ରବରଜତରକାନ୍ତ ଦେଲଣିତ ତଡ଼ ।
ଦଗବାଳା କୁଳ ଛଡ଼ି ପାଠଳ ବସନ
ଉଜ୍ଜ୍ୱଳ ଚନ୍ଦ୍ରକା ବାସେ ମଣ୍ଡି ଅପଘନ ।

(୧) ବୃଷ ବଶେଷ । (୨) ଗ୍ରାମ୍ୟଖେଳ ବଶେଷ ।

ତରଳ ତାରକାଭୂଷା ମସ୍ତକରେ ଖଞ୍ଜି
ଚଳାପିଣ ବନତାଙ୍କ ସ୍ୱପ୍ନମାଳୁ ଗଞ୍ଜି
ହସିଲେଣି ସ୍ୱପ୍ନସ୍ଥାନେ ପ୍ରସନ୍ନ ଆନନେ
ପ୍ରକାଶି ସୌରଭଶ୍ୱାସ ମନ୍ଦୋଲ୍ଲାସ ମନେ ।
ଭାଗୀରଥୀ ଫେନପୁଞ୍ଜ ନନ୍ଦାକର ବଳେ
ବହୁଲଣି ଜ୍ୟୋତ୍ସ୍ନାସ୍ରୋତ ଦୂର ନଭଃସ୍ଥଳେ ।
ସେ କରେ ରଞ୍ଜିତ ନୀଳ ଶଇଳ ନିକର
ଭସ୍ମାବୃତ ଯୋଗୀ ପରି ଦିଶିଲେ ସୁନ୍ଦର ।
ଉଚ୍ଚ ପାଦପରୁ ସ୍ୱଚ୍ଛ ଶଶୀକର ଗଳି
ସଡେ କି ଅତଣ୍ଡ୍ରିଜାଲେ ଭରି ବନସ୍ଥଳୀ ।
ପ୍ରୟାଗେ ଯମୁନା ଗଙ୍ଗା ସଙ୍ଗମ ସୁଷମା
ଝିଙ୍କି ଆଣି ହୃଦୟରେ କରିଦେଲା ଜମା ।
ନାରୀଜନା ଉପହାର ଘେନି କୁଳାଙ୍ଗନା
ଆରମ୍ଭିଲେଣି ଆନନ୍ଦେ ଚନ୍ଦ୍ର ବନ୍ଦାପନା ।
ଶୁଭିଲଣି କର୍ଣ୍ଣ ମନମୋହୀ ହୁଳହୁଳି
ଉଚ୍ଛୁଳାଇ ସେ ଶବଦେ ନୈଶ ନଭଃସ୍ଥଳୀ ।
ଅମୃତ ପରାଏ ଢମ୍ପୁନାଦ ଘନ ଘନ
କଲଣି ଭୂମାରୋହବ ବଧି ବଞ୍ଚପନ ।
କୃଷାଣପଲ୍ଲୀରେ ଏଣେ ମର୍ଦ୍ଦଳର ତାଳେ
ଧ୍ୱନିତ ହେଲଣି ଗ୍ରିରିଦରି ଅସମ୍ଭାଳେ ।
ତାଣ୍ଡ୍ରିଆ ମହୀରୀ ପାନେ ଉତ୍‌ଫୁଲ୍ଲ ଶରୀର
ଯୁବକ ଯୁବତୀଜାଲ କୃଷାଣ ଜାଣ୍ଡର ।
ସୁଲଳିତ ମୃଦୁ ସ୍ୱରେ ଗୀତ ଗାଇ ଗାଇ
ବାଦ୍ୟ ତାଳେ ତାଳେ ସ୍ତ୍ରୀୟ ଚରଣ ଚଳାଇ ।
ନାଚଲେଣି ନବପ୍ରାଣେ ଧୀରେ ଲଙ୍ଘି ଉଠି
କେବେ ଜୋଡ଼ି ଜୋଡ଼ି ହୋଇ କେବେ ଗୋଟି ଗୋଟି
ମଧ୍ୟରେ ସାବ୍ଧୁ କିଷାଣ ତାଳ ଦେଇ ରସେ
ଦ୍ୱିଗୁଣ ଉତ୍ସାହେ ତାଙ୍କୁ ନଚ୍ଚୁଏ ରଭସେ ।
ସେହି ମର୍ଦ୍ଦଳର ତାଳେ ଦେଇ ପ୍ରଣ୍ଡତାଳ
ବାଘମାସ୍ତ୍ରି ହୁଳ ତଳେ ଢୋଳ୍ପ ଯୁବାମାଳ ।

ନବୀନା ନାଗର ମିଳ ଉଲ୍ଲାସେ ଉଚ୍ଚାଟେ
ମାତିଲେଣି ଉନ୍ମାଦକ ହଲ୍ଲୀଶକ ନାଟେ ।
ଏସ୍ତବେ ବିବିଧ ସୁଖେ ମାତି ଜନ ସର୍ବ
ଅନୁଭବୁଥାନ୍ତି ନବ ପୂର୍ଣ୍ଣିମା ଉତ୍ସବ ।
ସୁଖଆଶେ ଏକାଳରେ ବିଶ୍ୱବାସୀ ଭୋଳ
ମାତ୍ର ସୁଖ ନ ଆସଇ କାହା କରତଳ ।
ସୁଖନାମ ସନ୍ନିହିତ କେବଳ ବଚନେ
କେ ରହୁଛି ସଦା କାହିଁ ସୁଖ ଆଲିଙ୍ଗନେ ।
ଆକାଶକୁସୁମ କିମ୍ବା ମରୀଚିକାବତ
ମାନବହୃଦୟେ ସୁଖ ଭ୍ରମଇ ସତତ ।
ଧରଣାମେ ଜନମାଇ ବିଷମ ସନ୍ତାପ
ବିଦ୍ୟୁତ ପରାଏ ଉର୍ଦ୍ଧ୍ୱ ଭଜ୍‌ଅଛି ଲୋପ ।
ନ ଉପୁଜେ ସୁଖ କେବେ ବିଭବେ ସମ୍ପଦେ
ଆଧିପତ୍ୟେ, ଗଉରବେ ଅବା ଉଚ୍ଚ ପଦେ ।
ସମ୍ପଦେ ଆକାଙ୍କ୍ଷା ବଢ଼େ ଯଥା ସମ୍ପଦର
ପଦରେ ଲାଲସା ତେତେ ବଢ଼ାଏ ପଦର ।
କ୍ଷଣିକ ତୃପ୍ତିସାଧକ ସିନା ଖାଇ ତାହା
ସେଥିରୁ ନ ମିଳେ କେବେ ଚିର ସୁଖସ୍ପୃହା ।
ସମସ୍ତଜଗତ:ଜିଣି (୧) ସିକନ୍ଦାର ବୀର
ଗଲାବେଳେ ତେଜିଥିଲେ ନୟନରୁ ନୀର ।
ଏଥିରୁ କି ସହଜରେ ପଡ଼ୁନାହିଁ ଜଣା
କାହା ଭାଗ୍ୟେ ଚିର ନୁହେଁ ସୁଖରସାଧନା ।
ତଥାପି ସେ ସୁଖଲାଗି ସଦାବେଳେ ନରେ
ଲୋଡନ୍ତି ବିବିଧ ଚିନ୍ତାମାନ ଅକାତରେ ।
ଦ୍ରବ୍ୟ କାରୁକାର୍ଯ୍ୟମୟ ବିଚିତ୍ର ପଲଙ୍କେ
ପହୁଡ଼ କୋମଳନବ ତୁଳିକାର ଅଙ୍କେ ।
ଜଡ଼ାଇ ଶରୀରେ ରମ୍ୟ ରେଶମ ଖଦର
ଚିରସୁଖ ଲୋଡ଼ି କେବା କାଟନ୍ତି ବାସର ।

(୧) ଅଲେକଜାଣ୍ଡର ।

ସନାତନ ଜଡ଼ାଗ୍ରଣି ତଇଲ ଦରଜ
ବୈଦେଶିକ ଢେଲ ଖୋଜ ବଞ୍ଚପନେ ମଛି ।
ବିଳାସ ବାସନା ଯେତେ ଚରିତାର୍ଥ ପାଇଁ
କଏବା ଘସନ୍ତି ନଣ୍ଡ ସୁଖମୁଖ ବୃଦ୍ଧି ।
ସେଥିରେ ନ ଯାଏ ସ୍ୱଇ ସୁଖସ୍ପୃହା ସ୍ୱଚ୍ଛ
ଦ୍ୱିଗୁଣେ ବିଳାସବାଞ୍ଛା ହୃଦେ ହୁଏ ମାଛ ।
ଛାଡ଼ି ପୂର୍ବ ପୁରୁଷଙ୍କ ସରଳ ସରଣି
କେତେ ସହୁଁ ତହୁଁ କଣି କଦର୍ଯ୍ୟ ସାଧନ ।
ମଳ ଛଡ଼ାଇବା ପାଇଁ ଘଷନ୍ତି ଯେଣ୍ଡକ
ଦେହରେ ଲୁଣ୍ଡିଆକାହୁ ହୁଅଇ ତେଣ୍ଡକ
ନାନାବିଧ ଜୀବଙ୍କର ବସାରେ ତସ୍ୱାର
ତହିଁରେ ହୋଇବ କିଆଁ ତନୁ ପରିଷ୍କାର ।
ସୁଖ ଲେଶ କେବା ଖ୍ୱପି ଆମୋଦର ସ୍ରୋତେ
ଫଶନ୍ତି ମଦଘୂର୍ଣ୍ଣବେ ଉତ୍ସାହ ବୋଇତେ ।
ସହଚରଗଣସହ ମହାକୋଳାହଳେ
ପୁରନ୍ତି ଦଗନ୍ତ୍ରଗୀତ ଧ୍ୱନିନ ଗହଳେ ।
ସମୁଚ୍ଛ୍ୱଠ ଅଭନୟେ ମନୁଷ୍ୟ ତା ନାଶି
ଲଗାନ୍ତି ଅଙ୍କଡାବଶେ ସ୍ୱଚରଣେ ଫାଶି ।
ନିନ୍ଦା ଅପବାଦ ବାତ୍ୟା ବହୁ ଅହରହ
ସୃଜଇ ଉଦ୍ୱେଳ ତୁଙ୍ଗ ତରଙ୍ଗନିବହ ।
ଆମୋଦ ତଶ୍ୱରୁ ବାଟେ ଶୁଷ୍କପତ୍ରବତ
ଚଳେନେଁ କଣ୍ଠଡ଼ ଫିଙ୍ଗି ଷଣେ ଇତସ୍ତତଃ ।
ନ ମିଳେ ଅଳ୍ପିଷ୍ଟ ସୁଖ ସେହୁ ଦୁରାଶାର
ଅର୍ଥନାଶ ମନସ୍ତାପ ହୁଏ ମାତ୍ର ସାର ।
ସୁଖ ଖୋଜି ଖୋଜି ଲଭେ କେଉଁ ମୂଢ଼ଜନ
ମଦତ ମିଠାରେ କେବେ ନବେଶନ୍ତି ମନ ।
ଅନୁଫେନ ଧପେ ରକ୍ତ ଶୁଷ୍କ ପାଣ୍ଡୁଗଣ୍ଡ
ମଦା ଗଛ ସମଶୀର୍ଣ୍ଣ କ୍ଷୀଣଦେହ ଖଣ୍ଡ ।
ଅଣନ ଲୁହର ରୂପୀ ଚୋଠର ଉତରେ
ଡାଳାଇ ଖାଇସ୍ତଭୋଲା ବେଣ ସଙ୍କୋଚରେ ।

କୁକର୍ମର ଯଶଃପଠ ସମ ସ୍ଥଳଦେଶେ
ଲେଖାଇ ଦୁଷ୍କୃତ ବର୍ଣ୍ଣାବଳୀକି ବଶେଷେ ।
ସଞ୍ଚେଳି ମଦ୍ଧି ସେହୁ ଆମୋଦ ଉତ୍ସବେ
ଫୁଲାରେ ଉଡ଼ାଇଲେ ହେ ମନୀଷୀ ମାନବେ ।
ମିଳଇ କି କେତେବେଳେ ତହିଁ ଚିରସୁଖ
ଅକାଳବାର୍ଦ୍ଧକ୍ୟ ଆସି ଦଏ ନାନା ଦୁଃଖ ।
ସୁଖ ଆକିଞ୍ଚନ ଅଣେ କେହୁ ଏ ଭୁବନେ
ମନ ନବେଶନ୍ତି ସଦା ଧନ ଉପାର୍ଜ୍ଜନେ ।
ଭୋଗେ ନ ଲଗାଇ ଧର୍ମେ ନ କରି ସୁବ୍ୟୟ
ସଞ୍ଚନ୍ତି ଏକାନ୍ତେ ନିତ୍ୟ ସେ ବିତ୍ତ ନିଚୟ ।
କେବଳ ଧନ ଦର୍ଶନେ ପୁରଇ ହୃଦୟ
ଜଗତକୁ ଦେଖନ୍ତି ଏକା ଧନମୟ ।
ଧନ ଏକା ପିତାମାତା ଧନ ବନ୍ଧୁଜନ
ଧନଚିନ୍ତା ବିନା ଅନ୍ୟ ନାହିଁ ତାଙ୍କ ମନ
ଈଶଙ୍କ ବଦଳେ ମନ୍ତ୍ର ଧନ ଉପାସନା
ଦିନରାତ୍ର ସଦାବେଳେ ସମ୍ପତ୍ତି ଭାବନା ।
ଏ ଭାବେ ଧନକୁ ଭାବି ହୁଅନ୍ତି କି ସୁଖୀ
ଆଉ ଧନ ବୃଦ୍ଧି ପାଇଁ ନିରତ ସେ ଦୁଃଖୀ
ପିଣ୍ଡେ ପ୍ରାଣ ଥିବାଯାଏ ଧନ ଲେଉଡ଼ ଲେଉଡ଼
ମରନ୍ତି ସେ ଅନ୍ୟ ଯେତେ ସୁକର୍ମକୁ ଛାଡ଼ ।
ଯାଆନ୍ତି ଏ ଭବୁଁ ଯେବେ ପାପଭାର ନେଇ
ପ୍ରାଣୁଁ ପ୍ରିୟ ସେ ସମ୍ପତ୍ତି ଦାୟାଦଙ୍କୁ ଦେଇ ।
ଧନାଭାବେ ଅଶିକ୍ଷିତ ସେମାନଙ୍କ ହସ୍ତେ
ପଡ଼ି ସେ ଦୁଷ୍କୃତ ବିତ୍ତ ଘୂରେ ଅନାୟତ୍ତେ ।
ଅନ୍ଧଫେନ ବିଜୟାରେ କେତେ ଅପାନରେ
କେତେ ବେଶ୍ୟାଳୟେ କେତେ ଯାଏ ଶୁଣ୍ଡିଘରେ
ଏହି ତ ଗଣ୍ଠିଧନର ଶେଷ ପରିଣାମ
ରହିବ ସୁଖର କାହିଁ ଛଳେ ଏଥି ନାମ ।
କେବଳ ଧର୍ମଟି ଭାଇ ସୁଖର ସହାୟ
ତା ଛଡ଼ା ସୁଖର ନାହିଁ ଦ୍ୱିତୀୟ ଉପାୟ ।

ଶାରୀରିକ ମାନସିକ ଆତ୍ମିକ ଉପରେ
ମାନବର ମାନବତ୍ୱ ନିର୍ଭର କରେ ।
ତାର ଚରିତାର୍ଥ ଏକା ମାନବର ସୁଖ,
ଅପର ସୁଖର ଶେଷେ ଉପୁଜଇ ଦୁଃଖ ।
ଯା ଯୋଗେ ଯେ ବୃତ୍ତିମାନ ଚରିତାର୍ଥ ହୁଏ
ମାନବର ଧର୍ମ ସେହି ନିଶ୍ଚି ବୋଲୁଏ ।
ଏଣୁ ଧର୍ମଶୂନ୍ୟ ସୁଖ ନୁହେ ଚିରସ୍ଥାୟୀ
ଦର୍ପଣ ଫଳକେ ଯଥା ଆପଣାର ଛାଇ ।
ମିହିରଙ୍କ ଚରମିକ ଖଡରଶ୍ମିଙ୍କର
ଅଠୁ ହିନ୍ଦୁ ସୁନାମୁଣ୍ଡା ପଞ୍ଚସହଚର ।
ସୁସ୍ୱରେ ସଜ୍ଜିତ ହିନ୍ଦୁ ନାଟ୍ୟଶାଳା ପରି
ଉଠୁଥାଏ ଶୃଙ୍ଗମଞ୍ଜୁ ସଙ୍ଗୀତଲହରୀ ।
କରେ ସେହି ନୃତ୍ୟରସ ଚିତ୍ତବିନୋଦନ
ଘନ ଘନ ଶୁଭୁଥାଏ ତୌର୍ଯ୍ୟତ୍ରିକ ସ୍ୱନ ।
ନିଖିଳ ମାନବ ତନ୍ତ୍ର ଜଗତଗୌରବ
ତପନ ଦେବଙ୍କ ମହା ପରିଣୟୋତ୍ସବ ।
ବିମଳ କମଳଙ୍କରେ ନଳିନୀ ସହିତ
ନବ ନବ ଭାବେ ନିତ୍ୟ ହୁଏ ଅଭିନୀତ ।
ହାସ୍ୟ ଲୀଳାମୟୀ ଉଷା ଉଦୟ ଅଚଳେ
ପ୍ରବେଶି ଉଜ୍ଜ୍ୱଳ ସ୍ୱର୍ଣ୍ଣ କରେ ଲୁଚୁହଳେ ।
ରମ୍ୟଯବନିକା ତୋଳି ହସ ହସ ମୁଖେ
ସୂତ୍ରଧର ରୂପେ ଯେବେ ଅବତରେ ସୁଖେ ।
ରକ୍ତଜବାଦାର ପଟ୍ଟସଦନ ଆବୃତ
ଦିଗ୍‌ବଳୟ ସୀମାପାରେ ଅସ୍ପଷ୍ଟ ମୂରତି ।
ମାଲ୍ୟଗିରି (୧) ଶିଖରରୁ ବରବେଶ ଧରି
ବାହାରନ୍ତି ହେମମୟଚୂଡ଼ାଭୂଷି ହରି ।
ମଞ୍ଜୁଳ ମିହିରବିମ୍ବ ହେରି ହୁଏ ପ୍ରତେ
ନବାନୁରାଗିଣୀ ପ୍ରାଚୀ ସୀମନ୍ତିନୀ ସତେ ।

(୧) ଦୂରରୁ ମାଲ୍ୟଗିରିର ପଶ୍ଚିମ ଦୃଶ୍ୟ ଛବି ଦେଖାଯାଏ ।

ଫିଟିଥିଲା କ୍ରୀଡ଼ାମୋଦେ ଅବର ଗୋଲକ
ତା ପୁରରେ ସ୍ୱଲପଠ ଦଶୁଛି କି ଭଲ ?
ଫଳଇ ଧବଳକଣ୍ଠ ଡାହୁକ ଡାହୁକୀ
ଶ୍ୟାମଳ ସୁନ୍ଦର ସ୍ଥଳେ ଲଳଟିକା ଯୋଣି ।
ବ୍ରତତ ନକୁଞ୍ଜେ ଲୁଚ ରଙ୍ଗେ ଫେର୍ ଫେର୍
ବଜାନ୍ତ ଅନନ୍ଦେ କର୍ଣ୍ଣରସାୟନ ଭେରୀ ।
ବାଲନଣାମଣି ବଙ୍କ ଗ୍ରୀବା ଧୀରେ ଟୁଳ
ସନ୍ତର ସନ୍ତର ମୋଦେ ମରାଳ ମରାଳୀ ।
ଉଡ଼ିଲ ପଶ୍ୱଏ ଉଠି ପକ୍ଷ ବେନ ବାନ୍ଧି
ସେ କେଣାର ତାଡ଼ନରେ ନୀରକଣା ଛାନ୍ଦି ।
ସ୍ପର୍ଶ ସୁଖକର ପ୍ରାତଃ ସମୀର ସହିତ
କଳନାଦେ ଯୋଗ ଦେଇ ବହନ୍ତ ସଙ୍ଗୀତ ।
ହଲଇ ହଲଇ ପୁଚ୍ଛ ମାନସମୋହନ
କେଣାଗୁଳ ଧୀରେ ଧୀରେ ନାଚଇ ଖଞ୍ଜନ
ମକରନ୍ଦ ଗନ୍ଧପୂର୍ଣ୍ଣ ପୁଷ୍ପ ବିମ୍ବାଧରେ
ସ୍ୱକୀୟ ଅଧର ଧୋଇ ବସିକ ଭ୍ରମରେ ।
ବଜାନ୍ତି ଏ ମହୋତ୍ସବ ଆମୋଦରେ ରସି
କମ୍ବୁବର ଘନ ଘନ ବୃନ୍ତାସନେ ବସି ।
ଲତାଦୋଳ ରଚ ତହିଁ ସୁଖେ ଝୁଲି ଝୁଲି
ଟସରକଠା ବହଙ୍ଗ ଦଏ ହୁଳହୁଳ ।
ଯଜ୍ଞନଳ ଜଳେ ରବବିମ୍ବ ରଙ୍ଗମୟ
ପୁରୋହିତ ବେଶେ ବସି ବକ ମହାଶୟ ।
ବସ୍ତବସୁଙ୍କର କର କମଳିନୀ କରେ
ଯୋଖିଦଏ ଅଳରୂପ କୌତୁକ ସୂତ୍ରରେ ।
ଅକ୍ଷୟ ଅନନ୍ତକୀର୍ତ୍ତି ବିଶ୍ୱ ପରିତ୍ରାତା
ମିହିରଙ୍କ ମହିୟାନ ମହା ଯଶୋଗାଥା ।
ସାକ୍ଷୀ ହବେ ସମୀରଣ ସପ୍ରେକ୍ଷିଣୀ କଣ୍ଠେ
ମୃଦୁ ମୃଦୁ ଗୀତେ ବ୍ୟାଖ୍ୟା କର ବର୍ଣ୍ଣେ ବର୍ଣ୍ଣେ ।
ନବ ପ୍ରେମାନୁରାଗିଣୀ ଅପ୍ସୋକ୍ଷିନୀ ମନ
କ୍ରୀଡ଼ା ଭାଟେଲମା ସଙ୍ଗେ ରଞ୍ଜାଏ ତକ୍ଷଣ ।

ନୈସର୍ଗିକ ଭବାନ୍ଧର ମିଳନେ ଉଭୟ
ଆସ୍ଥ ଏକତ୍ରରେ ମିଶି ହୃଦଅଙ୍କ ତନୟ ।
ନବୋଦ୍ଗତ ଅଦ୍ୱିତ୍ୟଙ୍କ ଗ୍ରଗପାଠଲିମା
ପଙ୍କଜିନୀ ଦେହେ ଫଳ ପ୍ରକାଶେ ମହିମା ।
ନଳିନୀର ନାଥରକ୍ତ ବକ୍ଷ ବକ୍ଷକର
ସହି ସମ୍ମିଳିତ ହୋଇ ମହାମିଳନର ।
ଚିରବନ୍ଦନୀୟ ଠେକି ପ୍ରକାଶେ ବିଶ୍ୱରେ
ଶିକ୍ଷା ଦେଇ ସଦା ନର ଅମର ନିକରେ ।
କାହିଁ ଭୁଲ ହେବ କହ ଏ ମିଳନ ସହ
ସ୍ୱାର୍ଥ ହିଂସା ଦ୍ୱେଷପୂର୍ଣ୍ଣ ଲୌକିକ ଭବାହ ।
ପାଉଁରୁଟି ସନ୍ଦେଶର ପ୍ରଭେଦ ଯେତକ
ଏହି ଦୁଇ ମିଳନର ଦୂରତା ତେତକ ।
ସୁନାମୁଣ୍ଡା ! ସ୍ୱଭାବେ ତୁ ସୌନ୍ଦର୍ଯ୍ୟ ଭଣ୍ଡାର
ଲଭିଛୁ ନିସର୍ଗଦତ୍ତ ଦିବ୍ୟ ଉପହାର ।
ଐଶ୍ୱର୍ଯ୍ୟଶାଳୀନୀ ଧନ୍ୟା ଧନୀକନ୍ୟା ପ୍ରାୟେ
ନାନା ଆଭରଣେ ତୋର ଅଙ୍ଗ ଶୋଭାପାଏ
ନବ ତୃଣାଙ୍କୁରମାଳ ହରିଣ୍ମୟ କାନ୍ତ
ଜନ୍ମାଇ ରସିକ ଘନ ଶୋଭା ପକ୍ଷପାତ ।
ସଜାଏ ସୁନ୍ଦର ତନୁ ଅତି ଯତନରେ
ପ୍ରେମିକ ନାଗର ଯଥା ପ୍ରିୟାକୁ ଆଦରେ ।
କର୍ପୂରର କମନୀୟ ହାରାବଳୀସମ
ତୋ କଣ୍ଠେ ଲମ୍ବାଇ ହଂସମାଳା ମନୋରମ ।
ନୀରଦ ଗର୍ଜ୍ଜନଛଳେ କରେ କି ବ୍ୟକତ
ଅବ୍ୟକ୍ତ ମଧୁରତାର ପ୍ରେମମନ୍ତ୍ର ତତ୍ତ୍ୱ ।
ଉତ୍କଣ୍ଠେ ସେ ଗିର ଶୁଣି ତୃଣସ୍ଥ ଗଦ୍‌ଗଦେ
ଉଲ୍ଲାସେ ଶିଳୀନ୍ଧ୍ରବ୍ରଜ ଛଳେ ହସୁ ମୋଦେ ।
ନଆଳୀ ଯୂଥିକା ମଲ୍ଲୀ ମାଧବୀ କେଶ୍ୱର
କୁଟଜ ଅର୍ଜ୍ଜୁନ ଯାଇ ଚମ୍ପା କଣିଅର ।
ଆଦି ସୁବାସିତ ଫୁଲ ମଞ୍ଜୁ ଆଭରଣ
କୁସୁମିତ ବନସ୍ଥଳୀ ଦିଏ ଅନୁକ୍ଷଣ ।

ପ୍ରସାଧିକାବତ ତୋର ପ୍ରସାଧନ ଲାଗି
ସୌନ୍ଦର୍ଯ୍ୟ ସେବାରେ କିଏ ହୁଏ ଅନୁରାଗୀ
କର୍କଶ କର୍ଷଣଯୋଗେ ବହୁ ଦୁଃଖ ପାଇ
ଉର୍ବର କେଦାର ତୋର ଉପଭୋଗ ପାଇ ।
ସବୁ ଗଜମୋତି କାନ୍ତି ସମୁଜ୍ଜ୍ୱଳ
କୃଷ୍ଣକାନ୍ତ ମୁଗ ବ୍ରୀହି ବିମଣ୍ଡିତା ସ୍ଥଳ ।
ଉପୁଜାଇ ଖଟିଛନ୍ତ ଖଠଣୀରେ ତୋର
ପ୍ରଭୁ କାର୍ଯ୍ୟ ହେଲା କେବେ କରେ କି ସ୍ୱୀକାର ।
ଅନ୍ତରୀକ୍ଷ ସୀମାସ୍ପର୍ଶୀ ଲଘୁ କଳେବର ।
ତରୁଣଅରୁଣ ସମ ଫୁଲେ ମନୋହର
ଶାଲ୍ମଳୀ ପାଦପସହ କାର୍ପାସ ତରୁଲ
ବଢ଼ାଉନ୍ତି ନିତ୍ୟ ତୋର ତୂଳ ପାଇଁ ତୂଳା ।
ଘର୍ଷଣ ଦର୍ଶନ ଭୟେ ଅନ୍ଧାର ଗହ୍ୱରେ
ଜ୍ୱଳନ୍ତ ଅନଳ ହେଲା ଅବଲମ୍ବ କରେ ।
ନଶ୍ୱର (୧) ମଞ୍ଚାରେ ତରୁ ଶାଖା ଆଲମ୍ବନେ
ସଞ୍ଚିତ ମଧୁରମଧୁ ତୋର ଆସ୍ୱାଦନେ ।
ଧୂପ ପାଇଁ ଦେଉଅଛି ଶାଳତରୁ କ୍ଷୀର
ଯୋଗାଏ କୁକୁଠଖାଇ ଭୂଧର ଖଦିର ।
ବଢ଼ଉଛି ସ୍ୱର୍ଣ୍ଣବର୍ଣ୍ଣ ପାନ (୨) ମାଦଳିଆ
(୩) ବାଘଦନ୍ତା ଚିନେ ଓସ୍ତୁ କରଇ ଲାଲିଆ ।
ଫଳେ ପୂର୍ଣ୍ଣ ଉପବନ ଗୁଆ ମରିଚ
ଲବଙ୍ଗ ପାନମହୁରି ପୁଣି ଅଳାଇଚ ।
ମନୋଜ୍ଞ କମଳାଲେମ୍ବୁ ସ୍ୱାଦୁ ଚୂତଫଳ
ପଣସ ବଦରୀ ଜମ୍ବୁ କପିତ୍ଥ ଶ୍ରୀଫଳ ।
ଆଉ ନାନା ଫଳଭରେ ମନାଏ ତୋ ମନ
ଯଥାକାଳେ ଫଳେ ନତ ରମ୍ୟ ଉପବନ ।

---

(୧) ସାଙ୍ଗଠନ ସବାର୍ଯ୍ୟ ଜାତ । ଏମାନେ ମଧୁସଞ୍ଚୟ କରି ଜୀବନଯାପନ କରନ୍ତି ।
(୨) ସୁବାମୂଣ୍ଡାର ପଡ଼ ବୃହତ ବଟୀ ।
(୩) ସମ୍ଭ ବିଶେଷ ଏଠାରେ ବିଶେଷ ପରିମାଣରେ ଚିକପଥର ମିଳେ ।

ଶୀତ'ନିବାରକ ଘନ ପତ୍ର ଆଚ୍ଛାଦନୀ
ସାର୍ଦ୍ଧ ମଧୁବନ ତୋଠା ତଳ ନିବାସିନୀ ।
ପୁଷ୍ପଳ ମହୁଶୀପଲ ସିନା ନିରବଧି
ପ୍ରଦାନନ୍ତି ସୁବିମଳ ସୁଖସେବ୍ୟ ଦଧି ।
କୁନ୍ଦେନ୍ଦୁ ତୁଷାର ଗୌର ଲବଣୀ ବହୁଳ
ନାରିକେଳ ଶସସମ ଦଣେ ଯା ମଞ୍ଜୁଳ ।
ନିବେଦନ୍ତି ପୁଣି ତୋତେ ଶଲେ ନୋହୁ କ୍ଷୁବ୍ଧ
ଶାରଦ କୌମୁଦୀ ନିନ୍ଦ ସୁବିମଳ ଦୁଗ୍ଧ ।
ଧବଳ ବିଶାଳ କାୟା ପୟୋଧାର ସ୍ରାବୀ
ବହୁଦୂର ଦେଶାଗତ ଶାନ୍ତଶିଷ୍ଟ ଗାଈ ।
ଆଣାଥିଲ ସୁନାମୁଣ୍ଡା ! ତୋ ଶାନ୍ତ ଆଲୟେ
ନିତ୍ୟ କଣ୍ଠାଭିଦ କାଳ ବାଗ୍‌ଦେବୀ ଆଶ୍ରୟେ
ଗତବିଂଶ ଶତାବ୍ଦୀର ପ୍ରବଳ ପ୍ରଳୟ
ସମର ଜ୍ୱରରୂପରେ ହୋଇଲା ଉଦୟ ।
ସେ ପାପ ପ୍ରଳୟବାତ ହୁହୁରବେ ଧାଇଁ
ବହୁନର-ମସ୍ତିଷ୍କ କଲା ଧ୍ୱଂସଶାୟୀ ।
ସ୍ୱର୍ଗୀୟ ସୌନ୍ଦର୍ଯ୍ୟେ ଭରା ଚିଦାନନ୍ଦମୟ
ପିଇଲା ମୃଦୁଳତର ଶିଶୁପ୍ରାଣ-ପୟ ।
ଧର୍ମପରାୟଣା କେତେ ଲଳନା ଲଲାମ
ଚିରଦିନ ପାଇଁ ତହିଁ ଲଭିଲେ ବିଶ୍ରାମ ।
ପ୍ରହରୀ ପୁଣ୍ଡରୀକ କାରାଗାରେ ପଶି
ହତଭାଗା ବନ୍ଦୀକୁଳେ ଦେଲା ସେ ଧରଷି ।
ଦୁର୍ଲଂଘ୍ୟ ଭୂଧର ଲଘି ଉଚ୍ଚଶୃଙ୍ଗେ ଉଠି
ଛଦ୍ମ କୁଠୀରରେ ପଶି ପ୍ରାଣ ନେଲା ଲୁଟି ।
ଶିଳକଳା ବିମଣ୍ଡିତ ଯୋଜନ ବିସ୍ତାର
ଦୁର୍ଲ୍ଲଭ ମାଣିକ୍ୟ ମଣିମାଳେ ମନୋହର ।
ଦ୍ୱାରପାଳେ ସୁରକ୍ଷିତ ପାରିଷଦ ଜାଳେ
ବେଷ୍ଟିତ ଜନଗହଳେ ପୂର୍ଣ୍ଣ ସଦାକାଳେ ।
ବିଳାସ ଉପକରଣେ ଆଦରେ ସଜ୍ଜିତ
ସୁରମ୍ୟ ପ୍ରାସାଦଚୟେ ପ୍ରବେଶି ହୁରତ ।

ତହୁଁ ବହୁମୂଲ୍ୟ ଆସ୍ଥ-ଧନକୁ ନେଇଣ
ଫସାରେ ତା ଘୋର ଆଧିପତ୍ୟ ପ୍ରକଟାଇ ;
ବସ୍ତ ଦବ୍ୟଶଙ୍କରଙ୍କୁ ହରିଲା ଅକାଳେ
ଭସାଇ ଏ ରାଜ୍ୟ ପ୍ରଜାବ୍ରଜେ ଖେଦଜାଳେ ।
କାନ୍ଦିଲେ ବାମଣ୍ଡାବାସୀ ହାହାକାର ରବେ
କାନ୍ଦିଲେ ଅଥୟ ଦୁଃଖେ ଆତ୍ମୀୟ ସରବେ ।
ମୁଞ୍ଚିଲେ ମାହାର ଅଶ୍ରୁ ତରୁଲତାଗଣେ
ରଚିଲା ପ୍ରଧାନପାଠ ବିଷାଦ ବନ୍ଦନେ ।
ସଦା ଧର୍ମକର୍ମେ ମତ୍ତ ପ୍ରିୟ ସତ୍ୟବାକ୍
ପ୍ରଜାହିତ କାମନାରେ ଚିନ୍ତିତ ନିରତ ।
ଅକାତର ବିତରଣେ କ୍ଷୁଧାତୁର ଜନେ
ଯାହାଙ୍କ କୋମଳ ପ୍ରାଣ ବ୍ୟସ୍ତ ଅନୁକ୍ଷଣେ ।
ଶାନ୍ତିର ଆଧାର ଚିର ପ୍ରଶାନ୍ତ ସ୍ୱଭାବ
ନ ଥିଲା ତ ହୃଦୟରେ ଦମ୍ଭ କୁଭାବ ।
ଯୌବନ ଗାମ୍ଭୀର୍ଯ୍ୟବପୁ ମନ ଅତି ଉଚ୍ଚ
ଫୁଟି ଉଠୁଥିଲା ତହିଁ ସୌଜନ୍ୟତା ଉଚ୍ଚ ।
ଅଳକାଳ ରାଜଛତ୍ର ଉଡ଼ିଲେହେଁ ଶିରେ
ଶୋଭୁଥିଲା ବିଶେଷରେ ବିମଳ ଜ୍ୟୋତିରେ ।
ସେ ମୂର୍ତ୍ତିକୁ ଅକାଳରେ କାଳନେଉ କାଢ଼ି
ଆସିଲା ଦୁଃଖଦ ଘୋର ଅମାନିଶା ମାଡ଼ି ।
ଭକ୍ତଙ୍କର ମସୀମୟୀ ବିଷାଦ ମଳିନ
ମହାର୍ଘ ବିଷ୍ଣୁବସ୍ତ୍ରୀ ହେଲା ସନ୍ଧ୍ୟାଶୀନ ।
ଘୋର ଅଧୀନତା ଛାୟା ସହଜେ ଚହଟି
ସବଳେ ହୃଦୟସଦ୍ମେ ପ୍ରବେଶିଲା ହଠି ।
କାହିଁ ଅହମିକା ବାସ୍ପ ବହୁ ସନସନେ
ମଳମ୍ବା ଗ୍ରବକୁ ତାର ପ୍ରକାଶିଲା କ୍ଷଣେ ।
କେହୁ ଆତ୍ମ ପ୍ରଶଂସାର ତମିସ୍ରଆବଳୀ
ସତ୍ୟ ସରସ୍ୱତୀଙ୍କର ବଦନରେ ବୋଳି ।
ହାମ୍‌ବଡ଼ା ମୃଦଙ୍ଗ ନିଜ ଅଭିମାନ ତାଳେ
ଯପିଲେ ଧପଟି ଦମ୍ଭେ ବଜାଇଁ ଏକାଳେ ।

ମହାଆତ୍ମୀୟତା ଫେରି ଏ ମହା ସଙ୍କଟେ
ଆଖ ପାଖ ହେଲେ ସ୍ପଷ୍ଟ ଚକ୍ଷୁନେ ଅକଟେ ।
ଈର୍ଷା ଶଗ୍ୟସନେ କେନ୍ଦ୍ର ହିଂସା-ଶରଯୋଗି
ସନ୍ଧଲେ ସ୍ୱବଳେ ପ୍ରଚଣ୍ଡ ବକ୍ଷ ଲକ୍ଷି ।
କେବା ଉଚ ପଣମାନ ଲାଗି ହେଲା ରଙ୍କା
କେ ଇଚ୍ଛିଲେ କି ଉପାୟେ ମାର ନେବେ ଠଙ୍କା ।
ଏ ଅଳୀକ ବାଜାଖେଳା ବଳେଇ କେ ଅବା
ବାପାଦେ ଲେଉଡ ଧୋଛି ଖେଦେହେଲେ କାବା ।
ଲଗିଲା ଏମନ୍ତ ଲୀଳା ନୃପ ଶୂନ୍ୟପୁରେ
ବୁଝି କେତେକାଳ ମୁଁ ସେ ଅଶାନ୍ତ ସିନ୍ଧୁରେ ।
ଦୁର୍ନିବାର ବାତ୍ୟାବେଗେ ଉତ୍ପଳେ ଉଦ୍ଭିତ
ସେ ସିନ୍ଧୁ ତରଙ୍ଗାଘାତେ ହୋଇ ସମୁତ୍କ୍ଷିପ୍ତ ।
ସୁନାମୁଣ୍ଡା ! ଆଶ୍ରେ ଏବେ ତୋ ଶାନ୍ତ ଭବନ
ସ୍ୱଚ୍ଛ କାଟିବି ସୁଖେ ଅନ୍ତିମ ଜୀବନ ।
ବର୍ଣ୍ଣିବାକୁ କେତେ କଥା ମନେ ଥିଲା ଗଣି
ମାତ୍ର ପ୍ରଚ୍ଛନ୍ନେ ଛନ୍ଦ ହୁଅଇ ଲେଖନୀ
ଦୂର ଭବିଷ୍ୟତେ ନଷ୍ଟେ ବାଗ୍‌ଦେବୀ କୃପାରେ
କେଉଁ ଭାଗ୍ୟବାନ କବି ଲୋଡିବ ଆଶାରେ ।
ବଡାଇ ଲେଖନୀ ଲିପି ଏ ସଙ୍ଗୀତ ଗାଇ
ହେବ ଭାଗ୍ୟବାନତର ସ୍ୱବାଞ୍ଛା ପୂରାଇ ।
ମଧୁମୟ ଉଷାକାଳେ ମଧୁ ସମୀରଣେ
ବିହଙ୍ଗମ ମଧୁସ୍ୱରେ ସୁମଧୁର ମନେ ।
ମଧୁର ମିଠାରି ଲେକେ, ମଧୁ ମଧୁମାସେ
ମଧୁନିସ୍ୟନ୍ଦନୀ ମୃଦୁ କମଳିନୀ ହାସେ
ମଧୁର ସଳଳାସ୍ୱାଦୁ ଖଣ୍ଡାଧୁଆ ତଟେ
ମଧୁମୟୀ ତୋର ଛବି ଆଙ୍କି ହୃଦପଟେ
ସୁନାମୁଣ୍ଡା ଚନ୍ଦ୍ର ମୋର ଚିର ପ୍ରାଣବନ୍ଧୁ
ସମାପ୍ତ କଲି ଏ ଗୀତ ମଧୁ ମଧୁ ମଧୁ ।

---

ମଧୁ ବସନ୍ତକାଳୀନ ମଧୁ ପରି ମଧୁର, ବସନ୍ତ ସମୟରେ ନାନା ସୁବାସିତ ପୁଷ୍ପ ଫୁଟେ, ଏଣୁ ସେକାଳର ମଧୁ ଅତ୍ୟନ୍ତ ସ୍ୱାଦୁ ହୁଏ ।

# ସ୍ନେହାଞ୍ଜଳି

ପ୍ରବେଶି ତ୍ରିଦଶାଳୟେ ଧନଞ୍ଜୟ ଯଥା
ଦ୍ୱାପରେ ବିବିଧ ବିଦ୍ୟା ଶିକ୍ଷି ମହାୟାସେ
ଉତ୍କଳଲେ ସ୍ୱଦେଶକୁ ତେସନ ଯେ ସୁଧୀ
ସୁଦୂର ବିଦେଶେ ପଶି ଅଦ୍ୟମ ଉତ୍ସାହେ
ନବ ନବ ଗୁଣରତ୍ନେ ରଞ୍ଜି ବରତନୁ
ମଣ୍ଡି ମହାମହୋତ୍କଳ ଯଶଃର ମୁକୁଟ
ମସ୍ତକେ ବିଜୟୀ ବୀର ସମାନ ଲେଉଟି
କରିଛନ୍ତି ସ୍ୱଦେଶକୁ ସୁଅନୁପ୍ରାଣିତ ।
ଦୟା ଦାକ୍ଷିଣ୍ୟାଦି ଯାଙ୍କ ସଦ୍‌ଗୁଣାବଳରେ
ଗୌରବିଣୀ ମାତୃଭୂମି, କୋଟି ନୟନରେ
ଭାଗ୍ୟଧର ହେବାକୁ ସେ ନବ ଉତ୍କଳର
ଧ୍ରଠୀଶ କେଶରୀ କୃପା ରହୁଛି ଅନାଇଁ ।
ଭଞ୍ଜ କଞ୍ଜ କରମାଳୀ ସେ କନିକା ଭୂପ
ଶ୍ରୀ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କର
ସ୍ୱାଦୁ ସୁଧା ନିସ୍ୟନ୍ଦିନୀ ଅକୃତ୍ରିମ ସ୍ନେହ
ସଯତନେ ସ୍ମୃତିପଥେ ରଖି ଗ୍ରନ୍ଥକାର
ଉତ୍ସର୍ଗିଲା ପ୍ରୀତମନେ ଏ କ୍ଷୁଦ୍ର ଗୀତିକା ।

# ଜ୍ୟୋତ୍ସ୍ନା

## କୌଣସି ଆଲେଖ୍ୟ ପ୍ରତି *

କିଏ ଏହି ସୁରୁନେତ୍ରା ? କର କମଳରେ
କିଶଳୟ ମୃଦୁ-କାନ୍ତି ଶିଶୁଟିଏ ଧରି
ବଢ଼ାଇ ଦେଉଛି ଆଗେ, ରକ୍ତ ଶତଦଳେ
ଧୂଆ ହୋଇଅଛି କରେ କେତକୀ ପାଖୁଡ଼ା ।
କାଳ ଭୁଜଙ୍ଗିନୀ ପରି ପୃଷ୍ଠେ ସୁକେଶୀର
ତମାଳ ଶ୍ୟାମଳ କେଶ ଶ୍ରେଣୀ ଅଣ୍ଡଜମି
ଦୋଳଇ ଚରଣ-ଚୁମ୍ବି ମୃଦୁ ଗନ୍ଧବହେ ।
କେ ଉଷା ତୋ କୂଳେ ଯଥା ବାଳସୂର୍ଯ୍ୟ ଛଟା
ତେତେକ ଲଳନାର ରମ୍ୟ ଲଲାଟ ପଟରେ
ଶୋଭଇ ସିନ୍ଦୂରବିନ୍ଦୁ ଅନଙ୍ଗ ଦେବଙ୍କ
ଅନୁରାଗ ଚିହ୍ନସମ ଚିତ୍ତ ବିମୋହନ ।
ବିମ୍ବାଧରୀ ବିମ୍ବାଧରେ ଶୁଭ୍ରଦନ୍ତପନ୍ତି
ଆସ୍ପଷଇ ମନୋହର ମାଣିକ୍ୟ ମାଳରେ
ବିଲମ୍ବିତ ଗୋଟି ଗୋଟି ମୁକ୍ତା ଫଳ ପରି ।
ଫୁଲ୍ଲ କୁମୁଦିନୀଦଳେ ଖେଳଇ ଯେସନ
ମେଘମୁକ୍ତ ଚନ୍ଦ୍ରମାର ଧବଳ କିରଣ ।
ସେ ମୁକ୍ତାର ପ୍ରଭାସମ ବାହାରେ ତେସନ
ମନ୍ଦହାସ୍ୟ ମନୋଦସ୍ୟୁ ମନ୍ଦ ମନ୍ଦ ସ୍ଫୁରୁଁ ।
ଈଷତ୍ ଅସୀତବର୍ଣ୍ଣ ହେମରେଖା ଶୋଭି
ଶାଢ଼ୀରେ ଯାଇଛି ଜଡ଼ି ବରାଙ୍ଗୀର ଅଙ୍ଗ ।
ଅବୋଧ ସ୍ୱତନ୍ତ୍ର ସ୍ୱର୍ଣ୍ଣ ଶରଦଭ୍ର ମାଳେ
ନବୋଦିତ ଶଶଧର ଦିଶନ୍ତି ଯେମନ୍ତ ।

---

* ରବିବର୍ମାଙ୍କ କୃତ ଶକୁନ୍ତଳାଙ୍କର ତୈଳ ଚିତ୍ର ।

ଅଲକ୍ତାକ୍ତ ବାମପଦ ସଳଖେ ପକାଇ
ଦକ୍ଷିଣ ପଦର ବୃଦ୍ଧ ଅଙ୍ଗୁଷ୍ଠି ଉପରେ
ସ୍ଥିରଦେଇ କି ଭଙ୍ଗୀରେ ; କମ୍ବୁଗ୍ରୀବା ଥୋଇ
ସ୍କନ୍ଧୁଁ ଅଳ୍ପ ଆଡ଼ ନେଇ, କର୍ଣ୍ଣଲଗ୍ନ ହୋଇ
ସ୍ୱର୍ଣ୍ଣ କର୍ଣ୍ଣ ଫୁଲ ଦେନ ଚୁମ୍ବଇ ଗଣ୍ଡକୁ ।
କେତକୀର ପରାଗରେ ଭୋଳ ହୋଇ କିବା
ଭ୍ରମଲେ ଯୋଡ଼ିଏ ଅଳି ଅଟକି ଅଛନ୍ତି ।
ଠିଆ ହୋଇଛନ୍ତି ଆଗେ ଏକ ମୁନିବର
ତାଳଗଛ ପରିତୁଙ୍ଗ, ଲମ୍ବଶ୍ମଶ୍ରୁଧାରୀ
ରାଜଇ ମଣ୍ଡଳାକାରେ ତାହାଙ୍କ ମସ୍ତକେ
ଜଟାରାଜି ତରୁଶିରେ ମହାଙ୍ଗ ଯେସନ ।
ବିଶାଳ ଦକ୍ଷିଣ ଭୁଜେ କାହିଁକି ତପସ୍ୱୀ ?
ଶିଶୁସହ ରୂପସୀକି ଠେଲି ଧରି ଦୂରେ
ଠାଣେ ବାରୁଛନ୍ତି ପାଖେ ନ ଆସିବା ପାଇଁ ।
ସବିଷାଦେ ବଦନକୁ ଲେଉଟାଇ କିଆଁ
ପଛବାଟେ, କିବା ପାଖେ ବେକମ୍ପଲେ ଯାକ,
ଊର୍ଦ୍ଧ୍ୱେ ତୋଳି ବାମ ଭୁଜ ସଙ୍କେତନ୍ତି ଧୀରେ
ନ ଆସ ନିକଟେ ବୋଲି କନକ ଗୋରୀକି ?
ସ୍କନ୍ଧେଲଗି ଶ୍ମଶ୍ରୁରାଶି ଲେଉଟି ଉପରେ
ଅଧେ ଢାଙ୍କି ରଖିଅଛି ମୁନିଙ୍କ ମୁଖକୁ,
ଶୁଖା ନଡ଼ିଆକୁ ତାର ବଲ୍କଳ ଯେସନ ।
ଏକି କଥା ଯେ ବାଳାର ବଦନ ପଦ୍ମରେ
ବସିବାକୁ ବିଶ୍ୱଜନ-ନୟନ ଭ୍ରମର
ସଦା ବ୍ୟସ୍ତ, ତପସ୍ୱୀଙ୍କୁ କାହିଁକି ସେ ମୁଖ
ଦେଉ ନାହିଁ ଭଲେ ସୁଖ, ଏ ଦଶାର ପ୍ରତି
ନିଜର ପୁଅର କିଛି ମନ୍ଦ ବ୍ୟବହାର
ସରି ସ୍ମରି ପଣ୍ଡବର ଅଥବା ଲଜ୍ଜାରେ
ନ ପାରନ୍ତି ନିଜ ମୁଖ ମିଶାଇଁ ତା ମୁଖେ ।
ଲବଣୀ ପିତୁଳାସମ ଶିଶୁଟିକୁ ଅବା
ଦେଖିବାକୁ ତପସ୍ୱୀଙ୍କ ହେଉଅଛି ଲଜ୍ଜା ?

ବାମକର ସଙ୍କେତରେ ଏଥିଲାଗି ପସ୍ତ
ଅସ ନାହିଁ ପାଖେ ବୋଲ୍‌. ବାରନ୍ତି ଇଙ୍ଗିତେ ।
ବିଷୟ ବାସନା ତ୍ୟାଗୀ ହୋଇ ଚନ୍ଦ୍ରାମଗ୍ନ
ମୁନିସହ ହରିଣାକ୍ଷୀ ହରମୋହନୀର
ଦୁଷ୍ଟ ମନୋଭବ ପୁଷ୍ପ ପ୍ରେମ ପରିପୁଷ୍ଟ
ନାହିଁ ତ ଏମନ୍ତ କିଛି ଗରିଷ୍ଠ ସମ୍ବନ୍ଧ ।
ଯା ଲାଗି ଅକ୍ଳେଶେ ମୁନି ତାଚ୍ଛଲ୍ୟ ପ୍ରକାଶି
ଘୋରନିନ୍ଦା ଅପମାନ ଏଡାଇବା ଲାଗି
ସମାଜରେ ନିଜ ମୁଖ ହେଠ ହେବା ଭୟେ
ଚେତି ନିଦ୍ରା ଗଲ୍ପପରି ଠାଣ୍ଣୁଆ ପଣରେ
ମହିଳାର ଆଗ୍ରହକୁ ଦଅନ୍ତି ଉଡାଇ ।
ଜନକ ଯେବେଟି ଏହି ଯତି ଶିରୋମଣି
ସୁକୁମାର ଶିଶୁଟିର, ତେବେ ଏ ରୂପସୀ
କିଏ ସେ, ଜନନୀ ? ଅବା ଦୁଗ୍ଧଦାନୀ ଧାନ୍ଦୀ ?
ଧାନ୍ଦୀ ନୁହେ ମାତା ଏହି ଯେଣୁ ଶୋଭଙ୍ଗୀର
ଶୈଶବ ସୁନ୍ଦର ତନୁ ପଡୁଅଛି ଜଣା
ଏ ବାଳିକା କଳେବରୁ, ଧ୍ୱନ୍ତାରୁଛି ଯାହା
ବାଳ କଳାକର କଳା, ଦୁର୍ଲ୍ଲଭ ଜଗତେ
ବହୁଛି ଯେ ଅପରୂପ ଶୋଭା ଶୋଭିଲତା
ଧାନ୍ଦୀ ପକ୍ଷେ ତାହା କେବେ ନୁହଇ ସମ୍ଭବ ।
ନନ୍ଦନ କାନନ ବିନା ଅନ୍ୟ ଉଦ୍ୟାନରେ
ଫୁଟଇକି ବିଶ୍ୱସାର ପାରିଜାତ ଫୁଲ ?
ଅମୃତରୁ ସୁମଧୁର ବାତ୍ସଲ୍ୟ ଆଦରେ
ସ୍ନେହସ୍ନିଗ୍ଧ ସୁଦୃଷ୍ଟିରେ ଧରି ଶିଶୁଟିକୁ
ତପସ୍ୱୀଙ୍କୁ ମହାଙ୍କାଦେ ଅପୁଛି ଅବଳା ।
ତନୟାର ପ୍ରସବିଣୀ ଯେବେ ବିଧୁମୁଖୀ
ଜନକ ପୁଣି ଏ ବୃଦ୍ଧ ଜଟାଳ ତପସ୍ୱୀ
ଆଦରନ୍ତି ନାହିଁ ତେବେ କାହିଁକି ସ୍ନେହରେ
ସ୍ତ୍ରୀସହ ଦୁହିତାକୁ, ଅବା ତପସ୍ୱୀଙ୍କୁ
ଦିଗ୍ଧର ଗଣକରହ ଦେଉଛି ନବୀନା

ଭାଗ୍ୟଗଣନାର ପାଇଁ କୋଳେ ତନୟାକୁ
ଅଥବା ଏ କୋମଳ କ୍ଷୁଦ୍ର ଶିଶୁର ଅଙ୍ଗରେ
କୌଣସି ଉତ୍କଟ ବ୍ୟାଧି ଆଶ୍ରିଛି ଅଲକ୍ଷେ
କବିରାଜ ଏ ତପସ୍ୱୀ, ଏଣୁ ଶଶିମୁଖି
ରୋଗ ଉପଶମ ପାଇଁ ଅପୁଚ୍ଛି ଅଧୀରେ ?
ନା ଏହା କଦାପି ନୁହେ, ଦେଖନା କପରି
ଘୃଣାରେ ନିକଟି ଦନ୍ତ ଆକ୍ଷି ବେନି ମୁଦି
ନାସିକା କୁଞ୍ଚିତ କରି ଅଧର ସଙ୍କୋଚ·
ରହିଛନ୍ତି ମୁନିବର ତଥିପରେ ପୁଣି,
ତାହାଙ୍କ ଏ ରୂପ ମନ୍ଦ ବ୍ୟବହାର ଦେଖି
ନିଜ ପ୍ରତି ପ୍ରୀତହେଲା, ଟିକିଏ ହେଲେ ତ
ମନେ ବହୁ ନାହିଁ ଖେଦ ବରଂଚ ପତିଙ୍କ
ନିଷେଧକୁ ଅବହେଳି ଆତୁର ଆତୁର
ପାଖେ ଠେଲି ହୋଇ ଆସି କରଇ କୌତୁକ
ନବଶିଶୁଟିକୁ ଘେନ କରପଦ୍ମେ ତାର ।
ଜାଣିଲି ଜାଣିଲି ଆରେ, ତପୋଭଙ୍ଗେ ଜାତ
ଇନ୍ଦ୍ରଙ୍କ ପ୍ରେରିତ ସ୍ୱର୍ଗୁ ଚହ୍ନଠବରଣା
ଏ ଅପ୍ସରା ରୂପେ ମଜ୍ଜି ଚରିତାର୍ଥ କରି
ସ୍ୱଇଚ୍ଛା, ଜନ୍ମ ଦେଇଥିଲେ ଏ ଗୋସାଇଁ
ବିଶ୍ୱାମିତ୍ର ଯାଙ୍କ ନାମ ଗାଧିଙ୍କର ପୁଅ ।
ଏବେ ଖୋଜି ଖୋଜି ତାଙ୍କୁ ଭେଟାଇ ସୁନ୍ଦରୀ
ଦେଉଅଛି ଉଭୟଙ୍କ ପ୍ରେମଫଳରୂପୀ
ପିଲାଟିକୁ କେତେ ସ୍ନେହେ, ମାତ୍ର ଋଷିଙ୍କର
ଭାଙ୍ଗିଲାଣି ପୂର୍ବ ମୋହ ଏଣୁ ଖର ଖର
ଗତକଥା, ଲଜ୍ଜାବଶେ ଧିକ୍କାରି ନିଜକୁ
ହେଉଛନ୍ତି ମନେ ମନେ ଏହି ରୂପେ·ଘାଣ୍ଟି ।
କାହିଁ ସେହି ଗୁଠୁକଥା କାହିଁ ସେ ଆଦର
କାମେ ମତ୍ତ ହୋଇ ଯେବେ ହେ ତପୀ ପ୍ରବର !
ଆଶୋଷଣ ଯୋଗତତ୍ତ୍ୱ, ଧରି ପ୍ରେୟସୀର
ରୂପର ଚଟୁଳ ପ୍ରେମେ କେତେ ଗେଲେ ଗେଲେ

କହୁଥିଲ ହସି ହସି କ୍ରନ୍ଦଇ ଭୁଲଣା
ଶଶାଙ୍କ ମଳିନ ଚନ୍ଦ୍ର ଏହା ସଙ୍ଗେ ବୋଲି ।
ଆଦରରେ କୃଷାଙ୍ଗୀର କୃଶକଟୀ ଧରି
ନାଚୁଥିଲ ମନେ ଯେବେ ଶିବଙ୍କ ଡମ୍ବରୁ ।
ଭାଙ୍ଗିଗଲା ଏବେ ତାହା, ଅଭିମାନେ ମୌନେ
ବସୁଥିଲେ ବାଳାମଣି ବିଳମ୍ବ ନ ସହି
ଶ୍ରୀଚରଣ ଧରି ତାର ନାନା ସ୍ତୁତି ଗୀରେ
କରୁଥିଲ ମାନ ରକ୍ଷା, ପାଶୋରି ଦେଲକି ?
ପୂର୍ବର ସେସବୁ କଥା ତପସ୍ୱୀ ଗୋସାଇଁ ?
ଚନ୍ଦନ ବଦଳେ ଏବେ ବୋଳ କଳେବରେ
ପାଉଁଶ, ତାମ୍ବୁଳ ଛାଡ଼ି ଖାଉଛ ହରିଡ଼ା ।
ବସନର ବଦଳରେ ବାନ୍ଧୁଛ ବକଳ,
ବିଳାସିତା ଉପଯୋଗୀ ଯେତେ ଆୟୋଜନ
ପରିହରି ତା ବଦଳେ ତପସ୍ୱୀର ବେଶେ
ପ୍ରକାଶ ପାଉଛ ଜନସମାଜ ମଧ୍ୟରେ
କିପାଁ ପୂର୍ବ ପ୍ରେୟସୀକୁ ପକାଇବ ମନେ ?
ଯାହା ଇଚ୍ଛା କର ଏବେ ହେବ ସବୁ ପାରି,
ବଡ଼ ତୁମ୍ଭେ କେହି କିଛି ନ କହିବେ ଆଗେ
ଭୟରେ; ମାତ୍ର ଏହି ତୂର ବ୍ୟବହାର
ପୂର୍ବ ପ୍ରଣୟିନୀ ପ୍ରତି, ଲୁଚିବ ନାହିଁଟି,
ଗଲଛଲେ ଯୁଗେ ଯୁଗେ ସ୍ମରତେ ତୁମ୍ଭଙ୍କୁ
କହିବେ ସକଳେ ବଡ଼ ଧପାବାଜ ବୋଲି;
ଆହା ହୁହି ବିଧିମୁଖୀ ପଳାଅ ଯା ଏଥୁଁ
ସହର ଶିଶୁକୁ ଘେନ, ନିଜ ସଦନକୁ;
ନୋହିଲେ ନିଜର ମହା କୁକର୍ମ ଜନିତ-
ରୋଷେ ଜଳି ଶାପ ଦେବେ ନିଷ୍ଟେ ଏ ତପସ୍ୱୀ
ହାରିଲେ ଚଳନ୍ତି ଯିନା ବଡ଼ଲୋକମାନେ;
ସଦା ଶାପ ଅଟେ ଯାଙ୍କ ଅଙ୍ଗର ଭୂଷଣ ।
ଦୁହିଁଙ୍କ ମିଳନ ରୂପ ପ୍ରେମ ପ୍ରସନକୁ
ଶାପାନଳେ ଦଗ୍ଧିବେ ଏ ଦାମ୍ଭିକ ପ୍ରେମିକ ।

ଝିଅଲଗି ବାଳା ! ଛଳେ କ୍ରନ୍ଦ ଗୋ ଚକିତ,
ଏ ଶିଶୁର, ଧାତ୍ରୀହୋଇ ବ୍ୟାସଙ୍କ ଭାରତୀ
ପାଳିବ ନରତେ ଯତ୍ନେ; ତହୁଁ ମହାମନା
କବି କାଳିଦାସଙ୍କର କାବ୍ୟ ଉପବନେ
ବହିବ ହରିଣଦୃଶା ହରିବ ହରଷେ
ମହାରାଜ ଦୁଷ୍ମନ୍ତଙ୍କ ଚିତ୍ତ ସହିତରେ
ଭାରତୀ ମଧୁର ରସପାୟୀ ଜନ ମନ
ପ୍ରସବିବ ମହାରଥୀ ଭରତ କୁମାରେ
ଯା ଲାଗି ଭାରତ ନାମେ ଖ୍ୟାତ ହେବ ଧରା ।

---

## ଚିତ୍ର ପ୍ରଶ୍ନ *

କେ ଗୋ ତୁମ୍ଭେ ପୁଣ୍ୟମୟୀ ବଲ୍କଳବସନା ?
ବହଳ ପଲ୍ଲବଯୁକ୍ତ ତରୁଚ୍ଛାୟା ତଳେ
ବସିଅଛ ଶିଳାପରେ, ଗଣ୍ଡେ କର ଥୋଇ;
ଅଶୋକ ବନରେ ଯଥା ବୈଦେହୀରୂପସୀ
ତରଙ୍ଗ କୁଞ୍ଚିତକେଶ ପୃଷ୍ଠ ଅଙ୍ଗଦେଶେ
ପଡ଼ିଛି ଉପଲ ପରେ ଅସମ୍ଭାଳେ ଫିଟି;
ସୌଦାମିନୀ ପୃଷ୍ଠଦେଶେ ନବଘନ ଯଥା ।
କୁଟିଳ ଅଳକାରାଜି ରାଜଇ ଲଲାଟେ
ପଦ୍ମରେ ଭ୍ରମରକୁଳ ବସିଥିଲା ପରି;
ରାଜେ ଫୁଲମାଳ ତୁମ୍ଭ କଣ୍ଠେ କମ୍ବୁକଣ୍ଠି !
ଖସି ତହୁଁ ଗୋଟି ଗୋଟି ପର୍ଯ୍ୟୁଷିତ ଫୁଲ
ପଡ଼ିଅଛି ଆସନରେ ଇତସ୍ତତଃ କେତେ,
ସେ ଲତାର ଫୁଲ ଯଥା ତାର ଛାଇ ତଳେ,
ବସି ଏକାନ୍ତେ ବାଳା ! ଭାବୁଛ କାହାକୁ,
ନାହିଁ ହେଲ ଜ୍ଞାନ ତଳେ, ଖସି ନିକଟରୁ
ତରୁ ଛାଇ ରହିଲଣି ଦନ୍ତଦୂରେ ଯାଇ ।

---

(*) ରଜା ରବିବର୍ମାଙ୍କ କୃତ ଶକୁନ୍ତଳାଙ୍କ ଧ୍ୟାନ ଦୁଷ୍ମନ୍ତାଙ୍କ ପାପ ଚିତ୍ର ଦର୍ଶନେ ।

ରବିଙ୍କ ପ୍ରଖର କରେ ଝଟି ଝଟି ଝାଳ
ଦେଖାଦେଲଣି ତ ମୁଖେ; କମଳଦଳରେ
ନିଶାନ୍ତ ଶିଶିର ପରି; ତଥାପି ତୁମ୍ଭର
ନାହିଁ କିଛି ବାହ୍ୟଜ୍ଞାନ ବସିଛ ମଉନେ,
ଜଣାଏ ପଲକ ତାର ଯାଇଛି ପାଶୋରି
ଅଭ୍ୟସ୍ତ ଚଞ୍ଚଳତ୍ବରୁ ବିଲୋଚନ ବେନି;
ଅନ୍ତେମି ବାହ୍ୟବସ୍ତୁ ଯେତେ ସମ୍ମୁଖର,
ଖୋଜୁଅଛି ତବ ମନ କାହାକୁ ସୁନ୍ଦରି !
କର୍ଣ୍ଣଆଦି ପଞ୍ଚେନ୍ଦ୍ରିୟ କ୍ରିୟା ସକଳକୁ
ଏକତ୍ରରେ ପୁଞ୍ଜୀଭୂତ କରି ଏକ ଲକ୍ଷ୍ୟେ
ରଖିଅଛ କାହା ଧ୍ୟାନେ; କି ଲାଗି ରୂପସି !
କହ କିଗୋ ତୁମ୍ଭେ ବସି ଏ ନିର୍ଜ୍ଜନ ସ୍ଥଳେ
ଏକମନେ କରୁଅଛ ବାଣୀ ଆରାଧନା ?
ଅବା ମୋକ୍ଷଲାଭ ଆଶେ ଏକାକୀ ଏ ବନେ
କରୁଛ ବିମ୍ବାଧରି ! ବିଭୁ ଉପାସନା ?
ପ୍ରକୃତିର ଉପାସିକା କିବା ତୁମ୍ଭେ ଧନି !
ଲକ୍ଷୁଛ ନିର୍ଜ୍ଜନେ ବସି ଏ ସୃଷ୍ଟିର ଲୀଳା ?
ଅବା ଅନାହାରେ ବସି ଘୋର ତପସ୍ୟାରେ
ମହାମହେଶଙ୍କୁ ତୋଷି ତାହାଙ୍କ ପ୍ରସାଦେ
ନିଜ ମନୋମତ ବର ଲଭିବା ଆଶାରେ
ବସିଛ ବରାଙ୍ଗି ! ଏହି କଠୋର ଧ୍ୟାନରେ ?
ନାନା ତା ନୁହଇ ଯେଣୁ ଦେଉଅଛି କହି
ଗାଲେ ହାତ ଦେଇ ତୁମ୍ଭ ବସିବାର ଠାଣି
ବଙ୍କ ବଦନର ଭଙ୍ଗୀ; ପ୍ରିୟ ଚନ୍ଦ୍ରାବୋଲି ।
ଅହୋ ! କି ଗମ୍ଭୀର ଧ୍ୟାନେ ବସିଛ ମଉନେ;
ଦେଖୁ ନାହିଁ, ଅଗେ ତବ କାଳସର୍ପରୂପୀ
ମୂର୍ତ୍ତିମନ୍ତ କ୍ରୋଧ ପରି କରାଳ ମୂରତି
କିଏ; ଏ ସୁଦୃଢ଼ ମୁଷ୍ଟିବଦ୍ଧ ଦାମ କରେ
ତିଷ୍ଠି ନୟନ ବେନି ଅରୁଣ ବରଣ;
ବାଢ଼ିଣର ଗଣ୍ଡି ପରି ଫବରେ ଚାହିଁତ

ତର୍ଜ୍ଜନୀ ସଙ୍କେତେ ସେପେ ଦକ୍ଷିଣ ହସ୍ତରେ
ତର୍କୁଅଛ, ଜଟାଜୂଟ ଦୋହଲେ ମସ୍ତକେ,
ଦୁରଙ୍ଗନେ ଘୁଣୁ ତର ଓହଳ ଯେସନ ।
ଲମ୍ବଦାଢ଼ି ଶିଗ୍ରେଠର କୁହୁଲା ସମାନ
ହଲୁଅଛି ଥରଥର ଅଧରୋଷ୍ଠ ତଳେ,
ଅହୋ ! ଅହୋ !! ବିଶ୍ୱପଣ ଚଣ୍ଡକର୍ମୀ ଋଷି
ଦୁର୍ବାସା ଏହାଙ୍କ ନାମ ଶାପ ବ୍ୟବସାୟୀ,
ସ୍ୱପଣ ଆଗ୍ନେୟଗିର ଉଦ୍ଗାରଇ ଯଥା
ଅସହ୍ୟ ଗୈରିକାନଳ ବିଶ୍ୱ ଚମକାଇ
କ୍ରୋଧ ଜରଜର ସ୍ୱରେ ଭାଷିଲେ ସେ ତଥା
ମୋ ପରି ଅତିଥି ଜନେ ଅବହେଳ ହେଲେ
"ଏଡ଼େ ସ୍ପର୍ଦ୍ଧା ତୋର, ତୁହି ମଣିଛୁ କା ଧ୍ୟାନେ ?
ଯାଉ ସେ ପାଶୋରି ତୋତେ, ଉନ୍ମାଦଲେଖକର
ଆମ୍ବିଚ୍ଛୁତ ଅର୍ଥହୀନ ଧୂଳାପର ପରି ।"
ଶାପ ଦେଲେ ଏହା ବୋଲି ସ୍ୱର ଅଭିମାନେ
ମହା କ୍ରୋଧେ ଅବଶ୍ୱରେ ନିର୍ଦ୍ଦୋଷୀ ବାଳାକୁ
ସୁପ୍ତ ଜନେ ଦଂଶେ ଆସି ଭୁଜଙ୍ଗ ଯେସନେ
ମାନ୍ଦ ପ୍ରିୟ ଚିନ୍ତାମଗ୍ନ ଯୋଷାମଣି କର୍ଣ୍ଣେ
ପଶିଲା ନାହିଁ ତ ଭୀମ ବଜ୍ରନାଦ ତୁଲ୍ୟ
ଋଷିଶାପ କାଳାନଳ ସମାନ ଦୁଃସହ ।
ଧନ୍ୟ ସେହି ଭାଗ୍ୟବାନ ଯାର ପ୍ରେମ ମନ୍ତ୍ରେ
ବାଞ୍ଛିତା ଏସନ ଧନ୍ୟା ରମଣୀରତନ ।

---

କି ଶୁଣିଲି ଆଜ ପ୍ରାଣ ଯଥା ଗୋମୁଖୀର *
ପବିତ୍ର ପ୍ରପାତୁ ଆହା ଝରେ ସ୍ୱଚ୍ଛ ଧାରେ
ଗଙ୍ଗାଜଳ ଝରଝରେ, ଝରଣ ତେସନ

(*) ଋଷିପ୍ରତିମ ମଧୁସୂଦନ ରାଓ ମହୋଦୟ ବାମଣ୍ଡାକୁ ଭ୍ରମଣ କରିବାକୁ ଯାଇ "କବିତା ଓ କବିତା" ଏବଂ "ଯନ୍ତ୍ରବାନ୍ତ୍ରିବାଦ" ସମ୍ବନ୍ଧେ ଯେଉଁ ଦୁଇଗୋଟି ବକ୍ତୃତା ଦେଇଥିଲେ ତାହାକୁ ଲକ୍ଷ୍ୟ କରି ଏ କବିତା ଲିଖିତ ।

ପବିତ୍ର ଅମୃତତୁଲ୍ୟ ମଧୁର ବଚନ
ଯାହା କର୍ଣ୍ଣ ଢାଳି ଦେଇ ଶ୍ରୋତାଙ୍କର ପ୍ରାଣେ
ସଞ୍ଜୀବନୀ ମହାମନ୍ତ୍ର ଯାହାର ଆମୋଦେ
ଉଲ୍ଲାସେ ବହିଲ ଆତ୍ମା ତନ୍ମୟ ହୋଇଣ
ନିଜକୁ ପାଶୋରି କ୍ଷଣେ ତହିଁ ହେଲା ଲୀନ
କବି କେ ? କବିତା କିଣ ? ବିଶ୍ୱହିତ ବ୍ରତେ
କିପରି ସେ ଭାବମୟୀ କଲ୍ପନା ସାହାଯ୍ୟେ
ସଦାବ୍ରତୀ, ବିଶଦରେ କେତେ କହିଗଲେ
ହେ ପଣ୍ଡିତ ଶିରୋମଣି ! ସବୁଙ୍କ ହୃଦେ ତା'
ପ୍ରବେଶ କରାଇ ଅଛ; ମହା ସମାଦରେ ।
ଅଭିବ୍ୟକ୍ତିବାଦେ କବି ! ଆସଇ ସ୍ୱଭାବେ
ନାସ୍ତିକତ୍ୱ ଗବେଷଣାପୂର୍ଣ୍ଣ ବିବୃତିରେ
ମାତ୍ର ତୁମ୍ଭେ ଦେଖାଇଲ ଅନନ୍ତ ବିଶ୍ୱର
ଆବିର୍ଭୂତ ଆଦିମୂଳ ମହନୀୟ ତତ୍ତ୍ୱ,
ଯେ କହେ ଅମରପୁରେ ସୁଧା ଅଛି ବୋଲି
କେବଳ, ଶୁଣୁ ସେ ଆସି ତବ ଉପଦେଶ,
ଦେଖି ତବ ସୁପବିତ୍ର କବିତା ମାଳରେ
ବାଗ୍‌ଦେବୀ ରସନାସମ ମଞ୍ଜୁ ଲେଖାବଳି ।
ପଦେ ପଦେ ସଞ୍ଜୀବନୀ ଅମୃତ ଲହରୀ
କେମନ୍ତେ ତହିଁରେ ପୂର୍ଣ୍ଣ ମହା ମହିମାରେ ।
ବୀଣାପାଣିଙ୍କର ବରେ ବିରାଜଇ ଯଥା
ହେ କବୀନ୍ଦ୍ର ! ଦିବ୍ୟଶକ୍ତି ତବ ଲେଖନୀରେ
ଜନମନ ବିମୋହିନୀ, ତତୋଧିକ ରାଜେ
ବଚନରେ; ମହାତ୍ମବ ବିଭୂଙ୍କ କୃପାରେ
ପ୍ରବାହିତ ହୁଏ ଯାହା ପ୍ରତିଧମନୀରେ
ମାନବର ପ୍ରାଣେ ପ୍ରାଣେ ଅନ୍ତଃସ୍ଥଳ ଭେଦି ।

# ପୁଲିଖିଆ

ଦାଶଙ୍କ ଗୃହରେ ଦିନେ ଶ୍ରାଦ୍ଧ ଉପଲକ୍ଷେ
ଲଗିଥିଲା ଆୟୋଜନ ଗାଈ ମହିଷୀର—
ଦଧି ଦୁଗ୍ଧ ଛେନା ସର ଆଦି ଜନ୍ମସବେ
ମଣ୍ଡା ରସଗୋଲା ପେଡ଼ା ମାଲପା କାକରା
ଆଦି ନାନାଦ୍ରବ୍ୟ ତାଙ୍କ ପ୍ରାଙ୍ଗଣ ମହକି
ଉଠୁଥିଲା, ନୂଆପିଲା ଅଣ୍ଡାବଚ୍ଛା ସବୁ
ବଡ଼ ମହୋଦୟଗଣ ! ସଙ୍ଗତରେ ଘେନ
ଦାଶଙ୍କ ପ୍ରକାଣ୍ଡଗୃହ, ମହା କୋଳାହଳେ
କରୁଥିଲେ ମୁଖରିତ, କମ୍ପୁଥିଲା ପୁର
ଭୀମ ପ୍ରଭଞ୍ଜନ ନାମେ ଗିରିଦରୀ ଯଥା ।
ପ୍ରବେଶିଲେ ଆସି ତହିଁ କୁବ୍ଜ କଳେବର
ହାଡ଼ୁ ମିଶ୍ରେ, ମନସିଜ ଶିବେ ବାଦ ଇଚ୍ଛି
ଏ ନବ କନ୍ଦୂଦବନ୍ତ ବୃଷଭ ଗୋଟିକ
ସୃଷ୍ଟି କରିଥିଲା ପର ବାହନ ପାଇଁକି ?
ସ୍ଥୂଳ ଚଣ୍ଡୀକୁ ଠେକି ହେଲେ ଲମ୍ବଦନ୍ତ
ମାଡ଼ି ବସିଥିଲା ତାଙ୍କ ଅଧରକୁ ବଳେ
ଦିଲୀପ ଭୂପଙ୍କ ବନେ ଗାଭୀ ରକ୍ଷାକାଳେ
ବଶିଷ୍ଠଙ୍କ ନନ୍ଦିନୀକୁ ଯେମନ୍ତ କେଶରୀ,
ଦୁଇଗାଲ ଯବେ ଯବେ ସୁଦୀର୍ଘ ମୁଖରେ
ପଶିଯାଇ ହନୁହାଡ଼ ଦିଶୁଥିଲା ବାର
ଆବରଣଶୂନ୍ୟ ହୋଇ ପଡ଼ିଥିଲା କରେ ?
ଢାଳକାର ବେଶ ହେବା କାଠର ଫରୁଆ,
ପୁଞ୍ଜେ ପୁଞ୍ଜେ ନାଶବନ୍ଧୁ ଦିଶୁଥିଲା ଦୂରୁ
ଟେକି ଉବଣ୍ଡିର ପରି ନାସା ପୁଡ଼ା ଦୁଇ ।
ସ୍ଥୂଳ ରଦବାସ ପରେ ମାଡ଼ିବସିଥିଲା
ଗଳକୁ ଶୂନ୍ୟରୁ ଗଣ୍ଡ ଭୈରବ ସତେ କି ?
ଅତି ଲମ୍ବ ଗୋଡ଼ମାନ ଦେଖି ଅଗ୍ନିଦେବ
ଶୁଖା କାଠ ସ୍ୱବ ନଷ୍ଟେ କରୁଥିଲେ ଗ୍ରାସ

କିଛି ରସ ନ ପାଇଣ ଦେଉଥିଲେ ଘଡ଼ି
ଏଣୁ ତା ରହୁଛି ପଡ଼ି ଅର୍ଦ୍ଧଭୁକ୍ତ ହୋଇ ।
କି ଅପୂଅ ଆଦକର ଗୋଟି ପାଞ୍ଚ ଯାଏ
ଲମ୍ବିଥିଲେ ସଙ୍ଗେ ସଙ୍ଗେ ଘଡ଼େ ନାହିଁ କେବେ
ମୋ ପାଖରୁ ବୋଲି ମିଶ୍ରେ ନାତୁଣୀଟି ସୁଦ୍ଧା
ଆଣିଥିଲେ ସହୃତରେ, ଦାଣଙ୍କ ମଦରେ
ଏରୂପେ ପ୍ରବେଶି ହର୍ଷେ ଭୋଜନରେ ବସି
ଝରଦେଇ କଣ୍ଠଯାଏ, ପିଲାଟିମାନଙ୍କୁ
ପିଠିରେ, କାନ୍ଧରେ, ହସ୍ତେ, ସକଳ ବୁହାଇ
ନିଜେ ବହୁ ନାନାରୂପେ, ସେତୁବନ୍ଧକାଳେ
ବାନରମାନଙ୍କ ଲୀଳା ଭୁଞ୍ଜି ଅବହେଳେ
"ହେଉଥାଉ ଏହିପରି ଶ୍ରାଦ୍ଧ ଆପଣଙ୍କ"
ବୋଲି ହାସ୍ୟ ଗଦଗଦେ ବେନି ହାତ ତୋଳି
ଅତି ଉଚ୍ଚସ୍ୱରେ ଦ୍ୱିଜ ଆଶିଷ ପ୍ରଦାନି
ବାହୁଡ଼ିଲେ ଯେ କାଳରେ ପୁନି ତନୟାଙ୍କୁ
ଚଳେଇକାଇ ସେମାନଙ୍କ ଭବ ଜୀବନର
ଆଶ୍ରା ପାଇଁ ଏହି ମହା ଆଦର୍ଶର ଛବି ।
ଯିବାବେଳେ ସେହିକାଳେ ସୁଯୋଗେ ମାର୍ଗରେ
ମିଶ୍ରଙ୍କୁ ଭେଟାଇ ଏକ ଭକତପୁଙ୍ଗବ
ଭକତିରେ ହାତଯୋଡ଼ି ଯୁହାରି ବିନୟେ
ଯୋଡ଼ିଏ ପଇସାସହ ଦାନ କରିଦେଲା
ଏକଦୀର୍ଘ ଝୁଲ ପାଣିକଖାରୁ ଆଦରେ
ମହାହରଷରେ ମିଶ୍ରେ ପଢ଼ିଗଲେ ଫଣେ
ପୃଷ୍ଠରେ ଶିରରେ ଉରେ ନାହିଁ ଢଳେ ସ୍ଥାନ
ଧରିବାକୁ ସେ କୁଷ୍ମାଣ୍ଡ ପାଉଁଲମ୍ବଠର
ଝୁଲେ ଉରେ, ପୃଷ୍ଠଦେଶେ; ଭାବି ଭାବି ପରେ
ଏକବୁଦ୍ଧି ସ୍ଥିର କରି ହସହସ ମୁଖ
କଖାରୁଟି ଟେକି ଶୀଘ୍ର ସୁଦୀର୍ଘ ଶିଖାରେ
ବାନ୍ଧିଦେଲେ ଅତି ଆସ୍ତେ ଝୁଲିଲା କୁଷ୍ମାଣ୍ଡ
ତାଙ୍କ କୁବ୍‌ଜପୃଷ୍ଠେ, ଲଇଁ ଚାଲିବାବେଳରେ

ମନେହେଲା ବଳରାମ ଲଗାମକୁ ଧରି
ବାହାରଲେ ବସି ଜବା କାଳିଆ ଘୋଡ଼ାରେ;
ଏମନ୍ତ ବେଶରେ ବପ୍ର ମନ୍ଦୁରଗଡ଼ରେ
ବୁଲିଲେ ସ୍ୱଗୃହ ମୁଖେ; ଗୋଡ଼ାଇଲେ ସଙ୍ଗେ
ତାଳିଦେଇ ଗ୍ରାମ୍ୟପିଲେ ତାଙ୍କ ପିଲାସହ ।
ସୀତାଙ୍କ ବାରତା ଘେନି ଫେରିଲା ସମୟେ
ଯାଉଥିଲେ ହନୁ ପଛେ, ଯଥା କପିମାନେ,
ଅଳ୍ପଦୂରେ ନ ଯାଉଣୁ ଏହି ସ୍ୱର ଘେନି
ଶୁଣିଲେ ଚକିତେ କର୍ଣ୍ଣେ ମିଶ୍ର ମହାଶୟ
କିଏ ତାଙ୍କୁ ଅନ୍ତଦୂରୁ ଡାକିଲା ପଡ଼ିଏ ।
ପାର୍ଶ୍ୱଦେଶେ ଜୀର୍ଣ୍ଣକୂପ ଥିଲା ସେ ମାର୍ଗରେ,
ବରଷା ସମୟେ ଏକେ ମହା ଘୋରରବେ
ମକ ମକ ମକ ଶବ୍ଦେ ଦର୍ଦ୍ଦୁର ନିକର
ଗର୍ଜୁଥିଲେ ମନସୁଖେ, ଶୁଣି ବପ୍ରବର
ସେ ରବକୁ ବିଚାରିଲେ ଏଥି ନିଶ୍ଚେ କେହି
ଅଛନ୍ତି ଗ୍ରାହକଭକ୍ତ; ଦାନ ଦେବା ପାଇଁ
ଡାକ ଦେଉଛନ୍ତି ମୋତେ, ବଡ଼ ସୁଯୋଗରେ
ଆସିଥିଲି ଆଜମୁହିଁ, ଯହିଁ ଯାଉଅଛି
ତହିଁ ଦେଖ ହେଉଅଛି ମୋର ନିମନ୍ତ୍ରଣ
ପୁଣି କେ ଦେବାକୁ ଭେଟି ସ୍ମରନ୍ତି ଭକ୍ତିରେ
ସିଦ୍ଧ ନିଶ୍ଚେ ଯେତେ ଜ୍ୱାଠ କରିଲେହେଁ ଭସ୍ମେ
ଅନଳ କଦାପି ତହିଁ ନୁହଇ କୁଣ୍ଠିତ
ମହାନନ୍ଦେ ହାଡ଼ୁ ମିଶ୍ରେ ଏହା ମନେ ଭାବି;
କୂପ ନିକଟକୁ ଯାଇ; ପୁଷ୍ଟଗ୍ରୀବା ବେନି
ବକ କରି ଡିଙ୍ଗି ଦେଇଁ ଖସିଲା କକ୍ଷାରୁ
ମଧ୍ୟାକର୍ଷଣ ବଳେ, ଝାଙ୍କି ନେଇ ବେଗେ
କୂପ ଭିତରକୁ ଆହା ! ଚିରଦିନ ପାଇଁ
ଖଣ୍ଡି ତାଙ୍କ ପ୍ରତିଗ୍ରହ ଭୋଜନ ଲାଳସା ।
ଏହିପରି ଅସଙ୍ଗତ ଲୋଭ କଲେ ଭବେ
ହାଡ଼ୁ ମିଶ୍ରଙ୍କର ଦଶା ଲଭନ୍ତି ମାନବେ ।

# ସିଗାରେଟ

କିଏ ତୁମ୍ଭେ ନବ୍ୟବର ? ଭ୍ରମୁଛ ଗୌରବେ
ମହାନନ୍ଦେ ପିନ୍ଧି ଶୁଭ୍ର କାଗଜ—ବସନ
ଚରାଚର ବିଧ୍ୱଂସକ, ଜ୍ୱଳନ୍ତ ଅନଳ
ସଦା ପ୍ରିୟସଖା ତବ; ତାହାର ସାହାଯ୍ୟେ
ଚଷମାମଣ୍ଡିତ ଚକ୍ଷୁ; ନବ୍ୟ ବାବୁଙ୍କର
ଅଧରୋଷ୍ଠେ ଲଗ୍ନ ହୋଇ, ପ୍ରକାଶୁଛ ଭବେ
ଅନାୟାସେ କୁହେଳିକା, ବହୁ କଷ୍ଟେ ଯାହା
ଋଷିବର ବିଶ୍ୱାମିତ୍ର କଠୋର ସାଧନେ
ବଶିଷ୍ଠେ କଳହ କରି ସାଧିଥିଲେ ପୂର୍ବେ ।
ରାଜନୀତି ବିଶାରଦ କେତେ ଧୁରନ୍ଧର
କେତେ ସାଧୁ, କେତେ ଧନୀ; କେତେ ଗୁଣବାନ
ସୁଲଳିତ ବପୁ କେତେ ବିଳାସୀ ଯୁବକ,
ତୁମ୍ଭ ବରାନନ ଚୁମ୍ବି ହୁଅନ୍ତି କୃତାର୍ଥ
ସୁନ୍ଦରୀ ରମଣୀମଣି-ଅଧର ପଲ୍ଲବ
ଯାହାକୁ ଚୁମ୍ବିବା ପାଇଁ ହେଉଛନ୍ତି ଝୁରି
ଶତ ଶତ ଧନବାନ ଯଶସ୍ୱୀ ଯୁବକ
ସୁଧା ରସେ, ପୁଷ୍ଟ ସେହୁ ପକ୍ୱବିମ୍ବ ପର
ସୁରଙ୍ଗ ଅଧର ତାଙ୍କ; ତୁମ୍ଭ ସଙ୍ଗ ଲଭି
ହୁଅନ୍ତି କୃତାର୍ଥ ସଦା; ଧନ୍ୟ ଭବେ ତବ
ପ୍ରାଧାନ୍ୟ ହେ ନବ୍ୟବର ! ନଳଗୁଚ୍ଛବାସୀ
ଭାରତେ ତୁମ୍ଭର ଜନ୍ମ ଦେଖି ମନ ଦୁଃଖେ
ଧୀରେ ଧୀରେ ଜଳାଉଛି, ଅନ୍ଧ ସୁରଭିତ
ଗୁଡାଖୁ ବିଶ୍ରାମଦାୟୀ ବନାରସୀବାସୀ,
ହେଉନ୍ତୁ ପଛକେ ବିଶ୍ୱେ କୃତାର୍ଥ ସକଳେ
ଚୁମ୍ବି ତୁମ୍ଭ ଅଧରୋଷ୍ଠ, ହେଉନ୍ତୁ ପଛକେ
ସୁଖରେ ବିହ୍ୱଳ ଜନେ ତୁମ୍ଭ ଆସ୍ୱାଦନେ,
ତଥାପି ତୁମ୍ଭର ଜୟ ! ସୁରଭିତ ଧୂପ
ଦୁର୍ବଳ ମାନବହୃଦ ଭିତର ମନ୍ଦିରେ

ସମୂଳ ଅଳଙ୍କୃମାଳ ବଢ଼ାଇ ନିରତ
ଅଲକ୍ଷେ ଜୀବନଯନ୍ତ୍ର କରଇ ଶିଥିଳ ।

---

## ମାଧବ

ପ୍ରବଳ ଶିଶିର ବୀରଙ୍କୁ
ଏ ମହୀରୁ ଘଉଡ଼
ନାଗେଶ୍ୱରେ ଚଢ଼ି ବସନ୍ତ
ରାଜା ଅସେ ଦଉଡ଼ ।
ଭ୍ରମରର ଗୁଣ ଚଢ଼ାଇ
ଯୋଖି ଫୁଲ ସାୟକ
ଫୁଲଶରାସନ ଧରଣ
ବିଜେ ଋତୁନାୟକ ।
ମନୋହର ମୃଦୁପାଟଳ
କଣଳୟ କେତନ
ସଞ୍ଚାଳ ସଧୀରେ ବାହଇ
ମନ୍ଦ ମନ୍ଦ ପବନ ।
ପାଟଳ ପତ୍ରରେ କି ଅବା
ବରହଣୀ ଅଠଖୀ
ଅନୁରାଗଭରେ ପ୍ରକାଶେ
ତାର ମୋହନ ଛବି ।
ବଜାଏ ଭ୍ରମର ସୁସ୍ୱରେ
ଧରି ପ୍ରସୂନ ବଂଶୀ
ମଧୁ ଗୁଣି ଗୁଣି ସେ ନିଶା
ବଣେ ଅଧିକେ ରସି ।
ଧବଳିମା ଧୀରେ ଗଲଣି
ଦେଖ୍ୟା ବଣରେ ମାଡ଼ି
ବୁଢ଼ା ଶିଶିରର କି ଅବା
ପାଠ ଯାଉଛି ଦାଢ଼ି ?

ପଲ୍ଲବ ବସନ ହୋଇଣ
　　　　ଯେତେ ତାଳିଁଶକୁଞ୍ଜ
ଶୀର୍ଣ୍ଣ କଳେବରେ ରହିଲେ
　　　　ଏକା ରହିଲା ଗୁଞ୍ଜ ।
ଶିଶିର ବୁଢ଼ାର ଶରୀର
　　　　କିବା ଦୁର୍ବଳ ବଶେ
ଶିରମାଳ ଗଣି ହେଉଛି
　　　　ମାଂସ ଝଡ଼ି ବଶେଷେ ।
ଶୈବାଳ ମଣ୍ଡିତ କମଳେ
　　　　ଉଠିଲେଣି ତ ଫୁଟି
ହାଇମାରେ କିବା ଶିଶିର
　　　　ମେଲି ପାକୁଆ ପାଟି ।
ପଳାଶ ଫୁଲରେ କାନନ
　　　　ଦିଶିଗଲା ପାଟଳ
ବୁଢ଼ା ଶିଶିରର କଳଙ୍କ
　　　　ପଶ୍ଚ ଚତ୍ତା ଅନଳ ।
ରାଜ୍ୟାନ୍ତର ହେଉଁ ସେ ଚତ୍ତା—
　　　　ଜଳେ ହୋଇ ପୀଡ଼ିତା
ମରିଲାକ ବୁଢ଼ା, ଏ ପଶ୍ଚ
　　　　ତାର ଜ୍ୱଳନ୍ତଚତା !
ବୁଢ଼ାହୋଇ ମଲା ଶିଶିର
　　　　ଲଭି ନବ ଯୌବନ
ଆସିଲା ବସନ୍ତ ଗ୍ରୀଷମେ
　　　　ତାର ଯିବ ଜୀବନ ।
ଏକ ଆସି ଏକ ଯାଉଛି
　　　　ବଶ୍ୱ ନିୟମଟିକ
କାହା ଭାଗ୍ୟ କାହା ଲାଗିତ
　　　　ରହେ ନାହିଁ ଅଟକି ।

---

ସମୂଳ ଅଲକ୍ଷ୍ମୀମାଳ ବଢ଼ାଇ ନିରତ
ଅଲକ୍ଷେ ଜୀବନଯନ୍ତ୍ର କରଇ ଶିଥିଳ ।

---

## ମାଧବ

ପ୍ରବଳ ଶିଶିର ବୀରଙ୍କୁ
ଏ ମହୀରୁ ଘଉଡ଼ି
ନାଗେଶ୍ୱରେ ଚଢ଼ି ବସନ୍ତ
ରଜା ଅସେ ଦଉଡ଼ି ।
ଭ୍ରମରର ଗୁଣ ଚଢାଇ
ଯୋଖି ଫୁଲ ସାୟକ
ଫୁଲଶରାସନ ଧରଣ
ବଜେ ଋତୁନାୟକ ।
ମନୋହର ମୃଦୁପାଟଳ
କଣଳୟ କେତନ
ସଞ୍ଚାଳ ସଧୀରେ ବହଇ
ମନ୍ଦ ମନ୍ଦ ପବନ ।
ପାଟଳ ପଦରେ କି ଅବା
ବରହଣୀ ଅଠବୀ
ଅନୁରାଗଭରେ ପ୍ରକାଶେ
ତାର ମୋହନ ଛବି ।
ବଜାଏ ଭ୍ରମର ସୁସ୍ୱରେ
ଧରି ପ୍ରସୂନ ବଂଶୀ
ମଧୁ ଲୁଣ୍ଠି ଲୁଣ୍ଠି ସେ ନିଶା
ବଣେ ଅଧିକେ ରସି ।
ଧବଳିମା ଧୀରେ ଗଳୁଣି
ତେଣ୍ଡା ବଣରେ ମାଡ଼ି
ବୁଢ଼ା ଶିଶିରର କି ଅବା
ପାଚ ଯାଇଛି ଦାଡ଼ି ?

ପଲ୍ଲବ ବସନ ହୋଇଣ
ଯେତେ ବାଉଁଶବୁଞ୍ଚ
ଶୀର୍ଣ୍ଣ କଳେବରେ ସଜିଲେ
ଏକା ରହିଲା ସଞ୍ଚ ।
ଶିଶିର ବୁଢ଼ାର ଶରୀର
କିବା ଦୁର୍ବଳ ବଣେ
ଶିରମାଳ ଗଣି ହେଉଛୁ
ମାଂସ ଝଡ଼ି ବଣେଣେ ।
ଶୈବାଳ ମଣ୍ଡିତ କମଳେ
ଉଠିଲେଣି ତ ଫୁଟି
ହାଡ଼ମାଉର କିବା ଶିଶିର
ମେଲି ପାଖୁଆ ପାଟି ।
ପଳାଶ ଫଳରେ କାନନ
ଦିଶିଗଲା ପାଟଳ
ବୁଢ଼ା ଶିଶିରର ଜଳଇ
ପଖ ଚଳ୍ତା ଅନଳ ।
ସଜ୍ୟାନ୍ତର ହେଉଁ ସେ ଚନ୍ତା—
ନଳେ ହୋଇ ପୀଡ଼ିତା
ମରିଲାକ ବୁଢ଼ା, ଏ ପଖ
ତାର ଜ୍ୱଳନ୍ତ ଚିତା !
ବୁଢ଼ାହୋଇ ମଲା ଶିଶିର
ଲଭି ନବ ଯୌବନ
ଆସିଲା ବସନ୍ତ ଗ୍ରୀଷମେ
ତାର ଯିବ ଜୀବନ ।
ଏକ ଆସି ଏକ ଯାଉଛୁ
ଦଣ୍ଡ ନସୁମଟିକା
କାଳ ବାର୍ଦ୍ଧ କାହା ଲାଗିତ
ରହେ ନାହିଁ ଅଟକା ।

# କାହୁଁ ସେହୁ କାଳ ?

କାହିଁ ସେହୁ କାଳ ଯେବେ ରେ ଉତ୍କଳେ
ଉଡୁଥିଲା ଗଙ୍ଗ ଗୌରବଧ୍ୱଜା
କାହିଁ ସେହି କାଳ ପାଉଥିଲେ ଯେବେ
ଉତ୍କଳୀୟ ଦେଶ ବଦେଶେ ପୂଜା ।
ଅମୀୟ ବୈଷ୍ଣବ— ଧର୍ମ୍ମଗୁଣାମୃତେ
ଭାସୁଥିଲା ଯେବେ ଉତ୍କଳମହୀ
କାହିଁ ସେହୁ କାଳ ନରେନ୍ଦ୍ରକେଶରୀ
ଯୁଝୁଥିଲେ ଯେବେ ଏଦେଶ ପାଇଁ
ଲଲାଟ ଲଲାଟ ମୁକୁଟ ସ୍ୱରୂପ
ଏକାମ୍ରକାନନ ଗୌରବ କୋଳେ
କାହିଁ ସେହୁ କାଳ କମ୍ପୁଥିଲା ଯେବେ
ଶିକ୍ଷିତବଙ୍କାଣି ଯନ୍ତ୍ରଚକ୍ରେ ।
କାହିଁରେ ସେକାଳ ଶିଳ୍ପକଳା ବଳେ
ମଣିଶିଳା ଶୈଳ କରି ବିଚୂର୍ଣ୍ଣ
କରୁଥିଲେ ଯେବେ ପୃଥିବୀ ବିଖ୍ୟାତ
ତାଜମହଲର ଅଗ୍ରବ ପୂର୍ଣ୍ଣ ।
ଶତଶତ ତରୀ ଚଳିକା ଲହରୀ
ଭେଦ କାଞ୍ଚୀ-ଜୟ ବାନାଉଡାଇ
ଉତ୍କଳଗୌରବ ପ୍ରକାଶିଲେ ଯେବେ
କାହିଁ ସେହୁ କାଳ କାହିଁ ହେ ଭାଇ !
କାହିଁରେ ସେକାଳ ଯେ ବୀର ଜାତିର
ସୁପବିତ୍ର ଧନ୍ୟ ବିମଳକୀର୍ତ୍ତି
ମେଖଳା ପରାଏ ନଭସ୍ମେ ସଗର୍ବେ
ଚନ୍ଦ୍ରୋପମା ଘେନୁଥିଲେରେ ନତି ।
ନରେନ୍ଦ୍ରକେଶରୀ ମୂର୍ତ୍ତିପରିଗ୍ରହ
କଳିଯୁଗେ ଯହିଁ ରଚନ୍ତି ଲୀଳା
କାହିଁ ସେ ଗାଙ୍ଗେୟ ଯାହାଙ୍କ ଉଦ୍ୟମ
ଏହୁ ଉଚ୍ଚ ମୋକ୍ଷ ସୌଧ ସୃଜିଲା ।

ଯେବେ ଘନକୃଷ୍ଣ ସାମନ୍ତ ସିଂହାର
ଉପଇନ୍ଦ୍ରଭଞ୍ଜ ବୈଷ୍ଣବ କବି
ଗାଇଲେ ମଧୁରେ ଜାତୀୟ ସଙ୍ଗୀତ
କାହିଁ ସେହି କାଳ ବୀରତ୍ୱଛବି ?
ଯେବେ ସୋମପୋତେ ବସି ସନ୍ୟାସୀଏ
ସୁଦୂର ସିଂହଳ ଚୀନ ତାତାରେ
ପ୍ରଚାରିଲେ ଧର୍ମ ପାପୀତ୍ରାଣ ପାଇଁ
ଶାଶ୍ୱତ ସଙ୍ଗୀତ ମୃଦୁଝଙ୍କାରେ ।
କାହିଁ ସେହି କାଳ ଉତ୍କଳ ନାରୀଏ
ସତୀତ୍ୱଗୌରବେ ହୋଇ ମହୋଚ୍ଚ
ରଖୁଥିଲେ ଟେକ ଅନ୍ୟକଥା ଥାଉ
ଅନାଦରେ କରି (୧) ସୂର୍ଯ୍ୟଙ୍କୁ ତୁଚ୍ଛ ।
ପ୍ରିୟାର ପ୍ରଣୟ— ଗୀତେ ଉଠୁଥିଲା
ମହାବୀରତ୍ୱର ମୃଦୁଝଙ୍କାର
କାହିଁରେ ସେକାଳ ମାତୃଦୁଗ୍ଧ ସ୍ରୋତେ
ବହୁଥିଲା ଯେବେ ଶୌର୍ଯ୍ୟ ପ୍ରଖର ।
ଗଳରେ ଜନନୀ— ଠାରୁ ଶିଶୁଙ୍କର
ଯେବେ ଲୋକୋତ୍ତର ବୀରତ୍ୱ ଶୁଣି
କାହିଁରେ ସେକାଳ ଉଷ୍ଣରକ୍ତ ସ୍ରୋତେ
ଶିଶୁଙ୍କର ନାଚୁଥିଲା ଧମନୀ ।
କାହିଁ ସେହି କାଳ ଉତ୍କଳ ଚାରଣ
ଜଳେସ୍ଥଳେ ଅନ୍ତରୀକ୍ଷେ ସରଜି
ଗାରିମା ଲହରୀ ଖେଳୁଥିଲେ ଯେବେ
କାହିଁ ସେହି କାଳ କାହିଁରେ ଆଜି ।
ସେହିକାଳ ସେହି ଗୌରବ ମହତ୍ତ୍ୱ
ଚନ୍ତ ଉତ୍କଳୀୟ ଚେତ ହେ ଥରେ ।
ଜାତୀୟ ଚାରଣ କୁସୁମ ସୌରଭ
ଅଚିରେ ଚହଟି ଯାଉ ବିଶ୍ୱରେ ।

---

(୧) ଚନ୍ଦ୍ରଭାଗା ଉପାଖ୍ୟାନ ଅବଲମ୍ବନେ ।

## ଦଣ୍ଡ

ଧର୍ମପ୍ରାଣ ମହମ୍ମଦ ବନେ ବୁଲୁ ବୁଲୁ
ଶୁଣିଲେ ଚକିତେ ଦୂରେ ଆରତ ଚିତ୍କାର ।
ସେ ଶବ୍ଦକୁ ଅନୁସରି ଦ୍ରୁତବେଗେ ଧାଇଁ
ଦେଖିଲେ ଆଗରେ ଏକ ପ୍ରବଳ ଦସ୍ୟୁର
ଅତ୍ୟାଚାରେ ଜର୍ଜ୍ଜରିତ ହୋଇ ଖଣ୍ଡେଦୂରେ
ପଡି ଏକ ଦୀନଜନ ହେଉଛି ଅସ୍ଥିର ।
ବଲ୍କଲରେ ନେନ୍ତୁ ବହେ ଲୋହିତର ଧାର
ଏକ ଦୁଷ୍ଟମତି ଦସ୍ୟୁ ଆଗେ ଉଭାହୋଇ
ପ୍ରତାପ ପ୍ରକାଶି ଦମ୍ଭେ ଦେଉଛି ଧମକ ।
କେଶର ଫୁଲାଇ ସିଂହ ଏକ ଲମ୍ଫେ ଯଥା
ମୃଗପରେ ପଡେ ଡେଇଁ ତେସନ ସେ ବୀର
ପବନ ବେଗରେ ଶୀଘ୍ର ପଡ଼ିଲେ ପ୍ରଚଣ୍ଡେ
ସେ ଦସ୍ୟୁର ଭୀମପିଣ୍ଡେ, ଆରୂଢ଼ ହୋଇଣ
ପଡ଼ିଲା ଉତ୍ତାନେ ଦୁଷ୍ଟ, ଭୀମ ବଜ୍ରାଘାତେ
ପଡେ ଯଥା ତାଳତରୁ ଭୀଷଣ ନିର୍ଘୋଷେ
ଦଣ୍ଡଦେବା ପାଇଁ ତାଙ୍କୁ ହୁଅନ୍ତେ ଉଦ୍ୟତ
ବଜ୍ରମୁଷ୍ଟି ଟେକି ସୁଧୀ; ଏକାଳେ ଦୁର୍ବୃତ୍ତ
ପୁନଃ ପୁନଃ ନିଷ୍ଠୀବନେ କଲା ଆଚ୍ଛାଦନ
ତାଙ୍କ ମୁଖ, ଜନମାଇ ମନେ ଅତିରୋଷ ।
ତତକ୍ଷଣେ ଦସ୍ୟୁକୁ ଛାଡି ଖଣ୍ଡେଦୂରେ ଉଭା
ହେଲେ ବୀରମଣି ଆଉ ତାକୁ ନ ପ୍ରହାରି
ଦୁଷ୍କାର୍ଯ୍ୟର ପ୍ରାୟଶ୍ଚିତ୍ତ ଲାଗି ହୁଏ ଦଣ୍ଡ
ଶିକ୍ଷା ପାଇଁ ମାନବର, ନିଜେ କ୍ରୋଧ ବଶେ
ଅନ୍ୟକୁ ଯାତନା ଦେଲେ; ସେହି ନିୟମରେ
ନିଜେ ଦଣ୍ଡାର୍ହ ହେବା ନୁହେ କି ଉଚିତ ?

## ଦାମ୍ଭିକ ପ୍ରତି

ଗ୍ରୀସର ବିଜୟୀ ବୀର ସିକନ୍ଦର ଧୁରନ୍ଧର
ଜିଣି ସେହୁ ଭୂମଣ୍ଡଳ ଅଖଣ୍ଡ ବଳେ
ଜିତିବାକୁ ନାହିଁ ଆଉ • ବୋଲି ଦର୍ପିଲେ ଲହୁ
ଯଥାକାଳେ ପଡ଼ିଲେ ସେ କାଳ କବଳେ
ତାଙ୍କ ପାଇଁ ନୁହେଁ ଏ ଧରା
ଚିରଜୀବ ହୋଇ ତୁମ୍ଭେ ରହିବ ପରା । ୧ ।
ଦର୍ପି ଦମ୍ଭହର ଶୂର ନେପୋଲିୟନ ପ୍ରବୀର
ଉରୂପା ଗ୍ରାସ୍ୟଅଟବୀ ଦାବାଗ୍ନି ଶିଖା
ବିବିଧ କୌଶଳେ ବଳେ ଭିଆଇ ଅରିମଣ୍ଡଳେ
ଖପଣ ମଡ଼କ ତାଙ୍କୁ କରିଲେ ଭେକା
କାଳଫାଶେ ହେଲେ ସେ ଧରା
ଚିରଜୀବ ହୋଇ ତୁମ୍ଭେ ରହିବ ପରା । ୨ ।
ଦୁର୍ଦ୍ଦାନ୍ତ ଆଓରେଙ୍ଗଜେବ ଖଣ୍ଡି ସ୍ୱ ପିତାର ଜୀବ
ସ୍ୱଜନ ସଦ୍ୟ ରକ୍ତରେ ପ୍ଲାବି ଧରଣୀ
ଶୋଷଣ ଜିଜିଆ କରେ ଜର୍ଜ୍ଜରିତ କରି ନରେ
ପତନ ଭାରତେ ବାହୁ କେତେ କରଣୀ
କାଳଫାନ୍ଦେ ହେଲେ ସେ ଧରା
ଚିରଜୀବ ହୋଇ ତୁମ୍ଭେ ରହିବ ପରା । ୩ ।
ମହାରାଜନ ନହୁଷ ତପେ ତୋଷି ଆଶୁତୋଷ
ଇନ୍ଦ୍ରଙ୍କୁ ତଡ଼ି ସ୍ୱର୍ଗରେ ବସିଲେ ମାଡ଼ି
ଋଷିଙ୍କି ବୁହାଇ ଖର କଲେ କେତେ ବାହାଦୁର
ଶେଷମାନ ପ୍ରେତପଣ ନେଲ ରଗଡ଼
ସେ ତ ଗଲେ ଛାଡ଼ି ଏ ଧରା
ଚିରଜୀବ ହୋଇ ତୁମ୍ଭେ ରହିବ ପରା । ୪ ।
ଗୁଣଗ୍ରାମ ରଘୁବୀର ଧର୍ମ୍ମ ସୁତ ଯୁଧିଷ୍ଠିର
ଭୀଷ୍ମ, ଦ୍ରୋଣ, କର୍ଣ୍ଣାର୍ଜ୍ଜୁନ, କୃପ, ମାରୁତ,
କେତେ କାର୍ଯ୍ୟସାଧୁ ଭବେ ମାଡିଲେ ମହାଆହବେ
ଅବଶେଷେ ଗଲେ ସର୍ବେ ଯମ ବସତି

ତାଙ୍କ ପାଇଁ ତୁହେ ଏ ଧରା
ଚିରଜୀବ ହୋଇ ତୁମ୍ଭେ ରହିବ ପରା । ୫ ।
ଧର୍ମପ୍ରାଣ ଅମିତାଭ ପ୍ରକାଶି ଅମୀୟ ସ୍ତବ
ନୃଶଂସ ଅହିଂସା ଧର୍ମେ ମୋହି ଜଗତ
ଉଦ୍ଧାରିଲେ ଜୀବକୁଳ । ପୃଥ୍ୱୀ ହେଲା ଶୀତଳ
ଯୁଗେ ଯୁଗେ ଉଡ଼ାଇଲେ ଯଶଃ ଜୟନ୍ତୀ
ସେତ ଗଲେ ଛଡ଼ ଏ ଧରା
ଚିରଜୀବ ହୋଇ ତୁମ୍ଭେ ରହିବ ପରା । ୬ ।
କେତେ କେତେ ପୁଣ୍ୟଶୀଳା ସତୀ ଶିରୋମଣି ବାଳା
କେତେ ବୀର ସୀମନ୍ତିନୀ ରଣରଙ୍ଗିନୀ
ପତି ପାଇଁ ପ୍ରାଣ ଦେଇ ଯୁଦ୍ଧରେ ହୋଇ ବିଜୟୀ
ଅବଶେଷେ ହେଲେ କାଳ ଶଯ୍ୟାଶାୟିନୀ
ତାଙ୍କ ପାଇଁ ତୁହେ ଏ ଧରା
ଚିରଜୀବ ହୋଇ ତୁମ୍ଭେ ରହିବ ପରା । ୭ ।
ଶ୍ରୀ ଅନଙ୍ଗଭୀମଦେବ ବିରଚି ଉତ୍କଳ ଦେବ
ମନ୍ଦିର ପାପ—ତମର ସୂର୍ଯ୍ୟ ଶାଶ୍ୱତ
ବିସ୍ତାରିଲେ ଧର୍ମାଲୋକ ଜାତିଭେଦ ଛଡ଼ି ଲୋକ
ମହାନ ଏକତାପ୍ରାଣେ ହେଲେ ଦୀକ୍ଷିତ
ସେତଗଲେ ଛଡ଼ି ଏ ଧରା
ଚିରଜୀବ ହୋଇ ତୁମ୍ଭେ ରହିବ ପରା । ୮ ।
କବି ବାଲମିକି, ବ୍ୟାସ, ଭବଭୂତି, କାଳିଦାସ
ଭକତ ମଧୁସୂଦନ, ଉପେନ୍ଦ୍ର ଭଞ୍ଜ
ରାଧାନାଥ ଆଦି କେତେ ଦେଶସେବା ଶିକ୍ଷାବ୍ରତେ
ବିରଚିଲେ କେତେ ନବ କବିତାକୁଞ୍ଜ
ସେ ତ ଗଲେ ଛଡ଼ି ଏ ଧରା
ଚିରସ୍ଥାୟୀ ହୋଇ ତୁମ୍ଭେ ରହିବ ପରା । ୯ ।

## * ବୃଦ୍ଧ ଗିରିଙ୍କ ପ୍ରତି

ଆହେ ବୃଦ୍ଧ ଗିରି ! କହ କି କାରଣ
ଦେଉଛ ଦଉଡ଼ କରି ଧନ ଧନ ?
ହେଲଣି ଆଗତ ତୁମ୍ଭ ଶେଷକାଳ
ସେଥିପାଇଁ କିମ୍ପା ଘଡ଼ଏ ନ ଭଲ ?
ଅଳ୍ପକାଳେ ତୁମ୍ଭେ ଛାଡ଼ିବ ଯାହା
କିମ୍ପା ବ୍ୟସ୍ତ ସଦା ଉପାର୍ଜ୍ଜନେ ତାହା ?
ସୁଦୁର୍ଲ୍ଲଭ ମହାମୂଲ୍ୟ ଆୟୁଧନ
କରୁଅଛ ସିନା ବୃଥାରେ କର୍ତ୍ତନ ।
ରସନା ବାସନା ପରିତୃପ୍ତ ପାଇଁ
ଅଛ ସବୁବେଳେ ଅଶନଏ ଧାୟୀ ।
ପାରତ୍ରିକ ଭୋଗ ଲାଗି ବୃଦ୍ଧବର
କହ କିମ୍ପା ଆଜୁଁ ଯତନ ନ କର ?
ଐହିକ ସମ୍ପଦ ନ କଲେ ଅର୍ଜ୍ଜନ
ନୋହିବ ତୁମ୍ଭର କ୍ଷତି କଦାଚନ ।
ଅବଶ୍ୟ ଅବଶ୍ୟ ଯତନେ ଆହାର
ଯୋଗାଇବ ପ୍ରିୟ ତନୟ ତୁମ୍ଭର ।
ମାତ୍ର ଯେବେ ଏହି ବେଳେ ହେଲା ହୁଅ
ପାରତ୍ରିକ ଭକ୍ଷ୍ୟ ନ କର ସଞ୍ଚୟ ।
ଜାଣ ଉତ୍ସର୍ଜ୍ଜିବ କାୟା ଯେତେବେଳେ
କିବା ପୁତ୍ର କିବା ନାତି ତେତେବେଳେ
କରି ନ ପାରିବେ କିଛି ଉପକାର;
ଯାହା ଲୋଡ଼ା ତବେ ତହିଁରେ ତୁମ୍ଭର
ଗଣ୍ଡା ଗଣ୍ଡା କରି ପିଣ୍ଡାଳ ବାଢ଼ିବେ
କେବଳ ସେ ଲୋକ ଲଜ୍ଜାରୁ ଡରିବେ
ତୋଷିବେ ସିନା ସେ ପଟୁ ବଟୁକୁଳ
ଦକ୍ଷିଣା ବଡ଼ସୀ ସଫରୀ ଚଟୁଳ ।

* ବୃଦ୍ଧ କରୁଣାକର ଗିରି ଉଦ୍ଦେଶ୍ୟ ।

ସେ ପିଣ୍ଡତ ତୁମ୍ଭ ପାଖକୁ ନ ଯିବ
କାକମାନଙ୍କର ଆହାରେ ଲାଗିବ ।
ସେ କାଳରେ କାହା ନ କରିବ ଠକା
କେହି ନ ଶୁଣିବେ ପକାଇଲେ ଡକା ।
ଏଣୁ କହୁଅଛି ମୋର କଥା ଧର
ପାରତ୍ରିକ କ୍ଳେଶ ସକଳ ହରର
ସଦା ସଞ୍ଚିବାକୁ କର ହେ ଯତନ
ସଦା କର ଈଶ-ମହିମା କୀର୍ତ୍ତନ ।
ଆଜ ଯାଏ ତୁମ୍ଭ ଅଛନ୍ତି ସମସ୍ତ
ବେଳ ଥାଉଁ ଥାଉଁ ଲଗାଅ ଆଶ୍ରସ୍ତ ।
ବିଭୁଙ୍କର ନାମ ସଦାବେଳେ ଧର
ନଷ୍ଟେ ମୁକ୍ତଲାଭ ହୋଇବ ତୁମ୍ଭର ।
ନୋହିଲେହେଁ ତୁମ୍ଭ ଚକ୍ଷୁ ଜ୍ୟୋତିଷ୍ମାନ
ହୃଦେ କର ଭୂମା ମୂରତି ଲୋକନ ।
ରସନାତ ରହିଅଛି ପୂର୍ବପରି
କାତରେ ଈଶ୍ୱରେ କର ହେ ଗୁହାରି ।
କ୍ଷମ କ୍ଷମ ପାପ କ୍ଷମାଲଗେ ପ୍ରାର୍ଥୀ
ମନେ ମନେ ଚିନ୍ତ ଦିବ୍ୟ ରମ୍ୟ ମୂର୍ତ୍ତି ।
ହୋଇ ନାହିଁ ତୁମ୍ଭ ଶ୍ରବଣ ବଧିର
ଶୁଣ ଶୁଣ ଶିର ! ବିଭୁତତ୍ତ୍ୱ ଗୀର ।
ନ ହେଉଁ ନ ହେଉଁ ତୁମ୍ଭ ସ୍ଥୂଳକାୟ
ପଞ୍ଚ ମହାଭୂତେ ମିଶି ମାଟିମୟ ।
ସାବଧାନ ହୋଇ ଆଚର ଧରମ
ଆଚରି ବାର୍ଦ୍ଧକ୍ୟ ଉଚିତ କରମ ।
ଜାଣେ ମୁହିଁ ତୁମ୍ଭେ ଏହି ଉପଦେଶ
ଉଡାଇବ ଶିର ! କରି ଉପହାସ ।
ଏଥିରେ ତୁମ୍ଭର ଛଳେ ଆସ୍ଥା ନାହିଁ
ନଷ୍ଟେ ପଡ଼ିଥାନ୍ତ କୁମ୍ଭୀପାକେ ଯାଇ
ମାନିଲ ତୁମ୍ଭର ଯେଉଁ ପ୍ରଭୁଭକ୍ତ
ସେଥିଲାଗି ଧ୍ରୁବ ହୋଇବ ମୁକତ ।

ରମାନନ୍ଦ କାହିଁ ଘଣ୍ଟାକୁ ବଜାଇ
ମୁକ୍ତିଲାଗି ଯେତେ ହେଉଛନ୍ତି ବାଇ
ଏବା ପ୍ରକୃତିକି କଲ ଯା ଅର୍ଚ୍ଚନ
ତାହାଙ୍କ ଉପରେ ଲଭିବ ଆସନ ।

---

## ବନ୍ଧୁ *

କନ୍ଦାଇ କମଳା କର, କନ୍ଦାଇ ଜଗତ
ସଂସାର ଉତ୍କଳକାଶ୍ମୀ ମିହିର ଯେକାଳେ
ଅସ୍ତହେଲେ ଜମ୍ବୁନଦ ଜ୍ୟୋତିଃ ସୁରଞ୍ଜିତ
ପଶ୍ଚିମ ଶିଖରୀ ଚୂଳେ ସେକାଳେ ହେ ଭୂମେ
ମର୍ତ୍ତମାନ ! ସର୍ବବ୍ୟାପୀ କାଳସିନ୍ଧୁ ନୀରେ
ବୁଡ଼ିଲ, ବଶାଳ କର୍ମକ୍ଷେତ୍ର ଅବତରି
ଶାଶ୍ୱତ ଚରଣ ଧାତ୍ରୀ ଚିରଦିନ ଲାଗି ।
ସାମାନ୍ୟ ଅସୁଖ ହେଲେ ଯାହାଙ୍କ ଯତନେ
କେତେ ପରିଶ୍ରମ ଦେବ ! କର ଏକମନେ
ନ ଖାଇ ନ ପିଇ ସଦା ମହାବ୍ୟସ୍ତ ହୋଇ ;
ଆଜ କମ୍ପା କହ ସେହି ପ୍ରାଣ ପ୍ରିୟତମ
ତନୟ ତନୟା ଜାୟା ଆତ୍ମୀୟ ସ୍ୱଜନ
କାନ୍ଦୁଛନ୍ତି ସଦାବେଳେ ନ ପାରୁର ଭଲେ
ଅନନ୍ତ ଚନ୍ଦ୍ରସ୍ୱ ସୁଧା ପାନ କରି କହେ
ଭବପାରେ; କୁଣ୍ଠାଶୂନ୍ୟ ବୈକୁଣ୍ଠ ଭବନେ
ବିରାଜ, ମର୍ତ୍ତ୍ୟର ମହାଦୁଃଖ ଶୋକକ୍ଲିଷ୍ଟ
ନରକୁଳ ଡାକ ଆଉ ନ ଶୁଣି ଶ୍ରବଣେ
ସଦାକାଳେ, ଶାସ୍ତ୍ରାଲାପେ କାଟୁଥିଲ କାଳ
ସଫଳ ଜ୍ୟୋତିଷ ଶାସ୍ତ୍ର ଚନ୍ଦ୍ର ସୂର୍ଯ୍ୟ ଆଦ
ଗ୍ରହଗଣେ ସାକ୍ଷି କରି, ଦେଖାଇଲ ବନ୍ଧୁ

---

* ମହାରାଜ କୁମାର ବୃନ୍ଦାବନ ଚନ୍ଦ୍ର ଦେବ । ସେ ଗତ ତା ୧୩-୪-୧୯୧୬ ରିଃ ରବିବାର ସନ୍ଧ୍ୟାବେଳେ ଗତାସୁ ହୋଇଅଛନ୍ତି ।

ସଫଳତା, ଜା ଆଗେ କହ, ଦୁଃଖୀ ସୁଖୀ ଜନେ
ବିପଦ କବଳେ ପଡ଼ି ଦଉଡ଼ିବେ ସଦା
ଅଦୃଷ୍ଟ ଗଣନା ପାଇଁ, ଆହେ ଚକ୍ରମଣି !
ତଥଣେ କେ ଦେବ ଆଉ ଦୁଷ୍ଟରୋଗୀ ଜନେ
ଦିବ୍ୟୌଷଧି ଅନଳ ସେ, ଚାନ୍ଦ୍ରଚ୍ଛନ୍ତ ଦେଖ
ହା ହା କାରେ ଧ୍ୱାନଗଣେ, ସ୍ମରି ସ୍ମରି ଆହା
ଯଶସ୍ୱୀ ! ତୁମ୍ଭର ପୁତ୍ର ମହାନୁଭବତା ।
ଏକାନ୍ତେ ସୁଦୀର୍ଘକାଳ ନିଷ୍ଠମ ପ୍ରସାର
ସହଯୁକ୍ତେ ଜୟୀ ହୋଇ, ଉପଯୁକ୍ତ ପୁତ୍ରେ
ନ୍ୟସ୍ତ କରି କର୍ମ ଭାର; ଯଥାକାଳେ ଦେବ !
ବିରାଜିଲ ଦେବଲୋକେ ଚରଣାନ୍ତ ପାଇଁ ।
ବିରାଜ ଦେବତ୍ୱ ଲଭି, ବିଭୁ ପାଦପଦ୍ମେ
ମହାମନା ! ନାହିଁ ଯହିଁ ଦୁଃଖଶୋକ କ୍ଳେଶ ।
ମର୍ତ୍ତ୍ୟଜନେ କୃପାବହ୍ନି କର ଦାନ ତବ
ଦେବତ୍ୱ, ମହତ୍ତ୍ୱ, ମହାଦିବ୍ୟ ସୁଚରିତ ।

---

ମାନବର ଆଦି ଜନ୍ମଭୂମି ପ୍ରଣେତା

## ପଣ୍ଡିତ ଉମେଶଚନ୍ଦ୍ର ବିଦ୍ୟାରତ୍ନ ପ୍ରତି

ବିଶ୍ୱ ସମୁଜ୍ଜ୍ୱଳକାରୀ ହେମ ଅଂଶୁମାଳୀ
ପ୍ରଭାତରୁ ଦିଶି ଯଥା ଦେବ ଅଂଶୁମାଳୀ
ଘନ କୁହେଳିକାପୁଞ୍ଜ ଧୂସର ବରଣ
ମ୍ଳାନକାନ୍ତି ଦୂର କରି, କରନ୍ତ ଅଚିରେ
ଦିଙ୍ମଣ୍ଡଳ ସମୁଜ୍ଜ୍ୱଳ ତେସନ ହେ ତୁମ୍ଭେ
ମନସ୍ୱୀ ଉମେଶଚନ୍ଦ୍ର ! ରବିରୂପେ ଉଇଁ
ଶୁଭକ୍ଷଣେ ଭାରତର ଉଦୟ ଅଚଳେ
ସତ୍ୟାଲୋକେ ପ୍ରକାଶିଲ କଦର୍ଥକୁ ନାଶି
ଦର୍ଶନ ପୁରାଣ ବେଦ ଉପନିଷଦାଦି
ଗ୍ରନ୍ଥମାନ ସମାଲୋଚି ଏକାଗ୍ର ମନରେ ।

ବିସ୍ମୃତି ଗର୍ଭରୁ ଟାଣି ଆଦ୍ୟ ଜ୍ଞାନାଗାର
ଏଲାବୃତ୍ତ ବର୍ଷେ ସ୍ଥିତ ପୂତ ମେରୁସ୍ଥଳୀ
ପ୍ରଥମ ପୁରୁଷଙ୍କର ଜନ୍ମସ୍ଥାନ ବୋଲି
ପୁଣ୍ଡ୍ରିକୁଫସ୍ତାରେ ପଢ଼ି ଯାହା ହିନ୍ଦୁମାନେ
ଢାଳୁଛନ୍ତି ପିଣ୍ଡୋଦକ ବହୁତକାଳରୁ
ହେ ଯଶସ୍ୱୀ ମଣି ! ତୁମ୍ଭେ ଦିବ୍ୟ ପ୍ରଜ୍ଞାବଳେ
ଘୁଞ୍ଚାଇଲ ନରମନ୍ତୁ ସେ ଫସ୍ତାରୁ ତମ
ଶାମଶ୍ରମୀ, ସତ୍ୟବ୍ରତ, ମହୀଧର ଦୁର୍ଗା
ଉବଟ, ଦଉଦା, ଯାସ୍କ, ଶଳକ, ମୁଗର
ଆଦି ଭାଷ୍ୟକାରଗଣ ସାୟନାଚାର୍ଯ୍ୟଙ୍କ
ଟୀକାରେ ଏକଜନ ମାତ୍ର, ପଣ୍ଡିତ ମଣ୍ଡଳେ
ପାଉଥିଲେ ଦିବ୍ୟପୂଜା କିନ୍ତୁ ହେ ସୁଧୀର !
ସେ ମିଥ୍ୟା ଟୀକାରେ ତୁମ୍ଭେ ନ ବଳାଇ ମଣ
ବାଗ୍‌ଦେବୀ ଭଣ୍ଡାରେ ପଶି ପ୍ରକୃତ ତତ୍ତ୍ୱକୁ
ମାନବ ସମାଜେ ଝିଙ୍କି ଉଦ୍ଧକଲ ବଳେ
ଭୋବଦ ! ଏରୂପେ ବିଭୁ ଅନୁଗ୍ରହେ ସଦା
ଦୀର୍ଘଜୀବ ହୋଇ ରଖ ଦେଶ ଦେଶାନ୍ତରେ
ଭାରତ ଜନନୀ ମାନ ଜନନୀ ଭକତ ।

---

## ଋଷି ରାଜତ୍ୱ

ବିଶ୍ୱାମିତ୍ର ଛଳ ଧର୍ମେ ପ୍ରତାରିତ
ହୋଇ ପତ୍ନୀପୁତ୍ର ସଙ୍ଗତେ ଯେବେ
ବନକୁ ଗମିଲେ ଧର୍ମପ୍ରାଣ ଧନ୍ୟ
ପୁଣ୍ୟଶ୍ଳୋକ ହରିଶ୍ଚନ୍ଦ୍ର ନୃମଣି ।
ଛାଡ଼ିଲେ ନଗର— ବାସୀଏ ବିଷାଦେ
ସ୍ମରି ସ୍ମରି ତାଙ୍କ ମହତ ଭାବ
ଅସ୍ତାଚଳ ଚୂଡ଼େ ରବିଙ୍କୁ ନିରେଖି
ଚକ୍ରବାକେ ଯଥା ରଚନ୍ତି ରାବ ।

ନାନା ଦୂର୍ନିମିତ୍ତ— ମାନ ଦେଖାଦେଲ
ଚମକାଇ ସବଁ ନଗର ନରେ
ନୟୂର ଝମକ ବାଜଲ୍ଲ ପଗ୍ଏ
ପେଚକ ଗ୍ରବଲେ ବସି ଗ୍ଧଲରେ ।
ଦେଉଳ ଚୂଳରେ ବସିଲେ ଶକୁନ
ଭାଲର କସ୍ଳଲଲେତନ ପର
ସେକାଳ ବଜୟୁ ଉସ୍ତବ ସଲିଭ
ବାଜଲ୍ଲ ଶୃଗାଳ ବଦନଭେସ୍ରୀ ।
ଦଲ ଦଲ ହୋଇ କମ୍ପିଲ୍ଲ ମେଦନୀ
ବହୁଲ୍ଲ ପ୍ରଚଣ୍ଡ ଉତ୍ତପ୍ତ ବାତ
ନଭ ବଦଗ୍ଲଇ ବଣ୍ଣ ଚମକାଇ
ପଡ଼ିଲ୍ଲରେ ଗଣ୍ଡା ଗଣ୍ଡା ନର୍ଘାତ ।
ଏକାଳେ ବୈଶାଖ ସିଂହ ଘଣ୍ଟାଘଣ୍ଟି
ମୃଗଛଲ ମାଳ କୁମ୍ଭୀ ବକଳ
ସହୃତରେ ଘେନ (୧) ପେଢୀରେ ଆରୋହ
ଆସିଲେ ବୈଷ୍ଣବ ଦଳକୁ ଦଳ ।
ଶୃଙ୍ଗାଠକ କୁଳ ଫକୁଲ ସମୂଚ
ମନୋହର ସୌଧେ ଶ୍ୱେତବରଣା ।
ଭାନନ-ଦଳାସୀ ମୁନଏ ସହଜେ
ସେ ପୁର ମାର୍ଗରେ ହୋଇଲେ ବଣା ।
ସୋପାନ ସରଣି , ଅବଲମ୍ବି ଉଚ
ଅଟ୍ଟାଳରେ ଉଠି ବୈଷ୍ଣବଗଣ
ଉତ୍ତଙ୍ଗ ଶଇଳ ଶିଖେ ଆରୋହଣ
ସୁଖକୁ ସହଜେ କଲେ ସ୍ମରଣ ।
କୈଳାସ କୁଟର ହରଷ୍ଟନ୍ଦ୍ରଙ୍କର
ଧବଳ ମର୍ମର ପଟ୍ଟା ଉପରେ
ପାରସ୍ୟ ଦେଶୀୟ କାର୍ପେଟେ ବସିଲେ
ଛିଣ୍ଡା ମୃଗଛଲ ପାର ଆଦରେ ।

(୧) ପ୍ରବ୍ରବା ସମସ୍ତରେ ବନବାସୀମାନେ ବ୍ୟବହାର କରନ୍ତି ଏହା ବାର୍ଦ୍ଧିଣରେ ଉସ୍ତାହ ହୁଏ ।

ଯେଣୁ ସେ ଗାଲ୍ପ                ମୁନିମାନଙ୍କର
　　ବସ୍ତ୍ରଶୂନ୍ୟ ନଗ୍ନ ଶରୀର ଦେଖି
ଉପହାସେ କିବା                କ୍ରୀଡ଼ା ଆରମ୍ଭିଲ
　　କଣ୍ଟକ ପୃଷ୍ଠକୁ ଉପରେ ଠେକି ?
ମୁଖ ପରବଶେ                ବିଷମ ବିପଦ
　　ହେଲା ନାହିଁ ବୁଲିଚଳି ଟିକିଏ
ଧ୍ୟାନରେ ବସିଲା                ପଗ୍ଏ ସହ୍ନକେ
　　ରହିଗଲେ ନିଶ୍ଚଳରେ ଋଷିଏ ।
ପଶିଲେ ସୁରଭି                ତଇଲ ସହିତ
　　ମାଜଣା ସମ୍ଭାର ବନ୍ଧୁ ସେବକ
ତେଲ ଦେଖି ଦେହୁ                ଉଲ୍ଲସି ଉଠିଲା
　　ସର୍ବେସେ ଋଷିଏ ଦେଲେ ଧମକ ।
ରଜକମାନଙ୍କୁ                ହେଲାରେ ନୋଟିସ
　　ସନ୍ତୁଷ୍ଟ କରିବା ପାଇଁ ପାଉଁଶ
ଧୋତି କନ୍ଥ ଛଡ଼ି                ବୋହିଲେ ଧୋବାଏ
　　ଭର ଭର ଖାର ସ୍ୱଜ ଉଆସ ।
ଲାଗିଲେ କୁମ୍ଭାରେ                ହାଣ୍ଡିଗଢ଼ା ଛଡ଼ି
　　ବିଚିତ୍ର ଚିଲମ ଗଢ଼ିବା ଆଗେ
ଧାନ ମୁଗ ବିରି                ଉପେକ୍ଷି କୃଷକେ
　　ମାଡିଲେ ବିବିଧ ଗଞ୍ଜାଇ ବୁଣେ ।
ଭୁଲା ରେଶମର                ବଦଳେ ଆଦର
　　ଲଭିଲେରେ ରାଜ୍ୟ କୃଷ୍ଣ ମଶିଣା
ମୁକ୍ତା ପରିବର୍ତ୍ତେ                ଆଦର ଲଭଇ
　　କିରାତ ଦେଶରେ ବଦରୀ ଯିନା ।
ସଘୃତ ପକ୍ୱାନ୍ନ                ପରଷି ପାତକେ
　　ଲଭିଲେରେ ଅଧିକରଣେ ଦଣ୍ଡ
କନ୍ଦମୂଳ ପୁଷ୍ପ                ପେଟକୁ ପଲଉ
　　ମନ୍ଦି ପକାଇଲା ଯେଣୁ ପ୍ରଚଣ୍ଡ ।
ପଚେଟ ପଇଁହା                ଲକ୍ଷଭେଦ ଆଦ
　　ଯୁଦ୍ଧ ବିଦ୍ୟା ଛାଡ଼ି ସୈନିକ ବ୍ରାତ

ରାମାନନ୍ଦ ଜାତି ତୀର୍ଥ ମାଳା ଧରି
ଖଞ୍ଜଣି ବାଦ୍ୟରେ ହୋଇଲେ ରତ
ସୁନ୍ଦର ପିତାର ତାର ଅସ୍ତ୍ର ଶସ୍ତ୍ର
ଗଢୁଥିଲେ ଯେଉଁ ବଢାଣି ଘଟା
ରାଜ୍ୟ ବ୍ୟବହାର ପାଇଁ ରଚିଲେ ସେ
କାରୁ କାର୍ଯ୍ୟମୟ ସ୍ବରୁ ଚମଟା ।
ବନାରସୀପାଠ ବ୍ୟବସାୟୀ ଯେତେ
ଆସୁଥିଲେ ପୁର୍ବେ ରାଜନବରେ
ଋଷି ଘମ୍ବୁଙ୍କର ବ୍ୟବହାର ପାଇଁ
ବଲ୍କଳ ଖୋଜିଲେ ପଶି ବନରେ ।
ରାମଣ୍ଡଳା ଛଳ ସର୍ଷପ ଜପେଷି
ତେଲ୍ଏ ପେଡ଼ିଲେ ପିଙ୍ଗୁ ଘଣାରେ
ଉପାନହକାରୀ ଚମାରେ ସରିଲେ
ବଢ଼ାଇ ଲାଗିଲେ ଗେଡ଼ ବନାରେ ।
ଭଣ୍ଡାର ବ୍ୟବସା ବୁଢ଼ାଲ ମାହକ
ଚତୁର ଲଙ୍କଙ୍କ ହୋଇବେ ରଦ
ମଉଜ ସମୟେ ପାଖେ ପାଖେ ରହୁ
ନଆଁ ରଡ଼ ଦେଲେ ଚଲମେ ଲଦ ।
ସରିଲାରେ ବଳା— ସିମାଙ୍କ ବଳାସ
ଭଙ୍ଗି, ହାସ୍ୟମୟ ଗୃରୁ ଗ୍ବହାଣି,
ସୁଙ୍ଗୀନ ବସନ ଆବରଣ ତାଙ୍କ
ଶ୍ରୀଅଙ୍ଗ ଦେଶରୁ ନେଲେ ମେଲ୍ଛଣି ।
ଯେମାନେ ବରାଙ୍ଗ ସାଜୁଥିଲେ ଆହା
ମହାର୍ଘ ସୁଗନ୍ଧ ଅଙ୍ଗେ ଲେପନେ
ସେମାନେ ଭଷାଦେ ବିଭୂତ ବୋଳିଲେ
ଋଷିବାଲାଙ୍କର ଅନୁକରଣେ ।
ଅକାଣ୍ଡିଆ ଋଷି- ରାଜତ୍ବେ ବଳାଏ ।
ସପାଉଁଶ ଧୂଳମଳ ଦେହରେ
ଦ୍ବିଦନ୍ତୀ ପଲ୍ୟଙ୍କ ଅଙ୍କ ସୁଖ ଛାଡ଼ି
ଶୋଇଲେ ମଶିଣା ଶଯ୍ୟା ଉପରେ ।

ନ ରହିଲା ଆଉ          କାରୁକାର୍ଯ୍ୟମୟ
    କମନୀୟ ରତ୍ନ ଭୂଷଣ ବେଶେ
ଯେଣୁ ଗଢିବାରେ          ଲଗିଏ ବଣିଏ
    ବଚନ ସୁବର୍ଣ୍ଣ ତୁମ୍ବି ବଶେଷେ ।
ରାଜ ପାରିଷଦ          ରୂପେ ବପ୍ରମାନେ
    ଅନୁସରି ପଛେ ତାଙ୍କ କଥାରେ
ଧୂମ୍ରପାନ ବିଧି          ନାହିଁ କି କରିବେ
    ଅବଶେଷେ ବସିଗଲେ ଘୂଠାରେ ।
ଖାର ମାଖି ଶିରେ          ଜଟାଜୂଟ ପୁଣି
    କମଣ୍ଡଳୁ ଘର୍ଘ ଚମଠା ବହି
ସମ୍ଭ୍ରାନ୍ତ ଧନୀକେ          ବାବାଜିଙ୍କ ବେଶ
    ଅନୁକରଣରେ ହେଲେ ଆଗ୍ରହୀ ।
ରାଜାଙ୍କର ଡେଙ୍ଗା          ଘୋଡ଼ାମାନଙ୍କରେ
    କେତେ ଋଷିପିଲେ ଶିଖିବା ପାଇଁ
ଆରୋହି କୌତୁକେ          ସମ୍ଭାଳି ନ ପାରି
    ପଡ଼ିଗଲେ ଆଣ୍ଠୁଗଣ୍ଠି ଛିଣ୍ଡାଇ ।
ନଗରର ଯେତେ          ବହୁମୂଲ୍ୟ ଦ୍ରବ୍ୟ
    ଆଶ୍ରମକୁ ପଠାଗଲା ସକଳ
ତାର ପରିବର୍ତ୍ତେ          ଆସିଲା ତହିଁରୁ
    କନ୍ଦମୂଳ କୁଶ କୁମ୍ଭୀ ବକଳ ।
ଅନାବଶ୍ୟକୀୟ          ବ୍ୟସ୍ତବୁଦ୍ଧି ବୋଲି
    ଋଷି କାଉନ୍‌ସିଲେ ହେଉ ବିଧାନ
ଶାଳଦଣ୍ଡା ଅଶ୍ୱେ          ଦାଣ୍ଡେ ଚରି ଚରି
    ବୁଲି ବୁଲି ଶେଷେ ତେଜିଲେ ପ୍ରାଣ ।
ଗୁଣୁ ଗୁଣୁ ସ୍ୱରେ          ବୁଲିଲେ ବ୍ୟାକୁଳେ
    ଅଧୀରେ ମଣକେ ଆଶା ହରାଇ
ଋଷିଙ୍କର ହଳ          ଗନ୍ଧେ ପୂର୍ଣ୍ଣ ସଦା
    ହୋମକୁଣ୍ଡ ଧୂମ ନପାରି ସହି ।
ସରଳ ମାର୍ଜ୍ଜାର—          ମାନଙ୍କ ବଡ଼ିମା
    ଋଷିଙ୍କ ଭୋଜନ ସମ୍ଭାର ଦେଖି

ଖାର ବଳ୍କଲରୁ ଯହିଁ ତହିଁ ନବ
ସାରମେୟ ଭୁଲେ ନେଉଥିରେ ଠେକ ।
ଉଠୁଥିଲା ଯହିଁ ମନମୁଗ୍ଧକର
ଅଗୁରୁ ଚନ୍ଦନ ଧୂମର ମିଠା
ସ୍ଥଳେ ସେ ସ୍ଥାନେ ଚକ୍ଷୁ ପୀଡ଼ାଦାୟୀ
ଉତ୍କଟ ଗଞ୍ଜାଇ ଚିଲମ ଛିଠା ।
ଫୁଲଭରେ ନତ ସ୍ରଜ ଉପବନ
ମହକ ଉଠି ଯା ଥିଲା ବାସରେ
ଅବଲମ୍ବେ ଧ୍ୱଂସ ହେଲା ଫଳଫୁଲ
ଋଷିଙ୍କ ପାଳିତ ମୃଗ ତୁଣ୍ଡରେ ।
ହୋମ କାଷ୍ଠଘୃତ ବାଲ୍ ବେଦକାରେ
ମର୍ମର ଶିଳାର ଠେକ ସରିଲା
ପାଠକୁ ପାଉଁଶେ ପଖାଳିଲା ପରେ
ତା ପୁଣି ଗୋବର ଜଳେ ଭିଜିଲା ।
ମାଣିକ୍ୟ ମଣ୍ଡିତ ପୁର ପୂର୍ଣ୍ଣ ହେଲା
ହୋମପୀଠ ଦୂର୍ବାଙ୍କର ଲୁଣରେ
ହୋମ ଧୂମଜାତ ଅଳକ ଝୁଲିଲା
ରତନ ସ୍ରଜିତ ଚନ୍ଦ୍ରାତପରେ ।
କାବ୍ୟ ନାଟକାଦ ରଚନ ତ ଅଛି
କବିଙ୍କ ମନକୁ ରୁଚିଲା ନାହିଁ
ବିବିଧ ଛନ୍ଦରେ ଭଜନ ବର୍ଣ୍ଣନା
କରିବା ପାଇଁ ସେ ହୋଇଲେ ବାଇ ।
ଭଲ ଭଲ ଦେଶ- ହିତକର କଥା
ଛାଡ଼ିଲେରେ ସମ୍ପାଦକ ମଣ୍ଡଳେ
ସମ୍ପାଦିତ ନିଜ କାଗଜ ପତ୍ରିଟି
ପୂର୍ଣ୍ଣ କଲେ ସେହି ଭଜନ ମାଳେ ।
ଇତିହାସ ବାକ୍ୟ ଭୂଗୋଳ ବଦଳେ
ପଢ଼ା ହେଲା ମନ୍ତ୍ରତନ୍ତ୍ର ସକଳ
ବ୍ୟାୟାମ ବଦଳେ ପିଲାଏ ଶିଖିଲେ
ମୁଦ୍ରା ପ୍ରଚଳନ ଯେତେ କୌଶଳ ।

ସିଦ୍ଧାନ୍ତ ନିୟମ ଉଠିଗଲା ଦେଶୁ
ଅନୁସର ଋଷି ବ୍ୟବସ୍ଥା ବଳ
ପ୍ରଜା ବୃଦ୍ଧି ହେବ କି ଉପାୟେ ବୋଲି
ଘୂରିଲେ ମଥା ନେତା ସକଳ ।
ବୈଜ୍ଞାନିକମାନେ ପଢ଼ିଲେ ଉପଦେ
ହେତୁ ଖୋଜି ଖୋଜି ପାଇଲେ ନାହିଁ
କପଟ ଗମିବେ ଶୂନ୍ୟେ ଖାର ମାଖି
ଚଡା କାଟି ସଦା ମାଲ ଗଢ଼ାଇ ।
ଜୀବହିଂସା ହେବ ବୋଲି ଶିକ୍ଷାଶ୍ରଏ
ବନ୍ଧୁକ କମାଣ ହେଲା ଜପ୍ତ
ଶାନ୍ତିଗୁଣ ନାଶି ବଢ଼ିଲା ଚୌଦିଗେ
ହିଂସ୍ରଜନ୍ତୁଙ୍କର ଦୌରାତ୍ମ୍ୟ ଅନ୍ତ ।
ବିଦ୍ୟାଳୟୁ ଉଠେ କମେ ଶିକ୍ଷଣୀୟ
ଛାତ୍ରମାନଙ୍କର ଉନ୍ନତ ପାଠ
ତାର ବଦଳରେ ପ୍ରଚଳିତ ହେଲା
ପ୍ରତ୍ୟେକ ଶ୍ରେଣୀରେ ପୁରାଣପାଠ ।
ଦେଶର ଯେତେକ ଭଲ ଭଲ ହୁଦା
ପଡ଼ିଲେ ଋଷିଙ୍କର ଭାଗ୍ୟରେ
ବାଙ୍କ ସାନଯାଙ୍କ ଦେଶକୁ ଯୁଟିଲା
ତା ପୁଣି ମୁନିଙ୍କ ଅନୁଗ୍ରହରେ ।
ଛ ମାସର ଆଗେ ଯେଉଁମାନେ ଥିଲେ
ଗୁଣିଙ୍କ ମଣ୍ଡଳ ଯୋଗ୍ୟ ଶାସକ
ଅଳପ ଦିନରେ ସେମାନେ ହୋଇଲେ
ଅକ୍ଷମ ଅଯୋଗ୍ୟ ଅନାବଶ୍ୟକ ।
ସଂସାର ସ୍ୱପ୍ନରେ ମହା କାରାଗାର
ଅନ୍ୟ କାର୍ଯ୍ୟମାନ ଦ୍ୱିରୁକ୍ତି ବିନା
ଋଷି ଦରବାରେ ଚଳିବାରୁ ଶ୍ରେଷ୍ଠ
ଉଠିଗଲା ଯେତେ ଜେହେଲଖାନା ।
ତାପମାନ ଯନ୍ତ୍ର ଲୋଡ଼ା ହେଲା ନାହିଁ
ଜ୍ୱର ନିରୂପଣ ହେଲା ନାଡ଼ୀରେ

ଲେଖନୀ ସ୍କୁଲନ                    ବଢ଼ିଲେ ପିଲାଏ
ଅକ୍ଷର ଲେଖିଲେ ବସି ଖଡ଼ିରେ ।
ବନଗଛ ଲତା                    ଅଠନ୍ତି ସଟିଦା
ସ୍ମରଣଙ୍କ ତନୟ ତନୟା ପରି
ଏବାବେଳେ ତାଙ୍କୁ                    ନ କାଟିବା ପାଇଁ
ହେଲା ଦରବାର ନୋଟିସ ଜାରି ।
ଫରେଷ୍ଟରଠାରୁ                    ପିଅନ ପର୍ଯ୍ୟନ୍ତ
ଯେତେ ଥିଲେ ସେହି ବିଭାଗେ ବର
ଛ ମାସର ଭତ୍ତା                    ପାଇଣ ସକଳେ
ଗଲେ ଯେଝା ଗ୍ରାମେ ବକ୍ଷାଦେ ଫେର ।
ମ୍ୟୁନସିପାଲିଟି                    ପୂର ପରିଷ୍କାର
କରୁଥିଲେ ସଦା ସ୍ୱାସ୍ଥ୍ୟବିଧାନ
ରାଜବାଟୀଯାକ                    ଖାର ଗଡ଼ା ପୁର୍ଣ୍ଣ
ବଳେକ ତାହାଙ୍କ ହଜିଲା ଜ୍ଞାନ ।
ପୋଲିସେ କି ଶାନ୍ତି                    ରଖିବେ ନଜେ ସେ
ବୈଷ୍ଣବ ଅଇନ ପାଳନ କରି
ଅତ୍ୟନ୍ତ ଅଶାନ୍ତି                    ଉଠାଇଲେ ରାଜ୍ୟେ
କେ ଶୁଣୁଛି ଦୁଃଖୀ ରାଜା ଗୁହାରି ।
ବରଷା ସମୟେ                    ଆସିଲେ ଦର୍ଦ୍ଦୁରେ
ମକମକ ଶବ୍ଦେ ପକାଇ ରଡ଼ି
ଯେସନ ସେ ଦେଶୁଁ                    ବସନ୍ତ ସଦସ୍ୟ
ପିକଙ୍କୁ ତୁରିତେ ଦଅନ୍ତି ତଡ଼ି ।
ତେସନରେ ଦର—                    ପାଠୁଆ ବହୁତ
ଜଟିଳ ବାବାଜିକୁଳ ଅଗାଡ଼
ଚୌଦିଗୁଁ ଦଉଡ଼ି                    ଗୁଣୀ ସ୍ୱଦେଶୀଙ୍କୁ
ଘଉଡ଼ି ସେ ସ୍ଥାନ ବସିଲେ ମାଡ଼ି ।
ସ୍ୱେର ଡକାଇତ                    କରିଲେ ବୈଷ୍ଣବ
ତଣ୍ଡି ହେଇ ଏକ ସେର ପାଉଁଶ
ଅନ୍ୟ ଜଣେ ସେହି                    କାର୍ଯ୍ୟ ଆଚରିଲେ
କଠାଗଲା ଦେହୁଁ ସେରେ ମାଉଁସ ।

ନରହତ୍ୟାକାରୀ ରାଜାଙ୍କ ଦଣ୍ଡ
ନଖଦାଡି ଫାଳେ ହେଲର୍ଷି କଣ୍ଠା
ଅନ୍ୟମାନଙ୍କର ପକ୍ଷେ ଭଳ ବଧ୍
ଶୂଳଫାସି ଯୋଗେ ଗଲା ପ୍ରାଣଟା ।
ବ୍ୟଭିଚାରି ଦୋଷୁଁ ବୈଷ୍ଣବ ମୁକ୍ତ
ଲକ୍ଷେ ହରିନାମ କରିଲେ ଜପ
ଅନ୍ୟ ପ୍ରଜାକୁଳ ଲିଙ୍ଗଚ୍ଛେଦ ଦଣ୍ଡ
ଲଭିଲେ ଅଟର ପଦ ସେ ପାପ ।
ବହୁ ଅଭିଯୋଗ- ମାନ ଯହିଁ ତହିଁ
ହେଉଥିଲା ମୁଖେ ମୁଖେ ଫୈସଲା
ଖୋସାମଦ ପଟୁ ଚାଟୁକାରଦଳ
ହେଲେ ସେହି ମାମଲାରେ ଅମଲା ।
ଏ ଆଦି ବିବିଧ ବିଶୃଙ୍ଖଳା ଯୋଗେ
ବୈରଦସ୍ୟୁ ପ୍ରତିପକ୍ଷ ଭୟରେ
ଏକାନ୍ତ ଅସ୍ଥିର ହୋଇ ରାଜ୍ୟ ସୁଖ
ବଦଳେ ବୁଡ଼ିଲେ ମନ ଶୋକରେ ।
ଶେଷେ ସ୍ୱ ଆଶ୍ରମେ ଲେଉଟିବା ସ୍ୱବ
ସଙ୍ଗିମାନଙ୍କର ସହ କୌଶିକ
ଫେରାଇ ନଜର ରାଜ୍ୟ ହରିଶ୍ଚନ୍ଦ୍ରେ,
କାନନରେ ହେଲେ ପୁନର୍ମୁଷିକ ।

---

## ବଚନ ଶଙ୍ଖ

ଥିଲେ ଏକ ଦ୍ୱିଜବର ଅତି ଅଳସୁଆ
ଘରଟି କୁଟୀର ପୂର୍ବେ ସମୁଦ୍ରତଟର
ବାଲିମୟ ପ୍ରଦେଶରେ କର୍ମ ଅନୁକୂଳ
ଭାଗ୍ୟଦେବୀଙ୍କର ଚଉ ନିଷ୍ଠୁର ଦୃଷ୍ଟିରେ
ବିଷମ ଦୁର୍ଦ୍ଦଶା ଲଭି, ଦାରିଦ୍ର୍ୟ ତାଡ଼ନେ
ସଦାବେଳେ ଅବସନ୍ନ, କ୍ଲେଶରେ ଶୋଷରେ

ପୁତ୍ରକନ୍ୟା ଗୃହିଣୀର ମୁମୂର୍ଷୁ ଅବସ୍ଥା
ଦେଖିଲେକ ; ଅଥିଷ୍ଣୁ ଦ୍ୱିଜ ନ ପାରିଲେ ସହି
ପ୍ରବଳ ସଙ୍କଳ୍ପ ଏକ ମାନସେ ମନାସି
ଗମିଲେ ସାଗର ତଟେ, ଛେଦାଇ ସଲିଳ
ରତ୍ନାକରୁ ରତ୍ନରାଜି ଆଣି ଅବହେଳେ
ନିଜର ଦାରିଦ୍ର୍ୟ ଦୁଃଖ କରିବାକୁ ଲୟ
ଜଳ ନିକଟରେ ଧାଇଁ ଏକ ବାଲିବନ୍ଧ
ଖୋଳାଇ ଗୋଟିଏ ଯେଣ ଏକାଗ୍ର ଚିତ୍ତରେ
ଖୋଳାଇ ଖୋଳାଇ ପାଣି ସାଗରରୁ ତୋଳି
ପକାଇଲେ କ୍ଷିପ୍ରକରେ ବନ୍ଧ ଆର ପାଶେ
ନାହିଁ ଦିନ ନାହିଁ ରାତ୍ରି ଅବିରତ ସେହି
ମନରେ ଟିକିଏ ସୁଦ୍ଧା ହତାଶ ନ ହୋଇ
ଏକଲୟେ ରତହେଲେ ପାଣି ଫିଙ୍ଗିବାକୁ
ମାତ୍ର ଏ ଦୁରାଶା ମହା ବାତୁଳତା କିନା !
ଅନନ୍ତ ଜଳଧିଜଳ ଫେନପୁଞ୍ଜ ହାସ୍ୟେ
ତାହାଙ୍କର ସଂକଳ୍ପକୁ କଲା ଉପହାସ ।
ଏରୂପେ ଦ୍ୱାଦଶ ଦିନ ହୋଇଗଲା ଗତ,
ଦେଖୁଁ ଦେଖୁଁ ବାଧାବିଘ୍ନ ସବୁ ଅତିକ୍ରମି
ଦ୍ୱିଜବର ଅନଳ ସେ ନବନବୋତ୍ସାହେ
ରତ ହେଲେ ମହାଦମ୍ଭେ ସୁଦୃଢ଼ ସଂକଳ୍ପେ ।
ଅଦମ୍ୟ ଉତ୍ସାହ ପୁଣି ଏକାଗ୍ରତା ଦେଖି
କଠୋର ଦୁର୍ଦ୍ଦଶାଗ୍ରସ୍ତ ବିପ୍ରବରଙ୍କର
ସୁପ୍ରସନ୍ନ ହୋଇ ପାଶୀ ଜଳଧି ରାଜନ
ପ୍ରବାଳପର୍ଯ୍ୟଙ୍କ ତେଜି ଦିବ୍ୟରୂପ ଧରି
ପ୍ରବେଶିଲେ ଆଚମ୍ବିତେ ତାହାଙ୍କ ପାଖରେ
କହିଲେ କରୁଣାସିନ୍ଧୁ ବୁଢ଼ା ବ୍ରାହ୍ମଣକୁ
ସଧୀରେ ମଧୁର ଗିରେ ଆହେ ବିପ୍ରବର !
ତୁମ୍ଭ ଦୃଢ଼ ଏକାଗ୍ରତା ଗାଢ ପରିଶ୍ରମ
ନିରେଖି ; ପ୍ରସନ୍ନ ହୋଇ ଦେଉଅଛି ନିଅ
କାମଦା ଏ ଶଙ୍ଖବର, ଏହାର ପ୍ରଭାବେ

ବହୁମୂଲ୍ୟ ଧନରତ୍ନ ସୁରମ୍ୟ ସଦନ
ଲଭିବ ସ୍ୱଇଚ୍ଛାକ୍ରମେ, ନିଜେ ରତ୍ନାକର
ତୁମ୍ଭ ଇଚ୍ଛା ଅନୁକୂଳେ ମୋର ଏ ଆଦେଶେ
ଯୋଗାଇବେ ରତ୍ନରାଜି ପରସ୍ପର ପର,
ଏହା କହି ଅନ୍ତର୍ଦ୍ଧାନ ହେଲେ ଜଳପତି
ଆଚମ୍ବିତେ ଦ୍ୱିଜ ଆଗୁଁ, ହୃଦମୋଦକାରୀ
ସ୍ୱପନ ଉଭେଇ ଯାଏ ଯଥା ଜାଗରଣେ,
ଅବା ଅଟ୍ଟାଳିକା ଶୋଭା ଯେସନ୍ତେ ଭୂକମ୍ପନେ
ଲମ୍ଫୁଟିକୁ କରେ ଯେନ ଅମ୍ବୁଧିତଟରୁ
ବାହୁଡ଼ି ସାନନ୍ଦେ ସେହୁ ହେଲେ ଉପସ୍ଥିତ
ନିଜ ପୂର୍ବପରିଚିତ ପ୍ରିୟତମବନ୍ଧୁ
କୃପଣ ସ୍ୱଭାବ ଏକ ତେଲିର ସଦନେ
କହିଲେ ତାହାଙ୍କୁ ବିପ୍ର ଅକପଟହୃଦେ
ମିତ୍ରବର ! ଦେଖ ଏହି ଦିବ୍ୟଶଙ୍ଖ ଗୋଟି
ଲଭିଛି ମୁଁ ବହୁଯତ୍ନେ ; ପ୍ରସନ୍ନକରାଇ
ଅନାହାରେ ଏକଲକ୍ଷ୍ୟେ ଦୃଢ଼ ପରିଶ୍ରମେ
ଜଳପତି ବରୁଣଙ୍କୁ ଏହାର ପ୍ରଭାବେ
ନିଜ ଇଚ୍ଛା ଅନୁକୂଳେ ମିଳଇ ସକଳ
ସୁଧାତୁଲ୍ୟ ଖାଦ୍ୟପାନ ଧନରତ୍ନ ଆଦି ।
ଶୁଣି ଏ ଅଦ୍ଭୁତ କଥା ମିତ୍ରମୁଖୁଁ ଧୂର୍ତ୍ତ
ଧନଲୋଭୀ ; ଚିନ୍ତ୍ୟୁରେ ରହିଗଲା କ୍ଷଣେ ;
ଦାରୁଣ ବିପାକଗ୍ରସ୍ତ, ଏକାନ୍ତ ଦରିଦ୍ର
ମିତ୍ରର ଏ ଅକସ୍ମାତ ଭାଗ୍ୟବିବର୍ତ୍ତନେ
ଅତ୍ୟନ୍ତ ହରଷଚିହ୍ନ ମୁଖରେ ଦେଖାଇ
କହିଲା ମଧୁରଗୀରେ ସାଧୁମିତ୍ର ସାଧୁ
ଧନ୍ୟ ତୁମ୍ଭ ଭାଗ୍ୟବଳ, ତୁମ୍ଭ ପୁଣ୍ୟଫଳେ
ଚରିତାର୍ଥ ହେବୁଁ ଆମ୍ଭେ ସର୍ବେ ଏକାବେଳେ
ଏହିରୂପେ ଦୁଷ୍ଟ ନାନା ମିଷ୍ଟ ବ୍ୟବହାରେ
ମନତୋଷି ବିପ୍ରଙ୍କର କହିଲା ମଧୁରେ
ଠାକୁର ହେଲାଣି ବେଳ ଯାଅ ବନିଯାଅ

ନଦୀଘାଟେ, ଅଚିରେଣ ସ୍ନାନରୁ ବାହୁଡ଼ି
ଭୋଜନ ଶେଷରେ କ୍ଷଣେ ଶ୍ରାନ୍ତି ପରିହରି
ଫେରିଯିବ ନିଜବାସେ, ବହୁଦିନ ହେଲା
ନ ଦେଖି ତୁମ୍ଭଙ୍କୁ ଘରେ କେତେ ବ୍ୟାକୁଳରେ
କାନ୍ଦୁଥିବେ ପିତା ବସି ସନ୍ତାନସନ୍ତପ୍ତ
ଘୋର ଅନାହାର ଦୁଃଖେ ପତିବ୍ରତାପତ୍ନୀ
ଝୁରୁଥିବେ ଜନନୀ କି ତୁରନ୍ତ ପଥରେ
ଅଥଯ୍ୟ ମନରେ ; କାହିଁ କେତେ କଥା ଭାବି
ଦୁଃଖ ସଦା ସହଚର ଭାଇ ! ବିପଦର
ପ୍ରିୟ ଅଦର୍ଶନେ ଏଣୁ ସୁଖ ଆଶାଠାରୁ
ବିପଦ ଭାବନା ପିତା ଦହେ ହୃଦସ୍ଥଳ
ଦୁଃଖୀର ସକଳକାଳେ, ଜୀବନ ଏ ରୀତି ?
ବିପ୍ରଙ୍କୁ ଏମନ୍ତ କହି ପଠାଇନଦୀକୁ
ସ୍ନାନ ପାଇଁ ତେଲବାଣ୍ଟି, ବରୁଣପ୍ରଦତ୍ତ
ସର୍ବକାମଦାତା ସେହି ଶଙ୍ଖ ଗୋଟି ନେଇ
ତାର ବଦଳରେ ଏକ ସେହି ଆକୃତିରେ
ଶଙ୍ଖଟିଏ ଅଚିରେଣ ଦୋକାନରୁ ଆଣି
ଥୋଇଦେଲା ଯଥା ସ୍ଥାନେ ତଦନ୍ତ ରୂପରେ
ଯେମନ୍ତ ବ୍ରାହ୍ମଣ ଛଳେ ନ ପାରିବେ ଜାଣି
ଏଣେ ଯଥାକାଳେ ଦ୍ୱିଜ ସ୍ନାନରୁ ବାହୁଡ଼ି
ବଢ଼ାଇ ଭୋଜନକାଣ୍ଡ କ୍ଲାନ୍ତତନ୍ତୁ କ୍ଳେଶ
ମୃଦୁ ବିଶ୍ରାମରେ କ୍ଷଣେ ଅପନୋଦ କରି
ଚଳିଲେ ଗନ୍ତବ୍ୟ ପଥେ, ମନେ ଭାବି ଭାବି
ନିଜ ଭାବୀ ଭାଗ୍ୟାବସ୍ଥା ଦୈବ ପ୍ରସାଦରେ
ଯେମନ୍ତ ଗୌରବମୟ ହେବ ନରଲୋକେ ;
ବ୍ରାହ୍ମଣ ଗମନେ ଦୂରେ ଦୁଇହାତେ ଘେନି
ଶଙ୍ଖଗୋଟି ତେଲିମିନ ଫୁଙ୍କି ଘନଘନ
ମନୋଲ୍ଲାସେ ମହାଶବ୍ଦେ ସେ ଶଙ୍ଖ ପ୍ରଭାବେ
ନିର୍ମାଣି ବିଶାଳପୁର, ବହୁ ଧନରତ୍ନେ
ଭରି ସେହି ନଗରକୁ, ଅତ୍ୟଳ୍ପ କାଳରେ,

ନଜର ଗାରମାମସ୍ତ ମହାବଭୂଷଙ୍କ
ଅଦରେ ତୁଲନା କଲ୍ଲ ସମାଜ ବଜାରେ
ସର୍ବଜନ ପ୍ରଶଂସିତ ଯଶଃ ତରଜୁରେ ।
ତେଲର କଲନାଦୃଷ୍ଟ କୌଶଳ ଖଳଙ୍କେ
ସ୍ମାନନ୍ଦହିଏ କାଟି, ଏଣେ ଦ୍ୱିଜବର
ବାହୁଡ଼ି ସ୍ୱବାସେ ଶୀଘ୍ର, ଗୃହଣୀ ଆଗରେ
ବେଳକରେ ଉଲ୍ଲାସରେ ଶଙ୍ଖ ଗୋଟିଧରି
ତୁହାଇ ତୁହାଇ ଆଣ୍ଟେ ଫୁଙ୍କନ୍ତି ଅଧୀରେ
ବବଧ ବଭବେ ଘର ହେବା ପାଇଁ ପୁଣ୍ଡି
ମାନ୍ଦ ନମିଲଇ କଚ୍ଛ ଝୁଙ୍କିଝୁଙ୍କି ଧରି
ପାଣି ଦେଇ ତେଲତାଳି ହାତ ଠୁଙ୍କି ଠୁଙ୍କି
ଯେତେ ଫୁଙ୍କୁଥିଲେ ଦମ୍ଭେ, ହୋଇଲେ ସେ ଅଥା
ଫୁଙ୍କି ଫୁଙ୍କି ବହୁକ୍ଷଣେ ବଥାଇଲ୍ଲ ପାଟି
ଶୁଖିଗଲ୍ଲ କଣ୍ଠନାଡ, ଝର ଝର ହୋଇ
ଆଖିରୁ ଲୋତକ ଖସି ପଡ଼ିଲ୍ଲ ଭୂତଳେ
ହତାଶେ ଦାରୁଣ ଶ୍ରମେ ରହିଲେ ସେ ଦୁଃଖେ
ମୁଖେ ଶଙ୍ଖଗୋଟି ଧରି ଚହାର୍ପିତ ପରି
ଏକେ କ୍ଷୁଧାନଳେ ଦଗ୍ଧ ଦ୍ୱିଜେ ଦ୍ୱିଜଙ୍କର
ସ୍ୱାର୍ଥ ଅନୁପସ୍ଥିତେ ବଷମ କୋପିତା
ଚଣ୍ଡରୂପା ଦ୍ୱିଜପତ୍ନୀ ଶୁଣି ପୁନଃ ପୁନଃ
କ୍ଷୁଧାରେ ପୀଡ଼ିତ ଶୀର୍ଣ୍ଣ ପୁତ୍ରକନ୍ୟା ଆଗେ
ଶଙ୍ଖର ଏ କଣ୍ଠକଠୁ ଭଁଅଁ ଭଁଅଁ ସ୍ୱର
ନ ପାରିଲ୍ଲ ସହି ଆଉ, ଗାଳି-ବ୍ରହ୍ମାସ୍ତ୍ରକୁ
ଅକଥ୍ୟ ଭାଷାର ଗୃହେ ସନ୍ଧାନ ସନ୍ଧାନ
ସ୍ୱାମୀ ଧୈର୍ଯ୍ୟମହାଦ୍ରୁମ ଧ୍ୱଂସିଲ୍ଲ ସବେଗେ
ଭର୍ତ୍ସାର ପ୍ରଚଣ୍ଡ ତେଜେ ହାହୁ ହାହୁ ଡାକ
ପଛକୁ ନ ଚାହିଁ ବପ୍ର ଏକମୁଖେ ବେଗେ
ଏକ ମନେ ଏକଲୟେ ଦଉଡ଼ିଲେ ଦୁଃଖେ
ସର୍ବ ସିଦ୍ଧିଦାତା ସେହି ସାଗର ତଟକୁ
ପ୍ରତାରିତ ହେବାକଥା ବୁଝିଲେ ସକଳ

ଶୁଣି ଲୋକମୁଖେ ବାଟେ ମିହିର ବଢ଼ିବ.
ପୂର୍ବପରି ସିନ୍ଧୁତଟେ ବନ୍ଧ ଏକ ଦେଇ
ଫିଙ୍ଗନ୍ତେ ସଲିଳରାଶି ପୂର୍ବର ପରାଏ
ଜଳରାଜ ଉଗ୍ର ହୋଇ ଦେଲେ ଦିବ୍ୟଶଙ୍ଖ
ଲଭି ଏ କାମଦାଶଙ୍ଖ ଉଲ୍ଲସିତ ପ୍ରାଣେ
ଏକାବେଳେ ଏଥର ସେ ଘରକୁ ନ ଆସି
ଶଙ୍ଖସହ ସେହି ସ୍ଥାନେ ସ୍ୱଇଚ୍ଛାପୂରଣେ
ଫୁଙ୍କିଲେ ତାହାକୁ ଧରି, ମହାଘୋରନାଦେ
ଉତ୍ତରିଲା ଶଙ୍ଖବର ଶୁଣ ମୋର ସତ
ଦେଉଛି ସକଳ ଧନ, କିଛିଦୂର ଯାଇ
ଫୁଙ୍କିଲେ ସେ ପୁଣି ଧରି, ପୁଣି ସେହିପରି
ବାହିଲା ଉତ୍ତର ଶଙ୍ଖ ଏହିପରି କମେ
ମିଥ୍ୟାରେ ତାହାଙ୍କୁ ଶଙ୍ଖ ଘୂରାଇ ଘୂରାଇ
ନାନା ରୂପେ କଲା ଏକା ବଚନ ବଡ଼ିମା
ଶଙ୍ଖର ଏ ବିପରୀତ ଆଚରଣ ଦେଖି
ବୁଝିଲେ ପଲକେ ବିପ୍ର ସକଳ ଚରିତ
ମନେ ମନେ ସୁଖୀ ହୋଇ, ପୟୋଧିପୂଜନ୍ତ
ବାହୁଡ଼ି କପଟୀମିହି ତେଲିକାର ଗୃହେ
ପ୍ରବେଶି ପ୍ରସନ୍ନମୁଖେ, ପୂର୍ବ ଶଙ୍ଖ ବଳି
ନାନାଦି ପ୍ରଶଂସା କରି ଏ ନବ ଶଙ୍ଖର
ଧୀରେ ଧୀରେ ଗାଧିବାକୁ ଗଲେ ନଦୀ ତଟେ,
ତାହାଙ୍କର ଅସାକ୍ଷାତେ ଏହି ଅବସରେ
ପୂର୍ବର ଶଙ୍ଖଟି ଥୋଇ ନୂଆ ଶଙ୍ଖଗୋଟି
ନେଇଗଲା ପୂର୍ବ ପରି ; ତୈଳ ବ୍ୟବସାୟୀ,
ନଦୀତଟୁଁ ଫେରି ବିପ୍ର ଭୋଜନ ସମାଧି
ପୂର୍ବପରି ଶଙ୍ଖଧରି ଆସି ନିଜ ଘରେ ।
ସେ ଶଙ୍ଖର ପ୍ରସାଦରେ ଗୃହିଣୀକୁ ତୋଷି
ବିପୁଳ ସମ୍ପଦରାଶି ସଦନେ ପୂରାଇ
ପୁତ୍ର କନ୍ୟାଗଣସହ ରହିଲେ ସୁଖରେ ।
ଅଳ୍ପଦୂର ନଯାଉଣୁ ଦ୍ୱିଜବର ଏଣେ

ପୁଟ ପର ତୈଳକାର ଫୁଙ୍କିଲା ଉଚାଟେ
ହସ୍ତେ ଧରି ଘନଘନ ମନ୍ତ୍ରାଘୋର ନାଦେ
ଉତ୍ତରିଲା ନବଶଙ୍ଖ, କି ଛାର ସମ୍ପତ୍ତି
କିଛାର ସାମାନ୍ୟଗୃହ ଦେବ ଏକାବେଳେ
ଜଗତ ଏକାଧିପତ୍ୟ ଜଗତ ପ୍ରଭୁତ୍ୱ
ଜଗତର ସୁଖରାଶି ଲଭିବୁ ସକଳ ।
ଚାଲ ହରି ମୋର ସଙ୍ଗେ, ହର୍ଷେ ତୈଳକାର
କହିଲା ହେ କମ୍ବୁବର, ଏ ମୋର ସକଳ ।
ସ୍ୱର୍ଣ୍ଣ ରୌପ୍ୟ ଗଜ ବାଜି ବସ୍ତ୍ର ଅଳଙ୍କାର
ଆଦ ଧନରତ୍ନ ଯେତେ କେଉଁଠାରେ ଥୋଇ
ନିର୍ବିବାଦେ ତୁମ୍ଭ ସହ ଯିବ ଦୂର ଦେଶେ ।
ଉତ୍ତରିଲା କମ୍ବୁନଦ ଅମ୍ବୁଦ ନିର୍ଘୋଷେ
ଜଗତ ପ୍ରଭୁତ୍ୱ କାହିଁ ? କାହିଁ ଧନରତ୍ନ
ବସ୍ତ୍ର ଅଳଂକାର ତୋର ଛାର ଦ୍ରବ୍ୟଜାତ;
କିଛି ଚିନ୍ତା ନାହିଁ, ତୁରା ସବଂସ୍ୱ ବତରି
ଯାଉ ତାକୁ ଅକାତରେ ହୁଅ ଅଗ୍ରସର ।
ଲଭିବୁ ଦେବତାଲଭ୍ୟ ଅମୂଲ୍ୟ ସମ୍ପଦ ।
ଶଙ୍ଖପରାମର୍ଶେ ଦେଲ ସକଳ ବତରି
ଯାରେ ତାରେ; ଅନନ୍ତରେ ନିବେଦିଲା ପୁଣି
ଅହୋ ମହୋଦଧି—ସୁତ ! ନରଲୋକେ ଧନ୍ୟ
ମୂଲ୍ୟବାନ ମୋର ଏହି ସଟ ଭୂସମ୍ପତ୍ତି
ସୁଧାଧୌତ ଅଟ୍ଟାଳିକା ସୁରମ୍ୟ ଉଦ୍ୟାନ
ସୁଦୀର୍ଘ ତଡ଼ାଗରାଜି ମନୋମୁଗ୍ଧକର;
କହ କେଉଁଠାରେ ରଖି ଏସବୁର ମାୟା
ଅନାୟାସେ ପଶ୍ଚହରି ଗମିବ ଏକାକୀ
କେମନ୍ତେ ହେ କମ୍ବୁବର ? ବଡ଼ କଷ୍ଟକର ।
ରୁଷିଲା ଉତ୍ତରେ ଶଙ୍ଖ, ନାହିଁ କିଛି ଚିନ୍ତା
ଦେବ ମୁଁ ଅମୂଲ୍ୟ ଧନ ଦେବତା ବାଞ୍ଛିତ
ଭବନପୂରୁ ଖୋଜ ଆଣି; ଚାଲ ଚାଲ ଶୀଘ୍ର
ବାଣ୍ଟିଦେଲ ଜଣେ ଜଣେ; ଏ ତୁଚ୍ଛ ସମ୍ପଦ;

ମୋର ସହ କି ଭାବନା ? ରହି ବନମଧ୍ୟେ
ବଗ୍ରଠଙ୍କ ଦାନେଇବେ କେ କହ ବମୁଖ ?
ଏମନ୍ତ ଶଙ୍କର ବାକ୍ୟେ ବମୋହିତ ପ୍ରାଣେ
ସର୍ବନାଶି ପୁତ୍ର କନ୍ୟା ଜାୟା ସହିତରେ
ଚଳିଲା ଶଙ୍କର ପଛେ, ଏହିରୂପେ କ୍ରମେ
ଭୁଲାଇ ଭୁଲାଇ ଶଙ୍କ ନେଇଯାଇ ତାକୁ
ଭ୍ରମାଇ ବହୁତ ସ୍ଥାନ ପହଞ୍ଚାଇ ଖରେ
ପୂର୍ବ ପରିଚିତ ସେହି ସାଗର ତଟରେ
ମିଶିଗଲା ନୀଳଜଳେ ଆଚମ୍ବିତ ରୂପେ,
ନବ ନୀଳ ନୀରଦରେ ସନ୍ଧ୍ୟାତାର୍ ଯଥା
ଅଥବା ଯେସନ ଝଡ଼ ଚଳ ପାରାବତ
ମିଶିଯାଏ ତରୁବର ପଲ୍ଲବ ଗହଳେ ।
କିମ୍ବା ଲୀନ ହୁଏ ଯଥା ଉପଦେଶାବଳୀ
କାମନା କଳୁଷପୂର୍ଣ୍ଣ କୃପଣ ହୃଦୟେ ।
ଭାବନାହିଁ ଭାଇ ! ଏହି ବଚନ ଶଙ୍କରେ
ପ୍ରତାରିତ ହୋଇଅଛି ଏକା ଦୈଳଜୀବୀ
କେତେ ଧୂର୍ତ୍ତ ଭଣ୍ଡ ଶଠ ଶଙ୍କର ମୋହରେ
ଘୂରନ୍ତି ଦୁରଶାଗ୍ରସ୍ତ ମାନବେ ସର୍ବଦା
ପୂର୍ଣ୍ଣ ଏ ଦୁନିଆ ଭାଇ ବଚନ ଶଙ୍କରେ ।
ତାର ସୃଷ୍ଟ ମୃଦୁଗୀରେ ପ୍ରତାରିତ ହୋଇ
ଅହରହ କେତେ ପ୍ରାଣୀ ପଛେ ପଛେ ଭ୍ରମି
ବୁଡ଼ାଇ ସର୍ବସ୍ୱ ଆହା ମହା ହା ହା କାରେ
କଲବଲ ହେଉଛନ୍ତି ପୁତ୍ରକନ୍ୟାସହ ।
ନଛଡ଼ନ୍ତି ତେବେ ସୁଦ୍ଧା ସେ ଶଙ୍କର ମାୟା
କେହି କେବେ ଭାଇ ! ଏହା ଦୁନିଆର ରୀତି ।

——:o:——

# କୁମାର ପୂର୍ଣ୍ଣିମା ଉପହାର (୧)



ସାଦରେ ଆହ୍ୱାନ କରୁଛ ହେ ସଖି
ଗନ୍ଧର୍ବପୁର ଦର୍ଶନେ
ଜାଣିଛ ତ ବନ୍ଧୁ କାହିଁ ଅଭିଳାଷ
ଅଛି ତାହା ମୋର ମନେ ।
ସେ ଗନ୍ଧର୍ବପୁରୀ ଆନନ୍ଦେ ବିହରି
ଦେଖିବା ସ୍ୱଇଚ୍ଛା ମତେ
ସ୍ୱର୍ଗୀୟ ସୌନ୍ଦର୍ଯ୍ୟେ ପୁରିଛି ସେ ପୁରୀ
"ଭୂସ୍ୱର୍ଗ" ବୋଲିଏ ମର୍ତ୍ତ୍ୟେ ।
ମର୍ତ୍ତ୍ୟମଣ୍ଡଳର ସକଳ ସୁଷମା
ଏକାତ୍ରେ ହୋଇଛି ଠୁଳ
ବାଣ କବି—ବାକ୍ୟ ସ୍ତବ ଅଭିନମି
ବର୍ଣ୍ଣିଛି ପୁଣି ବହୁଳ ।
ଶୁଣିଥିଲି ପୂର୍ବେ ଶୁଣିଲି ତ ଏବେ
ଦେଖିବା ରହିଲା ସିନା
ଥିଲେହେଁ ଯାବତ ଆମୋଦ ମିଳେକି
ତୁମ୍ଭ ପ୍ରିୟସଙ୍ଗ ବିନା ।
ଗନ୍ଧର୍ବ ପୁରୀରେ ଦାଣ୍ଡ ସୁନ୍ଦରୀଏ
ସ୍ୱର୍ଗ ଅପସରୀ ସମ
କୁଳ ଅଙ୍ଗନାଙ୍କ ସୌନ୍ଦର୍ଯ୍ୟ ସ୍ତୁତିରୀ
ଶୁଣିଛି ତ ଅନୁପମ ।

---

(୧) କାଦମ୍ବରୀ ନବମ ସର୍ଗର ଅବାନ୍ତର ଦ୍ୱି ଶ୍ରୀମାନ୍ ଚାଳରେଉ ସ୍ୱାଧୀନତା ଏହି
କବିତା ଲେଖିଥିଲେ ତାହା ଏଠାରେ ଦିଆଗଲା ।

ହୃତ୍ପ୍ରିୟ ଜନା ସଙ୍ଗେ ଥାଇ ପୁଣି
ପିଇଣ ସ୍ୱାଦୁ—ତୋରଣି
ନାନାଛନ୍ଦେ ଛନ୍ଦି ବଖାଣିବେ ସେହୁ
"ସୁନ୍ଦରୀଙ୍କ ଠାଣିମାଣି" ।
ବର୍ଣ୍ଣ ନୟନର ବିବାଦ ତୁଠାଇ
ମନସାଧ ମେଣ୍ଟାଇବା
ଭାବ୍ୟ ବିବର୍ତ୍ତିତ ସବୁତ ଦେଖିବା
କିନ୍ତୁ ଦେଖି ନ ପାରିବା ।
ବର୍ଣ୍ଣିଛ ଯା ପୁଣି କେତେ ସ୍ୱରମୟ
ମଧୁମୟ ଗୀତ ପ୍ରୀତି
ମାହେଶ୍ୱେତା କାଦମ୍ବରୀ ବେନଙ୍କର
'ଅଭୂତ ସହାନୁଭୂତି' ।
ବିଶ୍ୱାସ କଏ ସେ କରିବ ଶୁଣି ସେ
ପରସ୍ପର ଆଚରଣ
ଅନାହୂତ ଚତ୍ତେ ସଙ୍ଗିନୀ ନିମନ୍ତେ
ସଙ୍ଗିନୀ ଦେବାର ପ୍ରାଣ ।
ସଙ୍କଳ୍ପ ମନାସି ପୁଣି ଆଜୀବନ
ନିଜର ଯୌବନ ବୃଥା
ଭଲେ ଯେଉଁପରି ଗନ୍ଧର୍ବ କୁମାରୀ
ମହାସତୀ ମାହେଶ୍ୱେତା ।
ଅବାଲ୍ୟ ସେବିକା ଦାସୀ ଚନ୍ଦ୍ରଲେଖା
ଦେଖାଇଲା ଯେଉଁପରି
ନିଜ ସୁଖରାଶି ନାଶି ସଖୀପାଶେ
ଛାୟାପରି ଅନୁସରି ।
ନଦେଖିବ ଆଜ ସେଦୃଢ଼ ମମତା
ସେହିଦୃଢ଼ ସ୍ନେହ ନିଷ୍ଠା
ଯେ ଅତୀତ ସ୍ମୃତି ବଢ଼ାଉଛି ଆଜ
ଗନ୍ଧର୍ବପୁର ପ୍ରତିଷ୍ଠା ।
"ରହିଛି କାଳନ୍ଦୀ ରହିଛି ଯମୁନା
ଅଛି ଗିରିଗୋବର୍ଦ୍ଧନ

ନଥିଲେହେଁ ଆଜ ସେ ଗୋକୁଳ ଚନ୍ଦ୍ର
ଗୋପେଅଛୁ ସ୍ମୃତିଚିହ୍ନ ।
ତେଣୁ ଜନ୍ମବାକ୍ୟ ରହୁଛି ଜଗତେ
ଯାର୍ଦ୍ଧି ଏକା ସଜାବତ
ଗନ୍ଧର୍ବ ବାଳାଙ୍କ ଶୁଣିବା ମାନଙ୍କ
'ଅତୀତ ସହାନୁଭୂତି' ।
ତା ବଦଳେ ତହିଁ ଦେଖିବା ହେ ସ୍ୱଭ
ଯୁବତୀକୁଳର-ସ୍ୱିତ
ସଙ୍ଗିନୀ ସଙ୍ଗିନୀ ବୋଲି ପରସ୍ପରେ
ଆଚରୁଥିବେଟି ପ୍ରୀତ ।
ଉପରେ ଉପରେ ମନ-ସ୍ୱବମାନ
କରୁଥିବେ ବନ୍ଧନସ୍ଥ
ଅଭିନ୍ନ ଅଭେଦ ଅଣୁମାତ୍ର ଛିଦ୍ର
ନହେବନି ପରିଚୟ ।
ସ୍ନେହବଶେ ନାମ ନଧରି ଡାକିବେ
ମାଧବୀ, ଚମ୍ପା, ନଆଳୀ
କେ କାହାକୁ ସ୍ନେହେ ସଙ୍ଗାତ ଡାକିବେ
କେ ଡାକିବେ 'ଗଙ୍ଗାବାଲି' ।
ଦେଖାଦେଖି ଦଣ୍ଡେ ନୋହିଲେ ସାକ୍ଷାତେ
କରିବେ ଖେଦ ପ୍ରକାଶ
ଆଚରିବେ ପୁଣି ପରସ୍ପର ପାଇଁ
କେତେ ବ୍ରତ ଉପବାସ ।
ମାନିକ କ୍ଷଣକେ ଉଭାଇ ଯାଇ ସେ
ଦେଖାଦଏ ଆସି ଭଲେ
ଯେତେବେଳେ କେହି କାହାର ସ୍ୱାର୍ଥରେ
ହସ୍ତକ୍ଷେପ କରେ ଛଳେ ।
ପ୍ରାଣର ସଙ୍ଗିନୀ କଥାରେ କହିବେ
କାର୍ଯ୍ୟକୁ ହେଲେ ବାହାର
ଅବଶ ବଶରେ ନମିଷକ ପାଇଁ
କେହୁ ସାହା ନୁହେ କା'ର ।

ରୋଗଶଯ୍ୟାଗତେ ଅପାରଗହୋଇ
ଗଡୁଥିଲେ ଭୂମିପରେ
ପାଣିଢୋପା ମୁଖେ ଦେବା ଦୂରେଥାଉ
ନଜେ ନଚୁଇଁବେ କରେ ।
ଆତ୍ମୀୟ ସ୍ୱଜନେ ଧିକ୍କାର ଅଧିକେ
ଫଳେ ଲଗାଇବେ କଳ
କଥାକେ କଥାକେ ଥପ ଥପ ନେଇଁ
ଅଶ୍ରୁ ପଡୁଥିବ ଗଲ ।
ପ୍ରକୃତ ଚକିତ୍ସା କରିବେ ଯାବତ
ରୋଗବୃଦ୍ଧି ପ୍ରତକାର
କରିବେ ଯାବତ ଘଟାଇ କୃତ୍ଯାନ୍ତ
ଚକ୍ଷୁଦର୍ଶିତା ନଜର ।
ତୁଣ୍ଡେ ଖିଳି ଗୁଞ୍ଜି ମୁଣ୍ଡେ ବେଣୀପାଢ
ଖଞ୍ଜି କଣ୍ଠା ଫୁଲମାଳ
ରୁଣ୍ଡହୋଇ ରୋଗୀ ପ୍ରାଣ ଗିବାବେଳେ
କରନ୍ତି ଯେ ଗୋଳମାଳ ।
କେତେ ଧନକୁ ତା ପରମାନ୍ନ ଥିଲେ
ଉଡ଼ିଯାଏ କ୍ଷଣେ ହଂସା
ସଙ୍ଗିମାନଙ୍କ ସହାନୁଭୂତର
ଏହି ପରିଣାମ ଦଶା ।
ଛାଡ଼ିଗଲ ଆତ୍ମା ଏକାକୀ ହୋଇଣ
ସବୁ ସଙ୍ଗସୁଖ ମୂର୍ଚ୍ଛି
ବାନ୍ଧବ ବାନ୍ଧବ କାନ୍ଦ ଦଣ୍ଡେ ଖଣ୍ଡେ
ଲୁହ ପଣତରେ ପୋଛି ।
କେ ବୋଲିବେ ମୋର ପିଲାଟି ଏକାକୀ
କାନ୍ଦୁଛି ଦୁଆରେ ଗଡ଼ି
ଦେଖିବା ପାଇଁକ ଲୁଚ ପଳାଇଛି
ବାଡ଼ିବାଟେ ତଡ଼ବଡ଼ି ।
ତରତର ହୋଇ ବାହାରି ଆସିଲି
ଦେଖିବା ପାଇଁ ସତ୍ୱରେ

ଦାଣ୍ଡ କବାଟଟା          ମେଲା ହୋଇଅଛି
"ସେ ପୁଣି ନାହାନ୍ତି ଘରେ" ।
କେ ବୋଲେ ଡୋଗଣି       ମୁନ୍ଦେ ପିଇଦେଇ
ଧାଇଁଛି ଏକା ନିଃଶ୍ୱାସେ
ପିଲାଦଳ ସାଙ୍ଗ          ଗାଅନ୍ତା ମୁହଁକୁ
ଦେଖିବାକୁ ଲୋକ ଅଣେ ।
କାଠଡ ହେଲଣି          ଡବଲରେ ମୂଲ
ସହଜେ ମିଳବ କାହୁଁ
ଏତେ ଯୋଗାଡ଼କୁ         ଚଳାନ୍ତି ନକର
ଗୁଡ଼ ଆସେ ଗୁହୁଁ ସୁହୁଁ
ଖିଆଲ ଶାଗୁଣା          ଖାଇଲେ କି ଜଣା
ପଡ଼ିବ ଶରୀରେ ବ୍ୟଥା
ମଲାଠାରୁ ଗଲା          ସବୁତ ସମଲ
ପୋଢ଼ା, ପୋଡା, ପକା, ଏକା ।
ଏପରି ଅଦ୍ଭୁତ          ସହାନୁଭୂତିକି
ପ୍ରକାଶି ସଙ୍ଗିନୀ ଥୋକେ
"ସଲିଲ ନସିଷୁ          ଖାଲି ଦଣ୍ଡବତ"
ପୌରୁଷ ଦେଖାନ୍ତି ଲୋକେ ।
ସଙ୍ଗିନୀ ଗଣଙ୍କ          ଏ ସହାନୁଭୂତି
କାବ୍ୟ ବନ୍ଧେ ପରକଟ
କରିବାକୁ ଅଛି          ନାହାନ୍ତି ହେ ସ୍ୱଇ
ଗ୍ରନ୍ଥକର୍ତ୍ତା "ବାଣଭଟ୍ଟ" ।
ନାହାନ୍ତି ସ୍ୱପ୍ରଭ          କବି ଭବଭୂତି
ମୁରାରି କବି ଶ୍ରୀହର୍ଷ
ରମଣୀ ଚରିତ୍ର          ଚିତ୍ରକାର ପଟୁ
ମହାକବି କାଳିଦାସ ।
ତୁମ୍ଭେ ପଟୁ ସେଇ       ସ୍ୱଗ୍ରବେ ଲେଖକ
ମନସ୍ୱୀ କବି ସବୁକ
"ଚିରକାଳ ପୁଣି         ରମଣୀ ଛିଦ୍ରେଷୀ"
ରମଣୀ ଗୁଣ ନିନ୍ଦୁକ ।

ଦେଖି ତନ୍ତି ତୁମ୍ଭେ ରମଣୀ ମାନଙ୍କ
 ଏ ବରନ୍ନ ଉପାଦାନ
ରୁଚିଅଣି ସୂତା ସମଜାଲ ଛନ୍ଦ
 କାବ୍ୟେ ଭରଦେବ ସ୍ଥାନ;
ପୀତାମ୍ବର ସ୍ନେହ ପୋଖଦେଇ ତନ୍ତି
 ବଜାଇବେ କରତାଳ
ମହୋଲ୍ଲାସେ ତବ ହୃଦୟୁଁ ଉଠିବ
 ଅଧିକେ ସ୍ୱର ଉଚ୍ଛଳ ।



# ମୂର୍ଚ୍ଛନା

—:o:—

ରାଗ—ଶ୍ରୀକାମୋଦୀ

ଦେଖିଲି ତୁମ୍ଭଙ୍କୁ            ସାହିତ୍ୟ ସଦନେ
ଆହେ ବାପ ଧନ
ନବୋଦ୍ୟମେ ଯାହା            ଲଭିଛ ନୁହେ ତା
ସାମାନ୍ୟ ରତନ ।
ରାଜପୁତ୍ର ତୁମ୍ଭେ            ମଣ୍ଡିଅଛ ଦେହ
କେତେ ଅଳଂକାରେ
ମାତ୍ର ତା କ୍ୟୋତି କି            ଏହା ସଙ୍ଗେ ବସ
ତୁଲ ହୋଇପାରେ ?
ଏ ରତନ ତେଜ            ସର୍ବଦା ଉଜ୍ଜ୍ୱଳ
କେବେ ନ ଲିଭିବ ।
ନ ସରିବ କେବେ            ଯେତେ ଦାନ କଲେ
ସେତିକି ବଢ଼ିବ ।
କଣ୍ଠ ପରିଏ            ଶୋଭେ ଚନ୍ଦ୍ର ଯଥା
ଉଷା ସୀମନ୍ତରେ
ବାଗ୍‌ଦେବୀ ପ୍ରସାଦେ            ଯଶର ମୁକୁଟ
ରାଜୁ ତୁମ୍ଭ ଶିରେ ।
ସ୍ୱରମୟୀ ଚନ୍ଦ—            ପୁର ବିଳାସିନୀ
କଲନା ସୁନ୍ଦରୀ
ମଧୁମୟ ପଦ            ଦିଅନ୍ତୁ ଯୋଗାଇ
ସହଚରୀ ପରି ।

---

(ଶ୍ରୀ ପ୍ରମୋଦ ଚନ୍ଦ୍ର ଦେବ ଷଷ୍ଠ୍ୟାବ୍ଦଙ୍କର ବରଷଭ କମଳକାମିନୀ ପାଠ କରି ଶ୍ରୀଯୁକ୍ତ ବଡ଼କୁଅଁର ବଳଭଦ୍ର ଦେବଙ୍କ ଦ୍ୱାରା ଲିଖିତ)        ତା ୨୯ । ୭ । ୧୯୨୪

କବିତ୍ୱ କୁସୁମ ସାହିତ୍ୟ ଉଦ୍ୟାନୁ
କରଣ ଚୟନ
କର କମନୀୟ ଉତ୍କଳ ଭାଷାର
ଶରୀର ମଣ୍ଡନ ।
ଧନ୍ୟ ହେଉଁ ଆମ୍ଭେ— ସରବେ ତୁମ୍ଭର
ସୁଯଶ ଗୌରବେ
ବାସନ୍ତେ କାନନ ଯଥା ଭାର ଫଳ—
ପୁଷ୍ପର ସୌରଭେ ।
ନବରଙ୍ଗେ ନାଚ ଲୀଳାମୟୀ ଧନ୍ୟା
ବ୍ରାହ୍ମଣୀ ସରିତ
ସହ୍ୟାସ୍ତୁ କୁଅନୁ ଏ ଦେଶ ଛବିଳା
ପ୍ରକୃତି ସହିତ ।
ମରାଳେ ଯାଆନ୍ତି କୌଣ୍ଟ ରଙ୍ଗେ ଯଥା
ମାନସରୋବରେ
ସଦାବେଳେ ଗତି ହେଉ ତବ ବତ୍ସ
ନିର୍ମଳ ପଥରେ ।
ଭଗୀରଥ ଭୂପ ଦୃଢ଼ତପେ ଯେସନ୍ତେ
ଦେବୀ ଭାଗୀରଥୀ
ହେଉନ୍ତୁ ତେସନ ତୁମ୍ଭ ସାଧନାରେ
ବାଣୀ ସରସ୍ୱତୀ ।
ଈର୍ଷା ଅହଂକାରେ ପୂର୍ଣ୍ଣ ଏ ଦେଶର
ନିତାନ୍ତ କର୍କଶ
କୁଶିକ୍ଷିତ ରଜା— ଘର ଶିଷ୍ଟ ଛାୟା
ନକରୁ ହରଣ ।
ଦୂର କର ମିଳି ମିଶି ସୁଖେ ରାଜ୍ୟ
ପାଳ ଆମ୍ଭ ଘର
ଘରେ ଘରେ ହେଉ ଆଦର୍ଶ ସୁନ୍ଦର
ସଂସାର ତୁମ୍ଭର ।
ଅକ୍ଷୟ ଭାରତ ଲଭ ଶାନ୍ତି ସୁଖେ
ଜନ ଯାଉ ଧନ !

ସ୍ୱର୍ଗର କୁସୁମ— ଗଣି ହେଉ ସଦା
ଶିରରେ ବର୍ଷଣ ।
ସବୁ ମନୋରଥ ପୂର୍ଣ୍ଣ ହେଉ ପ୍ରଭୁ
ପରମେଶ ବରେ
ନରଜୀବୀ ହୋଇ ସ୍ୱରଟୀଙ୍କି ଭଜ
ଆଶୀର୍ବାଦ କରେ ।

ଭ୍ରମର
ମାମୁ



# ବିବିଧ କବିତାବଳି

## ବିଚିତ୍ର ରସାଳ

ବନବାସେ ଭ୍ରମି ଭ୍ରମି ପଞ୍ଚପାଣ୍ଡୁସୁତ
ପ୍ରବେଶିଲେ ଯାଇ ଏକ ଋଷି ତପୋବନେ
ପ୍ରିୟତମା ସହଯାତ୍ରି-ଦ୍ରୌପଦୀ ସହିତେ ।
ଧାଡ଼ି ଧାଡ଼ି ମନୋହର ରସାଳ କୁଞ୍ଜରେ
ବେଷ୍ଟିତ ଚୌଦିଗ ସେହି ଶୁଭ୍ର ଆଶ୍ରମର
ସ୍ଥାନେ ସ୍ଥାନେ ନାନାଜାତି ପୁଷ୍ପିତ ପାଦପେ
ମଧୁର ସୁବାସ ଦାନେ ନେଉଥିଲେ ହରି
ଯାତ୍ରିମାନଙ୍କର ଚିତ୍ତ ; ମକରନ୍ଦ ଲୋଭୀ—
ପ୍ରମତ୍ତ ମିଳିନ୍ଦସଙ୍ଘ ଗୁଣୁ ଗୁଣୁ ସ୍ୱରେ
ଫୁଲୁଫୁଲେ ବସୁଥିଲେ ନାନା ଆଡ଼ୁ ଆସି
ଭିକ୍ଷୁକାରଦଳ ଯଥା ଧନିକ ସଦନେ ।
ସୁମଧୁର ସ୍ୱରେ କେତେ ବିଚିତ୍ର ବିହଙ୍ଗ
ମଜ୍ଜିଥିଲେ ପ୍ରେମାଳାପେ ଉତ୍ଫୁଲ୍ଲ ମାନସେ
ଅର୍ଦ୍ଧଭୁକ୍ତ ପକ୍ୱଫଳ ପ୍ରିୟା ମୁଖେ ଦେଇ ।
ଭ୍ରମୁ ଭ୍ରମୁ ସେ ବିଜନ ପବିତ୍ର ଆଶ୍ରମେ
ପାଣ୍ଡୁକୁଳ ପାଟରାଣୀ ପଙ୍କଜଲପଣୀ
ଯାଜ୍ଞସେନୀ, ବିଲୋକିଲେ ସହକାର ଡାଳେ
ଝୁଲୁଛି ଅକାଳେ ଏକ ପକ୍ୱ ଚୂତଫଳ
ବନଦେବୀ ଗଣ୍ଡସ୍ଥଳେ ପତ୍ରଲେଖା ପରି,
ଦେଖି ସେହି ଫଳଗୋଟି ମଞ୍ଜୁମତ୍ତ ମନେ
ଜନମିଲା ବଳବତୀ ସ୍ପୃହା ସେହିକ୍ଷଣି
ଲଭିବାକୁ ସେ ରସାଳ, ସୀତା ମନ ଯଥା
ମାରୀଚର ମାୟାରୂପ କନକ କୁରଙ୍ଗେ ।

ନୂତନ ବଚନ ଦ୍ରବ୍ୟ ଦେଖି କେଉଁ କାଳେ
ଲଭିବାକୁ ଲଳନାଏ ନ ବଳାନ୍ତି ଚିତ୍ତ
କେଉଁ ଦେଶେ ? କଉତୁକେ କହିଲେ କାମିନୀ
ପ୍ରିୟତମ ଅର୍ଜ୍ଜୁନଙ୍କୁ, ଦେଖ ପ୍ରାଣନାଥ
କେମନ୍ତ ସୁନ୍ଦର ଏହି ରସମୟ ଫଳ
ଦୋହଲେ ମୃଦୁଳବାତେ, ଋତୁପତିଙ୍କର
କଣ୍ଠରେ ଝୁଲଇ ଯଥା ହେମ ନାଗଦାମ
ଦିଶେ ଦୂରୁଁ କି ରୁଚିର ବଡ ଇଚ୍ଛା ମୋର
ଘେନିବାକୁ ଏହି ଫଳ, ତୋଳିଦିଅ ନାଥ
ଦ୍ରୌପଦୀ ଆଗ୍ରହ ଦେଖି ରୂପେ ଶରଯୋଡ଼ି
ତୋଳିଲେ ଅର୍ଜ୍ଜୁନ ତାହା, କୁରଙ୍ଗନୟନୀ
ପାଞ୍ଚାଳୀ ଲଭି ତାକୁ ହେଲେ ମହାନନ୍ଦ ।
ଭାଳିଲେ ମନରେ ସତୀ ମହାବଳୀଆର
ଭବେ ପତିମାନେ ମୋର, ସର୍ବେ ସଦାବେଳେ
ମୋହର ମନ୍ତ୍ରଣାବିନା ନ କରନ୍ତି କିଛି
ପୃଥିବୀ ବିଭୂତି ଯେତେ ଯେବେ ମୁହିଁ ଯାହା
ମନାସଇ ଅକାତରେ ଦିଅନ୍ତି ଅଚିରେ ।
ନିଜେ ଚକ୍ରପାଣି ହରି ଦ୍ୱାରକାକୁ ଛାଡ଼ି
ମୋ ଚିନ୍ତା ମାତ୍ରକେ ଆସି ହୁଅନ୍ତି ପ୍ରବେଶ
ଦୁର୍ଲ୍ଲଭଦର୍ଶନ କେତେ ମହାଋଷି ଆସି
ହେଉଛନ୍ତି ସଦା ମୋର ସଦନେ ଅତିଥି,
ମୋଠାରୁ ଭାଗ୍ୟବତୀ କେ ଅଛି ଭୂତଳେ ?
ଗର୍ବେ ଆତ୍ମପ୍ରଶଂସାରେ ଏହିରୂପେ ଧନୀ
ମତ୍ତହୋଇ ଥିବାବେଳେ, ଗରବଗଞ୍ଜନ
ଚକ୍ରି-ଚୂଡ଼ାମଣି ହରି କାହୁଁ ଭ୍ରମି ଭ୍ରମି
ଏକାଳେ ମିଳିଲେ ତହିଁ, ଯାଜ୍ଞସେନୀ କରେ
ଦେଖି ସେ ରସାଳଫଳ, ସବିସ୍ମୟେ ଚକିତେ
କହିଲେ ଗୋ ଶଶୀମୁଖୀ ଏ କି କର୍ମ୍ମ କଲ ?
କେମନ୍ତେ, କି ଦେଇ, କାହୁଁ ପାଇଲ ଏ ଫଳ
ମହର୍ଷି ସନ୍ଦୀପନଙ୍କ ତୀବ୍ର ତପ ଫଳେ

ଭକ୍ତବନ୍ଧ ଆଦେଶରେ ଫଳଇ ଏଫଳ
ସବୁଦନେ, ସୁଗନ୍ଧର ସମାଧିରୁ ଉଠି—
ଦନଶେଷେ ଋଷିବର କ୍ଷୁଧା ନବାରନ୍ତି ।
ମହାତେଜପୁଞ୍ଜ ତପି, ପ୍ରଦୋଷେ ଯେବେହି
ବନରୁ ବାହୁଡ଼ ମଠେ ନଦେଖିବେ ତାଳେ
ଏହି ରମ୍ୟ ଆମ୍ରଫଳ, ହୋଇଅଛ ଚୋର,
ତେବେ କ୍ଷୁଧାନଳେ ଜ୍ୱଳ ନଷ୍ଟେ ଶାପାନଳେ
ଦେବେ ଜାଳ, ଏ କି ଭଲ ! ଦେଖୁଅଛ ଆଜ
ମହାଘୋରତର ଦୁଃଖ ପଡ଼ିବ ନିଷ୍ଟୟ ।
କୃଷ୍ଣଙ୍କ ଏ ବାଣୀ ଶୁଣି ପାଣ୍ଡୁଚଡ଼ାମଣି—
ଯୁଧିଷ୍ଠିର, ମହାତ୍ରାସେ ଭଣିଲେ କାତରେ
ନୁହେ ଏ ସାମାନ୍ୟ କଥା; ନଜେ ଯଦୁପତି
ଭୟ ପାଉଛନ୍ତି ଯହିଁ; ଦାରୁଣ ବପାକେ
ନିଶ୍ଚୟ ପଡ଼ିଲୁ ଅସି, ସର୍ବେ ଏକାବେଳେ
କହିଲେ ପାଣ୍ଡବ ନାଥ କୃଷ୍ଣଙ୍କୁ ଏମନ୍ତ
ତୁମ୍ଭ ରକ୍ଷିତ ଏହି ପଞ୍ଚ ସହୋଦର
କର ସେମାନଙ୍କୁ ତ୍ରାଣ ଏ ମହାବପଦୁଁ ।
ତୁମ୍ଭେ ନାଥ ତାପିତର ସଦା ତ୍ରାଣକର୍ତ୍ତା
ଭକ୍ତବତ୍ସଳ ବୋଲି ବଦତ ଜଗତେ ।
ତାହାଙ୍କ କାତରଗୀର ଶୁଣି ଯଦୁବୀର
କହିଲେ ହେ ଧର୍ମସୁତ ! ଦେଖୁ ନାହିଁ ଆଉ
ଏହି ଘୋର ବପଦର କିଛି ପ୍ରତିକାର
ପୂର୍ବପରି ଆମ୍ର ବୃନ୍ତେ ଲଗିବାର ଛଡ଼ା ।
ନ ଲୁଚ୍ଛ ଯେବେ ସର୍ବେ ସରଳ ମନରେ
ନଜ ନଜ ମନୋଭାବ କରିବ ପ୍ରକାଶ
ଅକପଟେ, ତେବେ ଏହି ସତ୍ୟ ଆମ୍ରଗଜ
ସତ୍ୟରକ୍ଷା ପାଇଁ ନଷ୍ଟେ ଲଗିବ ତା ବୃନ୍ତେ
ସତ୍ୟପ୍ରିୟ ଯୁଧିଷ୍ଠିର ଶୁଣି ଏ ବଚନ
କହିଲେ ମୋ ଏ ବାସନା 'ସବୁ ସମୟରେ
ଅସଂଖ୍ୟ ବ୍ରାହ୍ମଣଗଣ ସଙ୍ଗତରେ ଘେନ

କରନ୍ତି ପୁରାଣ ପାଠ; ସେମାନଙ୍କ ସେବା’
କହୁଁତେ ଏସନ ରାଏ ଦୁଇ ହାତପାଏ
ଉଠିଗଲା ଆମ୍ରଫଳ ଭୂପୃଷ୍ଠ ଉପରୁ ।
ନିବେଦିଲେ ବୃକୋଦର ‘ଭୀମଗଦାଘାତେ
ଦୁର୍ଯ୍ୟୋଧନ ଉରୁଭଙ୍ଗି; ପରେ କିରଜରେ
ଦୁଃଶାସନ ଉରସ୍ଥଳ, ଚିରମୁକ୍ତ ବେଣୀ
ବିଷାଦିନୀ ଶୋକାକୁଳା ଦ୍ରୁପଦ ଜେମାର
କରନ୍ତି ବନ୍ଧନ କରେ ।’ ଶୁଣି ତାଙ୍କ କଥା
ଉଠିଗଲା ଉପରକୁ ପୁଣି ଦୁଇହାତ
ଦେଖୁ ଦେଖୁ ସେ ରସାଳ ବିଚିତ୍ର ଗତିରେ ।
ଉଚ୍ଚରିଲେ ଧନଞ୍ଜୟ ମୋର ଏ ବାସନା
‘ମନ୍ଦ ପରିମର୍ଦ୍ଦାତା ସୂର୍ଯ୍ୟ ତନୟର
କୁଣ୍ଡଳ ସହିତ ମୁଣ୍ଡ ଛେଦି ଶରମୁନେ,
ଦଳି ସର୍ବ କୁରୁକୁଳ, ରାଜସିଂହାସନେ
ଧର୍ମପୁତ୍ର ଯୁଧିଷ୍ଠିରେ ବସାଇ ଆଦରେ
ତାହାଙ୍କ ସେବାରେ ଦିନ ଯାପନ୍ତି ନିରତ
ଅର୍ଜ୍ଜୁନଙ୍କ ବାକ୍ୟଶେଷେ ଉଠିଲା ତକ୍ଷଣେ
ଆକାଶକୁ କିଛିଦୂର ଅକାଳ ରସାଳ
ଏରୂପେ ନକୁଳ ପୁଣି ସହଦେବ ବେନି
ବ୍ୟକ୍ତକଲେ ନିଜଭାବ ‘ଭୀମାର୍ଜ୍ଜୁନଙ୍କର
ବିକ୍ରମରେ କୁରୁକୁଳ ନିର୍ମୂଳ ହୋଇ
ମହାରାଜ ଯୁଧିଷ୍ଠିର ବସିଲେ ଆସନେ
ତାହାଙ୍କ ସେବାରେ ରହୁ, ଦେବ ବିପ୍ର ଭକ୍ତ
ଆଚରି, ସର୍ବଦା ଦିନ ନିଅନ୍ତୁ ସାନନ୍ଦେ’
ଏ ବାଣୀରେ ନିଜବୃନ୍ତ ସନ୍ନିକଟେ ଯାଏ
ଉଠିଗଲା ଚୂତଫଳ, ନେତ୍ର ପଲକରେ,
ନାହିଁ ଆଉ ବହୁଦୂର, ଫଳବୃନ୍ତ ମଧ୍ୟେ
ବ୍ୟବଧାନ ହାତେମାତ୍ର, କହିଲେ ସଧୀରେ
ପାଣ୍ଡୁକୁଳ ପାଟରାଣୀ ଦ୍ରୁପଦ ଦୁହିତା—
ପ୍ରଚଣ୍ଡ ମାର୍ତ୍ତଣ୍ଡ ଯଥା ଦଳେ ନଳବନ

ଅଜାତରେ ବୃକୋଦର ଗଦାଘାତେ ତଥା
ଛିନ୍ନଭିନ୍ନ କରି ଦୁଷ୍ଟ କୌରବ କୁଳକୁ
ନିଷ୍ଠୁର ପାମର ମୂଢ଼ ଦୁଃଶାସନ ବକ୍ଷ
ବିଦାରି ନଖରେ ଦୃଢ଼େ ଚିରମୁକ୍ତ ମୋର
କୁନ୍ତଳ କଷଣ ପୂତ ସେ ରକ୍ତ ପ୍ରବାହେ
ବନ୍ଧନ କରନ୍ତେ ବେଣୀ, ସମର ଶେଷରେ
ମହାରାଜ ଯୁଧିଷ୍ଠିର ବସନ୍ତେ ଆସନେ
ପାଟରାଣୀ ହୋଇ ମୁହିଁ, ଭୋଜନ ଲାଳସୀ
ଅହର୍ନିଶି କ୍ଷୁଧାତୁର ବ୍ରାହ୍ମଣମାନଙ୍କୁ
ଭୋଜନ ଦିଅନ୍ତି ବସି ସଦା କୁତୂହଳେ ।
ବାହାରୁ ବାହାରୁ ତାଙ୍କ ମୁଖୁଁ ଏହିକଥା
ବୃନ୍ତପାଖୁ ଆମ୍ର ଖସିପଡ଼ିଲା ଭୂମିରେ
ସବିଷାଦେ ଯୁଧିଷ୍ଠିରେ କହିଲେ କେଶବ
'ଦେଖ ଦେଖ ଧର୍ମରାଜ ଦ୍ରୁପଦ କୁମାରୀ
ବିନାଶ କଲେତ ସବୁ, ବୃନ୍ତପାଖେ ଯାଇ
ଲଗିତ ଥିଲାଣି ଆମ୍ବ, ମିଥ୍ୟାକଥା ଶୁଣି
ପୁଙ୍ଖପରି ପୁଣି ଆସି ପଡ଼ିଲା ଭୂମିରେ ।''
ଗଦାତୋଳି ଭୀମସେନ ଉଠିଲେ ତ୍ୱରିତ
ଉଦ୍ଦେଶି ବିଷମ କ୍ରୋଧେ ଦ୍ରୁପଦ ସୁତାଙ୍କୁ
ଧନୁରେ ଚଢାଇ ଗୁଣ କହିଲେ ଅର୍ଜୁନ
ଏହି ଶରେ ତୋର ମୁଣ୍ଡ ପକାଇବି ହାଣି
ପାମରୀ, ପାପିଷ୍ଠା, ଦୁଷ୍ଟା, ଅସତ୍ୟବାଦିନୀ ।
କହିଲେ ପାଣ୍ଡବ ନାଥ ଆଗୋ ପତିବ୍ରତା
କିମ୍ପା ମିଥ୍ୟା ଭାଷୁଅଛ, କହ ସତ୍ୟ କରି
ପ୍ରକୃତ ହୃଦୟ କଥା, ଗଲେହେଁ ସର୍ବସ୍ୱ
ନକହନ୍ତି ସାଧୁଲୋକ କେବେ ମିଥ୍ୟାକଥା
ସତ୍ୟର ସର୍ବଦା ଜୟ ବିଦିତ ଜଗତେ ।
ଝାଳ ଜର ଜର ମୁଖେ ଭୟେ ଥରି ଥରି
ଘନ ଘନ ଶ୍ୱାସଛାଡ଼ି ଆସନ୍ନ ଭୟରେ
ବାଷ୍ପରୁଦ୍ଧକଣ୍ଠରେ ଅହା ଛେପ ଢୋକି ଢୋକି

କହିଲେ ମୋର ଏ ବାଞ୍ଛା ‘ପଞ୍ଚସ୍ୱାମୀଙ୍କର
ହୋଇଥାନ୍ତେ କର୍ଣ୍ଣବୀର ଯେବେ ସହୋଦର
ଷଷ୍ଠରୂପେ ତାଙ୍କୁ ସଦା ଲଭୁଥାନ୍ତି ମୁହିଁ ।’
ମୁଖରୁ ଏକଥା ତାଙ୍କ ବାହାରୁ ବାହାରୁ
ସତ୍ୱର ରସାଳ ଯାଇ ଲଗିଲା ବୃନ୍ତରେ ।
ରୋଷଭରେ ଭୀମସେନ, ରୋଷରେ ଅର୍ଜ୍ଜୁନ
ଯାମଳ ସୋଦର ବେନି ଉଠିଲେ ଗରଜି
ମହାଦମ୍ଭେ, ଦ୍ରୌପଦୀଙ୍କୁ ଆକ୍ରମିବା ପାଇଁ,
ଏରହସ୍ୟ ଉଦ୍‌ଘାଟକ ନଟଶିରୋମଣି,
[illegible]ଙ୍କ ଚକ୍ରାନ୍ତକାରୀ; ଚକ୍ରଧର ହରି
ନବାରିଲେ ସେମାନଙ୍କୁ, ଜାଣିବେ ସେମାନେ
ଏଥିର ଅପୂର୍ବ ତଥ୍ୟ ଯଥାକାଳେ ଦୋଲି ।
ବିବିଧ ମଧୁର ବାକ୍ୟ ଭୁଲାଇ ତାହାଙ୍କୁ
ନାନାରୂପେ ଲଜ୍ଜାଶୀଳା ଦ୍ରୌପଦୀଙ୍କୁ ତୋଷି
ବଳେଇଲେ ବେଣୁପାଣି ଦ୍ୱାରକା ଭୁବନେ ।
ଏଆଡ଼ ବିବିଧ ନାଟ୍ୟ ମିଥ୍ୟାଗଳ୍ପ କଥା
ଭରି ପରେ ପରେ ଗ୍ରନ୍ଥେ ବିଧର୍ମ୍ମିଙ୍କର
ହିନ୍ଦୁଙ୍କ ପବିତ୍ରଗ୍ରନ୍ଥ ଜଗତ ବିଖ୍ୟାତ
ସାହିତ୍ୟ ଜଗତେ ଯାହା ହିମାଳୟ ପରି
ଅଚଳ ଅଟଳ ସେହି ମହାଭାରତକୁ
କଳଙ୍କିତ କରିଛନ୍ତି ବୀଭତ୍ସ ଚିତ୍ରରେ ।
ଅବା ଯାହାଙ୍କର ବରେ ପାଞ୍ଚଗୋଟି ସ୍ୱାମୀ ।
ଘଟିଥିଲେ ଦ୍ରୌପଦୀଙ୍କ, ନୁହଇ ବିଚିତ୍ର
ତାଙ୍କ ବରେ ଷଷ୍ଠହେବା ; ଦ୍ୱିଚାରିଣୀ ହେଲେ
ହିଚାରିଣୀ ହେବା ପାଇଁ ଆଏକି ଭାବନା ?

## ଆବାହନ *

ସ୍ୱାଗତ ହେ ମେଘମାଳା, ଭାରତ ଭୁବନେ
ତୁମ୍ଭର ବିରହେ ଦେଖ କେତେ ହାହାକାର
ଉଠିଲାଣି ଘରେଘରେ, ଶିକ୍ଷିତ ମଣ୍ଡଳୀ
ପ୍ରଭାତରୁ ଶଯ୍ୟାଛାଡ଼ି ତାଙ୍କ ପିଅନକୁ
ଦୈନିକ କାଗଜ ଆଶେ ରହିଛନ୍ତି ଠାକି
ଏକଧ୍ୟାନେ, ଶୁଣିବାକୁ ମୌସୁମୀ ବାୟୁର
ଆରବସାଗରେଥିତ ଅନୁକୂଳ ଗତି ।
କାର୍ଯ୍ୟକ୍ଲିଷ୍ଟ ସ୍ୱେଦସିକ୍ତ କୃଷକବୃନ୍ଦର ।
ମ୍ଳାନମନେ କେଦାରରୁ ନୟନେ ବାହୁଡ଼ି
ପରିଶ୍ରମ ଦୂରଆଶେ ଖାଦ୍ୟପାନ ଶେଷେ
ବିରାମଦାୟିନୀ ନିଦ୍ରାଦେବୀ କୋଳେ କାହିଁ
ବିଶ୍ରାମ କରନ୍ତେ ସୁଖେ, ମାନବିକ ଦୁଃଖରେ
ସ୍ୱକାର୍ଯ୍ୟ ସଙ୍ଗିନୀ ସନା ଜାୟାସଙ୍ଗେ ବସି
ମର୍ତ୍ତ୍ୟବାସୀ ପ୍ରତି ତବ ଏହି ନିର୍ଦ୍ଦୟତା
ଆଲୋଚନା କରୁଛନ୍ତି ମୁଣ୍ଡେ କରଦେଇ
ଶ୍ୟାମବର୍ଣ୍ଣ ମଖମଲ ସୁରୁକାନ୍ତି ଗଞ୍ଜି
ମନୋହର ଧାନତଳୀ ରଜୁଥିଲା ଯାହା
କେଦାରେ; ଏବେ ସେ ମେଘ, ତବ ଅଭାବରେ
ଦିଶିଲାଣି ଅର୍ଦ୍ଧବୃଦ୍ଧ ଧୂମପାୟୀଙ୍କର
ଛିଲତଣ୍ଡୁଳିତ ଦୀର୍ଘ ଶ୍ମଶ୍ରୁରାଜି ପରି,
କରୁଣାକଟାକ୍ଷେ ତୁମ୍ଭ ଅହେ ଘନବର
ସୁତୀକ୍ଷ୍ଣ ଲାଙ୍ଗଳମୁନେ ଉଚ୍ଛ୍ୱାସ ମାଟିରେ
ସୁଶ୍ୟାମଳ ଧାନଗଛ ସୂକ୍ଷ୍ମ ଚେରମାନ
ହେଉଥିଲା ଧୀରେ ଧୀରେ ପରିବ୍ୟାପ୍ତ ଯାହା
ଏବେ ତାହା ରବିଙ୍କର ପ୍ରଚଣ୍ଡ କିରଣେ
ବଳହୀନ ହୋଇବାରୁ ଦୁରନ୍ତ ବଲ୍ମୀକେ
ଟିକିଟିକି କରି ଦନ୍ତେ କାଟିଲେଣି ଆସି ।

* ୧୯୦୮ ସାଲର ଅନାବୃଷ୍ଟି ସମୟରେ ଲିଖିତ ।

* ରଜୋବତୀ ଜଳସ୍ପୃଶ୍ୟ ମୀନବଧୂମାନେ
ଉତ୍କଣ୍ଠିତ ହୋଇ ସଦା ଜଳବିନ୍ଦୁଁ ଚେଇଁ
ଶୂନ୍ୟକୁ, ସାଦରେ ପିନା ଡାକୁଛନ୍ତି ଘନ
ତୁମ୍ଭଙ୍କୁ; ତୁମ୍ଭର ଜଳ ପ୍ରବାହରେ ଉଠି
ଉଲ୍ଲାସେ ମିଳିତ ହୋଇ ପୁଂସମସ୍ତ ସହ
ବୁଣିଦେବେ ସ୍ୱଗର୍ଭର ସଞ୍ଚିତ ରଜକୁ ।
ଆହେ ଘନ ମନୋହର ଗୈରିକ ରାଗରେ
ସୁରଞ୍ଜିତ କରି ତବ ମିତ୍ର ଗିରିଅଙ୍ଗ
ଅନୁକ୍ଷଣେ ବହୁଥିଲେ ଉତ୍ଫୁଲ୍ଲ ଗନ୍ଧରେ
ଗମ୍ଭୀର ନିନାଦେ ପୂର୍ଣ୍ଣ ବନ ଉପତ୍ୟକା
ପ୍ରପାତେ; ସେ ଏବେ ଦେଖ ଲଭି କେତେ ଘୋର
ଦୁର୍ଦ୍ଦଶା, ବନ୍ଧୁର ଗାତ୍ର ଶଇଳ ପଠରେ
ନିଶବ୍ଦେ ତୁମ୍ଭର ଦୁଃଖେ ପର୍ବତ ରାଜର
ବେଦନାଶ୍ରୁ ବିନ୍ଦୁପରି ଝରୁଛନ୍ତି ଧୀରେ ।
କାସାରେ, ନଦୀରେ, ସରେ ପଙ୍କିଳ ସଲିଳ
ଦେଖି ଯାହା ରାଜହଂସେ ଯାଇଥିଲେ ଚଳି
ମାନସକୁ, ଏବେ ପୁଣି ଆସୁଛନ୍ତି ଫେରି
ନଭେ ପୁଣ୍ଡରୀକ ମାଳଶୋଭା ଅନୁକରି
ଦେଖି ଦେଖି ନବଘନ, ଏହୁ ସେ ଭିକ୍ଷୁକ
ଚକ୍ଷୁହୀନ ଦ୍ୱାରେ ଦ୍ୱାରେ ଭିକ୍ଷା ମାଗି ଖାଏ
ତୁମ୍ଭଠାରେ ତାର ଆଶା ନଥିଲେହେଁ ବେଶି
କିପରି ତୁମ୍ଭରି ପାଇଁ ହେଉଛି ବିକଳ ।
ଏହୁ ନବ୍ୟ ବାବୁଦଳ ମୋହନ ମୂରତି
ଚାକିରି ଜୀବିକା ଯାଙ୍କ ସଦା କିଣିଖିଆ,
ନ ଜାଣନ୍ତି କୃଷିକଥା, ବେତନ ଆଶାରେ
ପହିଲା ତାରିଖ ପାଇଁ ରହିଥାନ୍ତି ଠାକି,

---

(*) ମତ୍ସ୍ୟମାନଙ୍କର ଯାହା ଋତୁ ବସନ୍ତ ପ୍ରକୃତରେ ତାହା ଋତୁ ନୁହେ । ସ୍ତ୍ରୀ ମତ୍ସ୍ୟମାନେ ସଞ୍ଚିତ ରଜ ଜଳପ୍ରବାହରେ କ୍ରମେ କ୍ରମେ ଛାଡ଼ନ୍ତି । ସେହି ସମୟରେ ପୁଂମତ୍ସ୍ୟ ବୀର୍ଯ୍ୟ ତ୍ୟାଗ କରେ, ଉଭୟ ମିଳିତ ହୋଇ ପ୍ରାୟ ୮ ଘଣ୍ଟାପରେ ଛୁଅରେ ପରିଣତ ହୁଏ ।

ଭିଜିବାକୁ ଯୋଡା ସଦା ଡରିଲେହେଁ ମନେ
ପ୍ରଚଣ୍ଡ ମାର୍ତ୍ତଣ୍ଡ ତେଜେ ଅତ୍ୟନ୍ତ ବ୍ୟସ୍ତରେ
ଝାଳେ ଜର ଜର ହୋଇ ଲୋଡ଼ନ୍ତି ତୁମ୍ଭଙ୍କୁ
ସଂସାରର ହିତକାରୀ ମହାତ୍ମାମାନଙ୍କ
ଅଦର୍ଶନେ ହୁଏ କେବେ ନପାଏ ଯାତନା
ଦୁର୍ଲ୍ଲଭ ନୀରଦ ତୁମ୍ଭେ ଏହି ଜଗତରେ ।
ତୁମ୍ଭଙ୍କୁ ପାଇବା ଲାଗି ଯେଣୁ ପ୍ରାଣୀକୁଳ
ସବୁବେଳେ ମାତିଛନ୍ତି ହରି ସଂକୀର୍ତ୍ତନେ
ଯାଗ, ଯଜ୍ଞେ, ଗୀତାପାଠେ, ଦେବତା ପୂଜାରେ
କୁପ୍ରବୃତ୍ତିଯାକ ସବୁ ମନ୍ତ୍ର ଦୂର କରି
ସମସ୍ତେ ହରିଙ୍କ ଧ୍ୟାନେ ଦେଇଛନ୍ତି ଚିତ୍ତ,
ଚିନ୍ତି, ଭାବୀ ଘୋରଦୁଃଖ କରାଳ ମୂର୍ତ୍ତିକୁ ।
ମୋରାଣ ପରାଣ ଧନ ବୋଲି ବୀଣାସ୍ୱରେ
ଗାଉଥିଲେ ମୋଦେ ଯାହା ସାଙ୍ଗତକ ଦଳ
ଏବେ ସେହି ଜଳେ ହରି ସ୍ଥଳେ ହରି ବୋଲି
ଗାଆନ୍ତି ତୁମ୍ଭଙ୍କୁ ଧ୍ୟାୟି ବାଦ୍ୟଯନ୍ତ୍ର ତାଳେ ।
ଋତୁ ପରୀକ୍ଷକ ମାନେ ମାନ ମନ୍ଦିରରୁ
"ଅନୁକୂଳ, ଅନୁକୂଳ" ବୋଲି କେବେ ଘନ,
କହନ୍ତି ତୁମ୍ଭଙ୍କୁ ଦେଖି କେବେ ବା ବିଷାଦେ
"ଆଶାନାହିଁ ବୋଲି ଦୁଃଖେ ଗର୍ଜୁଛନ୍ତି ଡକା
ନବୀନ ତମାଳ ଶ୍ୟାମ ତୁମ୍ଭ କଳେବରେ
ନାଚିଲେ ଚପଳା ରଙ୍ଗେ ଘଡ଼ଘଡ଼ି ଭୟେ
ଆଖିବୁଜି ଲୋକମାନେ ପଶନ୍ତି ଘରରେ
ଏବେ ତା ଖୋଜିଲେ ସୁଦ୍ଧା ନ ମିଳଇ କାହିଁ
ଅପାଳକ ରାଇଜରେ ପରିଷ୍କାର ନବେ
ବିଜୁଳିର ମୂଲ୍ୟ ଘନ ଅଟେ ଲକ୍ଷଟଙ୍କା ।
ଏକାଳେ ବଣିକମାନେ କେତେ ପରିଶ୍ରମେ
କେନାଲରୁ ଜଳସିଞ୍ଚି ଘୂଞ୍ଚାଉ ଅଛନ୍ତି
ଜଳର ଅଭାବ କିଛି, ସହାୟ ନୋହିଲେ
ତୁମ୍ଭେ ତହିଁ ହେ ଜୀମୂତ କିପରି କହତ

ଅଖଣ୍ଡ ଏ ମହାଦେଶ ବହୁସ୍ଥାନବ୍ୟାପି
ବିସ୍ତୃତ ଯା, ତାର ତାପ ଦୁର୍ବିଷ ଯାତନା,
ନିକଟର, ଦୂରର ସକଳ ଲୋକର
ମହାତଙ୍କ ହାହାକାର, ଦେଖ ହେ ଘନାଇ ।
ପ୍ରଭାକର କରକ୍ଲିଷ୍ଟ ପ୍ରାଣୀ ନିକରର
ଘୋରଦୁଃଖ, ଦେବ ତୁମ୍ଭେ, କୃପାର୍ଦ୍ର ନୀରଦ
ଦେବତା ଘୃଣିତ ହେଉ ଦାନବ ଆସୁର
ଆଚରୁଛ ? ଦେବରାଜ ପୃଥିବୀ ପାଳକ
ତାଙ୍କର ସଚିବ ତୁମ୍ଭେ, ପୁଣି କାମରୂପୀ,
ଭୃତ୍ୟହୋଇ ପ୍ରଭୁବିଧି କରୁଛ ଲଙ୍ଘନ,
ଏହି କଥା, ତୁମ୍ଭପରି ମହତ ଯେବେ କି
ଲଙ୍ଘିବେ ବିଧିର ବିଧି, ତେବେ କିଏ ଆଉ
ସେହି ବିଧାନକୁ ମାନି ଚଳିବେ ଜଗତେ ?
କାତର ପ୍ରାର୍ଥନା ଶୁଣି ବିରହୀ ଯକ୍ଷର
କ୍ଷଣେ ମୁଗ୍ଧ ମେଘବର, ଯାଇଥିଲ ଧାଇଁ
ଅଳକା ପୁରୀକି, ଯହିଁ ତାର ବିରହିଣୀ
ଯକ୍ଷବାଳା, ରହିଥିଲା ସ୍ୱାମୀକି ଅନାଇ ।
ପୂର୍ଣ୍ଣକଲ ତାର ବାଞ୍ଛା ଦେଇ ସୁସନ୍ଦେଶ
ଶୁଣିବ ନାହିଁକି ଏତେ ପ୍ରାଣୀଙ୍କର ଅଳି
ଅଥବା କି ଦୋଷ ତବ ! ଭାଗ୍ୟହୀନ ଯିନା
ପ୍ରାଣୀମାନେ, ନୋହିଲେ କି ପ୍ରାଣୀହିତକର
ତୁମ୍ଭେ ମେଘ ରହିଥାନ୍ତ କର୍ଣ୍ଣେ ହାତ ଦେଇ
ଜଗତର ଏବି ଘୋର ଯାତନା ନ ଶୁଣି ।
ବିଶାଳ ବିସ୍ତୃତ ଏହି ଅନନ୍ତ ସାଗର
ସୂର୍ଯ୍ୟଙ୍କ ସାହାଯ୍ୟେ ସଦା ଶୋଷୁଛ ସଲିଳ
ସଞ୍ଚୁଅଛ ତାହା କହେ। କୃପଣ ପରାଏ
ଏତେ ପାଣି ରଖି ବୃଥା ଲଭିବ କି ଫଳ
ପରହିତ ପାଇଁ ଯିନା ଯେନନ୍ତି ସାଧୁଏ
ଦଅ ଦଅ ଧରଣୀକୁ ତହୁଁ କିଛି ଜଳ
ପ୍ରାଣୀଗଣ ସବୁ ସୁଖେ ହେବୁ ଧରାତଳ

ମନ୍ଦୋଲ୍ଲାସେ କାଶଫୁଲେ, ଗାଉ ଧୀରେ ଧୀରେ
ପକ୍ଷୀନାଦେ ତବପଦେ ଏ ମୋର ମିନତି ।

---

## ଶୁଭମସ୍ତୁ

ଯୁବରାଜ !

ଯାଅ ଶୁଭ ଅନୁକୂଳେ ବିଦ୍ୟାଳୟ ଅଙ୍ଗେ
ଯଶୋଧନ ! ଦୂରଦେଶେ, ଆମ୍ଭ କୁଳ ଦେବୀ
ଶଙ୍କର ମଙ୍ଗଳ ମାଳା ସିଦ୍ଧି ପ୍ରଦାୟିନୀ
ଜାହ୍ନବୀ ହେଉନ୍ତୁ ବତ୍ସ ! ସହାୟ ତୁମ୍ଭର
ଶୁଭ ଅନୁଷ୍ଠାନ ବ୍ରତେ ; ବାଜୁ ଶୁଭ ଶଙ୍ଖ
ସୁମଙ୍ଗଳ ଗୀତସହ, "ସରସ୍ୱତୀ ବରେ
ଯଥାକାଳେ ପୂର୍ଣ୍ଣହେଉ ତୁମ୍ଭ ମନୋରଥ
ବାମଣ୍ଡା ନୟନାନନ୍ଦ ବତ୍ସ ଯୁବରାଜ ;
ନିର୍ମଳ ଚରିତ୍ରେ ଗୁଣେ ମଧୁର ସୌଜନ୍ୟେ
ସମଦର୍ଶୀ ହୋଇ ସଦା ବିମୋହିତ କର
କ୍ଷୁଦ୍ରରୁ ମହତ ଯାଏ, ଲଭ ଅବଲମ୍ବେ
ସୁଦୃଢ଼ ତପସ୍ୟା ବଳେ ସାରସ୍ୱତ ସାର
ବିଶ୍ୱ ବିଦ୍ୟାଳୟୁ ଦୀପ୍ତିମୟ ସାରରତ୍ନ,
ଧନ୍ୟହେବୁଁ ଅମ୍ଭେ ତୁମ୍ଭ ସୁଯଶ ସୌରଭେ ।
ସୁଧୀର ! ମଧୁର ପୁଷ୍ପ-ଫଳେ ତରୁଯଥା ।
ଶୁଭ୍ର ତୁମ୍ଭ ଶୁଭ୍ରୋଜ୍ଜ୍ୱଳ ସତ୍କାର୍ଯ୍ୟେ ବିହର
ଶୁଭମସ୍ତୁ ହେଉ ବତ୍ସ ସଂସାର ତୁମ୍ଭର ।
ଦୀର୍ଘଜୀବୀ ହୋଇସୁଖେ ଦେଶ ହିତ କର
ବିମଳ କୀରତି ମାଳେ ବିମଣ୍ଡିତ ହୁଅ
ପୁଣ୍ୟଶ୍ଳୋକ ଧନ୍ୟ ତବ ପିତାମହପରି ।

ତୁମ୍ଭର କକା

---

* ବାମଣ୍ଡା ଯୁବରାଜ ଦିବ୍ୟଶଙ୍କର ଦେବ କଲିକତା ପଢ଼ି ଯିବାବେଳେ ରଚିତ ।

# ଗାଭୀର ନିବେଦନ

ଦନ୍ତେ ତୃଣ ଧରି କେହି ହେଲେ ଆଗେ ଉଭା,
ସକଳେ ତା ପ୍ରତି ଭବେ ହୁଅନ୍ତି ସଦୟ;
ମାତ୍ର ମୁଁ ଦୁଃଖିନୀ ସଦା ଦନ୍ତେ ତୃଣ ଧରି
ରହିଅଛି ସମ୍ମୁଖରେ, ମୋ ପ୍ରତି କାହାର
ଟିକିଏ ହେଲେତ ଦୟା ହେଉ ନାହିଁ କେବେ
ସ୍ତନରେ ପ୍ରଚୁର ଦୁଗ୍ଧ ପୂର୍ଣ୍ଣ ଥାଉଁ ଥାଉଁ
ଉପାସରେ ରଖି ପଛେ ମୋ ପୁତ୍ର କନ୍ୟାଙ୍କୁ
ଢତରି ପିୟୂଷ ତୁଲ୍ୟ ସୁମଧୁର ଦୁଗ୍ଧ
ମାନବ ଶିଶୁଙ୍କ ପ୍ରାଣ କରୁଛି ରକ୍ଷଣ ।
ହାୟ ! କି ଦୁଃଖର କଥା ବଳିଷ୍ଠ ମାନବେ
ପୁଥୁଳ ଶରୀର ବହି ପଲଙ୍କରେ ଶୋଇ
ପିଉଛନ୍ତି ଦୁଗ୍ଧ, ଦୁଃଖେ ମୋର ବତ୍ସମାନେ
କ୍ଷୀର ଅଭାବରେ ଆହା ନବତୃଣ ଖାଇ
ରୋଗରେ ଦୁର୍ବଳ ହୋଇ ମରନ୍ତି ଅକାଳେ
ମୋର ପୁତ୍ରମାନେ ଚିର ନଂପୁସକ ହୋଇ
ବହୁକଷ୍ଟ ସହି ସ୍କନ୍ଧେ ଲଙ୍ଗଳ ଉଠାଇ
କ୍ଷେତ୍ର କରଷଣ ଯୋଗେ ମାନବଙ୍କ ଖାଦ୍ୟ
ଦେଖ ହେ କେମନ୍ତେ କରୁଅଛନ୍ତି ଉତ୍ପନ୍ନ
ଘୋର ବରଷାରେ ଭିଜି ସୂର୍ଯ୍ୟକର ସହି
ପର ଉପକାର ବ୍ରତେ ଲାଗିଛନ୍ତି ସେହି !
ଦିନଯାକ ହଳ ଧରି ଧରି କାନ୍ଧୁଅରେ
ରାତିରେ ଶୁଅନ୍ତି ଆସି ଆଣ୍ଠୁଏ ପାଣିରେ ।
ସେଠ ମହାଶୟ ତାଙ୍କ ବିଶାଳ ଉଦର
ମୋ ଦୁଗ୍ଧରେ ଭରି ଦେଖ ମୋହର ସୁତଙ୍କ
ସାହାଯ୍ୟରେ ଧନଲକ୍ଷି କରନ୍ତି ସଞ୍ଚୟ
ତଥାପି ନମିଳେ ତାଙ୍କ ଭାଗ୍ୟେ କୁଣ୍ଡା ମୁଠେ ।
ହେ ବିଧାତା, କେଉଁ ପାପ କରିଲେ ସେମାନେ
କିମ୍ବା ତାଙ୍କ ପ୍ରତି ତୁମ୍ଭେ ଏତେ ଅପ୍ରସନ୍ନ

ବନ୍ଧୁମାନଙ୍କର ଦୁଃଖେ କାତର ମୁଁ ସଦା
ଜୀବ ଥିବାଯାଏ ଦେଖ ଧନା ଆପତ୍ତିରେ
ଏରୂପେ ନରଙ୍କ ବହୁ ଉପକାର କରି
ଜୀବନ ଗଲାରୁ ଅସ୍ଥି ଶେଷେ ଜୋତାହୋଇ
କରନ୍ତି ବସ୍ତାଏ ତାଙ୍କ ଚରଣରେ ସେବା
ତଥାପି ସେମାନେ ହୋଇଥାନ୍ତି ଦୟାଶୂନ୍ୟ
ହା ବିଧି ! ମାନବ ଜାତି ଏମନ୍ତ କୃତଘ୍ନ !

---

## ଶ୍ରେଷ୍ଠିଙ୍କ ପ୍ରତ୍ୟୁପ୍ରନ୍ନମତିତ୍ୱ

ରାମକେରୀ

ଘରଘଡ଼ ଶ୍ରେଷ୍ଠି ପ୍ରବାସେ
ପଣି ଧନ ଲୋଭରେ
ନାଶିଲେ ସକଳ ସମ୍ପତ୍ତି
ପଡ଼ି ଖଣ୍ଡ ଆଗରେ
ଅନାହାରେ ଭ୍ରମି ଦ୍ୱିତନ—
ଦନ ସ୍ଫୁର୍ତ୍ତି ମନରେ
ଖାଉଥିବା ବେଳେ ଭେଟିଲେ
ମାତୃପାନ୍ତଙ୍କୁ ଘରେ
ଭୋଜନ ଆଶାରେ ଉଲ୍ଲାସେ
ପାନ୍ତପାଖେ ସଧୀରେ
ଉପସ୍ଥିତ ହୋଇ କହିଲେ
ତାଙ୍କୁ ମଧୁର ଗୀରେ
"ତୁମ୍ଭ ଦେଶୀୟ ମୁଁ ଦୁର୍ଦ୍ଦଶା
ବଶେ ସବୁ ହରାଇ ।
କ୍ଷୁଧା ତୃଷା କ୍ଳେଶେ ନାରଣେ
ଦୁଃଖେ ଭ୍ରମୁଛି ଭାଇ !
ଦେଖ ବୁଲି ବୁଲି ହେଲଣି
ଖେଦେ ଶୋକେ ଉଛୁଳ

କ୍ଷୁଧାରେ ଜଳୁଛି ଉଦର
ତଥି ମୁଠାଏ ଅନ୍ନ
ନଶୁଣିଲା ପ୍ରାୟେ ଶ୍ରେଷ୍ଠିଙ୍କ
କଥା ତାମ୍ବୁଲ ଭରେ
ପାନ୍ଥ ମହାଶୟ ଆହାର
କଲେ ଅତି ଆଦରେ ।
ଅସନ୍ତୁଷ୍ଟ ଚିତ୍ତେ କ୍ଷୁଧାରେ
ଏଣୁ ଜଳ ଅନ୍ତରେ
କହିଲେ ପାର୍ଶ୍ୱସ୍ଥ କୁକ୍କୁରେ—
କ୍ରୁଦ୍ଧ, ଅସ୍ପଷ୍ଟ ସ୍ୱରେ
ଶ୍ରେଷ୍ଠି—"ଆଜଯାଏ ବଞ୍ଚିଥାଆନ୍ତା
ଯେବେ ଶ୍ୱାନ ତୁମ୍ଭର
ହୋଇଥାନ୍ତା ପିନା ପୃଥୁଳ
ଏହୁ କୁକ୍କୁର ପରି"
ପାନ୍ଥ—ମୋର ଶ୍ୱାନଟିର ସତେକି
ଶେଷ ଜୀବନଲୀଳା
କେତେଦିନ ହେଲା କେମନ୍ତେ
କହ ଏହା ଘଟିଲା ।
ଶ୍ରେଷ୍ଠି —ତୁମ୍ଭ ଶାଳବଡ଼ା ଘୋଡ଼ାଟି
ଯେବେ ତେଜିଲା ପ୍ରାଣ
ରଡ଼ରଡ଼ ମଲା ସେ ମାଂସ
ଭକ୍ଷି ସହଜେ ଶ୍ୱାନ ।
ପାନ୍ଥ—କେମନ୍ତେ ମୋ ସୁସ୍ଥ ଘୋଟକ
ଗୋଟି ହେଲା ବିନାଶ
କୁହ ଏ କଥା କାହିଁକି
ଶ୍ରେଷ୍ଠି ଅଳୀକଭାଷ ।
ଶ୍ରେଷ୍ଠି— ତୁମ୍ଭ ବେନ ଭାଇ ଅଶ୍ୱେ
ପରିଚର୍ଯ୍ୟା ନ ପାଇ ।
ଝୁଣ୍ଟି ଝୁଣ୍ଟି ଅସ୍ଥି ନିକର
ପ୍ରାଣ ଅଛି ହରାଇ ।

ପା— ସଦା ଅଣ୍ଡାଧୀନ ମୋହର
ପ୍ରିୟ ଦୂର ସୋଦର
ବଡ଼ ଚମତ୍କାର ବୁଝାଡ଼େ
ଗଲେ ହେ ଧନେଶ୍ୱର ।
ଶେ—ଘର ଜପ୍ତିବେଳେ ନାଜର
ସହ୍ୟ ମଗ୍ପିଠାରେ
ବସ୍ତୁରପଣ୍ଡଙ୍କ ବସ୍ତୁରେ
ରହିଛନ୍ତି ଭାଗ୍ୟରେ ।
ପା— ଜପ୍ତହେବ କମା ମୋ ଘର
ତୁମ୍ଭେ କଷ୍ଟସ୍ଥ ଠକ
ବାତୁଳ ପରାୟେ ଯା ତାହା
ଶ୍ରେଷ୍ଠି ! ଭାଙ୍ଗିବ ବକ
ଶେ-- ମାତାଙ୍କର ଶ୍ରାଦ୍ଧ ପାଇଁକି
ହୋଇଥିଲା ସେ ଋଣ
ସେଥିପାଇଁ ଜପ୍ତ ହୋଇଲା
ତୁମ୍ଭ ସଦନ ଶୁଣ ।
ପା— ବୃଦ୍ଧାମାତା ମୋର ସହନ୍ତି
ଘୋର ଦୁଃଖେ ବସାଇ
ସତେକି ଶମନ ପୁରକୁ
ଯାଇଛନ୍ତି ପଳାଇ ।
ଶେ—ତୁମ୍ଭର ବାତୁଳ ପିତାର
ସୁଦୁଢର ପ୍ରହାରେ
ମୁଣ୍ଡଫାଟି ପ୍ରାଣ ଛଡ଼ିଲା
ତାଙ୍କ ରୋଗୀଖାନାରେ ।
ପା— ଭଗ୍ୱାନ ଯଶସ୍ୱୀ ମୋ ପିତା
ଏହା ଖ୍ୟାତ ସର୍ବଥା
କପରେ ସେ ବାଇ ହୋଇବେ
ଅସମ୍ଭବ ଏ କଥା ।
ଶେ—ଋଣ ଅନାଦାୟେ ସଦନ
ଜମି ବାଡ଼ ସକଳ

ନୟନ ହୁଅନ୍ତେ ତା’ ଦ୍ଵିବ—
ଦ୍ଵିବ ହୋଇ ପାଗଳ ।
ଭିକ୍ଷ ମାଗି ମାଗ ଭ୍ରମନ୍ତି
ହାତେ ଘେନ ଖଞ୍ଜଣି
କେହୁ ନାହିଁ ସାହା କେ ଦେବ’
ତାଙ୍କୁ ଠୋପେ ତୋରାଣି
ପା— ଗୁଣବତୀ ସତୀ ଦୟାକୁ—
ମଣି ମୋହର ଜାୟା
ପରିଚର୍ଯ୍ୟାକୁବେ ସେ ଥାଇଁ
ବାପା ହେବେକି ବାୟା ।
ଶ୍ରେ—ଅକାଳେ ତନୟ ବିଚ୍ଛେଦ
ଦୁଃଖ ନ ସହୁ ଧନୀ
ଶିରେ ଶିଳା ମାରି ଅର୍ଥୀରେ
ଛାଡ଼ି ଗଲେ ଧରଣୀ ।
ପା— ହାୟ ହାୟ ମୋର ହୃଦୟ—
ନାଥ୍ ପରାଣଧନ
ସୁକୁମାର ପୁତ୍ର ରତନ
କାହିଁ କହ ବଚନ ।
ଶ୍ରେ—ଜ୍ଵାଳାନଳସମ ବଚନ
ଘରପୋଡ଼ି ହାସରେ
ଶାରେ ପରଶତ ଚୂମ୍ଭିର
ସ୍ଵୃତ ନିଜ ବାସରେ ।
ଅସମ୍ଭାଳ ହାସେ ଆଲୋଡ଼ି
ହୋଇ ବିପଦକାତେ
ମାତୃପାନ୍ତ ଅଣ୍ଡ ଛିପ୍ରର
ପରି ଧାଇଁଲେ ଅଣ୍ଡେ ।
ଶ୍ରେଷ୍ଠିବର ବସି ସୁଖରେ
ପାନ୍ତ ପରିତ୍ୟକତ
ଭୋଜନ ସାମଗ୍ରୀ ଭକ୍ଷିଲେ
ଅଣ୍ଡ ତୃପ୍ତି ସହିତ ।

# ଅନ୍ଧ ରହସ୍ୟ

ଥିଲେ ଏକ ରାଜ୍ୟେ ପୂର୍ବେ ଅନ୍ଧ ଦୁଇ ଜଣ
ଭିକ୍ଷାବୃତ୍ତି କରି ପୋଷୁଥିଲେ ସେ ଜୀବନ
ତାଙ୍କ ନାମ ଯଥାକ୍ରମେ ଥିଲା ରାମ ଶ୍ୟାମ
ବାଲ୍ୟରୁ ବିଧାତା ତାଙ୍କୁ ସଦାବେଳେ ବାମ
ମାନବର ଥାଉ ଯେତେ ଗୁଣ ପଉରୁଷ
ବିଧିବାମ ହେଲେ ସବୁ ହୋଇଯାଏ ଧ୍ୱଂସ
ଏକେ ନେତ୍ରହୀନ ଦୁଜେ ଭିକ୍ଷ ମାଗିମାଗି
ଯାଉଥିଲେ ବୁଲିବୁଲି ପେଟ ଅଣ୍ଣା ଲାଗି ।
ଦୁହିଁଙ୍କର ଭିକ୍ଷାଲବ୍ଧ ସମ୍ପତ୍ତି ଠୁଳାଇ
ଭବିଷ୍ୟତ ବ୍ୟୟ ପାଇଁ ଖାଦ୍ୟରୁ ବଳାଇ,
ଯୋଡ଼ ରଖୁଥିଲେ ଏକ ନିର୍ଜ୍ଜନ ସଦନେ
ମଧୁ ସଞ୍ଚି ରଖେ ମଧୁ ମକ୍ଷିକା ଯେସନେ ।
ଦିନେ ଶ୍ୟାମ ବହୁଦୂର ବୁଲି ଭିକ୍ଷାଆଶେ
କିଛି ନ ପାଇ ଲେଉଟି ଅବଶେଷେ ହତାଶେ
ବସିଥିଲା ଏକ ବଟବୃକ୍ଷ ଛାୟା ତଳେ
କ୍ଲାନ୍ତ ଶିଶୁ ପଶେ ଯଥା ଜନନୀର କୋଳେ
ପିଠିରେ ବୋଝକୁ ଥୋଇ ରାମ ସେ କାଳରେ
ଉପସ୍ଥିତ ହୋଇ ସେହି ପାଦପ ମୂଳରେ
କହିଲା ଭାଇହେ ଆଜ ଲଭିଅଛ କି କି
ଯୋଗାଡ଼ କରିଛ କିସ ଖାଇବା ପାଇଁ କି ?
ଜନ୍ମା ହୋଇଥିଲେ ହେଲେ ଖାଲବଣାଘୋଡ଼ା
ତଥାପି ସଭିଙ୍କି ଭବେ ସ୍ୱତନ୍ତ୍ରେ ଲୋଡ଼ା
ବୁଲିବୁଲି ଆଜି ଫେରୁଥିଲି ମୁଁ ଦୂରରୁ
ନିରେଖିଲି ଶ୍ରୀପତଙ୍କୁ ବହୁତ ଦୂରରୁ
ଦୁଃସହ କଷ୍ଟରେ ମନ ହେଲେହେଁ ଅଥୟ
ଯାଏ ତାହା ଶୀଘ୍ର ସ୍ୱଗ୍ୟ ହୋଇଲେ ସଦୟ,
ତାଙ୍କ ପାଖୁଁ ପାଇଅଛି ବହୁ କ୍ଷୀରପିଠା
ଚାଖିଲେ ଭୁଲିବ ନାହିଁ ତୁମ୍ଭେ ତାର ମିଠା

ଏ ପିଠାଚନ୍ଦ୍ରକୁ ଥରେ ନିରେଖିଲେ ଭଲି
ଶରଦଚନ୍ଦ୍ରକୁ ମନେ ପକାଇବ ନାହିଁ ।
ସ୍ଥୂଳ ଏ ସକଳଦରବେ ଭରିବା ଉଦର
ଉଦର ଦେବତାପୂଜା ଭବେ ସଭିଙ୍କର
ହେଉ ତେବେ ବୋଲିହେଲେ ଅଗ୍ରସର ସମ
କାହାକୁ ନ କରେ ଋଷି ଭୋଜନର ନାମ
ଗଲେ ନାନା କଥାବାର୍ତ୍ତା ହୋଇ ପରସ୍ପର
ସ୍ୱୀ ବିପଦର ଶଙ୍କା ନ ଥିଲା ତାଙ୍କର
ଧୂର୍ତ୍ତ ଚୂଡ଼ାମଣି ମଧ୍ୟ ଜାଣିଲେ ଭିତରୁ
ଶୁଣୁଥିଲେ ଏହି ଗୁପ୍ତକଥା ନିକଟରୁ
ନ ଯାଉଣୁ ସେ ବେଳଏ ଅଲକ୍ଷ୍ୟର ପଥ
ଗୋଡ଼ାଇଲେ ତାଙ୍କ ପଛେ ପଛେ ଛଦ୍ମାବୃତ
ଅନୁସରିଲେ ଦୁହିଁଙ୍କୁ ମଧ୍ୟ ଦୁଷ୍ଟମନେ
ଅଇଁଠା ପତର ପଛେ କୁକୁର ଯେସନେ ।
ଉପସ୍ଥିତ ହୋଇ ଏକ ଅନ୍ଧାର ମନ୍ଦିରେ
ନିରେଖିଲେ ଅନ୍ଧ ବେନି ଅନ୍ତ ଧୀରେ ଧୀରେ
ଦୁଇଖଣ୍ଡ ଲୁହା ଧରି ମୃତ୍ତିକା ଖୋଦନ୍ତି
ଲଭିଲେ ବେଣୁଆଦ୍ଧଙ୍କା ଭଲ୍ଲୁକ ଯେମନ୍ତ
ଖୋଳି ଖୋଳି ବେନି ତହିଁ କରିଲେ ବାହାର
ରୌପ୍ୟମୁଦ୍ରାରେ ପୂରିତ ଗୋଟିଏ ଆଧାର
ଯେସନେ କୁମ୍ଭୀର ଡିମ୍ବ ପ୍ରସବ ଉତ୍ତାରେ
ଘୋଡ଼ାଇ ରଖଇ ପୁଣି ତାହା ମୃତ୍ତିକାରେ
ତେସନ ସେ ଲବ୍ଧଧନ କଳସେ ପୂରାଇ
ମୁଟପରି ଦେଲେ ତାକୁ ମୃତ୍ତିକା ଘୋଡ଼ାଇ ।
ବସିଲେ ଆନନ୍ଦମନେ ଉଦର ପୂଜାରେ
ପେଠବନା ତାଙ୍କ କେହି ନାହିଁ ଏ ହସାରେ
ଅନ୍ଧଙ୍କ ପଛରେ ଥାଇ କୁଟିଳ ଶେଖର
ଭକ୍ଷ୍ୟଦ୍ରବ୍ୟମାନ ଦେଖି ମଧ୍ୟ ମିତ୍ରଙ୍କର-
ଜଳିଲା ଜଠରାନଳ ପ୍ରଖର ବେଗରେ
ବାସନାରେ ଲାଳ ଖସି ପଡ଼ିଲା ସତ୍ୱରେ

ଝଣ ଝଣ ଝଣ ଠଙ୍କା ଗଣା ଶବ୍ଦ ଶୁଣି
ଗରିବ ମନରେ ଯଥା ଦୁଃଖ ହୁଏ ବୁଣି
ତେହ୍ନେ ସପାସପ ତାଙ୍କ ଖାଇବା ଚହଲ
ଦ୍ୱିଗୁଣରେ ମଧୁମନ କରିଲେ ତରଳ
କ୍ଷୁଧାର ପ୍ରବଳ ବେଗ ନ ପାରି ସେ ବାରି
ବସିଲେ ଭୀମ ପଛରେ ଯାଇ ଟେକାମାରି
ନିଃଶବ୍ଦେ ମାର୍ଜାର ପଶି ବିହଙ୍ଗ କୁଳୟେ
ଗୋଟି ଗୋଟି ଛୁଆ ଯେହ୍ନେ ସ୍ୱଚ୍ଛନ୍ଦରେ ଖାଏ
ତେସନ ସତର୍କେ ଅତିଶୟ ଯତନରେ
ଭକ୍ଷ୍ୟଦ୍ରବ୍ୟ ଘେନି ମଧୁ କ୍ଷେପିଲେ ଉଦରେ
ଅନ୍ଧଙ୍କ ଶ୍ରବଣ ଶକ୍ତି ଅତ୍ୟନ୍ତ ପ୍ରଖର
ତାହାଙ୍କୁ ଏକଥା ତଳେ ନ ଥିଲା ଗୋଚର
ଅଲକ୍ଷଣେ ଏଣୁ ଭୀମ ତାଙ୍କୁ ବୁଝିପାରି
ସତ୍ୱରେ ଅଲକ୍ଷେ ଫେରି ପଛକୁ ତାହାରି
ସାଉଁଟି ସଦମ୍ଭେ ଦୃଢ଼େ ମଧୁଙ୍କୁ ଜଡ଼ାଇ
ଚୋର ଚୋର ବୋଲି ଉଠେ ଡାକିଲ ନଠାଇ
ଆକଟି ମଧୁକୁ ଆଶ୍ଳେଷେ ସୁଦୃଢ଼ ଭୁଜରେ
ଗଡ଼ାଗଡ଼ ହେଲେ ବେନି ଅବନୀ ଉପରେ
ପରସ୍ପରେ ଶେଷ ଦଶେ ହେଲେ ମରମର
ବିରାଟପୁରେ କୀଚକ ବୃକୋଦର ପରି ।
ପଶିଲେ ଯେମନ୍ତେ ବାଘ ରାତ୍ରେ ଗୁହାଳରେ
ଦଉଡ଼ନ୍ତି ଗ୍ରାମବାସୀ ଗଉଡ଼ ଡାକରେ,
ତେହ୍ନେ ଗଣ୍ଡଗୋଳ ଶୁଣି ସକଳେ ଚଞ୍ଚଳ
ଦଉଡ଼ିଲେ ପଡ଼ିଗଲା ତହିଁ କୋଳାହଳ ।
ନିବେଦିଲେ ଅନ୍ଧ ସର୍ବେ ଦେଖ ଏ ଦୁରନ୍ତ
ଦେଉଛି ଯାତନା ଆମ୍ଭ ବେନିଙ୍କୁ କେମନ୍ତ
ପତିବ୍ରତା ରମଣୀର ସତୀତ୍ୱ ଯେମନ୍ତ
ହଠେ ଲୁଣ୍ଠ କରେ ଧୂର୍ତ୍ତ ଲମ୍ପଟ ଦୁର୍ବୃତ୍ତ
ତେସନ ଆମ୍ଭର ଯେତେ ଉପାର୍ଜିତ ଧନ
ଅଲକ୍ଷେ ହରୁଛି ଆସି ଦେଖ ଏ ଦୁର୍ଜନ ।

ବାଲ୍ୟକାଳୁଁ ଆମ୍ଭେ ଅଛୁ ଜାଣ ସର୍ବେ ଭାଇ
ଏ ଦୁଷ୍ଟ କପଟୀ ଧନ ଦଅ ମୁକୁଳାଇ ।
ସେମାନଙ୍କ କଥା ଶୁଣି ସାଧୁତା ଦେଖାଇ
କହିଲେ ଏମନ୍ତ ମଧୁ ଆଖି ମୁଦିଦେଇ ।
ଦଗାଦାର ନାହିଁ କେହି ଏମାନଙ୍କ ପରି
ଆମ୍ଭେ ତିନିଜଣ ଅଛୁ ଭିକ୍ଷାବୃତ୍ତି କରି,
ପୋତିରଖୁଁ ଏସ୍ଥାନରେ ଅର୍ଥମାନ ଆଣି
କହୁଛି ସକଳେ ଶୁଣ ଆଜର କାହାଣୀ ।
ମାଗିବାରୁ ମୋର ଅଂଶ ନ ଦେଇ ସେ ବଳେ
ଏକାବେଳେ ତହୁଁ ମୋତେ କରନ୍ତି ଦଣ୍ଡିତ ।
ଅବଶ୍ୟଜ୍ୟ ବର୍ତ୍ତମାନ ରାଜ୍ୟ ପ୍ରିୟଜନ
ସତ ମିଛ କହୁ ମାରି ନଥଇ ଯେସନ ।
ତେସନ ବେନିଏ ଏହା ନେବାକୁ ଏକାକୀ
କେମନ୍ତ କୌଶଳ କରି ମାରୁଛନ୍ତି ଫାଙ୍କି
ଦେଉଛନ୍ତି ମୋତେ ଘୋର ମିଥ୍ୟାରେ ବୁଡ଼ାଇ
ବିଶ୍ୱାସଘାତକ ଏମାନଙ୍କ ପରି କାହିଁ ।
ମଧୁଙ୍କ ମୁଖରୁ ଶୁଣି ଏ ସବୁ ଚରିତ
ଖୋଳିଲେ ମୃତ୍ତିକା ସର୍ବେ ହୋଇ ଏକତ୍ରିତ
ଦେଖି ମୁଦ୍ରା ପରିପୂର୍ଣ୍ଣ ତହିଁ ଘଟଟିଏ
ତାହାଙ୍କ ଉକ୍ତିକୁ ସତ ମଣିଲେ ସଭିଏ ।
ଏ ଜଗତେ ପ୍ରକୃତରେ ସତ୍ୟ କିଛି ନାହିଁ
ପ୍ରତ୍ୟକ୍ଷ ହୁଅଇ ଯାହା ସତ୍ୟ ତାହା ଭାଇ
ଏଣୁ ସେ ତିନିଙ୍କୁ ବାନ୍ଧି ସୁଦୃଢ଼ ସୂତାରେ
ପଠାଇ ଦେଲେ ନେଇ କୋଟୁଆଳ ଠାରେ
କୋଟୁଆଳ ତଦାରଖ କରନ୍ତି ମାମଲା
ଧୋବକୁ କରନ୍ତି କଳା କଳାକୁ ଧୋବଳା
ମଧୁମିଶ୍ର ପୁଣି ବେନି ରାମ ଶ୍ୟାମଙ୍କର
ଆକର୍ଣ୍ଣି ଜମାନବନ୍ଦି କୋଟୁଆଳବର
ଆଦେଶିଲେ ବେତାଘାତ ଦେବାକୁ ଆଣ୍ଠୁରେ
ତିନି ଜଣଙ୍କର କୃଶ ମସୃଣ ପୃଷ୍ଠରେ ।

ଘଡ଼ଘଡ଼ ଶବ୍ଦେ ଯଥା ପଡ଼ଇ ଅଶନ
ଏକାବେଳେ ସେ ଦ୍ୱନ୍ଦ୍ୱେ ଦୃଢ଼େ ଗଣି ଗଣି
ରକ୍ତଚକ୍ଷୁ ବଜ୍ରମୁଷ୍ଟି ପ୍ରହରି ଗୋସାଇଁ
ତିନଙ୍କୁ ଉଦ୍ଦେଶି ବେତ ପିଠିଲେ ନଠାଇ
ଶପ ଶପ ଶବ୍ଦେ ବେତ କଲା ଆତଜାତ
ଚର୍ମ୍ମଛିଡ଼ି ହେଲା ଖରେ ପୃଷ୍ଟ ରକ୍ତପାତ
ନ ସହି ସେ ମନ୍ତ୍ରୀ ମାଡ଼ ଉଠେ ରଡ଼ିଦେଇ
ଦକ୍ଷିଣ ନୟନ ମଧ୍ୟ ଭୟେ ଦେଲେ ଫେଇ
ଯେତେ ଦୃଢ଼କରି ରୁଦ୍ଧ କରି ମୁଖବାଠ
ସଯୋରେ ବସିଲେ ବେତ ଭାଙ୍ଗିଯିବ ଆଣ୍ଠୁ
ଦେଖି ଏ ବନ୍ଧୁଦ୍ୱୟଙ୍କର ନୂତନ ଘଟଣା
ଉଠିଥିଲା ମନେଙ୍କର ଅପାର ତର୍କଣା!
କହିଲେ ମଧୁମିଶ୍ରଙ୍କୁ ତୁମ୍ଭେ ପରି ଅନ୍ଧ
କପରି ଫିଟିଲା ଏବେ ନୟନର ବନ୍ଧ
ଧନ୍ୟ ଧନ୍ୟ ବେତ ତୋର ମହିମା ଅପାର
ଅନ୍ଧକୁ ଦେଲୁତ ଆଣି ଚକ୍ଷୁ ଉପହାର
ତୁହି ଅଟୁ ଭବେ ବେତ ଧାର୍ମିକର ସାହା
ବିପଦରେ ସଦାବେଳେ ଲୋଡ଼ା ତୋର ବାହା
ସତୀର ସତୀତ୍ୱ ରହ ତୁହି ରକ୍ଷି ବେତ
ଦୁଷ୍ଟ ମାନବକୁ ଶିକ୍ଷା କରୁ ତୁ ଭବେତ
ବେତ ଖାଇ ନବେଦିଲେ ମଧ୍ୟ ଦଗାଦାର
ନୋହୁଁ ଆମ୍ଭେମାନେ ଅନ୍ଧ ହେ ଧର୍ମାବତାର
ଅନ୍ଧବେଶେ ତିନିଜଣ ସାଜି ମିଥ୍ୟା-ଯନ୍ତ୍ର
ସବୁଦିନେ ଭିକ୍ଷା କରି ଚଳାଇ ସମଉ ।
ପୋତିରଖିଁ ମୃତ୍ତିକାରେ ଆଜି ମୋର ସ୍ୱର୍ଗ
ମାଗିବାରୁ ଏହି ଦୁହେଁ କଲେ ଅତି ରାଗ
ବେନଏ ମନ୍ତ୍ରଣା କରି ଦେଇ ଗୌରବଟା
ଚାହିଁଛନ୍ତି ନେବା ପାଇଁ ମୋହର ଅଂଶଟା
ସାକ୍ଷାତ ଧର୍ମର ଅବତାର ପରି ଛଦ୍ମ
ଚଳାଇଛି ଛଦ୍ମ ତେଜେ ମିଥ୍ୟା ଭର୍ବଧାମୁଁ

କଠ୍‌ଥାଳ ମହାଶୟ ମଧୁଙ୍କର ଭାଷା
ସତ୍ୟମଣି ସୁବୁଦ୍ଧିକୁ କରିଲେ ପ୍ରଶଂସା
ବେନଙ୍କୁ ହୁକୁମ ଦେଲେ ବାନ୍ଧିବାକୁ ଠାଣେ
ବଡ଼ ଲୋକଙ୍କର ମାୟା କେହିତ ନ ଜାଣେ
ଆଦେଶେ ଗର୍ଜନ କରି ବେନଙ୍କ ଉପରେ
ନାଚିଲା ପ୍ରହରୀ କରେ ବେତ ଆନନ୍ଦରେ
ବେତପରେ ବେତପଡ଼େ ପୃଷ୍ଠ ଚମକାଇ
ତଥାପି ବେନଙ୍କ ଆଖି ଫିଟିଲାତ ନାହିଁ
କରି ପାରେ ବେତ ସତ୍ୟ ଆବିଷ୍କାର ଭାଇ
ମିଥ୍ୟାକୁ ସତ୍ୟ କରିବା ତାର ସାଧ କାହିଁ
ନିବେଦିଲେ ମଧୁ ପ୍ରଭୁ ଏହି ଦୁଇ ଚୋର
ବାଲ୍ୟକାଳରୁ ଅଟନ୍ତି ବଡ଼ ସୁଚତୁର
ସାଧାରଣ ମାଡ଼େ ଆଖି ଫିଟାଇବେ ନାହିଁ
ଭଲ ନ ତାତିଲେ ଲୁହା କାର୍ଯ୍ୟ ଦେବ କାହିଁ ।
ହୁତାଶନ ତେଜେ ଗର୍ବ ଭାଙ୍ଗଇ ଲୁହାର
ବାଡ଼ିକୁ ତାହାର କାହିଁ ଟିକିଏ ଖାତିର ।
ଅନ୍ଧଙ୍କୁ ସମ୍ବୋଧି ମଧୁ କହିଲେ ହେ ଭାଇ
ତୁଚ୍ଛାଠାରେ ଦଣ୍ଡଭୋଗ କର କାହିଁ ପାଇଁ ।
ଯା ହେବାର ହେଲାଣିତ ଗତ କଥା ଛାଡ଼
ସତ୍ୟକୁ ଘୋଡ଼ାଇ କିପାଁ ଖାଉଅଛ ମାଡ଼
ସତ୍ୟଠାରୁ ବଳି ବଳେ ଧର୍ମ ଆଉ ନାହିଁ
ସେ ସତ୍ୟ ଗୋପନ ଆଉ କର ନାହିଁ ଭାଇ
ପାଇଲଣି ଗୁରୁଦଣ୍ଡ ଆମ୍ଭ ଦୁଷ୍କାମିର
ଯେ ଯା' ବୁଣେ କାଟେ ତାହା ଏହିଥି ବିଧିର
ଦିଅ ଭାଇ ନେହଫେଡ଼ କରୁଛି ବିନତି
ମିଥ୍ୟା କହି ରକ୍ଷା ନାହିଁ ଏହାଙ୍କର କତି ।
ପ୍ରବଳ ପ୍ରତାପୀ ଏହି କଠ୍‌ଥାଳ ରାୟ
ସାକ୍ଷାତ ଏହାଙ୍କ କାର୍ଯ୍ୟ ଧର୍ମରାଜ ପ୍ରାୟ
କଠ୍‌ଥାଳ ମାଡ଼ ଦେଲେ ତୁହାଇ ତୁହାଇ
ତଥାପି ଅନ୍ଧଙ୍କ ଆଖି ଫିଟିଲାତ ନାହିଁ !

ଷେଷେ ଠକ ବୋଲି ମଣି ବସ୍ତୁର ପାଇଁକି
କାଜପ ଷେ ପଠାଇଲେ ସେ ଅନ୍ଧ ଝୁହିଁକି
କାଜିଙ୍କ ବିଚାର ଲୀଳା ଅତି ଚମତ୍କାର
ବିଦ୍ୟାଶୂନ୍ୟ ଭଟ୍ଟାଚାର୍ଯ୍ୟ ନିଷ୍ଠୁର ଆଧାର
ମୁକ୍ତ ଶେଷଯାଏ ଶୁଣି ଧର୍ମ ନିକଟରେ
ତୋଳି ଏ ରହସ୍ୟ ଆଖି ବନ୍ଧିଲେ ଅଚିରେ
ସତ୍ୟ ନିରୂପଣ ପାଇଁ ଅନ୍ଧଙ୍କ ଆଖିରେ
ଢ଼ାଳି ଜଳି ଜଳି ତପ୍ତ ତଇଲ ବିଧିରେ
କାଜି ମହାଶୟ ଶେଷ କରିଲେ ବିଚାର
ନିଷ୍କର ପାଇଁ ଯା'ଙ୍କ ନ୍ୟାୟ ଦରବାର
ମଧୁମିଶ୍ର ଧନ ଘେନି ଘରେ ଗଲେ ସୁଖେ
ସଂନ୍ୟାସ ହରାଇ ଅନ୍ଧେ ମଲେ ମହା ଦୁଃଖେ
ଗଣ୍ଡା ଗଣ୍ଡା ଅନ୍ଧ ଥିଲେ ଛନ୍ଦ ନ ହୁଅଇ
ବିଚାରକ ଅନ୍ଧ ହେଲେ ସଂସାର ବୁଡ଼ଇ ।



ବହୁବର୍ଷ ପୂର୍ବେ "ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ" ଏହି ସମସ୍ୟାଟି ପୂରଣ ପାଇଁ ହିତୈଷିଣୀରେ ମୁଁ ଦେଇଥିଲି । ତାହା ପୂରଣ କରି ଅନେକେ ମୋଠାକୁ ପଠାଇଥିଲେ । ତନ୍ମଧ୍ୟରୁ ବହୁତ ହଜିଯାଇଅଛି, ଯାହା ପାଇଲି ଏଥିରେ ଦିଆଗଲା ।

## ଚନ୍ଦ୍ରର ଶରୀରେ ଏହା ନୁହେଁ କଳଙ୍କ

୧

ସମୁଦ୍ରମନ୍ଥନ ଜାତ- ହେବାକାଳେ ଐରାବତ
ଦରପଣ କାନ୍ତି ବିଧୁ ଫଳକେ ଦେଖି
ନିଜ ପ୍ରତିବିମ୍ବ ଆନ, ମତ୍ତଗଜ ସ୍ୱଭାବ ଠାଣି
ଦନ୍ତ ମାରିବାକୁ ଯାଇଅଛି ତଡ଼କି
ଏଣୁ ସିନା ରହିଅଛି ଅଙ୍କ
ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ ।

ବଳଭଦ୍ର ଦେବ

୨

ଶମ୍ଭୁଙ୍କ କୀର୍ତ୍ତିଚନ୍ଦ୍ରମା ଉଦୟେ ଯେବେ ମହିମା
ହୋଇଲା ଆକାଶେ ସୁଧା କାନ୍ତି ବିସ୍ତାରି
ପତିବ୍ରତା ସେ ଦେହିଣୀ ଭ୍ରମରେ ପଡ଼ିବା ଜାଣି
ନିଜ ବଲ୍ଲଭେ ମନରେ ଏହା ବିଚାରି
ଦେଇଅଛି କଜ୍ଜଳ ଅଙ୍କ
ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ ।

ଘନଶ୍ୟାମ ବିବିଭୂଷଣ

୩

ଦାକ୍ଷାୟଣୀ ଅତି ଦମ୍ଭ— ଭବେ ପତି ପରିରମ୍ଭ
କରିବାକୁ କୁଚକୁମ୍ଭ ଯୋଗୁଁ କସ୍ତୁରୀ
ଚନ୍ଦ୍ରମା ବକ୍ଷରେ ଲାଗି ଅଛି ଅଥବା ବିଯୋଗୀ
ବଧୂ ଜନ ବଧଲାଗି କରି ଝୁରୁସି
ରଖିଅଛି ଛାପ ବିଠକି
ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ ।

ମଧୁସୂଦନ ମିଶ୍ର ତର୍କବାଚସ୍ପତି

୪

ଯେଉଁ କାଳେ ଲଙ୍କନାଥ          ଆରୋହି ପୁଷ୍ପକ ରଥ
କରୁଥିଲା ସୈନ୍ୟ ଘେନି ମନ୍ତ୍ରୀ ବୁଦ୍ଧିକ
ରାମ ଶରେ ଛିନ୍ନଭିନ୍ନ          ମୁକୁଟର ନୀଳବର୍ଣ୍ଣ
ମଣି ସେ କାଳରେ ଚନ୍ଦ୍ରଦେହେ ଛିଡ଼ିକ
ପଡ଼ିବାରୁ ରହିଛି ଅଙ୍କ
ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ ।

ଶ୍ରୀମତୀ କୁମାରୀ ଦେବୀ
ଯୁବରାଜ୍ଞୀ ସୁରଗୁଜା

୫

ଯେବେ ବୀର ବୈନତେୟ          ସ୍ୱର୍ଗକୁ କରି ଅପସ୍ୱ
ସୁରେନ୍ଦ୍ର ରକ୍ଷିତ ଶଶୀମଣ୍ଡଳୁ ବଳେ
ହରିଲେ ଅମୃତପୂର୍ଣ୍ଣ          କଳାକର କରି ଶୀର୍ଣ୍ଣ
ଏଣୁ ତାର ଅବକାଶ ସ୍ଥାନ ସକଳେ
ଶୂନ୍ୟ ଦିଶେ ରହିଛି ଫାଙ୍କ
ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ ।

ଦୟାନିଧିଦେବ ଗଲ

୬

ସମୁଦ୍ର କରି ମନ୍ଥନ          ଦେବତା ଅସୁରଗଣ
ଲଭି ସୁଧା ରଖିଛନ୍ତି କାଚ କୁମ୍ଭରେ
ସେ ସୁଧା ଲୋଭରେ ରାହୁ          ହୋଇ ଚଞ୍ଚଳଗୁ ଧାଇଁ
ଚୂର୍ଣ୍ଣୀଭୂତ ହୋଇ ପିପୀଲିକା ନିକରେ
ବସିଛନ୍ତି ହୋଇଣ ରଙ୍କ
ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ ।

କଲ ନବୀନ ଚନ୍ଦ୍ର ଦେବ

୭

ଦେବରାଜଙ୍କ ଶିକାରୀ          କାଳିବା କାଳର ହରି
ପୁଣ ଯାଉଁ ଚନ୍ଦ୍ରପୁର ନନ୍ଦନବନ—
ଭିତରେ ଥିବା କୁରଙ୍ଗ—          ଭୟରେ କମ୍ପାଇ ଅଙ୍ଗ
ଡେଇଁ ଲୁଚିବାରୁ ଭୟେ ହୋଇ ଉଚ୍ଛନ୍ନ

ସୁଧାସରେ ହେଲ ଅଙ୍କ
ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ ।

ଲକ୍ଷ୍ମୀଶ୍ୱର ମିଶ୍ର
ନୂଆପଡ଼ା

୮

କୁଣ୍ଡଳ ଚକର ପରି        ଘୂରୁଛି ଏ ବସୁନ୍ଧରୀ
ସଙ୍ଗେ ସଙ୍ଗେ ଘୂରୁଛି ଏ ଚନ୍ଦ୍ରମା ଧାଇ
ଦର୍ପଣ ପରି ଉଜ୍ଜ୍ୱଳ        ନିର୍ମଳ ବିଧୁମଣ୍ଡଳ
ତହିଁ ପଡ଼ିଅଛି ଏହି ଜଗତ ଛାଇ
ଦିଶୁଅଛି ସେ ଛାଇ ଅଙ୍କ
ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ ।

ଦୁଷ୍ମନ୍ତ ଦେବ

୯

ଆମର ନିବାସସ୍ଥାନ        ଏ ଜଗତ ପରି ଜାଣ
ଚନ୍ଦ୍ର ମଧ୍ୟ ଅଟେ ଏକ ବିଶାଳଗ୍ରହ
ତହିଁରେ ଅଛି ପର୍ବତ        ତରୁଲତା ଅଗଣିତ
ଜଳେପୂର୍ଣ୍ଣ ସ୍ରୋତସ୍ୱତୀ ନଦୀ ସମୂହ
ଦୂରୁ କଳାଦିଶେ ସେ ଅଙ୍କ
ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ ।

ପ୍ରାଣଧନ ଷଡ଼ଙ୍ଗୀ

୧୦

ସ୍ୱଭାବରେ ତେଜହୀନ        ଦେବ କୁମୁଦ ରଞ୍ଜନ
ଏଣୁ ସୂର୍ଯ୍ୟ କର ଆଣି ହେଲେ ଉଜ୍ଜ୍ୱଳ
ନିଜ ଦେହେ ସୁକୁମାର        ମିଶୁଅଛି ସେହି କର
ଧୀରେ ଧୀରେ ଅମିଶ୍ରିତ ସ୍ଥାନସକଳ
ଦିଶେ ବଙ୍କାଠିକା ସଳଖ
ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ ।

ମଦନ ମୋହନ ଗୁରୁ

୧୧

ଦନେ ତପସ୍ୟାର କାଳେ ଉମାପତି କୁତୂହଳେ
ଶିରେ ସୁଧା ସ୍ୱଳ୍ପଖଣ୍ଡେ ମଣ୍ଡିବା ପାଇଁ
ଆଣିବାରୁ ଯିଙ୍କ ଠାଣେ ତାର ଅବକାଶ ସ୍ଥାନେ
ଦୂରରୁ ଦଶିଲ ତାହା ଅସିତ ହୋଇ
ଏହା ଅଟେ ତହିଁର ଅଙ୍କ
ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ ।

ମଦନ ମୋହନ ଗୁରୁ

୧୨

ବେଦ ଯୁଗଶ୍ୱର ସିନ୍ଧୁ ଉଠିବା କାଳରେ ଇନ୍ଦୁ
କରତନର କରାଳ ମଶ୍ଚବ୍ୟାଦନେ
ଚଳମସ୍ତ ଅନୁସାରୀ ଅଗାଧଜଳ ସଞ୍ଚାରୀ
ଦ୍ରୁତଗାମୀ ମକରର ଦନ୍ତ ଘର୍ଷଣେ
ଲଗିଅଛି ତା ଦେହଁ ପଙ୍କ
ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ ।

ସଞ୍ଜୀବଶ୍ରେଚନ ଦେବଶ୍ରାଲ

୧୩

ସାଗର ମନ୍ଥନେ ଯେବେ ରଖିଲେ ଆଦରେ ଦେବେ
ସିନ୍ଧୁ ଜାତ ସୁଧା ଗ୍ରସି ଚନ୍ଦ୍ର ଅଙ୍ଗରେ
ତାହା ନେବାକୁ ଛଡ଼ାଇ ଧିଗ୍ଠେଣା ହେଲେ ଦୁଇ
ଆଦତ୍ୟ, ଦନୁଜ କୁଳ ମହାକୋଧରେ
ସେହି ଠେଣାଠେଣିର ଅଙ୍କ
ଚନ୍ଦ୍ରର ଶରୀରେ ଏହା ନୁହେଁ କଳଙ୍କ ।

ରଞ୍ଜୀବଶ୍ରେଚନ ଦେବଶ୍ରାଲ ସାହେବ

୧୪

ମେଷ ବୃଷ ସିଂହ ଚଢେ ଘରେ ଚନ୍ଦ୍ର ଗ୍ରସି ଚଢେ
ଅହରହ ଏବଧାନେ ସୃଷ୍ଟିକର୍ତ୍ତାର
ବଢାଉଛି ନବ ଧର କାମଢ଼ଛି କ କେଶରୀ
ଘଟିଥିବ ଏହପର କଛ ବ୍ୟାପାର

ଦିଶୁଅଛି ତହିଁର ଅଙ୍କ
ଚନ୍ଦ୍ରର ଶରୀରେ ଏହା ନୁହେଁ କଳଙ୍କ ।
ଶ୍ରୀମତୀ ସୋହାଗିନୀ ଦେବୀ

୧୫

ଯେବେ ଦେବ ପୁରନ୍ଦର          ଉଡ୍ଡୀନ ଶୈଳ କୁଳର
ଛେଦିଲେ ସୁପାର୍ଦ୍ଧ ପକ୍ଷ ସ୍ୱମଦ୍ଦୁରେ
ଶୈଳ ଏକ ମହାଭୟେ          ସେ କାଳେଯାଇ ଅଥୟେ
ଆଶ୍ରିଛି ସୁଧା ପୁରିତ ଚନ୍ଦ୍ର ଅଙ୍କରେ
ଦିଶେ ସେହି ଗିରିର ଟଙ୍କ
ଚନ୍ଦ୍ରର ଶରୀରେ ଏହା ନୁହେଁ କଳଙ୍କ ।
ରବୀନ୍ଦ୍ର ନାଥ ଦେବଗଲ

୧୬

ସମୁଦ୍ର ମନ୍ଥନ ବେଳେ          ଭେଦି ରତ୍ନାକର ଜଳେ
ବାହାରିଲେ ଯେ କାଳରେ ରଜନୀ କର
ସେହିକାଳେ ମନ୍ଥାଚଳ          ଆଘାତେ ତାଙ୍କ କୋମଳ
ଦେହୁଛିଡ଼ି ଖଡକାଳେ ହେଲେ ଜର୍ଜ୍ଜର
ଦିଶୁଅଛି ସେ ଚିହ୍ନଯାକ
ଚନ୍ଦ୍ରର ଶରୀରେ ଏହା ନୁହେଁ କଳଙ୍କ ।
ରବୀନ୍ଦ୍ରନାଥ ଦେବସଲ୍

୧୭

ପକ୍ଷେକାଳ ଛଡ଼ ଛଡ଼          ପୁଣି ପକ୍ଷେକାଳ ବଢ଼ି
ଛଡ଼ ଯୋଡ଼ ହେଉଅଛି ନିରତ ଶଶି
ଛଡ଼ ଯୋଡ଼ିବାବେଳରେ          ଯୋଡ଼ାସ୍ଥାନ ମାନଙ୍କରେ
କଳାଦାଗ ଦିଶେ ପୁର୍ଣ୍ଣଭାବେ ନ ମିଶି
ଜଣାଯାଏ ଏ ତାର ଅଙ୍କ
ଚନ୍ଦ୍ରର ଶରୀରେ ଏହା ନୁହେଁ କଳଙ୍କ ।
Mrs R. N. Deb.

୧୮

ପାଠ ପଢ଼ିବାକୁ ଆସି ଏହୁ ଅଷ୍ଟମୀ ଶଶି
ଗୁରୁପତ୍ନୀ ଭ୍ରଷ୍ଟାକଲେ ହୁଡ଼ ବିବେକ
ପାପର ବିଷମ ଦାଉ ସେ କାଳିମା ଯିବ କାହିଁ
ବାରହୋଇ ଦିଶୁଅଛି ଦେହରେ ତାଙ୍କ
ତେବେ କିପାଁ କହନ୍ତି ଲୋକ
ଚନ୍ଦ୍ରର ଶରୀରେ ଏହା ନୁହେଁ କଳଙ୍କ ।

ବଳଭଦ୍ର ଦେବ

୧୯

ପାତାଳ ନିତାନ ସର ସମତା ଧବଳକର
ସ୍ନେହେ ଫିଙ୍ଗି ପ୍ରାତୁଁ ଚନ୍ଦ୍ର ନିଏ ସାଉଁଟି
ଜମା ହୋଇଅଛି ଦେହରେ ସେହୁ କର ସହିତରେ
ପୃଥିବୀରୁ ଧୂଳିମଳି ଅନେକ ଉଠି
ଦିଶୁଅଛି ସେ ମଳଯାକ
ଚନ୍ଦ୍ରର ଶରୀରେ ଏହା ନୁହେଁ କଳଙ୍କ ।

ବଳଭଦ୍ର ଦେବ

୨୦

ଅମୃତ ବଣ୍ଟନ କାଳେ ଦେବତା ବେଶର ଛଳେ
ଭକ୍ଷ୍ୟ ଥିଲା ସୁଧାରାହୁ ସୁରଙ୍କ ମେଳେ
ଇନ୍ଦ୍ର କରନ୍ତେ ପ୍ରକାଶ ସକ୍ରୋଧରେ ସେ ରାକ୍ଷସ
ତାହାକୁ ସୁଦୃଢ଼ ଦନ୍ତେ ଧରନ୍ତେ ବଳେ
ରହିଛି କି ଦଶନ ଅଙ୍କ
ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ ।

ପ୍ରଫୁଲ୍ଲ ଚନ୍ଦ୍ର ଦେବ

୨୧

ପ୍ରକୃତ ସ୍ୱର୍ଣ୍ଣ-ଭୂଷଣ ନୀଳାକାଶଟି ଦର୍ପଣ
ତାରାବଳୀ ଫୁଲସବୁ ଖଚ୍ଚି ଖଞ୍ଜାଇ
ଗୌରବପୂ ଚନ୍ଦ୍ର ତହିଁ ମଣି ପରି ପ୍ରକାଶଇ
ବହୁ ଅନ୍ଧକାର କେଶାବଳୀର ଛଇ

ଦିଶୁଅଛି ସେ ଛାଇପରି
ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ ।
ଶଶିଭୂଷଣ ମହାନ୍ତି

୨୨

ସମୁନ୍ନତ ନାଶାପାଇଁ ଧରି ଉଲ୍ଲାସେ ନିତ୍ୟ
ସଞ୍ଚରିଲେ ସ୍ୱର୍ଗେ ଶୁଭ୍ରେ ସୁଧା ଶରୀରେ
ଚକୋର ଆତୁରେ ଯାଇ ଦୁଃସହ ବେଦନା ବହି
ଅବଶେଷେ କାନ୍ଦି କାନ୍ଦି ବିକଳ ସ୍ୱରେ
ବସିଅଛି ଦେହରେ ତାଙ୍କ
ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ ।
ବୀରେନ୍ଦ୍ରନାଥ ସିଂହ
ଜମିଦାର, ଚନ୍ଦ୍ରପୁର

୨୩

ଜଗତକର୍ତ୍ତା ବିଧାନ କିଏ କରି ପାରେ ଆନ
ସେଥିପାଇଁ ଚନ୍ଦପୁର ମାମୁଁ ବୋଲାଇ
ଅଧିକ ପରିଶ୍ରମରୁ ଝାଳ ବହଇ ତନୁରୁ
ଧୂଳିଲାଗି ସ୍ୱେଦଧାର କଳା ଦିଶଇ
ଦିଶୁଛନ୍ତି ସେ ଜକ ଜକ
ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ ।
ରୁଦ୍ରନାରାୟଣ ଦେବଲାଲ

୨୪

ଉଲ୍କାପାତ ହେବାକାଳେ ଶଶଧର ତାଙ୍କୁ ବଳେ
ଚମ୍ବକେ ଟାଣି ଉଦରେ ସଞ୍ଚି ରଖଇ
ଇନ୍ଦ୍ରମଣି ସମୁଦ୍ରରେ ନିଜ ମାମୁଁର ଶରୀରେ
ପୁଞ୍ଜୀଭୂତ ଉଲ୍କା ଅବା ଦୂରୁ ଦିଶଇ
ଦିଶୁଛନ୍ତି ଏହା ପ୍ରତ୍ୟକ୍ଷ
ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ ।
ରୁଦ୍ରନାରାୟଣ ଦେବଲାଲ ସାହେବ

୨୫

ପ୍ରାଣମନ ପୁଲକାଇ ଦେଖାଦେଲେ ତାଙ୍କ ପାଇଁ
ଜଗତ ସୁଖର ସ୍ମୃତି ମନେ ଜଗାଇ
ବିରହମାନଙ୍କ ଚିତ୍ତ ହେଲ୍ପ ଅତି ଆକୁଳିତ
ଘନଘନ ଦୀର୍ଘଶ୍ୱାସ ଫୁଟି ଉଠଇ
ଜମିଛିକି ଉଚ୍ଛ୍ୱାସ ଯାକ
ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ ।

ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଦେବଘଳ

୨୬

ଦକ୍ଷଯଜ୍ଞେ ସତୀଙ୍କର ମୃତ ପିଣ୍ଡକୁ ସତ୍ୱର
ଉଠାଦେ ଶୂଳପାଣି ତା ଶିରେ ବହିଲେ
ସତୀଙ୍କ ମୁକ୍ତ କୁନ୍ତଳ ପଶୁପତିଙ୍କର ଭାଲ
ସ୍ଥିତଚନ୍ଦ୍ରମା ଶରୀରେ ଲାଗି ରହିଲ୍ପ
ଦିଶଇ ସେ ଚକୁର ଅଙ୍କ
ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ ।

ବୀରେନ୍ଦ୍ରନାଥ ସିଂହ
ଜମିଦାର, ଚନ୍ଦ୍ରପୁର

୨୭

ପ୍ରକୃତିରାଣୀ ସୁମନେ ଫୁଲବାସେ ଅପଘନେ
ମଣ୍ଡି, ମାଳାକାଶ ବେଣୀରାଣି ଯତନେ
ସାଜ, ଛାୟାପଥ ବେଣୀ ତାରା ଶିରୀ ଫୁଲଶ୍ରେଣୀ
ଖଞ୍ଜି, ଦେଖିବାରୁ ମୁଖ ଚନ୍ଦ୍ର-ଦର୍ପଣେ
ଦିଶେ ନୀଳଚିତ୍ତି ଅଳକ
ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ ।

ଦାମୋଦର ମହାପାତ୍ର

୨୮

ମଧ୍ୟେ ହରିଦ୍ରା ତଣ୍ଡୁଳ ସହ ଦୁବ ପତ୍ରଫୁଲ
ନବେଶୀ ସୋହାଗେ ହୋଇ ଏକାନ୍ତମନା
ଶୋଭାମୟୀ ରଜନୀ ବାଳୀ ଚନ୍ଦ୍ରରୂପ ରୂପାଥାଳି
ଯୌବନ ବନ୍ଧୁଙ୍କୁ କି ସେ କରେ ଅର୍ଚ୍ଚନା

ଏହା ନୁହ ପଥର ଅଙ୍କ
ଚନ୍ଦ୍ରର ଶରୀରେ ଏହା ନୁହେ କଳଙ୍କ ।

ଶ୍ରୀମତୀ ସୁଭଦ୍ରା ଜେନା

୨୧

ସୁଧାଖାଣି ଚନ୍ଦ୍ର ଦେଖି ଗ୍ରାସ କରୁଥିଲା ରାହୁ
ବସ୍ତୁ ଜାଣି ସୁଦର୍ଶନେ ଛେଦିଲେ ବଳେ
ସେହି ଆଘାତରୁ ନିକି ରୁଧିରବିନ୍ଦୁ ଛିଟିକି
ପଡ଼ିଅଛି ଚନ୍ଦ୍ରମାର ହୃଦୟସ୍ଥଳେ
ତ୍ୟକ୍ତବିଶେ ସେ ରକ୍ତ ଅଙ୍କ
ଚନ୍ଦ୍ରମା ଶରୀରେ ଏହା ନୁହେ କଳଙ୍କ ।

ବୈଷ୍ଣବୀ ପଣ୍ଡା ମୁ: ୯ :

---

## ତୁଳା ଦାନ

୧

ରୈବତକ ଗିରିବକ୍ଷ ଉଦ୍ୟାନ ବିପିନେ
ନଭଚୋଳେ ଶାଖା ଟେକି ପାଦପନିକର
ଗହଳ ପଲ୍ଲବେ ସୂର୍ଯ୍ୟ ନ ଦିଶନ୍ତି ଦିନେ
ପଡିବାକୁ ତାଙ୍କ ମୂଳେ ପ୍ରଭାକର କର
ଜାଈଯୂଈ ନାଗେଶ୍ୱର କୁରୁଆନା ଗନ୍ଧେ
ଯାଉଥାଏ ଦୂରପାଖ ସହଜେ ଚହଟି
ସୁମଧୁର ଗୀତ ଗାଇ ଗାଇ ନାନା ଛନ୍ଦେ
ଉଡ଼ୁଥାନ୍ତି ବିହଙ୍ଗମେ ହୋଇ ଗୋଟି ଗୋଟି
ଠୁଳାଇବା ପାଇଁ ସବୁଠାରୁ ମକରନ୍ଦ
ଶୁଙ୍ଘି ବୁଲୁଥାଏ ଅଳି ଫୁଲୁଁ ଫୁଲେ ଗନ୍ଧ ।

୨

ଝଙ୍କାଳିଆ ଲତାତଳେ ଶିଳାବେଦୀପରେ
କରିଥାନ୍ତି ପ୍ରେମାଳାପ ପ୍ରେମିକ ପ୍ରେମିକା
ବଙ୍କିମ ଦୀର୍ଘିକା ମଧ୍ୟେ ସ୍ୱଚ୍ଛ ସଲିଳରେ
ଭ୍ରମୁଥାନ୍ତି ଧୀରେ ଧୀରେ ମରାଳ ମାଳିକା

ପରିଷ୍କୃତ ସୁସଜ୍ଜିତ ଘର୍ଘ ପଥମାନ
ଦିଶଇ ଅଦୂରେ ପୁର ଦୃଶ୍ୟପାଖେ ଘେରି
ସ୍ଥାନେ ସ୍ଥାନେ ଫୁଲଭରେ ମଞ୍ଜୁଳ ଉଦ୍ୟାନ
ନାଚେ ତହିଁ ପୁଚ୍ଛଟେକି କେକୀ ଫେରି ଫେରି
ଦରହାସେ କେତେ ପୁଣି କୁତୁକୀ ବାଳୀ
ଦେଖନ୍ତି ସେ ଦୃଶ୍ୟ ପ୍ରେମେ ଦେଇ କରତାଳି ।

୩

ସୁକୋମଳ ଦୂର୍ବାଦଳମାଳେ ସମଣ୍ଡିତ
କରଇ ମାନସ ମୁଗ୍ଧ ଶ୍ୟାମଳ ପ୍ରାନ୍ତର
ପରସ୍ପର ହାସ୍ୟରସେ ଉଚେ ଉଲ୍ଲସିତ
ଭ୍ରମନ୍ତି ଯାଦବୀ ବୃନ୍ଦ କୋମଳପଯ୍ନର ।
ଚତୁଷ୍ପଥେ ଗୋଲକୃତ ଚଣ୍ଡବେଦୀକାରେ
ସ୍ତରେ ସ୍ତରେ ସୁସଜ୍ଜିତ ପୁଷ୍ପିତ ବଲ୍ଲରୀ
ଅଙ୍ଗଭଙ୍ଗୀ କରି ଊର୍ଦ୍ଧ୍ୱେ ବିବଧ ଆକାରେ
ଉଚ୍ଛୁଳ ଉଠଇ ରଙ୍ଗେ ସଲିଳ ଲହରୀ
ରକ୍ତପୀତ କେତେମତ୍ସ୍ୟ ସ୍ଫଟିକ ବାସନେ
ବସି ବୃନ୍ଦଥାନ୍ତି ସେହି ନୀର ଆସ୍ତରଣେ ।

୪

ଧାଡ଼ଧାଡ ରାଜପଥ ବେନି ପାର୍ଶ୍ୱଦେଶେ
ସୁଧାଧୌତ ସୌଧମାଳ ଦିଶଇ ଧବଳ
ସ୍ତମ୍ଭପରେ ସଚଳତ ପୁଣି ଶୁଭ୍ରବାସେ
ପରଦାମଣ୍ଡିତ ମଞ୍ଜୁ ବରଣ୍ଡା ସକଳ
ନୃତ୍ୟମଣ୍ଡପମାଳ ତଳରେ ତାହାର
ଠାରେ ଠାରେ ମନନେତ୍ର ହରନ୍ତି ଉତ୍ସୁକେ
ସେହି ମଣ୍ଡପରେ ବସି ନାଗର ନାଗରୀ
ମଥୁରାବଜୟଗୀତ ଗାଆନ୍ତି କୌତୁକେ
ଭୂଚର ଦର୍ପଣମାଳେ ପୂର୍ଣ୍ଣ ସେ ନଗର
ବୃନ୍ଦଗଲେ ଶତମୂର୍ତ୍ତି ଦିଶଇ ତାହାର ।

୫

ନାନା କାରୁକାର୍ଯ୍ୟମୟ ବିଚିତ୍ର କୁଟିରେ
ଗଗନସରଣି ଦିଶେ ଏ କାହା ମନ୍ଦିର ?
ଭୂକମ୍ପନେ ଖଣ୍ଡେ ଭାଙ୍ଗି ପଡ଼ିଅଛି କିରେ
ହିମାଳୟ ତଳେ ଖସି ଧବଳଗିରିର
ଚନ୍ଦ୍ରାତପେ ସୁଶୋଭିତ ସେପୁର ପୁରତେ
ନେହାନନ୍ଦକର କେଡ଼େ ସୁଦୀର୍ଘ ପ୍ରାଙ୍ଗଣ
ଜରିର ଗାଲିଚ୍ଚ କିବା ପଡ଼ିଅଛି ସତେ ?
ତହିଁପରେ ଧାଡି ଧାଡି ରଜେ ସ୍ୱର୍ଣ୍ଣାସନ
ମହକି ଉଠଇ ଧୂପ ଆମୋଦେ ସେ ସ୍ଥଳ
ରତ୍ନକରପଣ୍ଡ ଦିଶେ ଅଧିକ ଉଜ୍ଜ୍ୱଳ ।

୬

ସଜ୍ଜିତ ହୋଇଛି ଗୃହ ପତ୍ର-ପୁଷ୍ପ-ଫଳ
ସ୍ତରେ ସ୍ତରେ କମନୀୟ କାଚଭାଜନରେ (୧)
ଜୀବନ୍ତ ପ୍ରତିମା ପରି ମୂରତି ବିମଳ
ଶୋଭାପାଏ ଗୃହଦ୍ୱାର ସ୍ତମ୍ଭାବଳୀ ଶିରେ
ମହୋତ୍ସବମୟ ଏହି କୁଟିର ପ୍ରାଙ୍ଗଣେ
ସମବେତ ଆଜି କିପାଁ ଏତେ ନରନାରୀ
କି ବିଷାଦ ଘନଚ୍ଛାୟା ସଭିଙ୍କର ମନେ
ଲଭେତ ହରଷ ନାହିଁ ବଦନେ କାହାର
ସଦା ଯହିଁ ଲାଗିଥାଏ ହର୍ଷ କୋଳାହଳ
ନୀରବ ନିଶ୍ଚଳ ଆଜି କାହିଁକି ସେ ସ୍ଥଳ ?

୭

ସମୁନ୍ନତ ଶିର ଆହା ଲଗାଇ ଛାଦରେ
ସୁସୁନ୍ଦର ପୀଠପରେ ଦୃଢ଼େ ଅବସ୍ଥିତ
ବେଳନଦଣ୍ଡେ ବେଳନବାହୁ ଲମ୍ବାଇ ଆଦରେ
ମଧ୍ୟେମାପ ନିରୂପକ କଣ୍ଟକସହିତ

(୧) ଥାକ ।

ରଜତନିର୍ମିତ ରମ୍ୟ ଝୁଲାଦଣ୍ଡଏକ
ଝାରୁବଳା ସୁଖଚିତ ସୁବର୍ଣ୍ଣଦଣ୍ଡିରେ
ରହିଅଛି ସଭିଙ୍କର ମଧ୍ୟସ୍ଥଳେ ଦେଖ
ତସ୍ତୁ ତାହାର ପୁଣି ଝୁଲେ ଶିକୁଳୀରେ
ଦିଶୁଛି ତାହାର ଶିର କଣ୍ଢାହୋଇ ବଙ୍କା
ସମବେତ ମଣ୍ଡଳକୁ କରଇ ତାଠଭା

୮

ଝୁଲାଦାନଢଧି ଅଛି ଦୁଏ ଅନୁସ୍ଥାନ
ଦାନବର୍ତ୍ତୀ ସତ୍ୟଭାମା କୃଷ୍ଣସୋହାଗିନୀ
ଅଭିମାନେ ପୂର୍ଣ୍ଣ ସଦା ଯାହାଙ୍କ ଅରଣ
ଦେବର୍ଷି ନାରଦ ତହିଁ ସ୍ଥାପିତାଛି ପୁଣି
ବଡ଼ଧ ରତନମଣି ଏକପାଖେ ଥୋଇ
ଆନପାଶେ ପ୍ରାଣେଶଙ୍କୁ ବସାଇଣ ଝୁଲେ
ଝଷମଙ୍କଳେ ମାତ୍ର ବୃନ୍ଦଚନ୍ଦ୍ରମୁଖୀ
ପ୍ରଦାନବେ ନାରଦଙ୍କ ଶୀକର କମଳେ
ଯାଦବପୁର ସମ୍ପତ୍ତି ହୋଇଅଛି ଠୁଲ
ହେବା ପାଇଁ ଶ୍ରୀପତିଙ୍କ ଓଜନର ତୁଲ

୯

ପ୍ରିୟତମା ସତ୍ୟଭାମା ମନଃ ତୁଷ୍ଟି ପାଇଁ
ନବଜଳଧର ଶ୍ୟାମ ତମାଳବରଣ
ଶଙ୍ଖଚକ୍ର ଗଦାପଦ୍ମଧାରୀ ସ୍ୱବଶାସ୍ଥି
ସ୍ୱସେବିଲି ଦନୋଦଅ ପ୍ରଭୁ ଜନାର୍ଦ୍ଦନ
ନାନା ଅଳଂକାର ମାଳେ ମୋହନ ମୂରତି
ବିଦ୍ୟୁତପାତ୍ର କମମାସ୍ତୁ ମେଘଖଣ୍ଡ ସମ
ବିଜେକରିଛନ୍ତି ତହିଁ ଦ୍ୱାରକାଧିପତି
ତସ୍କର ପାଖେ ସ୍ୱର ନିବେଶି ବିଷମ
ବସିଛନ୍ତି ନକ୍ଷତ୍ର ଯେପାଖେ ସୁସ୍ୱର
ରହିଛି ଭୂତଳେ ତୁଇଁ ସେପାଖ ତାହାର

୧୦

ଅନ୍ୟପାଖେ ସ୍ୱର୍ଣ୍ଣଲା ବଦ୍ଧରତନ
ଝଣିଝଣି ସ୍ୱର୍ଣ୍ଣସହ ହୋଇଅଛିଠୁଳ
ତଥାପି ସେ ଲୁଳାଦଣ୍ଡ ନହୁଏ ସମାନ
ଦେଖନ୍ତି ବଡାବେ ଯଦୁ-ସୀମନ୍ତିନୀକୁଳ
ଗନ୍ଧାଗର ଆବରଣ ଯେତେକ ତାଙ୍କର
ସକଳ ସମ୍ପଦ ଜମା କରିଲେଣି ବାମା
ତଥାପି ତରାଜୁଦଣ୍ଡ ଅଛି ପୂର୍ବପର
ସ୍ତବ୍ଧହୋଇ ରହିଛନ୍ତି ଦୁଃଖେ ସତ୍ୟଭାମା
ଉନ୍ନତ ସୁନ୍ଦରତନୁ କେତକୀବରଣା
ଘନନୀଳକେଶୀ ଫୁଲ୍ଲ ପଙ୍କଜବଦନା

୧୧

ନୟନ ସମ୍ମୁଖେ ଆହା ଏରୂପ ବଳେକ
ଶୁଖିଯାଉଅଛି ତାଙ୍କ ବଦନ ଅଧୀରେ
ନିଜଅଙ୍ଗୁ ଅଳଂକାର କାଢିଣ ଶଶିମୁଖୀ
ପକାନ୍ତି ତରାଜୁଦଣ୍ଡେ ତହୁଁ ଧୀରେଧୀରେ
ମସ୍ତକୁ ଅଳକାପାଡି ଖୋପାରୁ ଚନ୍ଦ୍ରିକା
କରରୁ କଙ୍କଣ କଣ୍ଠୁ ମୁକୁତାର ହାର
ସୁନ୍ଦର ଅଙ୍ଗୁଳୀ ଚମ୍ପାକଳିରୁ ମୁଦ୍ରିକା
ଚରଣୁ ନୂପୁର କରୁଅଛନ୍ତି ବାହାର
ଭୂଷାଶୂନ୍ୟ ହୋଇ ରହିଲେଣି କୃଶୋଦରୀ
ତଥାପି ତରାଜୁଦଣ୍ଡ ଅଛି ପୂର୍ବପରି ।

୧୨

ମଣିହରା ଫଣୀସମ ଶ୍ୱାସ ଘନଘନ
ବାହାରୁଛି ଯୋରେ ଦୁଃଖେ ନାରୀରତନଙ୍କ
ରହିରହି ନାସାପୁଟ କମ୍ପୁଛି ବହନ
ଅଲକ୍ଷିତେ ହେଉଅଛି ହୃଦୟ ସଶଙ୍କ

ସ୍ୱଗସାଗରରଚଳ ତରଙ୍ଗକୁ ଜିଣି
ଥରୁଅଛି ଛକ୍ତାଧର ବେଗେ ବାରମ୍ବାର
ନିଜସିନ୍ଧୁରମା ବୋଲି ହୋଇବିଷାଦିନୀ
ଦିଶୁଛନ୍ତି ପୁଷ୍ପବତୀ ଅଶୋକପ୍ରକାର
ଅବିଶେ କପୋଳଯୁଗ୍ମରେ ବିନ୍ଦୁ ବିନ୍ଦୁ ଝାଳ
ବୈନ୍ଦୁପଲ୍ଲବରେ ଯଥା ହିମବିନ୍ଦୁମାଳ ।

୧୩

ପ୍ରବାଳ ଶିଳାରେ ଗିରି ନିର୍ଝରଣୀବତ
ନଳିନ ନୟନୁ ଅଶ୍ରୁ ବିନ୍ଦୁ ବିନ୍ଦୁ ବହି
ନିଜ ଅଙ୍ଗମାନେ ପ୍ଲାବି ଗଣ୍ଡକୁ ସନ୍ତତ
ବିନା ସ୍ନେହେ ହାରଶୋଭା ହୃଦେ ଅଛି ବହି
ବିଷାଦ ମଳିନ ମୁଖ ନୂଆଇଁ କାତରେ
କରିଛନ୍ତି ଦୃଷ୍ଟି ଧନୀ ଧରିରେ ନିହିତ
ହିମଶିକ୍ତ ସରୋଜିନୀ ଯେସନ୍ତେ ସନ୍ଧ୍ୟାକାଳେ
ଲୋଟଇ ଭୂତଳେ କରି ବଦନ ନମିତ
ଥରୁଥାଇ ଥରେ ଥରେ ବେଗେ ଅପଘନ
କରନ୍ତି ଅରୁଣାଧରୀ ଅଧରଦଂଶନ ।

୧୪

ସ୍ୱର୍ଣ୍ଣଲତାପାଶେ ସ୍ଥିର ସୌଦାମିନୀ ସରି
ତାଙ୍କ ସନ୍ନିକଟେ ଉଷ୍ଣ ବିମର୍ଷ ବଦନେ
କନକ ପ୍ରତିମା ଦେବୀ ରୁକ୍ମିଣୀସୁନ୍ଦରୀ
ବସିଙ୍ଗ୍ ରତନଭୂଷା କାଢ଼ି କ୍ଷିପ୍ରମନେ ।
ସତ୍ୟଭାମା କରେ ଦେଇ ଗୋଟି ଗୋଟି ଧୀରେ
ନିଜଦେହ ଖାଲି କରୁଛନ୍ତି ଚନ୍ଦ୍ରାନନୀ
ତଥାପି ସୁଷମା ବଢ଼େ ଶୋଭିଙ୍ଗି ଶରୀରେ
ଲୋଡ଼େକି ତାରକାମାଳା ପୂର୍ଣ୍ଣିମାରଜନୀ
ହଟ୍ଟେ ରତ୍ନଭୂଷା ସଜେ ବେନି ଯୋଷିତର
ଶତଦଳେ ପଡ଼ିଛ କି ସାନ୍ଧ୍ୟ ରବିକର ।

୧୫

ଆସ୍ୟ ବିଶ୍ୱେ ଚୁକିଥାଇ ଅପାଙ୍ଗର ଲାସ୍ୟ
ବ୍ୟାହାନ୍ତି ପ୍ରାଣେଶ ଦେବୀ ଆଡ଼ନେତ୍ରଡାଳ
ସ୍ଫୁରଇ ଅଧରପ୍ରାନ୍ତେ ମନ୍ଦମନ୍ଦ ହାସ୍ୟ
ସତ୍ୟଭାମା କହୁକହୁ ଅବଲୋକି ବାଳୀ
କୁନ୍ଦେହାସ ଲୁଚି ଲୁଚି ବାଧି ବଦନାର
ବାହ୍ୟେ ନବନନ୍ଦଚନ୍ଦ୍ର କରଇ ପ୍ରକାଶ
ଲମ୍ବଫଳ ସ୍ୱାଦୁ ପର ପ୍ରେମସପତ୍ନୀର
ଉତ୍କଣ୍ଠାରସ ତହିଁ ସଦା କରେ ବାସ
ବଦନେ ବିଷାଦଭାବ ରାଜଇ ରୁଚିରେ
ମାନ ହରଷର ରେଖା ସ୍ଫୁରଇ ଆଖିରେ ।

୧୬

ନିଜ ନୟନକୁ କୃଷ୍ଣ ବିନୟ କରି
ଥରେ ଅରେ ରୁକ୍ମିଣୀଙ୍କ କମଳନୟନେ
ଶ୍ରୀହସ୍ତ ଯୁଗଳେ ସ୍ୱର୍ଣ୍ଣ ଶିକୁଳିକୁ ଧରି
ଚୂଳ.ଦଣ୍ଡ ତଳକୁରେ ଅତୀବ ମଣ୍ଡନେ
କିଛି ନଜାଣିଲାପରି ନିଶ୍ଚଳ ମାନସେ
ଗମ୍ଭୀର ସ୍ଥିର ବଦନେ ବସି ବେନ୍ତୁପାଣି
ପ୍ରିୟତମା ବିରାଜନ୍ତି ଇଙ୍ଗିତ ଉଲ୍ଲାସେ
ବିମଳ ପୁଲକରାଶି ପାରୁଛନ୍ତି ଜାଣି ।
ଅପାଙ୍ଗେ ପ୍ରନେତ୍ରା ପ୍ରତି ଚୁମ୍ବୁଛନ୍ତି ହରି
ସେ କଥାସେ ହାସ୍ୟରେଖା ରଙ୍ଗେ ଲୁଚାକରି

୧୭

ଷିଣ୍ଣଗଜଦନ୍ତ ବାତ ଉଜ୍ଜ୍ୱଳ ମୂରତି
ମୃଣାଳ ଦୁକୂଳବନ୍ତ ଦେବ ହଳଧାରୀ
କାଦମ୍ବରୀ ରସପାନେ ମତ୍ତୋଲ୍ଲାସମତି
ଜାହ୍ନବୀ ଯମୁନାସଙ୍ଗ ପୃଷମାକୁ ସାରି

ଅଦୂରେ ରେବତୀସହ ବସି ସୁଖାସନେ
ଦେଖନ୍ତି ହରଷେ ଏହି ରହସ୍ୟସକଳ
କେତେ ଅଭିନବଭାବ ଉଠୁଅଛି ମନେ
ମଦସ୍ର ମାର୍ଜିତନେତ୍ରେ ଦିଶୁଛି କେବଳ
ତଳରେ ରହନ୍ତି କେବେ କୃଷ୍ଣହୋଇ ସ୍ଥିର
କେବେ ସ୍ୱରେ ପୃଷ୍ଠେ ତାଙ୍କୁ ନେଉଛି ଓଟାର ।

୧୮

ଅବିରତ ଦ୍ୱନ୍ଦ୍ୱପ୍ରିୟ ଆନନ୍ଦ ହୃଦୟ
ହରିଭକ୍ତି ରସାମୃତପାନେ ସଦା ବାଇ
ଗୋଲକ ନିବାସୀ ପ୍ରଭୁ ବ୍ରହ୍ମାଙ୍କ ତନୟ
ଯାଚକ ବ୍ରାହ୍ମଣରୂପେ ମଧ୍ୟେ ସ୍ଥାନ ପାଇ
ଅଙ୍ଗେମଣ୍ଡି ଶୁଭ୍ରବାସ ଶୁଭ୍ର କଳେବର
ବାର୍ଦ୍ଧକ୍ୟପାବନ ମୂର୍ତ୍ତି ଦେବର୍ଷି ନାରଦ
କୃଷ୍ଣଙ୍କ ମୋହନଛନ୍ଦ ଏ ତୁଳାଦାନର
ଦେଖୁଛନ୍ତି ଆନନ୍ଦରେ ହୋଇ ଗଦଗଦ ।
ଉଡୁଅଛି ଉତ୍ତରୀୟ ପବନ ହିଲ୍ଲୋଳେ
ମୁଖେ ଶୁକ୍ଳ ଲମ୍ବଶ୍ମଶ୍ରୁ ତରଙ୍ଗେ ଦୋହଲେ ।

୧୯

ବିଚିତ୍ର ଭୂଷାରେ ମଣ୍ଡି ସ୍ୱରୁ ଅପଘନ
ରୁଚିର ଦ୍ୱାରକାପୁର ଯାଦବନିକର
ସେନା ସେନାପତି ପାତ୍ରମିତ୍ର ଅଗଣନ
ଗୁରୁ ପୁରୋହିତ ଷଃଜ୍ୟୋତିଷକଙ୍କର
ସୁକୁମାରୀ ବାମାବୃନ୍ଦ ବିଷାଦିତ ସର୍ବେ
ହୋଇଛନ୍ତି ଉଭା ସର୍ବେ ଶ୍ରୀହରିଙ୍କି ଘେର
ତୁଳାଦାନ ପୁଣ୍ୟଦିନେ ଦକ୍ଷିଣାର ଲୋଭେ
ଅସଂଖ୍ୟ ଭିକ୍ଷୁକ ବିପ୍ର ବୁଲୁଛନ୍ତି ଫେର
କଳନା ଦେଉଛି ସଦା ତାହାଙ୍କୁ ସାନ୍ତ୍ୱନା
ପାଇବେବୋଲି ସେ ଦିବ୍ୟଭୋଜନ ଦକ୍ଷିଣା

୨୦

ଯେତେ ଯାର ରହି ଥିଲା ଯତନେ ସଞ୍ଚିତ
ଢାଳିଲେ ସକଳ ଆଣି ଯାଦବ ନିକଟରେ
ତଥାପି ସେ ଦଣ୍ଡଳେ ନ ହୋଇଲା ନତ
ଉତ୍ତମ ଭାବନା ଏବେ ଘାରିଲା ଅନ୍ତରେ
ଗରବିଣୀ ସତ୍ୟଭାମା ନିଗ୍ରହ ବିସ୍ମୟେ
ସ୍ୱାମୀଙ୍କ ଅଶୁଭ ଚିନ୍ତି ଶଙ୍କା କରି ମନେ
ଉତ୍ତେଜିଲେ ନିଜ ଦୁଃଖ ଅଭିମାନ ଭୟେ
ରୁମାନଗରିମା ସବୁ ଚୂନା ହେଲା କ୍ଷଣେ
ଦେବତା ସହିତେ କେବେ ସ୍ପର୍ଦ୍ଧା କରେ ଭୁଲ
ସୁନାରୂପା ଆଭରଣ ରତନର ମୂଲ ।



# ସ୍ନେହାଞ୍ଜଳି

ବୀର ଶ୍ରୀମାନ୍ ଖଡ଼ିଆଳସ୍ଥ ଅଧୀଶ୍ୱର ବୀରବିକ୍ରମ ସିଂହଦେବ

ମାନ୍ୟବରେଷୁ

ବନ୍ଧୁବର !

ବହୁଦିନ ପୂର୍ବେ ମୁହିଁ କୁତୂହଳବଶେ
ଯାଇଥିଲି ପ୍ରାକୃତିକ ଦୃଶ୍ୟେ ମନୋହର—
କଦମ୍ବବଂଶୀୟଙ୍କର ରାଜନଗରକୁ
ଚୈତ୍ରମାସେ, ଦେଖି ତହିଁ ବାସେଲୀଦେବୀଙ୍କ
ମହାମହୋତ୍ସବମୟ ଅପରୂପ ଶୋଭା
ସଞ୍ଚି ରଖିଥିଲି ମୋର ସ୍ମୃତି ସମ୍ପୁଟରେ,
ଉଦ୍‌ବୋଧି ସେ ସ୍ମୃତି ଏବେ ଢାଳିଲି ଗୀତେ,
ନାହିଁ ସ୍ୱଚ୍ଛଜଳ ଏଥି ସାରସ୍ୱତସରେ,
ଯାଲାଗି ସୁରୁଚିଜନେ ମଜ୍ଜିବେ ଉଲ୍ଲାସେ ।
ଖଣିଗର୍ଭେ ଶିଳାକାର ମଳିନ ଯେ ମଣି
ଲଭିବାକୁ ତାକୁ କିଏ ହୁଏ କି ଉତ୍ସୁକ ।
ମାତ୍ର ମୋର ତୁଚ୍ଛ ହୃଦ୍ୟ ସ୍ନେହ ସୁଜନତା
ଦୁର୍ଲ୍ଲଭ ସ୍ୱର୍ଗୀୟ ସୁଧା ଦିଏ ଯେ ସର୍ବଦା
ତାର ଅନୁରୋଧେ ତବ ମନମଧୁକର
ରମିବ ନିଶ୍ଚୟ ଏଥି ଗନ୍ଧହୀନ ଫୁଲ
ସୁପରାଗ, ମଣି ମନେ ବନ୍ଧୁବର, ତବ
ଦିବ୍ୟକରେ ଅର୍ପିଲି ଏ ପୂତ ପୁଷ୍ପାଞ୍ଜଳି ।

ଆପଣଙ୍କର ସ୍ନେହର
ଶ୍ରୀ ବଳଭଦ୍ର ଦେବ

# ବାସେଲୀ ଲୀଳା

ଏତ ପ୍ରତ୍ୟୁଷରୁ ଶୁଭକ୍ଷଣେ ଦେଖ
ସୁଖ ସମ୍ଭୃତ
ମହୋତ୍ସବେ ମାତି ପ୍ରମୋଦେ ହସୁଛି
ବଣାଇ ଗଡ ।
ଚଉଦିଗେ ଶୁଭ୍ର ଅଟ୍ଟାଳିକା ଶ୍ରେଣୀ
କି ମନୋରମ
ଦର୍ଶକ ହୃଦୟେ ଉପୁଜାଏ ସିନ୍ଧ-
ସିକତା ଭ୍ରମ ।
ଉତ୍ସବ ଲୋଚନ—ଲାଲସୀ ଲଳିତ
ଲଳନା ଜାଲ
ଗବାକ୍ଷରେ ମଣ୍ଡି ଦେଇଛନ୍ତି ନବ
କମଳ ମାଳ ।
ସଦ୍ୟସ୍ନାନଶୀଳା ହେମଲତାନିଭ
ବାଳାଏ ସଜି
ମେରୁଜଘଣା ବେନି କନକ କଳସ
ବକ୍ଷରେ ବହି ।
ଦୋଳାଇତେ ଲଳି ଚମ୍ପକ ମୃଣାଳ-
ଭୁଜ ଅଦୋଳ
ଝାଡ଼ିବା ଛଳରେ ପଦଚୁମ୍ବି ସିକ୍ତ
କୁନ୍ତଳାବଳୀ ।
ସୌନ୍ଦର୍ଯ୍ୟ ସମ୍ପାରେ ଝିକି ଝିକି କରି
କାଟନ୍ତି ଜାଳ
ଷଟ୍‌ପଦ ଝିଙ୍କିଳା ସରସ କୁସୁମ
ଧନ୍ୟ ଛଅକ ?

(୧) ବାସେଲୀ ଦେବୀ—ଚୈତ୍ନ୍ୟପୁରର ଅଧିଷ୍ଠାତ୍ରୀ ଦେବୀ ।

କୁମୁଦ କହ୍ଲାର, ପଦ୍ମେ ଅଳଂକୃତ
ଝଙ୍କାରକଣ୍ଠା
ମୁକୁଳ ପତ୍ରସ୍ତ୍ରେ ବହୁଅଛ ଯେଣୁ
ସଉଧ ଛଟା ।

ସଙ୍ଗେ ଅବିରତ ଯମ ସହଚର
ଜଡ ବହୁଳ
ଅବଗାହକଙ୍କୁ ଜଳଗର୍ଭେ ଟାଣି
ନଅଇ ଧରି ।

ରଣିଛନ୍ତି ଯାକୁ କୂଳର ପତ୍ରସ୍ତ୍ରେ
ଗ୍ରାମ ଚଣ୍ଡିକା
ଯା କୂଳେ ଶୋଭଇ ବାଳଅନ୍ତ୍ର ପ୍ରାୟେ
ସିନ୍ଦୂର ଟିକା ।

ଡଲଭୁସ୍ୱଚଳ ମସ୍ତପରେ ଧାଇଁ
ଯେଉଁ ମଡର
ଜଳ ଦେବୁଅଛି କ୍ଷମାଏ ସନାଳ
ପଦକେଶର ।

ତହିଁ ଉଡ଼ଯିବା ଭ୍ରମରଙ୍କୁ କାମ
ବାହୁଳ ମଣି
ହାସନ୍ତ ବଦେଶୀ-ସ୍ୱାମୀ ସୋହାଗିନୀ
କୁଳରମଣୀ ।

ସୁଦୂର ପୂରୁବେ ଛେଳଆ ସହିତ
ଠୋପା ଫେଟ
ବହୁଳ ଗଗନେ ଠୋପାନଭ ଠେକି
ଶିର କୁହୁତ ।

ସେମାନଙ୍କୁ ଛେଳି ନକଟେ ପାଳର
ଶେଳ ଫିଡାର
ବନ ଫୁଲଫଳେ ତୁଟଇ ଯାର
ସଦା ସଂହାର ।

ଝିହ୍ୱାରେଶ୍ୱରଙ୍କ ଅଧିଷ୍ଠାନେ ଯାର
ପବନ୍ଧ ଘାନ୍ତୁ
ଦେବୀଙ୍କ କୃପାରେ ନ ସଙ୍କଟରେ ପଢ଼ି
କେବେ କୃଷାନ୍ତୁ ।
ହାଟଲ୍ଲବ୍ଧ ଶିର ଉତ୍ତରେ ପ୍ରକାଶି
ଗଡ଼େ କାନ୍ତକୁ
ଊରତ ଜାତକ ନକ୍ଷତ୍ରେ ଲଗ୍ନର
ଲକ୍ଷ ହାସକୁ ।
ମଣ୍ଡାପର ମୁଣ୍ଡ ଠେକ ଚଣ୍ଡଚୂଡ଼ା-
ପାହାଡ଼ ତଳେ
ଖଣ୍ଡପାଠ ସିନା ପଶ୍ଚିମରେ ନଭ
ଉଜଡା ଭଳେ ।
ପଢ଼ି ନତ ବସି ପ୍ରଦୋଷ ସମୟେ
ଦେବ ତପନ
ସ୍ୱକାର୍ଯ୍ୟ ସମାପି କରନ୍ତି ପ୍ରବେଶ
ପରବର୍ତ୍ତିନ ।
ସଦା ଲଗିଥାଏ ଶିରେ ଯା ମୟୂର
ନର୍ତ୍ତନ ଚର୍ଚ୍ଚା
କେଙ୍କା କେଙ୍କାରବେ ମୁଖର ଯେ ଗିର
ମୟୂରନସ୍ତ ।
ସିନ୍ଦୂର ବରଣ ସିନ୍ଧର ଶଇଲ
ସତ୍ୱ ଦଂଶିଣେ
ଅପରୂପ ସ୍ୱୀୟ କାନ୍ତିଙ୍କ ପ୍ରକାଶି
ମାନସ ଝଣେ ।
ଦୁର୍ଗଶିର ଦେଶେ ବାଣାସୁର ଗଡ
ସୁପ୍ରତିଷ୍ଠିତ
ବାଣେଶ୍ୱରଙ୍କର ଅଭୟ ବରେ ଯା
ସଦା ରକ୍ଷିତ
କୃଷ୍ଣୀର ଉଜ୍ୱଳ ଜଳରାଶି ଧାଇଁ
ପାଦୁଟେ ପଢ଼ି

ପଞ୍ଚକୋଶି ଯୋଗେ ବାଧା ପାଇଯାଏ
ଉତ୍ତରେ ବହି (୧)
ଉତ୍ତର ବାହିନୀ ନଦୀରେ ପବିତ୍ର
ପୟ ଅମୃତ
ଏବେ ଯୁବା ଲଭ ନରେ ହେଉଛନ୍ତି
କଳୁଷମୁକ୍ତ ।
ପ୍ରତ୍ୟୁଷେ ପ୍ରଦୋଷେ ପ୍ରମଦାପଙ୍କ୍ତିର
ଅବଗାହନେ
କଳବେଣୀ ଦଶେ ସତେକି ଗ୍ରଥିତ
ହେମ ସୂତ୍ରରେ ।
ବାଣକନ୍ୟା ଉଷା ପ୍ରଣୟରେ ପଡ଼ି
(୨) କୃଷ୍ଣ ନନ୍ଦନ
ଲଭିଥିଲେ ଅଗ୍ନି ପ୍ରାଚୀରେ ବେଷ୍ଟିତ
କାରା ବନ୍ଧନ ।
ଦୁର୍ନିବାର ଯଦୁ ବାହିନୀଙ୍କ ସହ
ଘୋର ସମରେ
ଏଥିପରି ପ୍ରଭୁ ବାଣେଶ୍ୱର ଜଗି—
ଥିଲେ ଦ୍ୱାପରେ ।
ଏଠୁ ଜନ୍ମିଥିଲା ସିନା ଶିବଜ୍ୱର
ଦୁର୍ଜ୍ଜୟ ତେବେ
ଏ ଯାଏ ଯା ଜ୍ୱରେ କମ୍ପୁଛନ୍ତି ନର—
କୁଳ ଆତଙ୍କେ ।
ସେ ମଣ୍ଡପ ଧୋଇ ରହୁଛନ୍ତି ସମ
ବ୍ରାହ୍ମୀ ତଟିନୀ
ଦୁର୍ଗର ନିତମ୍ବ ଅବଲମ୍ବି ଧୀରେ
ମୃଦୁନାଦିନୀ ।

---

(୧) ପଞ୍ଚକୋଶି ବାହାର ହଇଥିବି ହେତୁ ଏଠାରେ ବ୍ରାହ୍ମୀ ଉତ୍ତର ବାହିନୀ ଯୋଗେ "ଅର୍ଦ୍ଧପାଠ" ନାମରେ ସୁପରିଚିତ ।

(୨) ପ୍ରଦ୍ୟୁମ୍ନ ତନୟ ।

ଯାଉଛ ସ୍ୱପନ୍ତ ପାଶେ ବାଡମାନେ
ପ୍ରେମେ ବହଳ।
ବନ୍ଧୁରତା ଲଙ୍ଘି ଗ୍ଭଲିବାରୁ କଷେ
ମୁକ୍ତ କୁନ୍ତଳା।
ସେ କୁନ୍ତଳଚ୍ୟୁତ ଗୋଟି ଗୋଟି ପକ୍ଷ୍ମୀ
ପ୍ରସୂନ ପର
ଖେଳ କୁଲୁଛନ୍ତି ବ୍ରଜହଂସେ ତହିଁ
ଧୀରେ ପହଁର।
ଅବା ସ୍ୱିନ୍ନପନ୍ଥ ମନ ମୋହିବାକୁ
ଇନ୍ଦ୍ରିସ୍ତ୍ରବନ୍ତ (୧)
ନେଉଛ କ ବାଟ ସୂତେ ଗୁନ୍ଥି ଦିବ୍ୟ
ମୁକ୍ତାପନ୍ତ।
ପରିଖା ପର୍ଏ ନଗରକୁ ବେଢ଼
ବହିଇ ପସ୍ତୃ
ନାଗରୀଙ୍କ ସ୍ନାନେ ଜଳବେଣୀ ଦଶେ
ହରିଦ୍ରାମୟ।
ଶୁକ୍ଳ ଦାଲ୍ଭ୍ୟସ୍ତୂପ ଠାବେ ଠାବେ ସଜେ
ଚେତସମାଳେ
ଅନୁକୂଳ ଯାତ୍ରା ଅଭିସାରିକାଙ୍କୁ
ଦିଶୀଥକାଳେ।
ଭିଣ୍ଡକେ ଦୁର୍ଭେଦ୍ୟ କଣ୍ଟକ ବନରେ
ଆଚ୍ଛନ୍ନ ହୋଇ
ସୁପାର୍ଶ୍ୱ ପରିଖା ବେନ (୨) ବଇରୀଙ୍କ
ଗର୍ବ ଗଞ୍ଜଇ।
ସୁରକ୍ଷିତ ସଦା ଦୃଢ଼ତର ଗ୍ଭରି—
ଦ୍ୱାରେ ନଗର

(୧) ନଦୀ।
(୨) ବାସିବଃ।୦ ପଦ୍ମା।୮୫।

ସ୍କନ୍ଦ, କ୍ଷେତ୍ରପାଳ, ବଜ୍ରଦ୍ୱାର, ପାଣି—
ଶାଳ ଆବର ।
ଅମ୍ବାସ୍ତି; ଚଣ୍ଡିକା, ଦ୍ୱାରଶୁଣି, ମହା—
ବୀର, ଦେବତା
ଜଣେ ଜଣେ ଦ୍ୱାର ଜଗିଛନ୍ତି ହୋଇ
ରକ୍ଷାକରତା ।
ଖୁଣ୍ଟୁଆଁର ଶ୍ରେଷ୍ଠ ପାଇକ ସେନାନୀ
ଯେନ ଗହଣେ
ମହାପାତ୍ର ଶୂର ମହାରମ୍ଭେ ଦେହ
ଭୂଷି ଭୂଷଣେ ।
ସ୍କନ୍ଦଦ୍ୱାରେ ଠଣା ଦଅନ୍ତି ଅମର୍ଷି
ଖଡ୍ଗ କରାଳ
ବହୁଛି ଅମ୍ବାସ୍ତି ପ୍ରଚଣ୍ଡମୂର୍ତ୍ତି ତାଙ୍କ
ଅଭେଦ୍ୟ ଢାଲ ।
ଶତ୍ରୁନାଶେ ଯାଙ୍କ ରକ୍ତଚକ୍ଷୁ ରୋଷେ
ବୁଲଇ ଘୂର
ପାରଧ୍ୱସ୍ତା ଭ୍ରୂଯୁଁା ଗଣ୍ଡଥଆ ଛଡ଼ି
ସ୍ୱଳ୍ପତୃଙ୍ଗୁସ୍ତ
ପାଣିଶାଳ ଦ୍ୱାର ଜଗନ୍ତି ଅମିତ୍ର—
କୁଳ ଶାର୍ଦ୍ଦୂଳ
ଉନ୍ନତ ଲଲାଟେ ରାଜେ "ଦ୍ୱାରଶୁଣି"
ଦୀପ୍ତ ତ୍ରିଶୂଳ ।
ଯାହାଙ୍କ ପ୍ରତାପ ବୈରୀ ବଦନରେ
ବୋଲଇ ମଷୀ
ସେହି ଦଣ୍ଡପାଠ ସଭକ୍ତିରେ ମହା—
ବୀରଙ୍କୁ ତୋଷି ।
ପାରିଷଦସହ ରହିଛନ୍ତି କ୍ଷେତ୍ର—
ପାଳଙ୍କୁ ଜଗି
ତାଙ୍କ ଅଗୋଚରେ ସେ ସରଣି କେହି
ନପାରେ ଲଙ୍ଘି ।

ବଣାଇଁର ଆଦ୍ୟଭୂମି ସ୍ୱାମୀଶ୍ରେଷ୍ଠ
ଭୂୟାଁ ସାମନ୍ତ
ନବ ନୃପତିଙ୍କୁ ଅଭିଷେକ ସେହି
ପୂରୁବ ବତ ।
ଅଭିଷେକେ ପୃତ କରନ୍ତି ନବେଣି
ସିନ୍ଦୂର ଟୀକା ।
ବଡ଼ଦ୍ୱାର ଅଗେ ଜଗନ୍ତି ସେ ଧାଙ୍ଗି
ପୁର ଚଣ୍ଡିକା ।
ଚୌକରେ ବାଦ୍ୟ ନୈସର୍ଗିକ ଶୋଭା
ଖେଳଇ ନିତ୍ୟ
କେତେ ଦେବ ଦେବୀ ବିହରନ୍ତି ବହୁ
ନିରତ ପ୍ରୀତ ।
(୧) ଭୂଷା ମେଢ଼ଠାରୁ (୨) ଭୂପୁରଜ୍ଞା ପାଏ
ଆଜି ଏ ସ୍ଥଳେ
ଛଳ ଗୁଞ୍ଜିବାକୁ ସୁଦ୍ଧା ସ୍ଥାନ ନାହିଁ
ଜନ ଗହଳେ ।
ବାସେଲୀ ଦେବୀଙ୍କ ମହୋତ୍ସବେ ରମ୍ୟ
ପୁର ସଜ୍ଜିତ
ବଦନ ବରଣ ଧ୍ୱଜେ ନଭଃସ୍ଥଳ
ସୁଦ୍ଧା ରଞ୍ଜିତ ।
ପରିଷ୍କୃତ ପଥେ ଧୂଳିନାଶ ପାଇଁ
ସେବକଦଳ
ଅନୁକ୍ଷଣ ବହୁ କଳସ କଳସ
ସିଞ୍ଚନ୍ତି ଜଳ ।
କଣ୍ଟକୁ ଗାଧୋଇ ବଦନ ମୁଣ୍ଡରେ
ସିନ୍ଦୂର ରଞ୍ଜି

(୧) ସ୍ଥାନ ବିଶେଷ ।
(୨) ବଣାଇଁ ରଜାସାହେବଙ୍କ ଗମାର ।

ନଷ୍ଟାଗ୍ରଏ ଫୁଲ ଦେଉଛନ୍ତି ତାଙ୍କ
ସର୍ବାଙ୍ଗେ ଖଞ୍ଜି ।
ସବାରଙ୍କୁ ବହୁ ଘୋଟକ ନକର
ନାଚନ୍ତି ଚଳ
ବସନ୍ତେ ନିକୁଞ୍ଜ କାନନେ ଯେସନ
ବିହଙ୍ଗାବଳି ।
ଖୋଲ, ଜଗଝମ୍ପା, ଖଞ୍ଜଣୀ, ନାଗସ୍ୱର,
ବୀଣା ମହୁରୀ
ଶଙ୍ଖ, ରାମଶିଙ୍ଗା ଢୁବୁଢ଼ ସେତାର
ରବାବ ଗୀର ।
ଏ ଆଦ ବାଦ୍ୟରେ ମୁଖରିତ ସେହୁ
ରମ୍ୟ ନଗର
କମ୍ପଇ ପାଦେଚରୀ ପରିଖା କନ୍ଦର
ନଗ ଭୂଧର ।
ଖାଦ୍ୟ ଅନ୍ୱେଷଣେ ନଦେସ୍ଥିତ ଜଳ
ଜୀବ ସକଳ
ସେ ସ୍ଥଳେ ଚମକି ଆଶ୍ରନ୍ତ ଭ୍ରାନ୍ତିର
ଗମ୍ଭୀର ଜଳ ।
ନାନାସ୍ଥାନୁ ଅସି ଦଳେ ଦଳେ ଭୁଣ୍ଡ
ହେଲେ ଦର୍ଶକ
ସିନ୍ଧୁବକ୍ଷେ ଯେସନ୍ତେ ଠୂଳ କଲ୍ଲୋଳମା
ବୃନ୍ଦ ଉଦକ ।
ପାଉନ୍ତି ଆଣନ୍ଦ ସେ ଜଳେ ସୁନୀଳ
ସୁଷମାଧାରୀ
ସମୁଦ୍ର ଯେସନ ସାଦରେ ଲହରୀ
ବାହୁ ପ୍ରସାରି ।
ତେସନ ସଯୋଗ ଅଣିଲ ମଧୁର
ମୃଦୁ ପବନ
ଉତ୍ସବ ଦେଖଣାହାରୀଙ୍କୁ ସନ୍ତୋଷ
କର ବେଡ଼ନ ।

କାଟିଦେଲ ପରେ ଦୂରଗିରି ଠିଆ
ହୋଇଛି ଯହିଁ
ଚମ୍ପାପଗ୍ରଗରେ ପୀତ ଜଳସ୍ରୋତ
ଯହିଁ ଝରଇ ।
ମାର ଭଣାବାଷ୍ପ ଶୀତଳ ସୁରଭି—
ମନ୍ଦମରୁତ
ଗ୍ରୀଷ୍ମକାଳେ ଯହିଁ ଦନ ଦ୍ୱିପ୍ରହରେ
ଜନ୍ମାଏ ଶୀତ ।
ଶାର୍ଦ୍ଦୂଳ ଗର୍ଜ୍ଜନେ ପ୍ରତଧ୍ୱନ ଯହିଁ
ଦ୍ୱିଗୁଣ ନାଦେ
ଭାଟୋଇ ଜନଙ୍କୁ ପକାଇ ନଶୀଥେ
ଘୋର ପ୍ରମାଦେ ।
ସେ ଚମ୍ପାହରଣ ଛାଡ଼ ଶମ୍ପାଗୋଷ୍ଠୀ
ବନ ସୁନ୍ଦରୀ
ପ୍ରବେଶିଲେ ଆସି ଚମ୍ପକ କୁସୁମେ
ଭୂଷିତବକ୍ଷୀ ।
ଜଳଦ ସହିତ ଶିଖଣ୍ଡୀ ସମାଜ
କୀଡ଼ନ୍ତ ଯହିଁ
ଅନ୍ଧାର ସ୍ତବ୍ଧକୁ ଘନବନ ଯାର
କ୍ରୀଡା କଅଲ ।
ଗୋରୁ ମହିଷଙ୍କ ଗଳଘଣ୍ଟନାଦ
ଗମ୍ଭୀରତର
ପ୍ରତ୍ୟେକେ ଯାହାର ଗ୍ରାମ ସୀମାନ୍ତକୁ
କରେ ମୁଖର ।
ଯହେ ପଡ଼ୁଥିବା ଢ଼ଳଢଳ ସ୍ୱଚ୍ଛ
ଶିଶିର ପାଣି
ଶୀତଯହେ ଯହିଁ କରକାକାନ୍ତିକୁ
ଦେଖାଏ ଆଣି ।
ସେ କୋଇଲା କୀଡା ଛାଡ଼ ପୀଡାଦାୟୀ
ସରଣି ଲଭି

ଗୋପାଳ ବାଳାଏ ହୋଇ ସମୁସ୍ତାଙ୍କୁ
ସୁଜନ ସଙ୍ଗି ।
ଦଧି ଦୁଗ୍ଧ ଘୃତ ଲବଣୀ ପସରା
ମସ୍ତକେ ବେଇ
ହଜାରେ ହଜାରେ ଆସନ୍ତି ବଜାରେ
ବିକିବେ ନେଇ ।
ରସାଳ ପଣସ ଅଁଶ ଯାର ବନ୍ୟ—
ଫଳ ସୁଷମା
ଅସଂଖ୍ୟ ପ୍ରାଣୀଙ୍କୁ ଡ଼ାକିଆଣି ପାଶେ
କରଇ ଜମା ।
ଚଉଦିଗେ ଜଳ ପ୍ରପାତ ଉଚ୍ଛ୍ୱାସ
ଘୋର ଗର୍ଜ୍ଜନେ
ସ୍ୱଗନ୍ତି ଗଭୀର ନିସ୍ତବ୍ଧତା ଯାର
ଗହନବନେ ।
ଶିଖୁଁ ଓହ୍ଲାଇବା ବେଳେ ନିମ୍ନମୁଖେ
ଭୂତଳ ଚୁମ୍ବି
ମନେହୁଏ ଯିବ ପାତାଳକୁ ଗଲ୍ଲ
ପଗସ୍ତେ ଧାଇଁ ।
ପଲ୍ଲବେ ଜଘନ ମଣ୍ଡି ନଗ୍ନଦେହା
"ସବରୁଣୀଏ"
ସେ ପାଉଡ଼ି * ବର୍ଷୁଁ ଆସିଲେ ନରନ୍ତୁ
କାହିଁ ଘଡ଼ିଏ ।
ଚନ୍ଦ୍ରର ସବୁଜ ପାଟେ ଢରରତ
ଗବସ୍ତୁ ରାଜ
ମାଟିମାଖି ଦେହେ ବୁଲୁଥାନ୍ତି ଯହିଁ
ଦଗାଣ ମାଢ ।
ଗଜଗର୍ ଡ଼ାକୁଁ ପଲ୍ଲବ ଭକ୍ଷିବା
ପାଇଁ ସମ୍ବରେ

* ବଷ—ପ୍ରଗଣା ।

ଧାଇଁଥାନ୍ତି ଯହିଁ ସାଧ୍ୱସ ଉପେକ୍ଷି
କଣ୍ଟି ପଛରେ ।
ସେ ବାଲ୍‌ଯୋଡାର କୁଡାକୋଞ୍ଚେ ମଞ୍ଚ
ସମାନ ମୋଟ
ଆସିଲେ ଉଲ୍ଲାସେ ମର୍ଦ୍ଦଳର ତାଳେ
ମାରି ଚହଟ ।
ସମ୍ବର ଶୋଣିତେ ପୂରିତ ଉଦର
ସିନ୍ଧୁ ଲହରୀ
ଅରିଏ ବଣେଲ ଲାଲ ଜରଜର
ରସନାଧରି ।
ଝମ୍ପିଲେ ଅବଦ୍ଧ ସାରମେୟ କୁଳ
ଘେନି ସଙ୍ଗରେ
ବୈଶାଖ ମାସର ପ୍ରଚଣ୍ଡ ଉତ୍ତାପେ
ଦୁଇ ପ୍ରହରେ ।
ଯେମାନେ ସହଜେ ମୃଗୟା ରଚନ୍ତି
ନିଃଶଙ୍କ ମନେ
ନବଜ କୀଚକ ସଙ୍କୁଳ ବ୍ରାହ୍ମଣୀ
ତଟ କାନନେ ।
ନୂଆଁ ଗା ଯେଙ୍କେଇକଳା ଇନ୍ଦ୍ରପୁର
ଡୁମ୍ବକଳାରେ
ନବସନ୍ତ ଯେଉଁ କ୍ଷତ୍ରିୟ ମଣ୍ଡଳୀ
ସପରିବାରେ ।
ଘଣ୍ଟେ ଗାଲମୋଚ୍ଛ ଉଲଟାଇ ନିଶ
ବାନ୍ଧି ବଙ୍କାଇ
ଆସିଲେ ସେମାନେ ଉତ୍ସୁକେ ଉତ୍ସବ
ଦେଖିବା ପାଇଁ ।
ଶିବନାରାୟଣ ଇନ୍ଦ୍ରଦେବଙ୍କର
ଯଜ୍ଞ ସମାନ
ବସ୍ତ୍ରକଇ ଯହିଁ ଅଦ୍ୟାପି ଲଲେଇ
ଦପ୍ରଣାସନ ।

ରମ୍ୟାଗ୍ର ପ୍ରାସାଦୋପର ଏବେ ଯହିଁ
ରାଜନ୍ତ ଚଣ୍ଡୀ
ବସ୍ତ୍ରଖଣ୍ଡମାନେ ଲଳେଇ ବାସୀଙ୍କ
ଦୂରନ୍ତ ଖଣ୍ଡି ।
ଅଂଶୁମାଳୀ ଦ୍ୱିଜକୁମାରୀଙ୍କ ସ୍ଥାନେ
ବ୍ରାହ୍ମଣୀ ତନ୍ୟୁ
ହେଉଅଛି ଯହିଁ ଅଙ୍ଗରାଗ ଧୋଇ
ସୌରଭମୟୁ ।
ବହୁ ବରଯୋଷା ସମାଗତହେଲେ
ତହୁଁ ସଧୀରେ
ଫୁଟାଇ ସ୍ୱବମ୍ବେ ଶତପଦ୍ମ ଚନ୍ଦ୍ର—
(୧) ରୁଚରେମାରେ ।
ଝୁରୁଣୋଭନଙ୍କ କଠାକ୍ଷ ବଲ୍ଲେକ୍ତ
ହୁଅଇ ପ୍ରତେ
ଦଗ୍ଧମନ୍ମଥ କ୍ୱ କାହିଁଉଠେ ଆଗେ
ଖ୍ୟାଲଇ ସତେ ।
ଛଡ଼ଆ ଭଣ୍ଡାର ବୃତ୍ତତା, କ୍ଷୁରମୀ,
ତେଲ ତାମ୍ବୁଳ
ଆଦଜନ ବ୍ରଜ ବହୁଦୂରୁ ଆସି
ଏ ସ୍ଥାନେ ମିଳ ।
ନଜ ଅଭିଳୃତମତେ ଯେଝା କାର୍ଯ୍ୟେ
ମାତଲେ ସର୍ବେ
କେ ମୃଣ୍ମୟଅଁ ଖୂଲ୍‌ଲେ କଏବା
ମାତଲେ ଗର୍ବେ ।
ଭ୍ରମିଲେ ଦେଖଣାହାରେ ଏ ଆଲ୍ହାଦେ
ମଣ୍ଡି ସରଣୀ
ପଥ ବେନପାର୍ଶ୍ୱେ ବ ୍ଜଳ୍ପ ଧାଡ଼—
ଧାଡ଼ ବପଣୀ ।

(୧) ରୁଚେ—ଚରଣ ।

ଖାଇବା ପିଇବା ନିମନ୍ତେ ତାହାର
ନୋହୁଲ୍ଲ ଚେତା
ଖେଳାଙ୍କଣା କାମେ ବ୍ୟସ୍ତହେଲେ ଯେତେ
ହେତା ଖଟେତା ।
ତାହାକୁ ତା ସଖୀ କଳାମେଢି ଷାଠ
ଦେଖାଇ ସ୍ନେହେ
କହଇ ସଜନ, ଏ ବସନ ତୋର
ଗଢ଼ର ଦେଇହ ।
ଦଶିବ ସୁନ୍ଦର ଶ୍ୟାମଅଙ୍ଗେ ଯଥା
ଭୁଜଙ୍ଗଶୋଭା
କିଅବା ଜଳଦ କୋଳରେ ଯେମନ୍ତ
ଶମ୍ପା ସୁନ୍ଦରୀ ।
ବଲ୍ଲବ ବଧୂଙ୍କୁ କେ କହେ ତୋହର
ଗୋରସ ଝିଠା
ଭଲ ମନ୍ଦ ସିନା ଦେଖିଲେ ଜାଣିବା
ବୁଝିବା ମିଠା ।
ସେ ଗୁଣେ ପାଣିର ଲେଶନାହିଁ ଦୁଧ
ବିଶୁଦ୍ଧ ମୋର
ଅବିଶ୍ୱାସହେଲେ ଧରକରେ, ଚାଖି
ପରୀକ୍ଷା କର ।
ସୁଗନ୍ଧି ସାବୁନ ଘେନ କେ ଦୋକାନୁ
ବୋଲେରେ ସଖୀ
ମାଖିଲେ ସକଳ ମଳ ଛାଡ଼ ଦେହୁ
ଯାଏ ମହୁଙ୍କି ।
ଶୁଭଆଗମନ ବଦେଶୁଁ ଏହାର
ଅଙ୍ଗସୁଷଣେ
ସଭକ୍ତି ସାଦରେ ତୋଷଇ ସିନା ଏ
ପ୍ରେମାଳିଙ୍ଗନେ ।
କେ ବୋଲଇ ଜବାକୁସୁମ ତଇଲ
ଦେଖରେ ଜନ

ନବଅନୁରାଗେ ଦଶଇ ଏମନ୍ତ
ବାଳା ବଦନ ।
ଏହା ସହଭାବେ ଲଳନା-କୁଳର
କୁନ୍ତଳାବଳ
କଦମ୍ବ ଘୋଡ଼ାଇ ଚରଣ ଚୁମ୍ବଇ
ସିନା ଓହ୍ଳ ।
ଦୁହ୍ନର ସୋହଳାମାଳେ କାହା ମନ
ରହେ ଅଟକ
ଅଣ୍ଟାଡୋରେ କେହୁ କଣ୍ଢଇ କଜର
କୃଶକଟୀକ ।
ଦାଘନଖୀହାର ଉଠାଇ ସନ୍ତାନ
ଲାଳସୀ କେହୁ
ମୁଲ୍ଲିଗଣି କଳ ପଣନ୍ତ କାନରେ
ବାନ୍ଧି ରଖଇ ।
କଏ ନାକଚଣା ଦେଖାଇ ସଖୀକୁ
ବୋଲଇ ଅନା
କଣି କେ ଏହାର ହୃଦୟରେ ତୋ ନାଥ
ହୋଇବେ କଣା
ତାମ୍ବୂଳନା ବ୍ରତେ ସମ୍ମୁଖେ କବେଣି
ପାନପସରା
ପାଟଳ ତାମ୍ବୂଳ ପରେ ତା ଦନ୍ତ
ଦଶଇ ତୋରା ।
ତାମ୍ବୂଳ ବହାରେ ସୁବାସିତ ମୋର
ପାନ ରୁଚର
ପଡ଼ିଛୁ ମସଲା ସହ ଗୁଣ୍ଡିଚୂନ
କାଥ ଖଇର ।
ଏ ପାନେ ଅଧର ରଞ୍ଜାଇଲେ ଥରେ
ମୁରୁଛି ଧନ
କାହା ମନ ଝିକି କୋହବଟି ଦେବା
ପାଇଁ ଚୁମ୍ବନ ।

କୁମ୍ଭକାର ବାଲୀ କୁମ୍ଭ କାଢ଼ି ତାର
କହୁଛ ହସି
କାମପୂର୍ଣ୍ଣ ମୋର କୁମ୍ଭଗଜ ଦେଖ
ଥରେ ସ୍ମରଣି !
ଧବ କାସ୍ଥାନଲେ ଉତ୍ତମ ପାଠଛ
ନର୍ଭୟେ କ୍ଷଣ
ଯେତକ ପାଣିରେ ରଖିବ ଦେହକ
ହେବ କଠିନ ।
ଗୁଡ଼ିଆ ଦୋକାନେ ପଶିଲେ ଯେସନ
ନୂଆ କୁଣିଆ
ସନ୍ଦେଶ ସହିତେ ଖାଉଛନ୍ତି ପୁର
ଉଖୁଡ଼ା ଲିଆ ।
କେବା କୁତୁହଳେ ଶୁଣୁଛନ୍ତି ବସି
ଗୁଡ଼ିଆଣିର
ସନ୍ଦେଶରୁବଳ ସୁମଧୁର ଗୃଠି
ଚଟୁଳ ଗୀର ।
ପନିପରିବା କେ କିଣନ୍ତି କେଅବା
ଅମ୍ବ କମଳା
କେ ମସଲା ଲୁଣ କେହୁ ବୋଝ ବୁଲ୍ଲ
ଠୋକେଇ ଭଲ ।
କେ ସଙ୍ଗୀତଶାଳେ ଗାଆନ୍ତି ବୀଣାର
ମୂର୍ଚ୍ଛନା ଧରି
କାହାର ବଦନୁଁ ଉଠେ ସୁମଧୁର
ଗୀତ ଲହରୀ ।
ଗୋଟିଏ ନାଟୁଆ ଆଗପଛ ଘୁଞ୍ଚି
ସଙ୍ଗୀତ ଗାଇ
ଭର ଅବଲମ୍ବେ ସେ ଗୀତର ଅର୍ଥ
ଦେଖାନ୍ତି କାହିଁ ।
କାହିଁ ଖାଲବାଲ୍ଲ ଘୁରଘୁର ଉଠେ
ଢାଲ ବଜାଇ

ସଙ୍ଗ ଫୁଲରେ ଢାଙ୍କି ଶିରେ ପାଠ—
ପାଗ ଗୁଡ଼ାଇ ।
ଅଶ୍ଳୀଳ କବତା ସ୍ୱରେଦ୍ରଷ୍ଟା କଣ୍ଠେ
ପଢାଇ ତାଳ
ଉଚ୍ଚ ଉଦ୍‌ବ୍ଳବ ସବୁ ସଙ୍ଗେ ସଙ୍ଗେ
ଘଡ଼ ବୋବାଳ ।
ରୌପ୍ୟ ଜରଦାର ଦୋପଠା ଅଦରେ
ମଣ୍ଡି ଗଣ୍ଡିରେ
ପିଲ୍ଲପର ଡ଼େଇଁ ଡ଼େଇଁ ନାଚୁଛନ୍ତ
ବୁଢ଼ା ଅଣ୍ଡିରେ ।
ହେଉଛ କାହିଁକା କୁରୁଚ ପୁରତ
ଘୃଢୁକା ନାଠ
ଘୂଙ୍ଗୁ ଘୁଙ୍ଗୁ ବାଦ୍ୟ ପ୍ରୌଢ଼ା ନାରୁଣୀଙ୍କୁ
ଦଏ ଉଚ୍ଚାଠ ।
ବଦର୍ଫ ଭଙ୍ଗିରେ ପ୍ରକାଶି କୁତ୍ସିତ
ଗୀତ ବଢ଼ମା
କୁଳଲଳନାର ନମ୍ରମୁଖେ ବୋଳ
ବ୍ରୀଡ଼ା ରତ୍ନମା ।
ନଗ୍ନଦେହେ ନାଠ୍ୟ ଦେବତାଙ୍କୁ ଦାଣ୍ଡେ
ଚଳାଇ ବଳେ
ବଠବଠଫୀଙ୍କି ମତ୍ତାନ୍ତ ପିନା ସେ
ପ୍ରମୋଦଜଳେ ।
ଶୂନ୍ୟସ୍ଥାନେ କଉମାଛପର "ଛଉ"
ନାଚୁଅଗଣ
ବାଦ୍ୟ ତାଳେ କାହିଁ ପକାଇ ଉଠାଇ
ଚଳଚରଣ ।
ନାନା ଅଭିନୟ ଦେଖାନ୍ତ ବଚନ୍ତ
ବେଶଭୂଷାରେ
କେବେ ବା କୃତିମ ସମରେ ମତ୍ତନ୍ତ
ଯୁଦ୍ଧସଜ୍ଜାରେ ।

କେବେ ରଣଚଣ୍ଡୀ ସ୍ୱବେ ଅବତରି
ଯୋଗିନୀଦଳେ
ଦୁରନ୍ତ ଦାନବ ଦଳକରବାଲେ
ନାଶନ୍ତି ବଳେ ।
ଭରନ୍ତି ଦର୍ଶକ ଚକ୍ଷୁ କେବେ ମାତୃ—
ସ୍ନେହ ସୁଧାରେ
ପ୍ରେମିକ ପ୍ରେମିକାରୂପେ ଆସି କେବେ
ପୂଜନ୍ତି ମାରେ ।
ସଂକୀର୍ତ୍ତନନାଦେ କମ୍ପାଇ କାହିଁ ବା
ଉତ୍ସବସ୍ଥଳ
ଚୈତନ୍ୟ ଚରିତ ଅମୃତ ପିଅନ୍ତି
ଜନମଣ୍ଡଳୀ ।
ତାଳମୃଦଙ୍ଗର ସଂମିଶ୍ରଣେ ସେହୁ
ମୋହନ ସ୍ୱର
ଅନୁକରୁଥାଏ ସିନା ନଦୀ ସ୍ରୋତେ
ହଂସ ରବର ।
କାହିଁ ମାତଥାନ୍ତି ସମବେତ ନରେ
କୁକୁଟଯୁଦ୍ଧେ
ପଦହସ୍ତ ସ୍ଥଳ ଯୁଝୁଥାନ୍ତି ସେହୁ
ଚରମ କ୍ରୋଧେ ।
ଫରକାର ପର ପ୍ରତିପକ୍ଷ ଦେହେ
ଭୁଷିକଠାରି
ସ୍ୱସ୍ୱାମୀଙ୍କୁ ତୋଷି ନିଅନ୍ତି ଅପର
ପ୍ରାଣ ଓଟାରି ।
କେବେ ରୋଷବଶେ ନିକେଶାଇ ନିଜ
ଆୟୁଧେ ହାଣି
ରକତ ଭଳକା ସହୁ ତେଜୁଥାନ୍ତି
ଧକଳେ ପ୍ରାଣ ।
ସୁଜ୍ଞଜନେ ଏହୁ ନିଷ୍ଠୁର ବ୍ୟାପାର
ହେର ଅସୁଖେ

ସେ ସ୍ମାର୍ତ୍ତଁ ପଳାଉଥାନ୍ତି ଆଜ ମୁଖେ ·
ବିଷମଦୁଃଖେ ।
ଅହିଫେନ ବାହିଁ ସେବନ୍ତି ଉଲ୍ଲାସେ
ମଦଣ୍ଡସ୍ୱଜ
ଗଠା ସାହାଯ୍ୟରେ ଛିଠା ଠାଣି ଭଣ୍ଡ
ସେ ଧୂମେ ମାତି ।
କେଉଁ ଗୃହକାର ଧମାଲ୍ଲେକ ମନ
ତୋଷିବା ପାଇଁ
ହୃଷ୍ଟପୁଷ୍ଟେ ଡାର (୧) ଖଜୁର ଖୁଣ୍ଟିଲ
ଖସୁ ବୃଣ୍ଡାର ।
ଆଳସ୍ୟେ ବସିଛି କେଶମେଲି କେଉଁ
ନିଶା-ରସିକ
ଛିଠାଏ ଲଭିବା ଆଶେ ମାରେ କେ ତା
ଉକୁଣି ଲକ୍ଷ ।
ଏସ୍ଥବେ ଏକତ୍ର ମିଳି ସମସ୍ତାହେ
ଅପୂର୍ବକଳ
ଛିଠା ଠାଣି ଠାଣି ଭରନ୍ତି ପସାର—
ବାହାର—ଗଲ ।
କେ କହେ ଦିଲ୍ଲୀରେ ଦେଖିଛି ସେ ଏକ
ଯାନ ନୟନେ
ପାଣିବୁଆ ପରି ଜଳେବୁଡ଼େ ସ୍ୱସେ
ଉଡ଼େ ଗଗନେ
ଆନ ସ୍ୱଷଲ ସେ ସିଂହଳେ ଦେଖିଛି
ଗତ ବରଷ
ଅସୁରଙ୍କ ଖଟେ ଭୂର୍ମିସମ ବଡ଼—
ବଡ଼ ଓଡ଼ସ ।
ଅପର ବୋଲଇ ଜାଣିଛ ନା ସ୍ୱଇ
ନୂଆ ଖବର

(୧) ବୃନ୍ତ ।

ଖିଲନମର୍ଗ ଡାକରେ ସବାରଙ୍କୁ ଦେଇ
ଉଚ୍ଚ ନଜର ।
ଗୋଟା ଭାରତର ପଞ୍ଝା ନେଲେଣି ତ
ଚୀନ ଚାପିଏ
ପରସ୍ତାକୁ ଆଉ ତ୍ରିମାସେ ମିଳିବ
ଅପୂର୍ବ ଭରଏ ।
କେ କହେ କୈଳାସ ସନ୍ନିକଟେ ମାନ—
ସର ଗର୍ବିତ
ତହୁଁ ସେ ଆସିଛି ଗୁରୁଙ୍କ ମନ୍ତ୍ରରେ
ହୋଇ ଦୀକ୍ଷିତ ।
ଅତି ପ୍ରାଚୀନ ସେ କର୍ଣ୍ଣବେଣୀ ଲମ୍ବି
ଚୁମ୍ବେ ଧରଣୀ
ସଦା ଭଜଭଜ (୨) ସ୍ଥାନେ ସ୍ଥାନେ ଦେବେ
ଫୁଟିଛି ଛତ୍ର ।
ବ୍ୟାସଦେବ ଯେବେ ରଚୁଥିଲେ
ମହାଭାରତଗ୍ରନ୍ଥ
ସେ କାଳେ ଗଙ୍ଗାଇ ସାଙ୍ଗ ଶିଖୁଥିଲେ
ତନ୍ତ୍ର ସେ ସନ୍ତ ।
ରୂପାଜାବାଦଲ ମେଲିଛନ୍ତି କାହିଁ
ରୂପ ପସରା
ରୂପ ବନମଧ୍ୟେ ଧଳାପାଖୁଁ ରୂପା
ଝିଙ୍କିବେ ପରା ।
କାହିଁ ମଲ୍ଲମାନେ ବାହୁ ଠୁଙ୍କି ସ୍ୱରେ
ମୃଦଙ୍ଗା ଲେଖି
ଅନ୍ୟୋନ୍ୟକୁ ଚୁହିଁ ଫୁଲନ୍ତି ଦେହର
ମାଂସ ପେଶୀ ।
ଯୁବଜନଙ୍କର ଗଲାମୋଦେ କାହିଁ
ଭ୍ରମନ୍ତି ମୁଖେ

(୨) ହିମାଳୟରେ ପ୍ରାୟ ବରଷା ହୁଏ ।

ମନ୍ତ୍ର ଉଚ୍ଚାରଣ ହେଉଛି କାହିଁବା
ଶ୍ରୋତ୍ରୀୟ-ମୁଖେ ।
ଯନ୍ତ୍ରାପନ୍ତ୍ର ଯୋଗେ ଖର୍ବେ ଊର୍ଦ୍ଧ୍ୱେ ଉଠି
ଉଡ଼ୁଛି କାହିଁ
ଚୁମ୍ବନ୍ତ ଦୂର୍ବାଦ ପ୍ରାଂଶୁ ସୀମନ୍ତମା
ଗଣ୍ଡ ଜମାଇ ।
କେ କାହାକୁ କାହିଁ ମସ୍ତକ ଜମାଇ
ଦେଉଛି ଗାଳ
ଯୋଗ ଦେଉଛନ୍ତି ଆନନ୍ଦେ ବାଳକେ
ବଜାଇ ତାଳ ।
ବୃଦ୍ଧାମାତା ହାତ ଧରି କେହୁ କାହିଁ
ଜନତା ଭରେ
ଦୂରେ ରହି ରହି ସତର୍କେ ଘୁରଇ
ମେଳ ସ୍ଥାନରେ ।
କାହିଁ ବା ଜନନୀ ସପତନେ ଝିଅ
ବନ୍ଧୁ ସଖୋଳ
ସାହୁ ପଡ଼ଶୀର ସଙ୍ଗ ନ ଛଡେନ୍ତି
ଦେଖଇ ବୁଲ ।
ସପତନେ କାହିଁ ପଳାଳ ରଚନ୍ତି
ସୂଆରଗଣ
ମିଶିବାକୁ ତାର ସହିତେ ମାଂସର
ନାନାବ୍ୟଞ୍ଜନ ।
ମୁଖରୁଚକର ମୁଦାମାଂସେ କାହିଁ
ଦଗ ମହକ
ଭାବଇ ଜନକୁ ଉଚ୍ଛୁର ହେଉଛି
ଆସ ହେ ଭକ୍ଷ ।
ଛେନାଖଣ୍ଡା ଲଡ଼ ପାୟସ ପିଷ୍ଟକ
ପାଲୁଅ ପୁପ
ରହୁଛି କାହିଁବା ଆଣ୍ଡସା ଝିଲିଆ
ମାଲପା ସୂପ ।

ମଣ୍ଡାପିଷ୍ଟ ପଣ୍ଡା ମାନସେ ଉଠଇ
ଲାଲସା ଉଗ୍ର
ପିଠାଚନ୍ଦ୍ର ପହ୍ଳିବନ୍ଦନ ଚନ୍ଦ୍ରକୁ
ବରେ ଯେ ତୁଚ୍ଛ ।
ଡାକ ବଙ୍ଗଳାରେ ଦାଢ଼ିଆ ବ୍ରାହ୍ମଣେ
ଗୃହମନ ଭଣ୍ଡା
ଟେବୁଲେ ସଜାଇ (୧) ସସସନ୍ତ ଥୋଇ
(୨) ବେଣରବଠା ।
ପାଉଁରୁଟି କାଟି ତାପରେ ମାଖନ
ମଖାଇ ବ୍ୟସ୍ତେ
ପରଶନ୍ତି ଚପ କଟଲେଟ ଚେଷ୍ଟ
ଚଞ୍ଚଳହସ୍ତେ ।
ବଦେଶୀ ମୃଉଛାପାନେ ସ୍ୱତସନ୍ତ
ଭୁଲ୍ଲୁଡ଼ି କାର
ଥରଥର ଆଖି ସଙ୍କାନ୍ତି ପାଶ୍ଚାତ୍ୟ
ସରଣି ଧରି ।
ନବ୍ୟ ବାବୁଦଳ ପରେପରେ ସବୁ
ଥୋଇ ଉଦରେ
ଉଲ୍ଲାସେ ନାଚନ୍ତି ଗାଆନ୍ତି ଉତ୍କଟ
ଲହଡ ସ୍ୱରେ ।
ମଦ ଦୋକାନରେ ବସି ସବୁଗରେ
ମଦ୍ୟପଗଣ
ମଦଗ୍ରଦେବୀଙ୍କ ଗନ୍ଧେ ଘନଘନ
ଦେଇ ଚୁମ୍ବନ ।
ବଡ ସିଗାରେଟ ଧୂମେ ସେ ନଶାକୁ
ଅଧିକେ ମାଜ
ଉଦ୍ଦାମ ଉତ୍କଟ ସ୍ୱରେ ଗାଉଛନ୍ତି
ସଙ୍ଗୀତ ଆଜ ।

(୧) ବସ୍ଥରଟାଣି ।　　(୨) Mastard.

ଜେ ଗାଏ ପଶାରେ ହାରନ୍ତେ ଷଚଜ
                    କୃଷ୍ଣାସୁନ୍ଦରୀ
ସୀତାଙ୍କର ଲଜ୍ଜା ରକ୍ଷିଲେ ଦଶଠ
                    ବସ୍ତ୍ର ଜତର ।
ଜଏ ବା ଦୋଲନ୍ତି କୃଷ୍ଣଙ୍କୁ ବସନ
                    ଦେଇ ରଜକ
ନନ୍ଦମନ୍ଦରରେ ବନ୍ଦୀହେଲେ ବସୁ
                    ଦେବ ଦେବକୀ ।
ଉତ୍କଳ ଜନଙ୍କି ଜେ ଅବା ଏଜନ
                    ଜରନ୍ତି ରୁଣ୍ଡ
ଏଣୁତେଣୁ ଗାଇ ଖାଅନ୍ତି ଜେ ଜଡ-
                    ସ୍ୱର୍ଣ୍ଣଙ୍କ ମୁଣ୍ଡ ।
ବାଣେଶ୍ୱର ପୀଠେ ଚତଣେ ମାନସରେ
                    ଯଥା ମରାଳ
ଧାଡ଼ଧାଡ ହୋଇ ଘଣ୍ଟାଙ୍କିତ ଜଠୀ
                    ଲଲନା ଜାଳ ।
ଆଣନ୍ତି ସଜଳ ଦୋହଲି ଦୋହଲି
                    ଜଗ କଳସ
ଜପଜ୍ୱାଲାନାଶି ଆଶୁତୋଷେ ପଗ
                    ଜଗବେ ତୋଷ ।
ଯୁବା ଯୁବତଏ ଏକନ୍ଦେ ଦଶୁକ
                    ସ୍ୱବେ ଭ୍ରମନ୍ତି
ଯେଣୁ ସେ ସ୍ଥଳକୁ ଜନ୍ତେ ଆସି ନାହିଁ
                    ଜେଲଣ ପଢ଼ ।
କୁମାରୀରୁଢ଼ରେ ଏଣେ ବନ୍ଧୁତର
                    ବର୍ଣ୍ଣଜନ୍ଦୂଳ
ଯେ ଯାତ୍ରା ଅଷ୍ଟୁଷ୍ଟ ବାଞ୍ଛନ୍ତି ଚଢ଼ାଇ
                    ଦେବୀଙ୍କୁ ଫୁଲ ।
ମହାଭସ୍ମକଣୀ ଦକ୍ଷଜରେ ଖଡ୍ଗ
                    ବାମେ ଖର୍ପର

ମୃତ୍ୟୁ-ଭୂମି ପରି ହୋଇଛି ସେ ପୀଠ
ରକ୍ତ ଜର୍ଜ୍ଜର ।
ଚୌଦିଗେ ପଡ଼ିଛି ବଧପ୍ରାଣୀ ଛିନ୍ନ
ଶିର ଅମାପ
ଧର୍ମ୍ମ ବୋଲି ଯାହା କହନ୍ତି ସେ ଦିନ
ପାପର ବାପ ।
ବାସେଲୀ ଦେବୀଙ୍କ ନିମନ୍ତଣେ ଆଜି
ଦେବ ଦେବୀଏ
ନାନାସ୍ଥାନୁଁ ବଜେ, ସଙ୍ଗତେ ଅଛନ୍ତି
ସଖା ସଖୀଏ ।
ମେଘଧ୍ୱନିନିଭ ଯା ଗର୍ଜ୍ଜନ ଶୁଣି
ଫଲ୍ଗଇ ଗଣ୍ଡି
ମେଘାଗମ ଜନା ତାଣ୍ଡବେ ଶିଖଣ୍ଡ:
ତୋଳି ଶିଖଣ୍ଡୀ ।
ଅନନ୍ତବାହୁଁ ଯେ ପ୍ରକୃତର ପ୍ରେମ
ସାଧକବତ
ଢାଳିଦେଉଅଛି ନୀର-ଧାର ଛଳେ
ପ୍ରଣୟାମୃତ ।
ନିମ୍ନଗାମୀ ସ୍ରୋତ ଦେଖି ଯା ଏକ୍ତବ
ଆସଇ ଦୂରୁ
ମୁକ୍ତାସିକ୍ତ କବା ସ୍ନେହଏ ବାସୁକି
ଧନଦପୁରୁ ।
ବୁଢ଼ାଭୁଇଁ ରମ୍ୟ ବଙ୍ଗଳା ବହ୍ୱାସ୍ତି
ସ୍ୱବୁଜ ପ୍ରାଣେ
ସଙ୍ଗୀତସୁଧା ଯେ ସିଞ୍ଚଇ ନିଦବ
ଉପସ୍ଥିତାନେ ।
ଯା ଢାଲପ୍ରବାହ ଖଣ୍ଡାଧାର ଶୋଭା
ନଏ ଓଁଠାର
ସେହି ଖଣ୍ଡାଧାର ତଟରୁ ଆସିଲେ
ଢାନ୍ତକୁମାରୀ ।

ନୃସିଂହ ଶଇଳ ପକ୍ଷି ଜଳଗର୍ଭେ
 ଆଶ୍ରୟୀଲଭ
ସୃଜନ୍ତି ନୃସିଂହ ନାଥଙ୍କର ବାସ-
 ଯୋଗ୍ୟ ବଡ଼ଖ
ଯାର ସନ୍ନିକଟେ କୂର୍ମପୃଷ୍ଠାକାର
 ବ୍ରାହ୍ମୀସିକତା
ତାଣ୍ଡବ ଉତ୍ସବେ ମାତଥାନ୍ତି ପକ୍ଷି
 ଜନଦେବତା ।
ଖର ପ୍ରବାହର ଶିଳା ସଂଘର୍ଷିତ
 ମନ୍ଦ୍ର ଝଙ୍କାର
ଦୂର କରୁଥାଏ ବାଦ୍ୟର ଅଭାବ
 ନିରତ ଯାର
ଅଗାଧ ସଲିଳ ସନ୍ତରଣଶୀଳ
 ନକ୍ର ଅସଂଖ୍ୟ
ପ୍ରତ୍ୟୁଷେ ପ୍ରଦୋଷେ ଉଠି ଆଣ୍ଡେ ପକ୍ଷି
 ବଜାନ୍ତି ଶଙ୍ଖ ।
ସେହି ଦେବଦହ ଉପେଚି ଅସିଲେ
 ନୃସିଂହନାଥ
ଯାହାଙ୍କ କୃପାରେ ହୁଅନ୍ତି ଅନାଥ—
 କୁଳ ସନାଥ ।
ନିବିଡ଼ ବାଉଁଶ ନିକୁଞ୍ଜେ ଅତଣ୍ଡ୍ରି—
 ଲତା ଦୋଳରେ
ପ୍ରଖର ଗ୍ରୀଷ୍ମରେ ବହଚନ୍ତ ପେଣ୍ଡୁ
 ମାଙ୍କଡ଼ା ଗୀରେ ।
ରକ୍ତ ପୀତସ୍ୱେଗ ରଞ୍ଜିତ ରୁଚିର
 ବନବିହଙ୍ଗେ
ବୈତାଳିକ ପ୍ରାୟେ ଯା ସ୍ତବ ସଙ୍ଗୀତ
 ଗାଆନ୍ତିରଙ୍ଗେ ।
ଭୂମିଗର୍ଭୋତ୍ଥିତ ବହୁହଣାଳନି
 କରବାଳମା

ଶବାରୂଢ଼ା ନରକଙ୍କାଳ ମଣ୍ଡିତା
ମୁଣ୍ଡମାଳିନୀ ।
ନର ଗଜ ମେଷ ମହିଷ ରୁଧିର
ଅଙ୍ଗେ ଅଧୀର
ପଶିଲେ ସ୍ୱସ୍ଥାନ୍ତ ସଖୀସହ ସେହି
(୧) କୁଣ୍ଡେଶ୍ୱରୀର ।
ଅର୍ଦ୍ଧଚନ୍ଦ୍ରାକାରେ ବେଢ଼ିଛି ଯାହାକୁ
ଚୂନପ୍ରସ୍ତର
ମଧ୍ୟାନ୍ତରେ ସୁଦ୍ଧା ନ ପଡ଼ଇ ଯହିଁ
ମିହିରକର ।
ଭ୍ରୁକ ଋଜତର ସୁଷମାକୁ ଗଞ୍ଜି
ଯା'ନିର୍ଝରସ୍ରୋତ
ବହୁଦୂରୁ ଢେଉଁ ଧରଣୀ ବକ୍ଷରେ
ପଡ଼େ ସନ୍ତତ ।
ମନେହୁଏ ଦେଖି ଅନୁପମ ସେଉଁ
ସ୍ରୋତ ସୁରୂରୁ
ପତିତପାବନୀ ଗଙ୍ଗା ଖସନ୍ତିକି
ଶିବ ଜଟାରୁ ?
ଘସ୍ୟା ସୁଶୀତଳ ଅସିତ ଉପଲ
ଦ୍ରୋଣୀରେ ବହି
କେତେବେଳେ ଯେତ୍ତୁ ଗମ୍ଭୀର ଝଙ୍କାରେ
ଦିଗ ଭରଇ ।
ଦୁଗ୍ଧଧାର ସମ ଦେବଗଡ଼େ ଯାର
ବାରିଲହରୀ
ଶୃଙ୍ଗାଟକେ ପଡ଼ଇ ବାରମାସ ପଡ଼େ
ଫଏର ପରି ।
ସେ ପୂତପ୍ରବାହ-ନୀରେ ଅନୁକ୍ଷଣ
କେଳି କୁଶଳ

(୧) ପାଳ-ଲହଡ଼ା ଅଧିଷ୍ଠାତ୍ରୀ ।

ଯାହାଙ୍କର (୧) ବୃଗଖଣ୍ଡା ମନ୍ତୁ ଥିଲା
ଅସ୍ତବଳ ।
ଚଞ୍ଚଦରେ ଧାଇଁ ସ୍ୱକାନ୍ତରେ ଛନ୍ତି
ବଜ୍ରକଳତା
ସେ ପ୍ରଧାନଯାଠୁଁ ବଜେ ହେଲେ ପାଞ୍ଚ
ଖଣ୍ଡା ଦେବତା ।
ବାଳଚନ୍ଦ୍ରକାନ୍ତ ଖଣ୍ଡଦାୟୀ ଯାର
ଶିଖା ଚଞ୍ଚଳ
ଧକଧକ ଜଳ ଖାଆନ୍ତେ ବାସନ୍ତ
ବାୟୁମଣ୍ଡଳ
ସେହୁ ଅବକାଶ ସ୍ଥାନପୁଷ୍ଟି ପାଇଁ
ଗୃଶଦଗର
ଘନ ପ୍ରଭଞ୍ଜନ ଧାଏଁ 'ହୁ ହୁ' ରବେ
ଗର୍ଜିପ୍ରଖର ।
ଉଚ୍ଚତରୁ ଡ଼ାଳ ସ୍ୱସ୍ଥାନୁଁ ଘୂଞ୍ଚାଇ
ଧୂଳି ଉଡ଼ାଇ
ଯା ଜ୍ୟୋତି ବସ୍ତୁହ ଦୋହଲି ଏବେଳେ
ବସ୍ତୁ କମାଇ ।
ପ୍ରସ୍ଫୁଟିତ ଯାର ପଲାଶକାନ୍ତିକ
ରକ୍ତମଣ୍ଡଳୀ
ଦ୍ୱିଗୁଣେ ବଢ଼ାନ୍ତି ଘିଅ ଗୁଡ଼ ଦୁଗ୍ଧ
ରକତଢ଼ାଳ ।
ପ୍ରକାଣ୍ଡ ବାଉଁଶ ସୌଧନବାସିନୀ
ଘୋରନାଦିନୀ

(୧) ବସ୍ତ ପଞ୍ଚ ପାଞ୍ଚଗଣ୍ଡା ପୀଠରେ ଗୃହଦଶକୁ ଗୃହଗୋଷ୍ଠୀ ଓ ମଧ୍ୟରେ ଏକଗୋଷ୍ଠୀ ଗଣ୍ଡା ଥାଏ । ଯୋଦ୍ଧାମାନେ ଯେଉଁ ଦଶରେ ଯୁଦ୍ଧଯାତ୍ରା କରନ୍ତି ସେହି ଦଶର ଗଣ୍ଡା ଧରି ପୂଜନ କରନ୍ତି ଏହି କଥା ଅନୁସାରେ ବର୍ତ୍ତମାନ ମଧ୍ୟ ଦଶହରାରେ ଗୃହଦଶର ପୂଜାଇ ଗଣ୍ଡାଦେବୀଙ୍କ ପୂଜନ କରସାଉଅଛି ।

ପଟବଦୋଇକ୍ଷ ସିଂହାସନାସୀନା
ସ୍ମିହାସଙ୍ଗିନୀ ।
ଅନ୍ତର୍ଜ୍ଜଳା ମଞ୍ଜୁ ଶିଙ୍ଖଡ଼ାଭୂଷଣୀ
ପ୍ରସ୍ରବୁକୂଳା
ଦାବାନଳରୂପେ ଉତ୍ସହେଲେ ଅସି
ଦେବୀ (୧) ହୁଙ୍ଗଳା ।
ଅଭୟଦାୟିନୀ ସଙ୍କଟ ତାରଣୀ
ଦେବୀ ତାରଣୀ
କେନ୍ଦୁଝର ଜନ ହୃଦୟ ପ୍ରମୋଦ
ବନସ୍ତରଣୀ ।
ଏହୁପରେ କେତେ ଦେବ ଦେବୀ ବନ
ବକ୍ଷୀ ଆସନେ
ବସି ଦେଖୁଥିଲେ ବାଙ୍କେଲୀ ଉତ୍ସବ
ପ୍ରଫୁଲ୍ଲମନେ ।
ଖଣ୍ଡାଧାରଚୂଳ ଚୁମ୍ବିଲେ ତପନ
ଗଗନ୍ତୁଁ ଖସି
ବଟପୀନଭର ସ୍ୱର୍ଣ୍ଣଅଳଙ୍କାର
ପିନ୍ଧିଲେ ହସି ।
ପ୍ରଦୋଷ କିରଣେ ରଞ୍ଜିତ ନଗର
ରମ୍ୟଲହରୀ
ଆସ୍ପିଲ୍ଲ ବାତେ ଆନ୍ଦୋଳିତ ଜଳ
ହୃଦର ପରି ।
ସ୍ୱର୍ଣ୍ଣର ଦବଧ ମୂର୍ତ୍ତିଧର ମେଘ
ଲଟିଲେ ବୁଲି
ଉଜ୍ଜଳ ଉଜ୍ଜ୍ୱଳ ସ୍ୱର୍ଣ୍ଣ ଆକାଶରେ
ସୁବର୍ଣ୍ଣଧୂଳି ।
ରଥାଙ୍ଗ ରଥାଙ୍ଗୀ ସହବାସ ସୁଖ
ଛାଡ଼ିଦା ଡରେ

(୧) ଭାଲରେଇର ହୁଙ୍ଗୁଳା ଦେବୀ ।

ବଷାଦ ତରଙ୍ଗ ତୋଳଲେ ତଟିନୀ
ବେନ ତଟରେ ।
ସନ୍ଧ୍ୟା ହେବାଜାଣି ପଶିଲେ ପଦ୍ମିନୀ—
ଅଙ୍କେ ଭ୍ରମରେ
ଏଣୁ ପ୍ରିୟାଖେଦେ ପଡ଼ିଲେ କି ସୂର୍ଯ୍ୟ
ହେଉଁ ସାଗରେ ।
କହିଲେକ ଅବା ଜଳ ପ୍ରିୟନାଶ
ଖେଦଅନଳେ ?
ଦୁଃଖିନୀ ପଦ୍ମିନୀ ଭ୍ରମର ଧରିକା
ଗରଳଛଳେ ।
ନାଡ଼ ଅଭିମୁଖେ ଗମିଲେ ବିହଙ୍ଗେ
ପ୍ରଦୋଷ ଜାଣି
ଅଶିଲ ନକ୍ଷତ୍ର ଭୂଷିତକୁନ୍ତଳା
ରଜନୀରାଣୀ ।
ପାର୍ଶ୍ୱବର୍ତ୍ତୀ ଗିରି କନ୍ଦରୁ ବାହାର
ସାନ୍ଧ୍ୟ ଅନ୍ଧାର
ଏକାକାର କରୁଁ କରୁଁ ଗ୍ରାମନଗ୍ରୀ
ଗିରିକାନ୍ତାର ।
ଶତଶତଦୀପ ସେ ଉଚ୍ଚବଂଶଲେ
ଉଠିଲ ଜଳ
ସ୍ୱଚ୍ଛପ୍ର ରଶ୍ମିରେ ଦୈଶିହ୍ରଗଗନ
ସୀମା ଉଜ୍ଜ୍ୱଳ ।
ଭମିବର ନେତ୍ର ସନ୍ଧିବ ଚଞ୍ଚଳ
ଖଦ୍ୟୋତପନ୍ତି
ବଶୁଥିଲେ ଯାହା ଚୌଦଗେ ଉଭେଇ
ଗଲେ ଝଟତି ।
ବେଳଜାଣି ସାଜ ଗଜଗଜପାଳେ
ଅଇଲେ ଘରେ
ବଟଳ ବର୍ଦ୍ଧୀରେ ନାଚଲେ ଚୁରଙ୍ଗ
ଛିଂହ୍ବଦୂଆରେ ।

ଗମ୍ଭର ଗର୍ଜନେ ଦଉଡ଼ ଦଉଡ଼
ମୋଟରକାର
ପ୍ରସ୍ଥଗଲ୍ଲ କରେ ଜଗତେ ଚଞ୍ଚଳ
ଶବ୍ଦ ତାହାର ।
ପ୍ରତାପ ଦେଓଙ୍କ ବଶଧର (୧) ନୃପ
ମପବଶଜ
ଘାନମିନସହ ମଣ୍ଡିଲେ ଅମାର
ଉଡ଼ାଇ ଧ୍ୱଜ ।
ନବୋଦିତ ରଞ୍ଜ ସଜିଲ ଅମାଶ୍ରୀ
ଝୁଲଝଲକ
ଝିଙ୍କିନେଇ ସିନା ଦେଖଣାହାରୀଙ୍କ
ନେତ୍ରୁ ପଲକ ।
ଲାଗିଲେ ସ୍ୱର୍କାଫେଁ ଅଲଟ ଗ୍ଲମର
ଘେନ ସେବକେ
ମନ୍ତ୍ର ପଢ଼ି ପଢ଼ି ଗ୍ଲଲେ ଅଗରେ
ମନ୍ତ୍ରପାଠକେ ।
ବୃଷ୍ଟପାର ଶୃଙ୍ଗ ମଉଳ ନଗାଣ
ପଟହ ସଙ୍ଗେ
ବଜାଇ ଢାଡ଼ିଏ ନାଚ ନାଚ ଆଗେ
ଗ୍ଲଲେ ରଙ୍ଗେ ।
ଗଉଡଙ୍କ ସ୍କନ୍ଧେ ଦଗ୍ଧଜଳ ମଞ୍ଚ
ପରେ ଉତ୍ସୁକେ
ଅଙ୍ଗଭଙ୍ଗିସହ ନାଚଲେ ଗୋଟିପ
ନାଟୁଆ ଠୋକେ
ରକ୍ତ ପୀତ ଶ୍ୱେତ ହରିତ ବିବିଧ
ଫୁଲେ ମଞ୍ଜୁଳ
ଗ୍ଲଲେ କୃତ୍ରିମ ତରୁଲତା ବହି
ବେଠିଆ କୁଳ ।

(୧) ରାଜା ଧରଣୀଧର ଇନ୍ଦ୍ର ଦେଓ ।

ଗର୍ଭରେ ସୁଚାରୁ କୃତ୍ରିମ କୂପରେ
ବସି ନଷାଗ୍ର
କୃତ୍ରିମ ଅସ୍ତ୍ରରେ ଶୋଭଲେ ଅସଖ୍ୟ
କୃତ୍ରିମ ସାଗ୍ର ।
ସ୍ୱଭାନ୍ତରେ ଝଳ ଗଉଳ ଭୁଚର
ଝାଡ଼ଫାନସ
ଉଭୟ କୃତ୍ରିମ ପଶୁପକ୍ଷୀ ସର୍ପ
କୁମ୍ଭୀର ମତ୍ସ୍ୟ ।
ସୁପାର୍ଶ୍ୱ ସୁସଜ୍ଜ ରମ୍ୟ ଗ୍ରେଷନାଇ—
ସୁଷମାମାତ
ଚମ୍ପାମାଳପ୍ରାଏ ଶୋଭଲେ ଉଜ୍ଜ୍ୱଳ
ପ୍ରଶ୍ନପତ୍ରକ ।
ବିସ୍ମିତ ହେବାରୁ ସେହ୍ନୁ ଛବମାଳ
ବ୍ରାହ୍ମଣୀବାର
ବଜୁଳୀବୃଉରେ ନବଘନେ ଶାସ୍ତ୍ର
ନେଲ ଓଠାର ।
ବଜ୍ରାଗ୍ନି ସଦୃଶ ଉଠିଲ ହାଉଇ
ରଞ୍ଜି ଗଗନ
ବହୁଦୂରଯାଏ ବର୍ଷି ସ୍ୱାନ୍ତପ୍ରଦ
ଅନଳକଣ ।
ସେ ବାଣ ଆକାଶେ ଫାଟି ନିମ୍ନମୁଖେ
ପଡ଼ୁ ସତ୍ୱର
ଦଶିଲ ଉଜ୍ଜ୍ୱଳ ଧୂମକେତୁପୁଚ୍ଛ
ପ୍ରାୟେ ସୁନ୍ଦର
ବାଜକାର ଭବେ ସ୍ଫୁରିଲ ସଘନେ
ପଦ୍ମଚକର
ଚଉଦଗେ ବର୍ଷି ପୁଷ୍ପସମ ଶିଖୀ
ଶିଖାନକର ।
ରସ ସରିଲାରୁ ସେ ଚକର ସ୍ଥାପ୍ତ
ନାଭସ୍ତୁରଣ

ନବୋଦ୍ଗତ ରକ୍ତ ରବ ଛବ ଭଳ
ଅନୁକରଣ ।
ଅଗ୍ନେୟ ଲତାରେ ଫୁଟିଲ ଅଗ୍ନେୟ
ଫୁଲ ସକଳ
ଅଗ୍ନେୟ ପ୍ରପାତୁ ବାହିଁ ବା ପଡ଼ଇ
ଅଗ୍ନେୟ ଜଳ ।
ହୁଙ୍କାରଇ ଘନ ଘନ ତୋପବାଜି
ଏକ କାଳରେ
ଫୁଟିଲକି ଶତ ସହସ୍ର ଶତଘ୍ନି
ରଣସ୍ଥଳରେ ?
ଜାଗିଲେ ସେ ଶବ୍ଦେ ପ୍ରତଧ୍ୱନ ଗିର
ଷୋଡ଼ଶାୟିନୀ
ପାଳ ଧରିବାର ରହସ୍ୟ ରଙ୍ଗିନୀ
ବ୍ୟୋମ ନନ୍ଦନୀ ।
ମୃଦୁତାଳ କ୍ଷିପ୍ର ସ୍ଖଳିତ ଚରଣା
ଭୂର୍ଯ୍ୟା ବଧୂର
ନୃତ୍ୟ ଝଙ୍କାରିତ ଖଣ୍ଡାଧାରେ ଧକ୍କା
ଦେଇ ପ୍ରଚୁର ।
ଶିଖରେ ଶିଖରେ ଧାଇଁ ସେହି ଧ୍ୱନି
ବାତ ହିଲ୍ଲୋଳେ
ସଞ୍ଚରିଲା କ୍ଷଣେ ଶୈଳ ସୀମନ୍ତ
ପାଞ୍ଚଡ଼ିଚୂଳେ ।
ଅତୃପ୍ତ ଆନନ୍ଦ ସୁଖେ ପ୍ରାଣପଣ
ଷୋଡ଼ଶାୟିନୀ
ନବ କୁଳବଧୂ ସକଳ ସଭୟେ
ସେ ଶବ୍ଦ ଶୁଣି ।
କିଶୋରୀ ସୁଲଭ ଲଜ୍ଜାଛଡ଼ ବେଗେ
ଭୟେ ମୃଗାକ୍ଷି
ବକ୍ଷେ ବକ୍ଷୋଜେ ବଳସ୍ଥିତବ୍ରଜେ
ଧଇଲେ ଯାକି ।

ପୂଜାବଧି ଯାର ଏକାଳେ ଶ୍ରୋହୀମ୍ୱ
ପୁତ୍ରେ ବୋଧାପନ୍ତି
ରାଜା, ରାଜ୍ୟ ପ୍ରଜା, ମଙ୍ଗଳ ମନାସି
ଦେଲେ ଆଳଟ ।
ବହୁବରେ ନମି ବାସେଲୀ ଦେବୀଙ୍କ
ପଦସାରସେ
ଗମିଲେ ଯାହୀଏ ଦଳେ ଦଳେ ଗୃହେ
ହୃଷ୍ଟମାନସେ ।
ଦେଖୁଁ ଦେଖୁଁ ସ୍ଥାନ ପରିଣତ ହେଲା
ମହା ବିଜନେ
କମଳାକରର ବିଭବ ଯେସନ୍ତ
ହିମପତନେ ।
ଚିରକାଳ କିଛି ଏ ନଶ୍ୱର ଭବେ
ରହଇ ନାହିଁ
ଶରତ ସୁଷମା ହେମନ୍ତ ଦର୍ଶନେ
ଯାଏ ପଳାଇ ।
ବସନ୍ତ କୋକିଳ ନିନାଦ ଅସିଲୋ
ଜଗଇ ଉଡ଼
ପ୍ରଫୁଲ୍ଲ କୁସୁମ ବୃନ୍ଦେ ବାସି
ପଡ଼ଇ ଝଡ଼ ।
ସୌରଭଶ୍ୱାସିନୀ ଚନ୍ଦ୍ରହାସିନୀ
ସୁଧାଅଧରୀ
ଯୁବତୀ ଯୌବନ ଯାଏ ଅହା ଅଳ୍ପ
ଦିନରେ ସରି ।
ତଥାପି ମାନବେ ନିଜ ନଶ୍ୱରତା
ବୁଝନ୍ତି ନାହିଁ
ସଂସାର ମାୟାକୁ ମୋର ମୋର ବୋଲି
ଧୁଅନ୍ତି ବାଇ ।
ଜୀବ ପୁତ୍ରେ ନିଜ ପିତା ଗେଲ ବଳେ
ସ୍ୱସୃତ ମଣି

ମନେ ମନେ ଯେତ୍କେ ତା ଦେଖି ହସଇ
ଜାଉ ଜନନୀ ।
ତେତ୍କେ ଧନଜନ ମୋର ବୋଲ୍ ନର
ହେଲେ ଅଣ୍ଡାଳ
ପଛେ ପଛେ ଥାଇଁ ହସଇ ନଯୁଗ
ବଜାଇ ତାଳ ।
କିଛି ରହେ ନାହିଁ କାଳଗର୍ଭେ ସବୁ
ହୁଅଇ ଧ୍ୱଂସ
ସହିପାରିଥିଲେ ଚରକାଳ ଏକା
ରହଇ ଯଶ ।



# ଏକୋଇଶା

## ଶ୍ରୀମାନ୍ ଟୀକାଯୁତ ସୌଭାଗ୍ୟଚନ୍ଦ୍ର ଦେବଙ୍କର

## ଏକୋଇଶା ଉପଲକ୍ଷେ

ରାଗ—ମଙ୍ଗଳ ।

ନାଚ ନାଚ ସଖି ଆଜ ଆନନ୍ଦରେ
ଏଥୁଁ ବଳି ହର୍ଷ କି ଅଛି ମହୀରେ ।
ଜନ୍ମଚନ୍ଦ୍ର ଆଜ ନାଥ ମହାଶୟ
ଯହିଁରେ ଉଛୁଳ ଉଠୁଛି ହୃଦୟ ।
ତାଳଚେର ନଭେ ପୂର୍ଣ୍ଣଚନ୍ଦ୍ର ପରି
ଦିଶଇ ନାଥଙ୍କ ବଦନ ମାଧୁରୀ ।
ତାଳଚେର ଧନ୍ୟ ସୁଖର ସମ୍ପଦ
ତହିଁରେ ସିନା ଏ ଅଟନ୍ତି ଦାୟାଦ ।
ଆମ୍ଭେ ପ୍ରଜାମାନେ ନାଥଙ୍କ ସଙ୍ଗର
ସୁଖେ ମଠରରେ ମାରିବା ଚକର ।
ଯାଇଥିଲେ ସଖି କେତେ କଷ୍ଟ କରି
ପ୍ରଚଣ୍ଡ ଖରାକୁ ମନରେ ନ ଧରି ।
ଫେରିଲା ବେଳରେ ଗଛ ପଥରକୁ
ଛହିସ୍ତୁ ତେଜରେ ଛୁଚ୍ଛ କରି ତାକୁ ।
ଲୋକମାନଙ୍କର ଯେତେ ଉଦ୍ଭାବନ
ନିଜ ବୁଦ୍ଧିବଳେ କରିଦେଇ କ୍ଷୀଣ ।
ଉତ୍ସବରେ ଯୋଗ ଦେଲୁ ତାଳଚେରେ
ଆଜି ସିନା ତାହା ସଫଳ ଏଠାରେ ।
ଦୁରଦୃଷ୍ଟ ସଖି ଅଟଇ ମୋହର
ଏକାଳେ ନ ଥିଲି ସଙ୍ଗତେ ତୁମ୍ଭର ।
ସୁବାସ ଅତରେ ଅମ୍ବରକୁ ଗୋଳି
ଦେଇଥାନ୍ତି ତାହା ତୁମ୍ଭ ମୁଖେ ବୋଳି ।
ମାଲ ବୁନ୍ଦି କରି ଧୂଳିରେ ଲୁଟାଇ
ତୁମ୍ଭ ମୁଖେ ଢାଳି ଦେଇଥାନ୍ତି ସଖି ।

ତୁମ୍ଭେ ମନେ ଭାବ ଶୁଣ ବଳସ୍ୱାର
ଆଜ ଦେଖିଥାନ୍ତ ବିକ୍ରମ ମୋହର ।
ଜାଣିଅଛ ମୁହିଁ ତୁମ୍ଭ ବଳ ଗୁଚ୍ଛ
ମୋ ପାଖରେ ସବୁ ହୋଇଥାନ୍ତା ତୁଚ୍ଛ ।
ହିନ୍ଦୋଳରେ ଥିଲେ ବଡ଼ଗଡ଼ ରଜା
ତାଙ୍କୁ ଡାକ ଶୁଣି କରିଛତ ମଜା ।
ନତ୍ୟାନ ଖାଆନ୍ତି ସେହୁ ସଦାବେଳେ
ତନ୍ତୁ ପାତଳଆ ଅଟନ୍ତି ସେ ହେଲେ ।
ଶୁଭ୍ର ମୂର୍ତ୍ତିଟାଏ ମକାଗଛ ପରି
ଗଲେ ଧରିଛନ୍ତି ଆନନ୍ଦର ଡୋରି ।
ହୁଲଦ ଖେଳରେ ହୋଇ ଲଣ୍ଡ ଭଣ୍ଡ
ଦେଖାଉଥିବେ ସେ ବୀରତ୍ୱ ପ୍ରଚଣ୍ଡ ।
ଏଣୁ ତାଙ୍କୁ ଠାଣେ ରଗଡ଼ିବ ନାହିଁ
ତହିଁ "ଥାଳାଦାସ୍ୱ" ହୋଇଥିବେ ଭାଇ ।
ଏକ କଥା ଶୁଣ ଯାଏ ମନେ ପଡ଼ି
ଦେବା କିଏ ଆମ୍ଭେ ପୁଙ୍ଗବ ଛଡ ।
ଅଜା ନାତି ସବୁ ମିଳିତ ହୋଇଣ
ଖେଳ ପଡିଆକୁ କରିବା ଗମନ ।
ନାତିଙ୍କୁ ଆମ୍ଭର ସଙ୍ଗେ ମିଶାଇବା
ନାତି ସହ ନାନା ଆମୋଦ କରିବା ।
ଅମେ ଅଜାଯାକ ପାକଳ ଦାଢିଆ
ନାତିଙ୍କୁ ଆଗରେ ରଖିହେବା ନୁଆଁ ।
ଯେବେ ତହିଁ ଉପୁଜିବ ମାତ ବଳ
ଶ୍ରୀ ବଡ଼ଗଡ଼ଙ୍କୁ ଦେବା ଆଗେ ଠେଲ ।
ଭଲ ଗୋଡ ଯୋଡେ ପାଇଛନ୍ତି ସେହୁ
ପଳାଇ ଯିବେଟି ଦଉ ହାତ ତେଉଁ ।
ଲମ୍ଫଇଲେ କଣ ଲମ୍ଫିବ କାହାଣୀ
ବସ୍ତ୍ରସତ ଆଣି ବାନ୍ଧୁ କରିଲଣି ।
ତଥାପି ଯୁବକ ଭାବ କର ଦୂର
ଛାଡ଼ିବା କି ଆମ୍ଭ ପୁଙ୍ଗ ବ୍ୟବହାର ।

ଯୌବନ୍ଧ ଦାଢ଼ୀରେ କଳା ଘସି ଘସି
କରବା ନାହିଁକି ପୁଂ ପରି ମଣୀ ।
କି ଅବା ପାଚଲ୍ଲ କେଶ ମୁଣ୍ଡେ ବହୁ
ବୃଦ୍ଧବୋଲି କହେ ହୋଇବା ଚଞ୍ଚାଇ ।
ଶୁଣ ସ୍ୱଇ ଅମ୍ଭେ ନାଣ୍ଡ ସହ୍ବ ମିଶି
ବ୍ରାହ୍ମଣୀ ସଲଳେ ନଷ୍ଟେ ପିବା ପଣି ।
ବ୍ରାହ୍ମଣୀ ସଲଳ ପିନା ସୁଧା ପରି
ତହିଁ ସୁଖେ ଅମ୍ଭେ ବୁଲିବା ପହଁର ।
କମଳ ଚନ୍ଦ୍ରକା ପରି ଦେଖା ଦେବେ
ଘୟାପଥ ପରି ଶୋଭା ଦଣୁଥିବେ ।
ତାଙ୍କ ପାଖେ ଦେଖାଇବା ପାଇଁ ଶୋଭା
ତୁମ୍ଭେ ଅମ୍ଭେ ନାଣ୍ଡ ଯାଇ ଉଭାହେବା ।
ସ୍ୱୟଂମ୍ବର ତହିଁ କରିବା ନାହିଁଟି
ଆମ୍ଭର ଉତ୍କର୍ଷ ସବୁ ଯିବ ତୁଟି ।
ଜାଣେ ମୁଁ ସଭିଙ୍କ ମାୟା ସେ ତୁଠାଇ
ସାଗର ଗଳାରେ ମାଳାଦେବେ ନେଇ ।
ଆଉ ଗୋଟେ କଥା ମନେହୁଏ ଭଲ
ତୁମ୍ଭ ସହ ମୋର ହୋଇଥାନ୍ତା କଳ ।
ନାଣ୍ଡ ନୋହୁ ହୋଇଥିଲେ ଏ ନାତୁଣୀ
କେଜେ ବୁଢ଼ାଟିକୁ ନେଇଥାନ୍ତେ କିଣି ।
ମାନ ନାଣ୍ଡ ଜନ୍ମ ଅମ୍ଭମାନଙ୍କର
କଳହମାନଙ୍କୁ କରଛନ୍ତି ଦୂର ।
ପଟି (ର) ଝିଅ ହେଲେ ଝୀବାଯୁତ ସହ
ଆମ୍ଭର ନିଷ୍ଟୟ ହୋଇବ କଳହ ।
ଏଥିରେ ଆମ୍ଭଙ୍କୁ କାହିଁ ଟିକି ଲଜ
ତୁମ୍ଭେ ବୁଢ଼େ ଅଛୁଁ ହୋଇଥାଅ ସଜ ।
ସତ କହୁଅଛ ଆହେ ବୁଢ଼େ ଶୁଣ
ଯୁବା ହେବା ପାଇଁ ତୁମ୍ଭ ସ୍ୱୀ ମନ ।
ସେ ଚଲ୍ଲକା ଏବେ ଖଟିବ ନାହିଁଟି
ନାତଙ୍କ ଘମୁରେ ସବୁ ହେବ ବୁଠୀ ।

ଏ ଲେଖକ ଦେଖି ନାଙ୍କେ ରହସ୍ୟ
ତାହାଙ୍କର ସହ ମିଶିବ ଅବଶ୍ୟ ।
ଯେଉଁଅଡ଼େ ପାଣି ସେହପାଖେ ଛଡା
ଯେଣୁ ଏ ଲେଖକ ବୁଝଇ ସର୍ବଥା ।
ଏବେ ତାଳଚେର କେତେ ଆନନ୍ଦରେ
ହସୁଅଛି ଆହା ବଜୁଳବଣରେ ।
ସେ ବଜୁଳ ଛବ ବ୍ରାହ୍ମୀ ନଦୀ ନୀରେ
ପଡ ଦୋହୁଥିବ ତରଙ୍ଗ ମାଳରେ ।
ବନ ଦେବତାଏ ଲତା ଦୋଳା ପରେ
ବସିଣ ଚାରୁଆଁ ଅଚଳ ଶିଖରେ ।
ସୁଲଳିତ ଗୀତ ଗାଉଛନ୍ତି ଆଜ
ଟୀକାୟତଙ୍କର ଜନ୍ମୋତ୍ସବେ ମଜ୍ଜି ।
ଜଳଧୌତ ମାଳ ବକ୍ଷରେ ଲମ୍ବାଇ
ଉଚ ବୀଚରବେ ହୃଦେ ମୋଦ ଦେଇ ।
ସିଂହଦ୍ୱାର ପାଖେ କଳକଳ ସ୍ୱରେ
ବ୍ରାହ୍ମଣୀନଦୀ ଆହା ସଙ୍ଗୀତେ ମଧୁରେ ।
ଜେଜେ ନାତିଙ୍କର କରେ ଯଶୋଗାନ
ଆଜ ଉତ୍ସବରେ ହୋଇଣ ମଗନ ।
ତାଳଚେର ରାଜବଶ ଅନୁକୂଳା
ଗୋପାଳପ୍ରସାଦେ ଦେବୀ ମା ହିଙ୍ଗୁଳା ।
ଏ ସମ୍ବାଦେ ହୋଇ ସୁଖୀ ଅନ୍ତଃସ୍ଥ
ପୂଜୁଛନ୍ତି ଟୀକାୟତଙ୍କର ଜନ୍ମ ।
ସ୍ୱର୍ଗରେ ଆହା ଶଙ୍କର ଉପରେ
ବଜେ ହୋଇଛନ୍ତି ବାଳକା ରୂପରେ ।
ଦିଗମ୍ବରୀ ଶକ୍ତି ଆଡକୁ ଧାଇଁଛି
ସବୁରେ ତାହାର ସ୍ୱର୍ଣ୍ଣସୁଖ ଲକ୍ଷ୍ମି ।
ତାଳଚେର ଧର ଖଣ୍ଡରୁ ମଙ୍ଗଳ
ଦେଉଥାନ୍ତୁ ଏହି ଦେବ ସଦାକାଳ ।
ଆଜ ଟୀକାୟତ ଜନ୍ମହେବା ଦେଖି
ମନରେ ଏଦେବ ସିନା ମହାସୁଖୀ ।

ସଦାବେଳେ ଧରି ଦେଶସେବାବ୍ରତ
ଗତକାଳରେ ଯେ ସାଧୁଅଛି ହିତ ।
ଆଜ ଝୀକାସ୍ତୃତ ଜନ୍ମ ହୁଦେ ଭରି
ଦେଇ ବାସିନୀ ହର୍ଷେ ଉଡାଉଛି ହୁର ।
ଭୋଇଙ୍କ ଖଣିରେ ଶ୍ୱେତାଙ୍ଗ ନବର
ମତ୍ୟସଙ୍ଗେ ଖାଇ ସୁପକ୍ୱ ଶୀକାର ।
ଉଙ୍ଗେ ନାଚ୍‌ନାହାନ୍ତି ଖାଇ ଜବେ
ଝୀକାସ୍ତୃତ ଜନ୍ମ ହୃପ୍‌ହୃପ୍‌ହରେ ।
ବେଙ୍ଗାଲ ନାକଠୁଁ ବରପାଲ ଯାଏ
ଏହୃପରି କେତେ ରଙ୍ଗ ଶୋଭପାଏ ।
ଉଙ୍ଗାଲସ୍ନେ ପଶି ଲକ୍ଷଣ ସାର୍ଦ୍ଦେଶ୍ମି
ଅଭିନସ୍ନେ କେତେ କରୁଛନ୍ତି ଅଣ୍ଣି ।
ମାସ୍ତା ଶବଶ୍ୱର ଫଳେ ଗୋପାଳଙ୍କୁ
ବଉତାଲ ଆହ୍ୱା ଭେକାଳଣ ତାଙ୍କୁ ।
ସଙ୍ଗୀତାସ୍ତା ପରେ ପ୍ରେମିମାନଙ୍କର
ଅନୁସରଣକୁ କରନ୍ତି ଧିକ୍କାର ।
ପଣ୍ଡିତାଙ୍କର ବଡ଼ାଲଣ ଠେକ
ଲମ୍ପଠକୁ ମାରୁଅଛନ୍ତି ଗ୍ଳୁରୁକ ।
ଗଉଡ଼ ନାକରେ ବାଡ ଧରି କରି
ଦୁଆଠାରେ ହେଉଥିବେ ମସ୍ତମରି ।
ମୁଣ୍ଡ ଫାଟୁଥିବ ଖାଲି କ ତାଙ୍କର
ଗଜଦ୍ୱାରୁ ପାଇବାକୁ ପୁରସ୍କାର ।
ବିଦେଶରୁ ଆସିଥିଲେ ଏହି କାଳ
ଗଣି ନେଉଥାନ୍ତେ କେତେ ମୁଦ୍ରାଥାଳ ।
ଦଥ ଦସ ଗୁଇ ଏହାଙ୍କୁ ଉସ୍ତାହ
ଆମ୍ଭ ଦେଶର ଏ ସମ୍ପଦ ନଷ୍ଟସୃ ।
ଏମାନେ ନୃତ୍ୟର ମୟୂରଭଞ୍ଜର
ଛଉନାଚ ସମ ଦେଖାନ୍ତି ବାହାର ।
ଏ ଉତ୍ସବେ ମାତ୍ର ପାଲନାଚମାନେ
ମଣ୍ଡଳ ଆକାରେ ଭ୍ରମିଣ ସଘନେ ।

କହୁଥିବ ଆହା କେବେ ଭଙ୍ଗି ଜାତ
"ଗଳଣିତ ଗଳ୍ପ କଥା ରେ ସଙ୍ଗାତ ।"
କାବ୍ୟତୀର୍ଥ ଧରି ଜ୍ୟୋତିଷ ପେଟିକା
ଲଗ୍ନ ନିରୂପଣ କରୁଥିବେ ଏକା ।
ଘଣ୍ଟା ମିନିଟକୁ ଲକ୍ଷ କରି ସେହି
ଶୁଭ ଲଗ୍ନେ କୋଷ୍ଠି ପକାଇବେ ନେଇ ।
ଶୁଭ ଲଗ୍ନ କୋଷ୍ଠି ଅତ୍ୟନ୍ତ ଉତ୍କୃଷ୍ଟ
ମାତ୍ର କୋଷ୍ଠି ଅଙ୍କା ହୁଅଇ ଲମ୍ପଟ ।
ଭବସ୍ତିକ ପୋଥି ଜାକିଣ କାଖରେ
ଆସିଥିବେ ତର୍କଭୂଷଣ ସଙ୍ଗରେ ।
କେତେ ପାଚନ ସେ କେତେ ବର୍ଦ୍ଧମାନ
କରିବେ ବ୍ୟବସ୍ଥା ଦେଖିଣ ନିଦାନ ।
ମାତ୍ର କନ୍ତେସ୍ଥାଙ୍କଲ ବ୍ୟବସ୍ଥାଟି
ତାଙ୍କ ଉପଯୋଗ କରିଥିବ ମାଟି ।
ଭଲ ଡାକ୍ତରଟେ ଅଳ୍ପ ସମୟରେ
ପାଇଅଛ ସ୍ଥିର ଭାବଇ ମନରେ ।
ଗୋଡ଼ ଭଙ୍ଗି ଯାଇଥିଲା ଯେଉଁକାଳେ
ଏହି ଡାକ୍ତରଟି ଉପସ୍ଥିତ ଥିଲେ ।
ଘନମିଶ୍ର ସଙ୍ଗେ ମନ୍ତ୍ରଣା କରିଣ
ସେ ଯାତନା ସବୁ କରିଦେଲେ କ୍ଷୀଣ ।
ନୋହିଲେ ନିଷ୍ଠୁର ବୁଡ଼ିଥାନ୍ତା ଭେଳା
ପାଞ୍ଜି ପୋଛି ଦେଇଥାନ୍ତା ଯମଶଳା ।
ନଠ କେବେ ତୁମ ହୋଇ ଏ କାଳରେ
ରହୁ ନ ଥିବଟି ବସି ନିଜ ଘରେ ।
ଏକୋଇଶା ଶ୍ଲେଷ ପାଇଁ ଜଳାଧର
ବୁଲ୍‌ଢାର ପାଖେ ପିବନ ବାହାର ।
ନଠ ତୁହୁ ସିନା ଅଠୁ ପାଖ ଲେଖ
ମାତ୍ର ତୋ ପ୍ରତପ୍ତ ଅଠେଇ ଅଧିକ ।
ହଠକ୍ତି ଶିକାଶ୍ରି ଯେବେ ଶିକାରରେ
ସେକାଳରେ ତୁହି ମହା ଉତ୍ସାହରେ ।

ମହାବଳବ୍ୟାଘ୍ର ବଧ କରି ସଦା
ଶିକାରୀମାନଙ୍କ ରଖୁ ଥୁ ମର୍ଯ୍ୟାଦା ।
ଦଶସ୍ୱ ମାସରେ ମନ୍ତ୍ରେ ଜଗାଇ
କେତେ ସାହେବଙ୍କ ମନ ଥିବୁ ମୋହି ।
ଗଦାଧର ଏବେ କରୁଥିବ କଣ
ଗୋଳୁଥିବ ବସି ଛାଲରେ ଲବଣ ।
ବଷମ ମରିଚେ ଗୁରୁପାଣି କଞ୍ଚ
ତେଲଙ୍ଗା ମୁଲକୁ ଯେଣୁ ସେ ଆସିଛି ।
ଲଗିଥିବ ଧୂମଧାମର ଯମକ
ଷଠିଘର ପରେ ଦାଢିଆ ବପ୍ପଙ୍କ ।
ବାସନାରେ ଯାଉଥିବ ତରଛପି
ଚଠାଙ୍କର ଲାଳ ପଡ଼ୁଥିବ ଥୁପି ।
ସ୍ୱେଷ୍ଟ ଅମଲେଟ୍ କଟଲେଟ୍ କରି
ଭକ୍ଷ୍ୟ ଦ୍ରବ୍ୟ ପେଟ ଯାଉଥିବ ଭରି ।
ନାଉ ଯେବେ ଏହା ଜନ୍ମରୁ ଶୁଣିବେ
ଫାଙ୍କଲମାନଙ୍କ ବଣ ନ ରଖିବେ ।
ଏଥି ଉପସ୍ଥିତ ହେଲେରେ ରଚକ
ଖୁସିହୋଇ ଦେଖି ଥାଆନ୍ତ ଯମକ ।
ସୁନ୍ଦର ହଳଦ ଖେଳ ହୋଇଥିବ
ଗୁଜବାଣୀ ଯାର ସ୍ରୋତେ ଭସିଯିବ ।
ଥନ୍ତଳ ପେଟିଆ ବେବର୍ତ୍ତା ବୁଢ଼ାଟି
ସେ ଖେଳେ ଭୂମିରେ ପଡ଼ୁଥିବେ ଲୁଟି ।
ଯହିଁ ମାଉ ଘୋଡ଼ା ଗ୍ରମ ମାରର୍ଡ୍ୟାଣ୍ଡ
ଦେଉଥିବେ ପାଣି ସଭଙ୍କି ଅଜାଣ୍ଡ ।
ଗଛ ଲତାଙ୍କର ମାଚ ଛଡ଼ଦେଇ
ମାଉଥିବେ ନଷ୍ଟେ ଏ ରସେ କନ୍ଧାଇ ।
ବୁଢ଼ା ଗଉଠର ଶୁଣିଏ ସମ୍ବାଦ
ନିଶ୍ଚୟ ମନରେ ହେବେ ଗଦଗଦ ।
ବୁଢ଼ାହେଲେ ସୁଦ୍ଧା ହଳଦ ଖେଳରେ
ଯୁବାପରି ଗତି କରିବେ ଭୂତରେ ।

ପ୍ରକୃତରେ ତେଜ ଅଟେ ଦାଶରଥି
ହସି ହସି ମାତ୍ର କହେ ସେ ଭରତ ।
ବିବାହ ବାହୁଡ଼ା ବେଳେ ଏ ରାଜ୍ୟର
ଶାନ୍ତି ରକ୍ଷା କରିଥିଲେ ଭଗବନ ।
ଆଜି ଏ ଉତ୍ସବ ପୂର୍ଣ୍ଣ ପାଣିଖେଳ
କହିଥିବ ତାଙ୍କ ଦ୍ୱିଗୁଣରେ ବଳ ।
ଅଧିକେ ଲଗାଇ ଥିବେଟି ଯମକ
ଖେଳ ପଡ଼ିଆରେ ଶ୍ରେଣୀ ପିଲାଯାକ ।
ପଟି ତହିଁପିନା ସୂତଧାର ପରି
ଧରିଥିବେ ସବୁଙ୍କର ସୁଗଂଡୋରି ।
ଡେଇଁବେ ସକଳେ ମହା ପ୍ରୟତନେ
ମାତ୍ର ପଟିତାଙ୍କୁ ଛୁଇଁବେ ଚରଣେ
ଧାଇଁବେ ସକଳେ ଲକ୍ଷି ଲକ୍ଷ୍ୟସ୍ଥଳ
ମାତ୍ର ବଳିପିବ ପଟିଙ୍କର ବଳ ।
ବାଇକଲର ଯେ ସ୍ନେହ ଛାଡ଼ିଦେଇ
ଦଉଡ଼ିବେ ଲଦ କରି ଦୁଇ ଦୁଇ ।
କେ କାହାକୁ ଜଣା ଦୁହନ୍ତ ବଳରେ
ଧାଇଁବେ ପାଦ ଚଳାଇ ବେଗରେ ।
ତେଲ ଘସିଥିବା ବାଉଁଶେ ସଘନେ
ଝଣ୍ଡା ନେବାପାଇଁ କେତେ ମଲ୍ଲମାନେ ।
ତେଜିଣ ଉଠିବେ ମାତ୍ରକ ତେଲିଆ
ବାଉଁଶରେ ସବେ ହୋଇବେ ହାଲିଆ ।
ପାଖେ ବଛାହୋଇ ବଡ଼ ଶ୍ରେଣୀଙ୍କେ
ଅନ୍ୟ ପାଖେ ବଛା ଥୋକାଏ ପାଇକେ ।
ବିଷମ ବଳରେ ଓଟାରିବେ ରସି
କେ ଜାଣିବ କିଏ କାହାକୁ ଜିଣୁଛି ।
ସବୁ ବଳଦେଇ ଟାଣିବେ ରସିକୁ
ନିଶ୍ୱାସ ବାହାରି ପଡ଼ିବ ପେଟାକୁ ।
ସନ୍ଧ୍ୟାକାଳେ ଆହା ପିଲାମାନଙ୍କର
ସଙ୍ଗୀତ ଧ୍ୱନିରେ କମ୍ପିବ ନଗର ।

କଇ ବୋଲ୍‌ଅଛ ଏକ ଭଲ ଝିଅ
ସଙ୍ଗୀତ ବିଦ୍ୟାରେ ପ୍ରବୀଣ ସେ ଥିଲା ।
ଏବେ ଟୀକାୟୁତଙ୍କର ଜନ୍ମପାଠ
ଗୀତରେ ତାହାର ଫିଟିଥିବ କଣ୍ଠ ।
ମହେଶ ଦିନକୁ ଦିନଯାଏ ଶୁଖି
ଏ ଉତ୍ସବେ ନଷ୍ଟେ ଉଠିବ କଳଙ୍କ ।
ଫୋନଗ୍ରାଫ ଯନ୍ତ୍ରେ ଟୀକାୟୁତଙ୍କର
ଜନ୍ମ ଉତ୍ସବକୁ ଗାଇବ ନଙ୍କର ।
ଆଉଗୋଟେ ବିଦ୍ୟା ଶିଖିଛନ୍ତି ସେହୁ
ଫଟୋଗ୍ରାଫ ଯନ୍ତ୍ର ପାରନ୍ତି ଚଳାଇ ।
ଦିନେ ଆମ୍ଭ ଫଟୋ ଭୁଲଇଁଲେ ଯାହା
ଅତ୍ୟନ୍ତ ଅଭୁତ ଦିଶୁଥିଲା ତାହା ।
ଲବ୍ଧଇ ସେହୁ ଯନ୍ତ୍ରେ ସାହାଯ୍ୟ
କରିବାରୁ ସିନା ହେଲେ କୃତକାର୍ଯ୍ୟ ।
ବାବୁ ଜଗ୍‌ମୋହନ ଅଛୁ କେଉଁଠାରେ
ଭୂହିତ ପାଠୁଆ ଅଟ୍ଟ ତାଳଚେରେ ।
ଗାଇପକା ବାବୁ ଗୋଟାଏ ସଙ୍ଗୀତ
ଜନ୍ମଛନ୍ତି ମଗ ଶ୍ରୀ ଟୀକାୟୁତ ।
ତୋର ବାପଙ୍କୁ ଏପରି କାର୍ଯ୍ୟକୁ
ଗାଉଥିଲା ଗୀତ ରଖି ମର୍ଯ୍ୟାଦାକୁ ।
ଅରେ ଅରେ ଯାହା ମିଳେ ଚପେଟିକା
ସ୍ନେହର ସନ୍ଦେଶ ଅଟେ ତାହା ଏକା ।
ଏଣୁ ନୃପ ତାଙ୍କୁ ବଡ଼ ସ୍ନେହ କରି
ରଖିଥାନ୍ତି ପାଖେ ହାସ୍ୟରସେ ଭରି ।
ଏଣୁ ଅପରଙ୍କ ଈର୍ଷାକୁ ନ ଡରି
ଆମ୍ଭ ସଙ୍ଗେ ସେହୁ ମିଶିଥାଏ ଭରି ।
ସହାସ୍ୟ ଯାହାକୁ ସଦା ନବଘନ
ନିରଦାନେ କର୍ପା ହେବ ସେ ଭୂଷଣ ।
ଆଗୋ ମାମା ତୁମ୍ଭେ ବଡ଼ ଭାଗ୍ୟବତୀ
ଦେଖିଲତ ଦିବ୍ୟନେତ୍ରେ ପଣନାଉ ।

କିଶୋରଚନ୍ଦ୍ରଙ୍କୁ ପୁତ୍ରରୂପେ ପାଇ
ତୁମ୍ଭ ଦୁଃଖ ଯାଇଥିଲା ଦୂରହୋଇ ।
ପୁଣି ନାତିରୂପେ ହୃଦୟଚନ୍ଦ୍ରଙ୍କୁ
ପାଇ ଆନନ୍ଦିତ କରୁଥିଲ ମନକୁ ।
ପଣନାତି ଏହୁ ସବୁ ଶିକ୍ଷାଯୁକ୍ତ
ସଂସାରେ ଏହାଙ୍କ ବଢ଼ିବ ମହତ୍ତ୍ୱ ।
ନିଜ ବୁଦ୍ଧିବଳେ ଅର୍ଜିବେ ସମ୍ପତ୍ତି
ତାଙ୍କ କେତେ ପର ଉଡ଼ାଇବେ କୀର୍ତ୍ତି ।
ମୋର ପ୍ରିୟବନ୍ଧୁ ଆହେ ମିଶ୍ର ନନା
କେଉଁଠାରେ ଅଛ ଏକାଳେ କହନା ।
ତୁମ୍ଭେ ଆମ୍ଭେ ବନ୍ଧୁକାଳୁ ବଡ଼ ସଙ୍ଗୀ
କାହା କଥା କେହୁ ନ ପାରୁ ହେ ଲଙ୍ଘି ।
ବନ୍ଧୁ ଉପଦେଶ ତୀର୍ଥ ମହାଶୟ
ଦେଲେ ମଧ ତାହା ହୋଇଗଲା ଲୟ ।
ତୀର୍ଥଙ୍କ ବୁଦ୍ଧିରେ ଘଣ୍ଟି ବଜାଇବା-
ଠାରୁ ଶ୍ରେୟସ୍କର ସର୍ବଦା ଖାଇବା ।
ପରକାଳ ପାଇଁ କେତେ ଡରଇବେ
ସେ କଥାରେ ଶଙ୍କା ନ କରିବ ଲବେ ।
ଅବା ଯେବେ ଥିବ ଚଳସ୍ତୁପ୍ରଠାଏ
ତହିଁକି ମୁଁ ନନା କରିବ ଉପାୟେ ।
ବିଶ୍ୱାମିତ୍ର ପରି ତୁମ୍ଭର ପାଇଁକି
ସର୍ଜନା କରିବ ନୂତନ ସୃଷ୍ଟିକି ।
କାଳଙ୍କ ପ୍ରସାଦ ମଲ୍ଲବେଳେ ନେଇ
ଅକ୍ଷୟ ସ୍ୱର୍ଗରେ ବସିବ ହେ ଯାଇ ।
ପଚାଲ୍ଲ କୁତକୁ ପ୍ରସାଦ ପରସ୍ତୁ
ସଙ୍ଗେ ଭେନପିବେ ତୀର୍ଥ ମହାଶୟ ।
ଗନ୍ଧୁଥିବ ତହିଁ ବସିବ ହେ ବେଢ଼
ଫଳାଇବେ ଭଟ୍ଟେ ହୋଇ ଉଦମ୍ବତ ।
ଏଣୁ ତନ୍ତୁଁ ପଳାଇଣ ସେ ଝଟତ
ଧରିବେ ଶ୍ରେଷ୍ଠ ବ୍ରହ୍ମଦଣ୍ଡ ମୁଦଗର ।

ଗୋଟେ ଗୋଡ଼ ଝଡ଼କୁଠ ଯୌଧେ ଠେକ
ଅନ୍ୟ ଗୋଡ଼ ଦେବ ଢାଲୁକ୍ରୁମେ ରଖି ।

ମହା ଆନନ୍ଦରେ ମାଉବେ ଭୂହାଠ
ଲଯ୍ସରେତ ସଙ୍ଗେ କଲବେ ଲଢାଠ ।

ସେ କାଳରେ ବ୍ରହ୍ମଲୋକେ ଦକ୍ୟରଥେ
ଏହା ଦେଖୁଥିବ ମିଶାଣୀ ସହିତେ ।

ଦୁଖିଆ ଭୂମ୍ବର ଛନ୍ଦ ଧରଥିବ
ଭଜନା ଗ୍ଭମର ସଢାଉଣ ଥିବ ।

ଏହା ଛନ୍ଦ ନନା କମ୍ପାଇ ମିଛରେ
ଘଣ୍ଟି ବଜାଇବ ଗର୍ଗଙ୍କ କଥାରେ ।

ଆହେ ନଠବର ଗଦାଧର କାହ୍ନୁ
ଭୂମ୍ବର ମହମା ଆମ୍ଭେ ଭଲ ଜାଣୁ ।

ମିଶାଣୀ ସହିତେ ମିଶ୍ରେ ରଥେ ବସି
ଗଲବେଳେ ବଳେ ରଖିବ ଆକର୍ଷି ।

ଢକ୍ଷପଦେ କର ଏଭକ ମାଗୁଣି
ରହସ୍ୟ ଗୀତକା ଶେଷ କଲ ଆଣି ।

ନେଉଛୁ ମେଲଣି ନନା ମହାଶୟ
ବଞ୍ଚିଥିଲେ ଦେଖା ହୋଇବ ନିଶ୍ଚୟ ।



# ପ୍ରାପ୍ତିସ୍ୱୀକାର

ନାତିଙ୍କର ଏକୋଇଶା ମହୋତ୍ସବ
ଚଉଦତାରିଖ ସହେ ଶୈଷଙ୍କ ।
ଲଳିତ ମୋହନ ମୃଣପାଳ ହର୍ଷେ
ହିନ୍ଦୋଳ ମଣ୍ଡନ ଏ ଉତ୍ସବ ରସେ ।
ସହର୍ଷ ହୃଦୟେ ଆସିଛନ୍ତି ଧାଇଁ
ଆଜି ଏ ଉତ୍ସବେ ଯୋଗ ଦେବା ପାଇଁ ।
ନାତିଙ୍କର ସ୍ନେହେ ଅଜା ଆଉ ମାମୁ
ଉପସ୍ଥିତ ଆଜି ସୁଦୂର ଗଞ୍ଜାମୁ ।
ଶ୍ରୀ ସୌଭାଗ୍ୟଚନ୍ଦ୍ର ଶୁଭନାମ ଜାଣ
ହେଲା ନାତିଙ୍କର ସେ ନାମକରଣ ।
ସ୍ୱେତ ବାଦ୍ୟସ୍ତୋତ୍ର ନାନା ନୃତ୍ୟ ଗୀତ
ଉତ୍ସବେ ରଜନୀ ହୋଇଲା ଅତୀତ ।
ପ୍ରାତୁଁ ଉଠି ଏକ ମଧୁମୟ ଗୀତ
ପାଇଲି କେବଳ ରହସ୍ୟ ପୂରିତ ।
ଦେବଗଡ ଠାରୁ ଆସିଛି ବହନ
ଗୀତନୁହେ ତାହା ପ୍ରୀତି ପ୍ରସ୍ରବଣ ।
ହେଲେ ଅନାମିକା ଜଣାପଡ଼େ ସ୍ପଷ୍ଟ
ଢୋଲ୍ମଧେ କାହିଁ ଲୁଚପାରେ ମୂଷା ।
ବାହାରିଛି ଯେଉଁ ଲେଖନୀ ଅଙ୍କାଦେ
ତାହା ସିନା ଅଟେ ସ୍ନେହର ପ୍ରସାଦେ ।
ତଟିନୀ ଭୋଗଣୀ ନିର୍ଝରଣୀ ଜଳ
ସଂଯୋଗେ ହୋଇଛି ସ୍ୱର୍ଗ ଅନର୍ଗଳ ।
ବ୍ରାହ୍ମଣୀ ଅଟୁଛି ବଡ ଭାଗ୍ୟବତୀ
ଯାହା ଯୋଗେ ସବେ କେଡ଼େ ବଡ ମତ ।

ଚଚନ ସ୍ୱରଣ ଯାଯୋଗୁଁ ପ୍ରକାଶ
କବିଙ୍କୁ କୌତୁକ ଲଭୁଛି ବକାଶ ।
ସବୁକଥା ଯିବ ସଂସାରରୁ ଗୁଳି
ଏହାମାନ ନାମ ରହିଥିବ ଖାଲି ।
ସେହି ନାମ ମାନ ଅମର ଅକ୍ଷରେ
ଲେଖା ହୋଇ ରହିଥାଏ କବିହୃଦରେ ।
କବିଙ୍କ ମାଧୁରୀ କବିହୃଦର ଛଟା
ଯାହାବନା ଲଭିଥାନ୍ତା ହଠହଠା ।
ଯେ ଗୁଣଗ୍ରାହକ ଥାଇ ଦୂରଦେଶେ
ଜପୁଚନ୍ତି ନାମ ସଦା ମନୋଲ୍ଲାସେ ।
ମଧୁପର ମତ ଗୁଞ୍ଜନ ବୃହୃସି
ନ ବଢ଼ାଏ କି ସେ ପୁଷ୍ପ ସାରଣିରୀ ।
ତଟିନୀ କୂଳର ଟେଗା ଉଜ୍ଜ୍ୱଳ ମଣି
ସୁମର ଅଛନ୍ତି ଆଜ କବିମଣି ।
ଲେଖିଛନ୍ତି ଗୀତ କେତେ ପ୍ରୀତିଭରେ
ପୁଲକେ ହୃଦୟ ଶୁଣି ଶ୍ରବଣରେ ।
ନାଭ ଜନ୍ମୋତ୍ସବ ବର୍ଣ୍ଣନାକୁ ଭ୍ରବ
ବ୍ରାହ୍ମଣୀ ଉଦ୍ଦେଶେ ଯାଇଛନ୍ତି ଦ୍ରବ ।
ଦେଖାଇଛ ସ୍ୱଭ କେତେ ଚତୁରତା
ଭରେ ଲୁଚିରହୁ କେତେ ଦାମ୍ଭିକତା ।
ନାଚ ନାଚ ବୋଲି ଛଡ଼ିଅଛ ସ୍ୱର
କିନ୍ତୁ ନାଚ ହେବ କାହା ସଙ୍ଗ ଧରି ।
ବୁଢ଼ା ପାଣିପିଆ ସମ୍ବଳୀ ଆମ୍ବର
ଉଣା ନୁହନ୍ତି ସେ ରସିକ ଶେଖର ।
ବଳାସିନୀ ଗଣେ ସନ୍ତତ ଚେଷ୍ଟିତ
ଗମ୍ଭୀର ନବାସୀ ସେ ଗମ୍ଭୀର ଚିତ୍ତ ।
ନାଚନ୍ତି ସେ ତାଙ୍କ ସଙ୍ଗେ ଦବାନିଶି
ଆମ୍ଭସଙ୍ଗେ କାହିଁ ପାରିବେ ସେ ମିଶି ।
ସମ୍ବଳଣୀଙ୍କର ଅଟେ ମୁହିଁ ନନା
ତାଙ୍କ ସଙ୍ଗେ ନାଚ ଅଟେ ବିଡମ୍ବନା ।

ଆସିଛନ୍ତି ଯେଉଁ ଅଷ୍ଟପାଠବଣୀ
ନ ଆସନ୍ତି ଚେହ୍ନ ମୋପାଖେ ହରଷେ ।
ଆସିବାକୁ ଭଲେ ନାହିଁ ଅବସର
ବେଶଭୂଷାରେ ତ ସନ୍ତତ ତତ୍ପର ।
ତଇଲଙ୍ଗ ବେଣୀ ମାଙ୍ଗ ସ୍ୱଙ୍ଗ ଠାଣି
ନେଇଥାନ୍ତା ନଷ୍ଟେ ତୁମ୍ଭମନ କଣି ।
ଏହିବେଶ ଦେଖି ମିତ ହେଲେ ବାଇ
ଅନୁସରି ଥାନ୍ତି ତାକୁ ଯେତେକେ ଗାଇ ।
ରଖିଥାନ୍ତି ତାକୁ ନେଜ ଅଭ୍ୟନ୍ତରେ
ଝୁଲିବାକୁ ତାଙ୍କ ପଣନ୍ତ କାନରେ ।
ମିତଙ୍କର ମନ ତୋଷି ସେବା ବ୍ରତେ
ଯଥାକ୍ରମେ ସେହି ଖଟନ୍ତି ନିତୁତେ ।
ଏଣୁ କି ବିଷାଦ ଆସଇ ମନକୁ
ଆସି ନ ପାରିଲ ସ୍ୱଇ ଯା ଏଠାକୁ ।
କରି ପାରିଥାନ୍ତି ଏସବୁ ପ୍ରତ୍ୟକ୍ଷ
କଇହୁଳି ବାଣୀ ସ୍ୱରି ଲକ୍ଷ ଲକ୍ଷ ।
ତହିଁ ମମତା ଛାଡ଼ିଦେଇ ସବ
ବନ୍ଧିଥାନ୍ତି ଏମାନଙ୍କ ଗଉରବ ।
ନାଚିଥାନ୍ତି କରେ ଦେଇ କରତାଳି
ଗାଇଥାନ୍ତି କେତେ ଗୀତ ନଉଛଳି ।
ଏମାନେ ତୁମ୍ଭର ଆଗମନ ପାଇଁ
କେତେ ଆଗ୍ରହରେ ଥିଲେ ବାଟ ଚାହିଁ ।
ବୃଥା ହେଲା ଆଶା କରିଛନ୍ତି ଖଳ
ଡଗର ମନରେ ଦେଉଛନ୍ତି ଗାଳି ।
ତୁମ୍ଭ ଅକ୍ଷରରୁ ଏହକାର୍ଯ୍ୟ ବାକି
ଆଶାଅଛି ହେବ ବର୍ଷ ପୂରଣିକି ।
ଧନ୍ୟ ତୁମ୍ଭଆଶା ବନ୍ଧୁ ଧନ୍ୟବାଦ
ନାଇଁକି ସହିତ ସ୍ୱସ୍ତ୍ୱର ବାଦ ।
ନାଶ ତୁମ୍ଭ ଆମ୍ଭ କଳିର କାରଣ
ହେବ ନାହିଁ ବୋଲି ଯା କର ଆପଣ ।

ଯେତେବେଳେ ଆମ୍ଭମାନଙ୍କ ସଙ୍ଗରେ
ଚଣା ଚଣି ଖୁବ ହେବ ସ୍ୱୟମ୍ବରେ ।
ପ୍ରତିଦ୍ୱନ୍ଦ ସବୁ ମେଣ୍ଟାଇବା ପାଇଁ
ଷଠଙ୍କୁ ନାଥଙ୍କୁ ଭେଟାଇବା ନେଇ ।
ଶଚଡାଙ୍କୁ ମାଳା ନ ଦେଲେ ଲମ୍ବାଇ
ନାତସିନା ପିବେ ଅପମାନ ପାଇ ।
ତର୍ଦ୍ଦିରେ ଆମ୍ଭର କିଛି ଲଜ୍ଜା ନାହିଁ
ହସୁଥିବା ଆମ୍ଭେ କରତାଳି ଦେଇ ।
ନଳ ଫଣୀତୁଣ୍ଡ ପ୍ରତାପ ସକଳ
ତୋଷିବା ନାଥଙ୍କୁ କହୁ ଅନର୍ଗଳେ ।
ଭଲ ଆଶା ହିଁ ଏ କରିଛ ମନରେ
ନାଥଙ୍କ ସଙ୍ଗତେ ଭ୍ରମିବ ମଠରେ ।
ବୃଥା ଆଶା ତ୍ୟଜ ନାତ ମହାଶୟ
ଆମ୍ଭମାନଙ୍କର ପାଇ ତୋତାଶ୍ରୟ ।
ସେହି ଉତ୍କମୟ ସୁଖମୟ ତାଙ୍କ
ଛତ ନ ଆସିବେ କେବେ ତୁମ୍ଭ ପାଖ ।
ଇନ୍ଦ୍ରାଣୀ ଯେ କାଳେ ଛାଡୁଥିବେ ଦ୍ୱାର
ଆସ ଆସ ନାଥ ମୋହ ପାଶେ ଫେରି ।
କହୁଛ ଅଜସ୍ରଁ ଭାବୁଛ ମନରେ
ଶୀଘ୍ର ମିଶିବ ନାଥଙ୍କ ସଙ୍ଗରେ ।
ପାଚିଲା କେଶକୁ କଳା କରିଦେବ
ଦାନ୍ତ ପଡ଼ି ଗଲେ ଦାନ୍ତ ବସାଇବ ।
ତର୍କଭୂଷଣଙ୍କ କାମେଶ୍ବର ବଟି
ଖାଇବାକୁ ଆହୁଁ ରଖିଲଣି ଲୁଟି ।
ବାଙ୍ଗର ଖଣ୍ଡିଆ ଅଠନ୍ତି ସେ ପେଣୁ
ବୟସ କଳନା ନପଡ଼ଇ ତେଣୁ ।
ମିଶି ପାରିବେ ସେ ନାଥଙ୍କ ସଙ୍ଗରେ
ଉଚକ ଭାବଇ ଆପଣା ମନରେ ।
ଏସବୁ କରିବା ପାଇଁ ଯେବେ ପାଞ୍ଚ
ଯମ ଚଳାଠାକୁ ଦେବା କିଛି ଲାଞ୍ଚ ।

ପାଞ୍ଜିସହ ଯାଇ ଟର୍ଣ୍ଣ ମହାଶୟ
କରିବେ ସେ ଚନ୍ଦ୍ରଗୁପ୍ତଙ୍କ ସହାୟ ।
ଏଥିରେ ଯଦ୍ୟପି ନ ଲଭିବା ଫଳ
ଦେଖାଇବା ପୁଣି ଭଣ୍ଡାଇଁର ବଳ ।
ମୁଣ୍ଡରେ ପ୍ରହାର ଦେଇ ମଙ୍ଗାଇବେ
ନୋହିଲେ ଟି ନାକ ଭୂମିରେ ଘଷିବେ ।
ଏଥିରେ ସଫଳ ନହେଲେ ନନ୍ଦନ
ଆବଟେ ଡାକିବା ପ୍ରଭୁ ଭଗବାନ ।
ଯାହାଙ୍କ ପ୍ରସାଦେ ଆଜ ଏହି ଫଳ
ଯାହାଙ୍କ ପ୍ରସାଦେ ଚକ୍ଷେ ଅସେ ବଳ ।
ଯାହା ଦୟା ଯୋଗେ ଏହି ରାଜପୁର
ଦୁଃଖ ତନ୍ତ୍ରାସବୁ କରିଅଛି ଦୂର ।
ଯାହାଙ୍କ ପବିତ୍ର ନାମ ଅବିରତ
କଳ କଳ ନାଦେ ବ୍ରାହ୍ମୀ ଗାଏ ଗୀତ ।
ଊର୍ଦ୍ଧ୍ୱମୁଖ ଠେକି ଉତ୍ସାହ ଲହରୀ
ଦେଖେ ବାରିଚଳ ସ୍ନେହଆଦ କରି ।
ସେହି ଦୟାମୟ କରୁଣାବତ୍ସଳ
ନିଶ୍ଚୟ ସହାୟ ହେବେ ଦେଇ ବଳ ।
ନାଥସହ ଅମ୍ଭମାନଙ୍କୁ କଲ୍ୟାଣ
କରିବେ ସେ ଆମ୍ଭ ଆନନ୍ଦ ବର୍ଦ୍ଧନ ।



# ସୁଖସ୍ୱପ୍ନ

—:o:—

ସ୍ୱର—ସମଦେଶୀ

ଜାତମସ୍ତୁ ଏହି ହେମନ୍ତ
କାହୁଁ ଆସିଲା ମାତ
ସଜାଙ୍କ ଧରିଲୁ ସଘନେ
ବେଢିଲାଣି କୁହୁଡ଼ ।
କୁହୁଡ଼ରେ ବୁଡ଼ି ଶ୍ୟାମଲ
ବନ ଭୂମି ଅଂଚଳ
ଦିଶୁଛନ୍ତି ଚଉଦଗରେ
ଏବେ ପାରଦବତ ।
ଟପଟପ ତରୁଡାଳରୁ
ଟୁପୁଛନ୍ତି ଶିଶିର
ଶୀତ ଅସ୍ତ୍ର ନେଇ ପଡ଼ୁଛି
କିବା ଧରି ଦେବୀର ।
ଶୀତେ ଦେହ ଥରି ଯାଉଛି
ଲୋମ ଉଠେ ଠାକୁର
ଶୀତବସ୍ତ୍ର ପାଇଁ ଏକାଳେ
ସଦା ପଡ଼ୁଛି ହୁର ।
ଦରିଦ୍ରେ ଦୁଃଖରେ ସକଳ
କଥା ପାଶୋରି ମନୁଁ
ସେବା କରୁଛନ୍ତି ଏକାଳେ
ଜାନୁ, ଭାନୁ, କୃଶାନୁ ।
ଅମ୍ବରେ ସେବା ତରଣି
କର କର ତାମ୍ବୁଳ

ଦ୍ୱଗୁଇ ଯାଉଛ ଅଲଗା
ହୋଇ ଦନ୍ତର ମୂଳ ।
ସେମାନେ ଶୀତଳ ପାଣିକୁ
ଉଷ୍ମ କରି ଅଗ୍ନିରେ
ପ୍ରାତଃ କୃତ୍ୟ କରୁଅଛନ୍ତି
ଅତି ବିଷାଦ ଭରେ ।
ଏ ଶୀତ କାଳର ବିଷାଦ—
ମନ୍ଦ୍ର ସ୍ୱରରେ ମୁଦ୍ଧି
ଶୀତ ବସ୍ତ୍ର ମଣ୍ଡି ସର୍ବାଙ୍ଗ
ଥିଲି ସୁଖରେ ଶୋଇ ।
ଭାଙ୍ଗିଦେଲା ନବ ଉତ୍କଟ
ତୋପବାଜିର ନାଦ
ତନ୍ଦ୍ରାଭଙ୍ଗେ ଆଗେ ଦେଖିଲି
ମନେ ଗଣି ପ୍ରମାଦ
ସୁବର୍ଣ୍ଣ ଝୁଲରେ ମଣ୍ଡିତ
ହୋଇ ବାରଣଗଣ
ତୋରଣ ପାଖରେ ଦିଶନ୍ତି
ମୂର୍ତ୍ତି ମନମୋହନ ।
ଠନ ମୁଣ୍ଡ ସେହୁ ଶୁଣ୍ଢାଳ
ଗଜ ହେମ ଝୂଲରେ
ଜଳନ୍ତ ଦାବାଗ୍ନି ଲାଗିଲା
ପରି ଗିରି ଶିଖରେ
ବଙ୍କ ଗ୍ରୀବ ଅତି ଚଞ୍ଚଳ
ରମ୍ୟ ତୁରଙ୍ଗ ବାର
ଲଗାମକୁ ଧରି ତାପରେ
ବସିଛନ୍ତି ସବାର ।
ବାଡ଼ି ଖେଳେ ମାଡ଼ ଗଉଡ଼-
ମାନେ ବାଡ଼ିକୁ ଠେଲି
ପିଠାପିଠି ହେଉଅଛନ୍ତି
ପରସ୍ପରକୁ ଢେଲି ।

ଫର ଖଣ୍ଡା ଧର ଖାଇଲେ
ଅଡ଼ଚସ୍ୱ ମରଣ
ଖେଳୁଛନ୍ତ ଫର ଲୁହାଟେ
ସୁରୁଅଛି ଗଗନ ।
ସମୁଦ୍ର ତରଙ୍ଗ ପରଏ
ଥରେ ଥରେ ସେଣଲେ
ସର୍ଣ୍ଣାଜାରେ ଘୂରୁ ଅଛନ୍ତ
ଦାଶରଥି ଇଙ୍ଗିତେ ।
ଦେଖି ଏହି ମନ ମୋହନ
ନବ ଦୃଶ୍ୟ ସକଳ
ସ୍ୱଳଳ ନଣ୍ଡଳ ମଜରେ
ଅଟେ ଏ କେଉଁସ୍ଥଳ ।
ନକ୍ଷତ୍ରମ୍ବି ଜଳ ବରଣ
ଏଥି କେଉଁ ପ୍ରାସାଦ
ମେହେରବ ପର ତୋରଣ
ଆଗେ ଦଶେ ଢଷଦ ।
ଢଳୁଛର ସ୍ୱପ ଅଲୋକ
ଶୋଭେ ପ୍ରଭ ମନ୍ଦରେ
ସେ ଆଲୋକ ରଣି ସୁଷମା
ନାଚେ ବ୍ରାହ୍ମଣୀ ନୀରେ ।
ପ୍ରଦୀପ ମାଳନୀ ତଟିନୀ
ବହୁ ବଷରେ ଭରି
ଅକାଶରେ ଛାୟା ପଥର
ଶିଶ୍ରି ନଅଭ ହର ।
କପିଁ ଅଛ ଏହି ଭବନେ
ଶୁଭେ ଏତେ ଚହଳ
କପିଁ ଅନନ୍ଦରେ ଭ୍ରମନ୍ତ
ନରନାରୀ ସକଳ ।
ନାଗରୀଏ କପିଁ ସର୍ବାଙ୍ଗ
ମଣ୍ଡି ଅଳଂକାରରେ

ଚହଳିଉଛନ୍ତି ନଗର
 ନିଜ ରୂପ ପ୍ରକାଶେ ।
ପିନ୍ଧିଏ ଚଟକ ବସନ
 ପିନ୍ଧି ଆନନ୍ଦମନେ
ଗୀତ ଗାଉଛନ୍ତି ବଜାରେ
 ତାଳଦେଇ ବହନେ ।
ରାଜଦ୍ୱାର ଠାରୁ ଆଠଣା
 ଯାଏ ପତାକା ରାଜ
କପାଇଁ ମୃଦୁଳ ପବନେ
 ଧୀରେ ଉଡ଼ୁଛି ଆଜ ।
ଘୁମ୍ ଗୁମ୍ କଁସା ଶୁଭୁଛି
 ଉଠେ ବମ୍ ଶବଦ
ଜଣାଏ ନାଥଙ୍କ ବାର୍ଷିକ
 ଏହା ଜନ୍ମ ଉତ୍ସବ ।
ଯାହାଙ୍କର ପାଇଁ ଏସବୁ
 ହୋଇଅଛି ଘଟନ
ତାହାଙ୍କୁ ଦେଖିବା ପାଇଁକି
 ମୋର ବଳିଲା ମନ ।
ସିଂହଦ୍ୱାର ବାଟେ ବହୁତ
 କଷ୍ଟେ ଜନତା ଠେଲି
ପ୍ରାସାଦ ସୋପାନ ଶ୍ରେଣୀରେ
 ଶୀଘ୍ର ଯାଇ ଉଠିଲି ।
ଅଗ୍ରସର ହୋଇ ଦେଖିଲି
 ନାଥ କୁତୂହଳରେ
ରହିଛନ୍ତି ହର୍ଷେ ଶ୍ରୀମନ୍ତ
 ଚମା ପାନି ବୋଲରେ ।
ନବନୀରୁ ବଳି କୋମଳ
 ନାଥଙ୍କର ଶ୍ରୀଅଙ୍ଗ
ଉଦ୍ଧରେ ଖେଳା କରଇ
 ଲାବଣ୍ୟର ତରଙ୍ଗ ।

ଚନ୍ଦ୍ର କିରଣରୁ ଚୌଦରେ
ସୁଧା ଉଠିଲା ଝରି
କାଲି ସୁକୁମାର ଶସ୍ୱରେ
ଖେଳେ ଶୋଭ୍ୱଲହସି ।
ଯୋଷାମଣି ଚମ୍ପା ଆଜି ତ
ପ୍ରସ୍ୱବରେ ସେ ବୁଡି
ନାଥଙ୍କ ଶୈଶବ ସୌନ୍ଦର୍ଯ୍ୟ
ଭାବୁ ହେଲେ ଅଜାଡ଼ ।
ଯେମନ୍ତ ଦକ୍ଷିଣ ତାହା ମୁଁ
ନକରିବ ପ୍ରକାଶ
ଶୁଣିଲେ ଚମ୍ପକ ମନରେ
ବହୁ ପାରନ୍ତି ରୋଷ ।
କହନ୍ତି ନାଥଙ୍କୁ ସ୍ୱାମୀ ହେ
ଆସ ଥରେ ମୋ ସହ
ଦେଖାଇବ କେତେ ରହସ୍ୟ
ଭବେ କୌତୁକାବହ ।
ବହୁବନ୍ଧୁ ତାଳଚେରର
ଚିନ୍ତା ଅଟେ ମୁହିଁତ
ତୁମ୍ଭ କେତେ ସଙ୍ଗେ ବୁଲିଛ
ଗ୍ରାମ ବନ ପର୍ବତ ।
ଦେଖ ଏହୁ ମାନଚିତ୍ରକୁ
ଅଟେ ତାଳଚେରର
ଶୋଭରେ ପଣ୍ଡିତ ରୁଚିର
ସ୍ୱବୀ ରାଜ୍ୟ ତୁମ୍ଭର ।
ତୁର ପଶ୍ଚିମରେ ବାମଣ୍ଡା
ରାଜ୍ୟ ଦଣ୍ଡଛି ଯାହା
ତୁମ୍ଭ ପଣିଅଜା ସୁଚଳ
ଥିଲେ ସେଥିର ନାହା ।
ତାହାଙ୍କର କାର୍ତ୍ତି ମାଳରେ
ସେହି ରାଜ୍ୟ ପଚନ୍ଦ

ଦେଶ ବିଦେଶରେ ବିଖ୍ୟାତ
ହୋଇଥିଲା ସର୍ବନ ।
ତାଳଚେର ସହ ବିମଳ
ବନ୍ଧୁ ପ୍ରେମ ସୂତ୍ରରେ
ବନ୍ଧା ହୋଇଥିଲା ଉଭୟ
ରାଜ୍ୟ ହୃଦ ହୃଦରେ ।
ତୁମ୍ଭ ବଡ଼ ଅଜା ପ୍ରବୀଣ
ନୃପ ସଚ୍ଚିଦାନନ୍ଦ
ରାଜ ନୈତିକ ସେ ହୃଦୟେ
ଏଣୁ ବଦ୍ଭୁତ ଛନ୍ଦ ।
ସେ କୂଟନୀତିରେ ଅନେକ-
ଧନ ପାଏ କେବଳ
ଉଭୟ ବନ୍ଧୁତା ମଧ୍ୟରେ
ପଡ଼ିଥିଲା ଅର୍ଗଳ ।
ସେ କଥା ଛୁଟିଲା ବେଳକୁ
ତାହୁଁ ଆସିଣ ପାଳ
ଉଠାଇଲେ ଏକ ବିଷମ
ଗଣ୍ଡଗୋଳ ତୁମୁଳ ।
ଅନଣ୍ଡ ପଛେ କଳହ
ଥାଏ ସବୁ ସମୟେ ।
"ଉଡ଼ିଆ ମରିଲେ ଭୂତ ହୋଇ
ପାଣିଘର ବୁଡ଼ାଏ ।"
ମୃତକାଳେ ପାଳେ ଏଣୁ କି
ବନ୍ଧୁ କଳହ ପାଇଁ
ଉଭୟ ମଧ୍ୟରେ ଗୋଟାଏ
ରାଜ୍ୟ ଦେଲେ ପକାଇ ।
ଉଠିଲା ତୁମୁଳ କନ୍ଦଳ
ଭାଙ୍ଗି ବନ୍ଧୁତା ସଙ୍ଗ
ସୂତ୍ରଧାର ତହିଁ ହୋଇଲେ
କନକଙ୍କ ବଲ୍ଲଭ ।

ଧାଇଁ ଧାଇଁ ଦୂରବାଟରୁ
ଖାଲେ ଅଦର ଖାଇ
ଦନାଦେଦେ ମାନ ଖାଇଲେ
ସୁଖେ ଖଜା ମିଠାଇ ।
ସେ ସକଳ କଥା କହିଲେ
ହେବ ଗୋଟାଏ ପୋଥି
ଏଣୁ ସୁବଁଦ ଗେ ଦେଖ ହେ
ରାଜେ ଯେଉଁ ଧରଣୀ ।
ଢେଙ୍କାନାଳ ନାମ ତାହାର
ଜଟିଆର ଘଟିରୁ
କାନନେ, କେଦାରେ, ଶୈଳରେ
ଦଶେ ହେମନ୍ତ ସ୍ୱରୁ ।
ବନ୍ୟ କଣ୍ଟକୂଳ ସେ ରାଜ୍ୟ
ଅସ୍ଥି ବୁଲ୍ଲି ଝରରେ
ଧସ ହେଉଛନ୍ତି ଭ୍ରମର
ଜେଜେବାବା ଚଢରେ ।
ମାନଚନେ ନାଣ୍ଡ ଦଶୁଛି
ଦେଖ ଦକ୍ଷିଣ ଦଗେ
ଅନୁଗୋଳ ରାଜ୍ୟ ଚବଣ
ତାର ନୃପ ଦୟୋଗେ ।
ପ୍ରବଳ ବ୍ରିଟିଶ ବାହିନୀ
ସହ ଅଟଣ ରଣ
ଦୁର୍ବଳ ସେ ଦେଶ ନରେଶ
ଷଣେ ହାରିଲେ ପ୍ରାଣ ।
ସେହି ଦନରୁ ଏ ଭୂଖଣ୍ଡ
ତାର ନୃପ ହରାଇ
ବ୍ରିଟିଶ କେଶରୀ କରରେ
ସୁଶାସିତ ହୁଅଇ ।
ଉତ୍ତରକୁ ଦେଖ ଦଶୁଛି
ଗଜା ବଉଦ ପର

ନବକୁମ୍ଭି ମାଲ୍ୟଗିରର
ଅତି ଉଜ୍ଜ୍ୱଳ ଶିଖ ।
ପ୍ରବୃତ୍ତ ଦେବାର କଅବା
ଉଡ଼େ ବଜୟ ଧ୍ୱଜା
ଏଥି ଥିଲେ ନାଚ ପୂର୍ବରେ
ତୁମ୍ଭ ମଞ୍ଜୁଷା ଅଜା ।
ଉପହାସପଟୁ କନ୍ତୁ ସେ
କଛ ଆମୋଦପ୍ରିୟ
ତାହାଙ୍କୁ ଦେଖିଲେ ଶଚୀଙ୍କ
ହୃଦ ହୁଏ ଅଥୟ ।
ଭଲ ପାଠ ଓଛ ଅଧୀରେ
ଘୁମାବାଠ ମୁହଁରୁ
ଦେଖୁଥାନ୍ତ ଅଛ ନୟନେ
ତାଙ୍କ ମୁରତ ସ୍ମୃରୁ ।
ତୁମ୍ଭ ଅଜା ମୃତ୍ୟ ସେଥିରେ
ସଦା ମାରନ୍ତ ଫେଲ
ଅମ୍ଭମାନଙ୍କର କଥାକୁ
କଏ ଧରୁଛ ବୋଲ ।
ସେ ସ୍ୱର୍ଗ ଗଲେଣି ଶମନ
ତାଙ୍କୁ ନେଲଣି ଟାଣି
କଛ ଫଳ ନାହିଁ ସେ କଥା-
ମାନ ଅଛ ବଖାଣି ।
ଏହା ଶୁଣି ପାହ ବୋଲରୁ
ନାଚ ଆନନ୍ଦ ହୋଇ
ବେଳଭର ତୋଳ ମୋ ବୋଲେ
ଶୀଘ୍ର ଓହ୍ଲେ ତେଇଁ ।
ବୋଲେ ଘେଣ ତାଙ୍କୁ କହଲ
ମୃତ ହେଲଣି ବୁଢ଼ା
ବେଳ ହେବ ନାହିଁ ଦେଖାଇ
ଦେବ ସ୍ୱଳ ହେ ଯୋଡ଼ା ।

ଏହି ରମ୍ୟ ପୁରୀ ନାମ ହେ
ଦେଖ ସ୍ୱେଜନାଗର
କେତେ ବନ୍ଧୁଙ୍କର ଚଳଣରେ
ଷଣ୍ଢଅଛି ସୁନ୍ଦର ।
ଧାଡ ଧାଡ ରୌପ୍ୟ ଆଳୟେ
ଶୁଭ୍ର ସପୁର ଅଳ
ସବୁ ରୌପ୍ୟାଧାରେ ରହିଛି
ନାନା ଜାତି ବ୍ୟଞ୍ଜନ
ଦେଖି ବହୁଛନ୍ଦ ଚୌଦଣ-
ଯାକ କୁକୁର ଦଳ
ଲାଙ୍ଗୁଳ ହଲାନ୍ତି ସୁଖରେ
ମୁଖୁଁ ଝଡ଼ଇ ଲାଳ ।
କେକେଙ୍କ କୋଷ୍ଠିର ନବମେ
ଶୁଭ ଚନ୍ଦ୍ରମା ସ୍ୱଭ
ରହିଛନ୍ତି ବଡ଼ କୁକୁର
ତାଙ୍କୁ ଘଉଡ଼େ ନାହିଁ ।
ତହୁଁ ଧୀରେ ଧୀରେ ସୋପାନେ
ଦୁହେଁ ଯାକ ଉପର
ଗଜଦନ୍ତପୂର୍ଣ୍ଣ ଦେଖିଲେ
ଆଗେ ଏକ କୋଠରୀ ।
ଏହି ଘର ନାମ ଭୂମ୍ବର
କେକେଙ୍କର ବୈଠକ
ଅତମ୍ବରଣୂନ୍ୟ ଭାନ୍ତରେ
ସଜେ ପଦଥ ଶ୍ଳୋକ ।
କେଜନ୍ତ୍ର ବାହୁତ ସେବନ୍ତି
ଏଥି ସୁଡ଼ାଖି ଖାନ
ସେବାକେ ଅଗରେ ବସିଣ
ଓଡ଼ୁାସନେ ବ୍ରାହ୍ମଣ
ବହୁତ ଦେଶର ବାରତା-
ମାନ ଘାଳଙ୍କାସରେ

ଛମୁରେ ଗୋଟିଏ ଲଫଟେର
ଗୋଟେ ପ୍ରକାଶ କରେ ।
ଅଟେ ସେ ଡ୍ରେସିଙ୍ଗ ଟେବୁଲ
ଫରେ ଔଷଧସ୍ୱଚ୍ଛ
ଏଥିରେ ଲୁଟିତ ଲୁଭଲ
ମାନ ହୁଅନ୍ତି ସାଜ ।
ମଧ୍ୟ ସ୍ୱର୍ଗପୁର ଅଟେ—
ଙ୍କର ବସିବା ସ୍ଥାନ
ଧାଡ ଧାଡ଼ ହୋଇ ରହିଛି
ବହୁମୂଲ୍ୟ ଆସନ ।
ପାର୍ଶ୍ୱେ ତା କଟେଗ୍ରି, ପଛରେ
ଦଶେ ଖାନା ମହଲ
କାଡ଼ିଆ ବ୍ରାହ୍ମଣେ ଏଥିରେ
କରୁଛନ୍ତି ବହାର ।
ଦଶଟି ପାଚକ ଗୋଟିଏ
କାଡ଼ିଆର ସମାନ
ଏକାବେଳେ ଦଶଜଣଙ୍କୁ
ଖାଦ୍ୟ କରେ ବଣ୍ଟନ ।
ଗବର୍ଣ୍ଣରଠାରୁ ବ୍ରାହ୍ମଣ
ଯାଏ ଯେତେ ଅଛୁ
ସମସ୍ତଙ୍କ ପାଦ ପଡନ୍ତି
ନିଶ୍ଚେ ଆଦରେ ଏଥି ।
ଷଠିଘର ତାର ପାଖରେ
ସ୍ନାନା ଦେଖ ଝରାରେ
ତୁମ୍ଭ ପିତା ଏବେ ଏଭରେ
କରିଅଛନ୍ତି ଖଜେ ।
ସାତ ଅଛନ୍ତି ଏ ପୁରେ
ପୁଙ୍କେ ବସା କରନ୍ତି
ଶାନାଗର ଦେଶୁ ଏହୁର
ଅଛ ନଳଟଳି ।

ଏବେ ତୁମ ଜଣ ଦେବତା—
ପ୍ରିୟ ବନ୍ଧୁ ଏଥିରେ
କାବ୍ୟ ଅର୍ଥ ନେଇ କଳହ
କଲେ ପରସ୍ପରରେ ।
ବୁଝାବୁଝି ହୋଇ ଶେଷରେ
ଧସ୍ତଧସ୍ତି ହୋଇଲେ
କାବ୍ୟଅର୍ଥ ଘେନି କାମିକ
ଚୋଟ ଧୋଇ ପଡ଼ିଲେ ।
କାହିଁଗଲା କାବ୍ୟକଳାର
ସେହୁ ବଢନ୍ତ ରସ
ମନେଅଛ ପାଞ୍ଚ ସେକଥା
ନାଗ ମାତ୍ରକ ହସ ।
ମାଙ୍କଡ଼ କୌଶଳେ ନଦକୁ
ଏଥୁ ଝାଳିଲ କାଳ
ଛଡ଼ଗଲା ଏକାବେଳକେ
ସୂତ୍ର ସହ ମୃଣାଳ ।
ଏ ଦୋଠର ଶଙ୍ଖଚରେ
ରମ୍ୟ କମଳା ବନ
ଫଳରେ ନତ ଆଦର
ମାନେ ହରନ୍ତି ମନ
ହରିତ ଫଳରେ ସମୀରେ
ଦୋଳ କମଳା ବଲ୍ଲୀ
ଇକ୍ଷ୍ମ-ରଙ୍ଗିଣୀ ତାମାଙ୍କ
ଶୋଭା ନେଉଛି କଣ ।
ଏହାପାଶେ ଥିଲ ପୁଟରେ
ନାଗ ଶ୍ରେଷ୍ଠାର ଘର
ପିଚୁ ବାଳଗୋଳ ସେଷ୍ଟରେ
ଥିଲ ହେଉ ସୁପାର ।
ତାଳ ଗଛ ସମ ଉଳତ
ମହା ଦସ୍ୟୁ ମୂର୍ତ୍ତି

ଜଣାନ୍ତ ବାଳକେ ,ବସ୍ତ୍ରରେ
କେବେ ତାହାର କଥା ।
ଭାର୍ଯ୍ୟା ବଗାଡ଼ରେ ଫିଟିବା
ଯାଉଁ ତାହାର ଘାଲେ
ସହସ୍ର ଯାଇ ଭ୍ରମର
କେବେ ଠାଣେ ଚେଉଁଣେ ।
ଖୋଳପଛ ଏବେ ପଛିରେ
ବେବଶିଙ୍କ ଅଙ୍ଗିସ
ମନୋହର ଚମ୍ପା ମଣ୍ଡପ
ଜାଣେ ଥିଲା ଏ ବାସ ।
ଆକାଶ ଢାଙ୍କେ ବାଦ୍ୟ ନାଦରେ
ଏଥି ବୃଦ୍ଧ ମୟୂର
ସୁମୋହନ କେତା ନାଦରେ
ପୂର କରେ ମୁଖର ।
ଜର୍ଜର ସୁନ୍ଦର ମଣ୍ଡପ
ପଟେଦ୍ଧୂତ ବାରଣୀ
ନାରଣ ଆସରେ ପଡ଼ଣ
ଦନେ ସରଥିଲଣି ।
ବଙ୍କା ତୋଳନ୍ତ ବୃକ୍ଷରେ
ନାଚ ନ ଯାଅ ଅଣେ
ବାହାରକୁ ପିବା ବନ୍ଧୁତ
ମଜା ଅସ ନେ ବେଶେ ।
ମାତ ବାହାରବା ଅଗରୁ
ଭୁଲଦେବୀ ଭ୍ରମର
ଭଙ୍ଗ ଦେବତାଙ୍କୁ ସ୍ୱସ୍ତି ନେ
ଯାଉ ଡୁହାର ଢର ।
ଗାଉଛନ୍ତି ତହିଁ ଗାୟତ୍ରୀ—
ମାନେ ଶୁଭ ସଙ୍ଗୀତ
ବୃଦ୍ଧ ବୃକ୍ଷମାନେ ଉଦ୍‌ଗ୍ରୀବେ
ଶୁଣନ୍ତି ସେ ଗୀତ ।

ଶୁଭ୍ର ବସ୍ତ୍ର ପିନ୍ଧ ଆଗରେ
　　　　ଦେଖ ବଡ ମହିମା
ଦୟା ଧର୍ମମାନ ହୃଦୟେ
　　　　ହୋଇ ଅଛନ୍ତି ଜମା ।
ଆଜ ତୁମ୍ଭ ଜନ୍ମ ବାର୍ଷିକୋ-
　　　　ତ୍ସବେ କେତେ ଆନନ୍ଦେ
ମିଷ୍ଟାଳାପ କରୁଅଛନ୍ତି
　　　　ହୃଦୟର ଗଦ୍‌ଗଦେ ।
ତୁମ୍ଭ କେତେ ଆମା ପୂର୍ବଜ
　　　　ନୃପବର ନନ୍ଦନା
ରୂପେ ଗୁଣେ କୁଳେ ଅଟନ୍ତି
　　　　ସଭିଙ୍କର ଅଗ୍ରଣୀ ।
ସୌଭାଗ୍ୟପୂର୍ଣ୍ଣ ପୂର୍ଣ୍ଣ ବଧୂଙ୍କୁ
　　　　ପାଇ ତାଙ୍କର କୋଳେ
ତୁମ୍ଭଙ୍କୁ ନରେଖି ନାଥହେ
　　　　ଛନ୍ତି ଆନନ୍ଦ ସ୍ରୋତେ ।
ତାଙ୍କ ପାଖେଛନ୍ତି ବାମଣ୍ଡା
　　　　ଆଉ ମାନେ ତୁମ୍ଭର
ଅଙ୍ଗର ସ୍ୱଜନ୍ୟ ମହିଳା
　　　　ମାନେ ନାନା ସ୍ଥାନର ।
ଦେଖି ନାହିଁ ମୁହିଁ ସେଭଳି
　　　　ନ ପାରିବ ଚାହାଁଇ
ଆଗେ ଏ ବ୍ରାହ୍ମଣୀ କୋଳରେ
　　　　ବଏ ଛୁଟି ବଶଇ ।
ତୁଟିଲ ବାଙ୍ଗର ଅଥବା
　　　　ହୃଦେ କେଣି ଛଇଲ
ହୃଦେ ଅଛ ମୋଟି କ ଅବା
　　　　ହୃଦେ ଦହୁଥାଉଛ ।
କେତକ୍ଷ ଦରନା ନଷ୍ଟନା
　　　　ମନ ସାଚି ପିଣ୍ଡଣ

ସଙ୍ଗୀ ସମ୍ପଦାର ସଙ୍ଗମ
ପର ଦେଶେ ମୋହନ ।
ଦେଇଅଛି ମାଙ୍କ ସ୍ୱର୍ଗରେ
ବାଲା ସିନ୍ଦୂର ଗାର
ଲହରି କୁଞ୍ଚିତ କୁନ୍ତଳ
ଜିଣି ଲୋଟୁଛି ତାର ।
ଥରେ ଥରେ ରଙ୍ଗେ ନର୍ତ୍ତନା
ହସି ହସି ଅନାଏ
ଆଖି ସବୁଜରେ ଭ୍ରୂଲତା
ଦେବ ନମ୍ର ଦଏ ।
ଏହାଙ୍କୁ ଅନାଇଁ ରହିଲେ
ସ୍ୱପ୍ନ ଟଳବ ନାହିଁ
ଭୁଲିଯିବା ଏଥୁଁ ବହୁତ
ଅଛି ଦେଖିବା ପାଇଁ ।
ଏହି ଯେ ଦେଖୁଛ ଆଗରେ
ତାହା ନାଟ୍ୟସଦନ
ରଜନୀରେ ଏହା ଦୃଶ୍ୟ
ଅତି ମନମୋହନ ।
ଏଥି କାର୍ଯ୍ୟକର ଚଳାନ୍ତି
"ରାମଚନ୍ଦ୍ରଙ୍କ ରାସ"
ନାଟଗୁରୁ ନାଟ୍ୟ ରସରେ
ସଦା ତନ୍ମୟ ସେହି ।
କେବେ ଏଥି ମାୟା ଶବରୀ
ଓଢେ ଧାର୍ମିକ ହର
କେବେ ଦଶାନନ ସୀତାଙ୍କୁ
ରଥେ ନିଅଇ ହରି ।
କେବେ ଦୁଷ୍ମନ୍ତଙ୍କ ଦରବେ
ଶକୁନ୍ତଳା ରୂପସୀ
ଦୁଃଖେ ନେହ ଭଲ ତେଜନ୍ତି
ଏହି ମଞ୍ଚରେ ବସି ।

କେବେ ବା ମୋହନୀ ବେଶରେ
ମୁଗ୍ଧ ହୋଇ ଶଙ୍କର
କଉତୁକ ଲଭା ଲକ୍ଷ୍ମୀରୁ
ଛଡ଼ ଚାଲା ଓଢ଼ର ।
କେବେ କୈକେୟୀର କୁହକେ
ଓଢ଼ ଅଯୋଧ୍ୟାନାଥ
ବନବାସେ ପେଷି ରାମକୁ
ଶୋକେ ହୁଅନ୍ତ ବ୍ୟସ୍ତ ।
ନାନା ଅଭିନୟେ ଏରୂପେ
ଏ ମନ୍ଦରେ ସ୍ୱନ୍ଦରେ
ସଙ୍ଗୀ ସକଳ ବର୍ଣ୍ଣନ
ମନ ନୟନ ହରେ ।
ଏବେ ମଜା ନାହିଁ ଏଥିରେ
ଆରେ ଦେଖ ସଦନ
କେତେ ଶହଶହ ଲୋକରେ
ଅଛ ଦର୍ଶେ ସେ ସ୍ଥାନ ।
ସବେ କଣ ଅଛ ଯେଠାରେ
ଦେଖୁଅଛନ୍ତି ରୁଣ୍ଡ
ତୁରକୁ ଦଣ୍ଡୁଛି କେବଳ
ମାତ୍ର ମନୁଷ୍ୟ ମୁଣ୍ଡ ।
ଅବଲମ୍ବେ ତୁହେଁ ସେ ପୁରେ
ଶୀଘ୍ର ହୋଇଲୁ ପାର
ଭଣ୍ଡାଳା ନାଟକୁ ଏ ପୁର
ଦରବାର ଅଟଇ ।
ଧାଡ଼ ଧାଡ଼ ବେଢ଼ ଆସନ
ଅର୍ଦ୍ଧଚନ୍ଦ୍ର ଆକାରେ
ଶୋଭୁଅଛି ଚାଟ ଗୋଲକ
ମାନ ଭାଗ୍ୟ ପ୍ରକାରେ ।
ତଳେ ବହୁମୂଲ୍ୟ ଚାର୍ପେଟ
ଉର୍ଦ୍ଧ୍ୱେ ବଡ଼ସ୍ୱରୂପ

ଦୂପର ଖାଗରେ ଅଲଖେ
ବେନ ହୋଇଲେଁ ଠିପ ।
ବେଶଭୂଷା ହୋଇ ବହୁତ
ସଭ୍ୟ ତହିଁ ଅସନେ
ବସିଥିଲେ ଯେଝା ଅସ୍ଥାନ
ଓରେ ଅନନ୍ଦମନେ ।
ଉତ୍ସବରେ ମତ୍ତ ସଭିଏ
ତହିଁ ବିଷାଦ ନାହିଁ
ଗୋଟି ଗୋଟି ଭଣ୍ଡ ନାଚକୁ
ମୁହିଁ ଦେଇ ଚାହାଇ ।
ଏହୁ ଯେ ଦେଖୁଛ ଅଗରେ
ବସି ହେମ ଅସନେ
ଭଙ୍ଗିତରେ ସବୁ ଚରଣ
ଭରୁଛନ୍ତ ମଞ୍ଚନେ ।
ଢେଙ୍ଗା ବପ୍ରବର ମୁଣ୍ଡରେ
ଖଞ୍ଜି ଉଚ୍ଚଳୀ ଖାଗ
ଯାଙ୍କ ଭାନଖାଶେ ଥବକୁ—
ଥବ ଦପନ୍ତ ଯୋଗ ।
ଜରି ପୋଷାକରେ ଶରୀର
ମଣ୍ଡି ବୁଢ଼ା ହେଲେହେଁ
ବହୁ ଆଭରଣ ନଜର
ଖଞ୍ଜା ହୋଇଛି ଦେହେ ।
ବ୍ୟାଘ୍ର ମୂରଡକୁ ବହନ
ଅଗେ ଉଡୁଛି ଧ୍ୱଜା
ତୁମ୍ଭ କେଜେ ବାବା ଏହୁ ଯେ
ଭାଲଚେରର ରାଜା ।
ଅଷ୍ଟ ବାଉଁଶାଏ ମାରିଲେ
ବୁଦ୍ଧି ଖେଳାଇ ବଳ
ଅବସ୍ଥାର ଭଲେ ଭୁଷଳୁ
ବହୁମୂଲ୍ୟ ଭୋଇଲ ।

ଦନା କେତେ ପରେ ଏଥିରେ
ନାହିଁ ଟିକିଏ ଶଙ୍କା
ଗଦାଗଦା ଆଣି ଘରରେ
ଭର୍ତ୍ତି କରିବେ ଟଙ୍କା ।
ଏହାଙ୍କ ଗୌରବ ଗାରିମା
ଟେକ ହୃଦରେ ଧରି
ତୁମ୍ଭ ଡାଲଟେର ଉତ୍କଳେ
ହେବ ଜାପାନ ପରି ।
ତାଙ୍କ ପାଖେ ଶୁଭ୍ର ମୂରତି
ଶିଳା ସ୍ତମ୍ଭ ସମାନ
ଦଶୁଛନ୍ତି ଯେଉଁ ରସିକ
ଶିର ଚୁମ୍ବେ ଗଗନ ।
ଗଞ୍ଜାମ ନିବାସୀ ସୁନ୍ଦର
ବଡଗଡ଼ ନାୟକ
ଦେଖ ନିକଟରେ ଅଛନ୍ତି
ଯୋଦ୍ଧା ଜନ ପାଏକ ।
ଖଟଣି କାଙ୍କର ଚତୁର
ଚନ୍ଦ୍ର ବ୍ରଜସୁନ୍ଦର
ଦ୍ୱନ୍ଦପ୍ରିୟ ସଦା ପାଖରେ
ହେଉଛନ୍ତି ଫର୍ଫର୍ ।
ଦାକ୍ଷିଣାତ୍ୟବାସୀ ଏମାନେ
ଭାଇ ସିନା ପୁର୍ବରେ
ସାହା ହୋଇଥିଲେ ସମସ୍ତଙ୍କୁ
ସୀତାଙ୍କର ଉଦ୍ଧାରେ
ସୁକୋମଳ ଶଯ୍ୟା ଅତର
ପାନ ଫୁଲମାଲରେ
ନୃପଙ୍କ ବିଳାସ ବାସନା
ପୂରେ ସଦା ବେଳରେ ।
ଗଞ୍ଜାମ ଗଗନ-ଚନ୍ଦ୍ରମା
ସ୍ୱର୍ଗ ଅପ୍ସରା ପରି

ଅଷ୍ଟାଦଶବର୍ଷୀ ସେବନ୍ତ
ଯାଙ୍କୁ ହୃଦୟୁଁ ଭର ।
ଦାକ୍ଷିଣାତ୍ୟ ବେଶ ଭୂଷାରେ
ମଣ୍ଡିଅଛନ୍ତି ଚୂଡ଼ା
ଶୋଭଇ ମଞ୍ଜୁଳ ମସ୍ତକେ
ବଡ ତେଲଙ୍ଗି ଜୁଡ଼ା ।
ମାଙ୍ଗ ସଙ୍ଗେ ବହୁ ଅଳକା
ପାଟି କର୍ଣ୍ଣରେ ଫୁଲ
ନାକେ ହୀରା ଦଣ୍ଡି କଣ୍ଠରେ
ଗଜେ ମୁକ୍ତାମାଳ ।
କରେ ରତ୍ନଚୂଡ଼ କଟିରେ
ମଞ୍ଜୁଳାଦ ମେଖଳା
ଶରୀରେ ସୁବର୍ଣ୍ଣ କାଞ୍ଚୁଲି
ପାଦେ ବାଜେଣି ବଳା ।
ଏ ଆଦ ବଚନ ଭୂଷଣା
ଯୋଷାମଣିଙ୍କ ମେଳେ
ତୁମ୍ଭ ଅଜା ବରଗଡରେ
ଦନ ନଅନ୍ତି ହେଲେ ।
ମାତ୍ର ଜାଣେ ମୁହିଁ ଯେ କାଳେ
ଏହୁ ଅଷ୍ଟ ମହୃଷି
ମୁହିଁ ଲକ୍ଷ୍ମଣାଇ ନାଟ ହେ
ମାନେ ଯାଆଁନ୍ତି ବସି ।
ସେ କାଳରେ ଉଡ଼ି ଯାଏଟି
ଚେତା ତୁମ୍ଭ ଅଜାର
ହ୍ୱାଲିଆ ହୋଇଣ ବସନ୍ତ
କଥା ହୁଦେ ବାହାର ।
ଉଡ଼ଯାଏ ତାହୁଁ ସେ କାଳେ
କ୍ଷଣେ ଆମୋଦ ମିଠା
କୁଆର ଉଠିଲେ ତା ସହ
ନାଟ ଆସଇ ଭଠା ।

ତାଙ୍କ ସହ ଯେଉଁ ପାତଳ
ଚନ୍ଦ୍ର ହାସ୍ୟ ବଦନେ
ଏକ ଯୁବା ଭୂପ ଆନନ୍ଦେ
ବସିଛନ୍ତି ଆସନେ ।
ପାଖେ ଶୂରଦେଓ ରହିଣ
ଦେଉଛନ୍ତି ମନ୍ତ୍ରଣା
ଚଷମା ନ ଥିଲେ ଆଖିରେ
ଯେହ୍ନେ ହୁଅନ୍ତି କଣା ।
ସେ ତୁମ୍ଭର ଅଜା ଅଟନ୍ତି
ନାତ୍ତ ମାତୃ କୁଳର
ଶାଳବନାକୀର୍ଣ୍ଣ ଝଡ଼୍ଖୋଳ
ରାଜ୍ୟ ତାହାଙ୍କ ଘର ।
ଗୌରାଙ୍ଗିନୀ ପ୍ରିୟ ଧବଳ
ଚନ୍ଦ୍ର ମହା ଉତ୍ସାହି
ନର୍ତ୍ତକୀ ଘଡ଼ଆ ମାଳରେ
ଅନୁସରନ୍ତି ଯେହ୍ନି ।
ନାରିକେଳ ବନେ ସୁନ୍ଦର
ମହାସିନ୍ଧୁ ବେଳାରେ
ବାଉଁଶିଆ ମୃଗ ପଛରେ
ଯେହ୍ନେ ଧାଆଁନ୍ତି ଖରେ ।
ପ୍ରାସାଦ ଗବାକ୍ଷେ ବସିଣ
ଯେହ୍ନେ ମହୋଦଧିର
ତରଙ୍ଗର କୀଡ଼ା ଦେଖନ୍ତି
ଆହା କେଡ଼େ ସୁନ୍ଦର ।
ରାଜା ବଜାଇଲ୍ଲ ପରଏ
ସିନ୍ଧୁ ଆନନ୍ଦେ ଗର୍ଜି
ଯାହାଙ୍କର ନିଦ୍ରା ସକାଳୁ
ଶୀଘ୍ର ଦଅଇ ବର୍ଜି ।
ଅଲଙ୍ଘ୍ୟ ସାଗର ଲଙ୍ଘିଣ
ଯେହ୍ନେ ଯୁରୋପେ ଯାଇ

ନାନାରୂପେ ନିଜ ଟେକକୁ
ଦେଉଛନ୍ତି ବଢ଼ାଇ ।
ହିନ୍ତାଳ ବନରେ ମଞ୍ଜୁଳ
ଏହି କନକା ଭୂପ
ତୁମ୍ଭ ଜେଜେଙ୍କର ସହିତ
ତାଙ୍କ ସ୍ୱର ମିଳାପ ।
ଜଳସ୍ରୋତ ପରି ସୁନ୍ଦର
ବଦନରୁ ଯାଙ୍କର
ଅନର୍ଗଳରୂପେ ଇଂରେଜୀ
ଭାଷା ହୁଏ ବାହାର ।
ମୃଗୟା ବିନୋଦୀ ଆଳାପୀ
ସଦା ସତ୍‌କାର୍ଯ୍ୟକାରୀ
ବୃଦ୍ଧ କଳେବର ସାହସେ
ମାନ୍ଦ କେଶରୀ ପରି ।
ତୁମ୍ଭର ପିଉସା ନରେଶ
କୁରୁପାମ୍ ରାଜ୍ୟର
ବହୁମୂଲ୍ୟ ଡ୍ରେସ କେମନ୍ତ
ଦେହେ ଦଣେ ବାହାର ।
ମାଲ୍ୟଗିର ଅତି ସୁନ୍ଦର
ପାଳକୁଳ ଭୂପାଳ
ଶାନ୍ତଶୀଳ ଅତି ଧନସ୍ୱୀ
ବର୍ଣ୍ଣି ଜଣେ ରସାଳ ।
କୋଷ୍ଟ-ରୋଧକାରୀ-ମାଙ୍କଡ଼ା-
ନନ୍ଦୀ-ନୀର-ପାନରେ-
ପରିପୁଷ୍ଟ-ତନୁ-ସେବକେ
ଛନ୍ତି ତାଙ୍କ ସଙ୍ଗରେ ।
ସୁଶୀଳ ସୁବୋଧ ବିଦ୍ୱାନ
ସଦା କାର୍ଯ୍ୟତତ୍ପର
ଜଗତ କଲ୍ୟାଣ ସ୍ୱଜନ
ଦେଖ ତୁମ୍ଭ ପିଅର ।

ଗମ୍ଭୀର ମୂରଛା ପଣ୍ଡିଙ୍କ-
ସହ ଅଛନ୍ତି ବସି
ଶରୀର ପ୍ରଭାରେ ଉଠୁଛି
ଚଉଦଗ ଝଲସି ।
ଦୁଇ ଭାଇ ଏବେ ବରଷେ
ହେଲା ବିଦ୍ୟାଧ୍ୟୟନ
ଶେଷ କରି କରୁଅଛନ୍ତି
ହେଲେ ରାଜ୍ୟ ଶାସନ ।
ପିତାଙ୍କ ସୁଦୀର୍ଘ ଶାସନ
ମଣ୍ଡି ଆଦର୍ଶ କରି
ବେନଭାଇ ଏବେ ଶୁଣନ୍ତି
ପ୍ରଜାଙ୍କର ଗୁହାରି ।
କୁଳ ବୃଦ୍ଧ ତାଳଚେରର
ଏହି ବଡ଼ସାମନ୍ତ
ଅବସର ନେଇ ଶାସନ
କାର୍ଯ୍ୟ ଏବେ ଏକାନ୍ତ ।
ହଲେ ଚଡ଼ାମାଙ୍ଗି ତୁଳସୀ
ମାଳ ହାତେ ଗଡ଼ାଇ
ଭକ୍ତଙ୍କୁ ସ୍ମରି ମୁକୁନ୍ଦ
ବାଟ ଲୋଡ଼ନ୍ତି ଭାଇ ।
ଏ ଦୁହିଁର ଅଜା ଆଗରେ
ଦେଖ କୃପାବାରିଧି
ତାଙ୍କ ସହ ବସିଅଛନ୍ତି
ଜରି ପୋଷାକ ପିନ୍ଧି ।
ଯାଙ୍କ ସହ ନାନା ବିଦେଶ
ଗଲେ ଦୂର ଦେଶରେ
ଖାଇବା ନିମନ୍ତେ ପଡ଼ିବ
ଲୋକ ହଠହଠାରେ ।
ଦାଢ଼ିଆ ବାପୁଙ୍କ ପରଶା
ଏଡ଼ୁ କରନ୍ତି ଛି ଛି

ତାର୍ଠୀ ବ୍ରାହ୍ମଣର ରକ୍ଷାରେ
ସଦା ଏହାଙ୍କ ରୁଚ ।
ଅନ୍ୟ କ୍ଷୁଦ୍ର ଅଜା ବୃନ୍ଦର
ନାହି ତାଙ୍କ ପାଖରେ
ଖଟଂମୂର୍ତ୍ତି ବସିଅଛନ୍ତି
ଲୁଚ ସ୍ୱର୍ଣ୍ଣାସନରେ ।
ସୁବୁଦ୍ଧି ତାଙ୍କର ଅନେକ
କଥା ପାରନ୍ତି କହି
କଥା କହୁ କହୁ କ୍ଷଣକେ
ମାତ୍ର ଉଠନ୍ତି ଚଳି ।
ଅନ୍ୟ ଏକ ଅଜା ବର୍ଷେକ
ଆଗେ ଦେବଗଡର
ଶିକାରରେ ଭାଙ୍ଗି ଯାଇଛି
ତାଙ୍କ ଦନ୍ତ ପଯ୍ୟୁର ।
ତେୟାଳିଶ ବର୍ଷ ସ୍ୱାଧୀନ
ସ୍ୱଚ୍ଛେ କଟାଇ କାଳ
ଶେଷରେ ଗୋଲାମି କରଣ
ଲଭିଛନ୍ତି ଏ ଫଳ ।
ଏହାଙ୍କର ସ୍ୱର ମିଳାପି
ଖଡମାଳ ଗୋସାଇଁ
ବେଳେ ବେଳେ ଯାହା ବୁଢ଼ାଙ୍କୁ
ସୁଧା ରୁଚଇ ନାହିଁ ।
ଏ ମିଳନ ସବୁ କାଳରେ
ନାହି ରହିବ ଠିକ
ଅଲଗ ଅଲଗ କରିଣ
ନେବ ଶମନ ଝିଙ୍କି ।
କି କଥା କହୁଅନ୍ତି ଏମାନେ
ତାଙ୍କୁ ଜଣାଉ ଥିବ
କେବେ ଏମାନଙ୍କ ଜଳ୍ପନା
ନାହି ସରଇ ନାହିଁ ।

ଠା ବାହୁଡ଼ାରୁ ଭ୍ରମର
କେତେ ଫେରୁ ଘରରେ
ଆଗ୍ରମ କରନ୍ତି ଓଲଙ୍କେ
ବସି ମନ ସୁଖରେ ।
କାଷ୍ଠାସନେ ଆଗେ ବସନ୍ତି
ସେହି ଅଜା ଭ୍ରମର
ପଦ୍ମାସନେ ତାଙ୍କ ଆଗରେ
ଆସି ବସେ ମୁଦର ।
କଣ ଯେ କରନ୍ତି ଏମାନେ
ଗୋଟେ ଦୁଇଠାଯାଏ
ଅବରତ ହର୍ଷହିଲ୍ଲୋଳେ
ପୁର ଉଛୁଳିଥାଏ ।
ଜମ୍ବୁ, ନଠ, ବେନ ନଦ୍ରୀରେ
ପଡୁଥାନ୍ତି ଲୁଲ୍‌ହ
ଥରେ ଥରେ ପାଗ୍ ସହିତେ
ବେଙ୍ଗସ୍ୱର ଶୁଭଇ ।
ଉପରେ ଉପରେ ଦେଖିଲେ
କିଛି ନ ଯିବ ଜଣା
ମାତ୍ର ବେଳେବେଳେ ଏଥିରେ
ମାତ ହୁଏ ତର୍କଣା ।
କେବେ କାବ୍ୟ ରସ କେବେ ବା
ସଙ୍ଗୀତର ତରଙ୍ଗ
କେତେବେଳେ ଉଠେ ନଦ୍ଦୋଷ
ରହସ୍ୟର ପ୍ରସଙ୍ଗ ।
ଚନ୍ଦ୍ରରେ କଳଙ୍କ ପଗ୍ଏ
କଣ ଯୋଡାଏ ବହି
ତାହାଙ୍କ ପାଖରେ ମହେଶ
ଚନ୍ଦ୍ର ବସି ଅଛନ୍ତି ।
ଧବଳ ଶରୀର ପାତଳା
ତାଙ୍କ ଲମ୍ବ ପସ୍ୱର

ଏଣେ ତେଣେ ଫେଡ଼େ ଗମନ
କଲେ ଜେଉଁ ସତ୍ୱର ।
ବୁଦ୍ଧିମାନ ମାତ୍ର ଟିକିଏ
ତାଙ୍କ ଚଞ୍ଚଳ ମତି
ଗୋଟେ କଥାଛଡ଼ ଗୋଟାଏ
କଥା କହୁ ବସନ୍ତି ।
କିଛି ନ ଜାଣିଲା ପରାଏ
ଦେଖ ଦେଖ ମଉନେ
ନଶ୍ରିହରେ ଲବ ସାମନ୍ତେ
ବସିଛନ୍ତି କେସନେ ।
ଭିତରେ ଭିତରେ ବଦନେ
ଫୁଟିଅଛି ହରଷ
ରହିରେ ବୁଲିବା ଏହାଙ୍କ
ଅଛି ସାମାନ୍ୟ ଦୋଷ ।
ଖଡ ଖଡ ଦେହ ଚଞ୍ଚଳ
ମତ୍ତ ଯୁବା କାଳଅ
ସଭଙ୍କର ସବୁ ଲାଗନ୍ତି
ଏହୁ ବଡ଼ କଳହା ।
ଖୋଜି ଖୋଜି ନାନା ସ୍ଥାନରେ
ମିଶ୍ରେ ହେଲେଣି ଖାଜ
କେହୁ ବାଲାମଣି ଏହାଙ୍କ
ରୂପେ କୁହନ୍ତି ରଜା ।
ସାନ ଝିଅ ଖାଣ୍ଟୁ ଅତ୍ୟନ୍ତ
ତାଙ୍କ ବାହାର ଛଟା
ଗୋଡ଼ୁ ମୁଣ୍ଡଯାଏ ପୋଷାକେ
ମଣ୍ଡିଥାନ୍ତି ଦହଠା ।
ଦଣ୍ଡେ ବେଳଯାଏ ଶୁଅନ୍ତି
ସଦା କାମକୁ ଡର
ବଳ ବେରଣାକୁ କଦାପି
ନ ହୁଅନ୍ତି ବାହାର ।

ସଙ୍ଗୀତ ରସିଆ ଭସ୍ମାକ୍ତ
ଏହି ଭଳି ସାମନ୍ତ
ଦଶନ ଘଷିବା ଭସ୍ମରେ
ନ ହସନ୍ତ ଏକାନ୍ତ ।
ଆଜି ହୁଡ଼ାଫର ଶିରରେ
ଶୋଭେ ବଚନ ତେଢ଼
ବହୁତ ମେଳାପି, ଅଛନ୍ତ
କିଛି ଇଂରେଜ ଫିଡ଼ି ।
ଉଠନ୍ତ ବସନ୍ତ ସଦା ଯେ
ସେହି ପରମ ଖୁସି
ଅନ ବିଶ୍ୱାସୀଙ୍କୁ ଆଦର
କରେ ଅନ ବିଶ୍ୱାସୀ ।
ସ୍ୱାର୍ଥପର ନରମାନଙ୍କ
ବାକ୍ୟେ ସବୁ ଢଦର
ରଘୁରାଜ ପର ମୁହପାତ
ମାତ୍ର ଅଛନ୍ତ ବଶ ।
ଘରଦ୍ୱାର ସ୍ୱଷ୍ଟ ବ୍ୟବସା
ସବୁ ଲଗଇ ପିତା
କଣ ସେ ବୃତ୍ତାନ୍ତ ତାହାଙ୍କୁ
ଜଣା ନାହିଁ ସେ କଥା ।
ଉତ୍କଳ ପ୍ରସିଦ୍ଧ ବଞ୍ଚନା-
ସ୍ୱର୍ଣ୍ଣ ଯୋଗେଶ ଗ୍ରନ୍ଥ
ବସିଛନ୍ତ ଦେଖ ତା ପରେ
ତାଙ୍କ ପ୍ରିୟ ତନୟ ।
ବଡ଼ ଆମୋଦଏ ନାଶ ମୁଁ
ଚାହୁଁ ଅଛି ଏହାଙ୍କୁ
ସାରଥିଲେଣି ତ ଅନେକ
ଜଟିଦାର ବୁଢ଼ାଙ୍କୁ ।
ସେଦନ ଯେମନ୍ତ କୌଶଳେ
ହୋଇଥିଲା ପରୀକ୍ଷା

ଦୁର୍ଗାଙ୍କୁ ସୁମର କେବଳ
ଭୁତେ ପାଇଲେ ରକ୍ଷା
ପ୍ରାଣ ଖୁବାଯାଏ ଆଜ୍ଞ ସେ
ନ ଯିବେ ସେ ବାଟରେ
ଧନାଢେଢେ ନିଜ ଘରରେ
ସୁଦ୍ଧା ଜମିଲେ ଡରେ ।
ସଭ୍ୟଙ୍କ ପାଖରେ ସ୍ୱେଚ୍ଛାରେ
ବସିଛନ୍ତି ଆସନେ
କହୁ ନ ପାରନ୍ତି ତାହାଙ୍କ
ନାମ ମୁହଁ ନ ଜାଣେ ।
ଚଷମା ଯୋଡାଏ ନାକରେ
ଥୋଇ ପୁଣ ମାନସେ
ଦାମୋଦର ବାବୁ ପ୍ରଥମ
ଶ୍ରେଣୀ ମାଜିଷ୍ଟ୍ରେଟ ସେ ।
ପ୍ରକୃତ ସାହିତ୍ୟ ସେବକ
ସଦା ଧର୍ମରେ ମତ୍ତ
ଚିଦାନନ୍ଦ ମୂର୍ତ୍ତି ଧ୍ୟାନରେ
ଅନୁକ୍ଷଣେ ଦେଖନ୍ତ ।
ବାଦ ପ୍ରତିବାଦୀ ସାନ୍ତ୍ୱନ
ଏବେ ଜଡାନନ୍ଦ
ଲେଖୁଛନ୍ତି ପଦ୍ମ କାବ୍ୟର
ନାହିଁ ଟିକିଏ ଗନ୍ଧ ।
ଶୁକ୍ଳବସ୍ତ୍ର ଶୁକ୍ଳ କାମିଜ
ବନ୍ଧ ଶୁକ୍ଳ ସୁନ୍ଦର
ହାସ୍ୟମୁଖେ ବସିଅଛନ୍ତି
ଭଦ୍ର ଓଭରସିଅର ।
ନକ୍ଷେତ୍ର ଦଶଇ ତାହାଙ୍କୁ
ନାହିଁ କୁନ୍ତଳ ତତ୍ତ୍ୱ
ଅତ୍ୟନ୍ତ ନମ୍ରବ ପ୍ରକୃତି
ପୁଣି ଅତି ତପସ୍ୱୀ ।

ଦେଖ ଦେଖ ତାଙ୍କ ଖାନଙ୍କ
ଜାଜଳ୍ୟମାନ ଛଟା
ଭାଲଚନ୍ଦ୍ର ପରି ସଜଳ
ରକ୍ତ ଚନ୍ଦନ ଟୀକା
କଣ୍ଠଦେଶୁଁ ଲମ୍ବି ବକ୍ଷରେ
ଦୋଳେ ରୁଦ୍ରାକ୍ଷମାଳ
ପାଠର ସ୍ୱଦର ପଡ଼ୁଛି
ସ୍କନ୍ଧଦେଶୁଁ ଓହ୍ଲାଇ ।
ଜ୍ୟୋତିଷ ବିଦ୍ୟାରେ ନିପୁଣ
ଧର୍ମେ ମତି ତାଙ୍କର
ଥରେ ଥରେ ଏକା କରନ୍ତି
ଗୁପ୍ତେ ଲଗ୍ନ ବେପାର ।
ଜପତପ କରି ଅନ୍ୟଙ୍କୁ
ଲାଭ କରନ୍ତି ପୁଅ
ଗଣ୍ଡା ଗଣ୍ଡା ମାଝ ତାହାଙ୍କ
ଜନ୍ମୁ ଅଛନ୍ତି ଝିଅ ।
ପାଖେ ବସିଛନ୍ତି ଯୁବକ
ଏହି ନବ୍ୟ ବ୍ରାହ୍ମଣ
ସୁନ୍ଦର ଶରୀର ନାମ ତା
ଅଟେ ଜଗମୋହନ ।
ବହୁତ ଘୋଡ଼ାଏ ପଢ଼ିଛି
ପାଇ ବଦେଶେ ଏହି
ଧୀରେ ଧୀରେ ଉଚ୍ଚ ସାର୍ଟିଫ
ମାନ ମାଡ଼ ବସଇ ।
ପ୍ରସିଦ୍ଧ ଡୋରଲ ଶ୍ରେଣିର
ଜଦ ଫାଇଲମାନ
ତୁମ୍ଭ ଜେଜେ ତାର ହସ୍ତରେ
କରିଛନ୍ତି ପ୍ରଦାନ ।
ତତସ୍ତର କୁଳଶଳକ
ଏହି କନ୍ଦ୍ରେଙ୍ଗୁ ଲାଲ

ଡାକ୍ତରଖାନାରେ ଏହାଙ୍କ
କାର୍ଯ୍ୟ ଦେଖିବା ଭଲ ।
କେତେ ଅଫିସର ଏ ସଙ୍ଗେ
ଦେଖ ବଡ଼ଦ ବେଶେ
ବସିଛନ୍ତି ତାଙ୍କୁ ଦେଖିବା
ଯଥାକାଳେ ଅଫିସେ
ପିଲଟାଏ ଥିଲା ସ୍ୱସ୍ଥ
କାହୁଁ ଏଡ଼େ ବେଗରେ
ଭଲ କାର୍ଯ୍ୟ କରି ପଶିଲ
ରକ୍ତମଣ୍ଡ ଭିତରେ ।
ଜାଙ୍ଗଲିକ ଡ୍ରେସ ପିନ୍ଧଣ
ଆଗେ ଅଛନ୍ତି ଯେହୁ
ବନ୍ଧୁଦନ୍ତ୍ର ମୁଣ୍ଡି ଚଢ଼ିଛି
ତାଙ୍କ ନାମ କର୍ଣ୍ଣେଲ ।
ନ ସରିବ ମାସେ ଗାଇଲେ
ଏହାଙ୍କର କରଣୀ
ବୁଢ଼ା ହୁଦୋଳର ପରି ଏ
କଲେ ବିପ୍ରଙ୍କୁ ଧେନ ।
ପ୍ରବୀଣ ବୟସ ପ୍ରସିଦ୍ଧ
ସରଦାର ପୁଙ୍ଗବ
ତାହାଙ୍କ ଇଙ୍ଗିତେ ଚଳନ୍ତି
ସଦା ପାଇକ ସବ ।
ଦାଢ଼ିଆ ପ୍ରସନ୍ନ ବଦନ
ଏହୁ ଅଛୁ ସାମନ୍ତ
ହସି ହସି ଯେବେ କହନ୍ତି
ନାନା ବଧ ବୃତ୍ତାନ୍ତ ।
କର୍ତ୍ତିମାନ ପୁଣି କଥାକେ
ବର୍ତ୍ତିମାନ କରନ୍ତି
କର୍ତ୍ତିମାନ ତାଙ୍କ କଥାରେ
ସଦା ହୃଦୟ ଭର୍ତ୍ତି ।

ଏମାନଙ୍କ ଆଗେ ଜ୍ଜଟରେ
ଜଣି ଦେବ ଦାରୁକୁ
ସେଇଁ ବପ୍ରବର ଅଛନ୍ତି
ମୋତେ ଫୁଲଇ ବୁକୁ ।
ନାମ ତାଙ୍କ ଘନସୁନ୍ଦର
ପଦ୍ୟମାନ ଲେଖନ୍ତି
ବଡ ପରିଶ୍ରମୀ ସର୍ବଦା
ସ୍ୱଦେଶରେ ବୁଲନ୍ତି ।
ସାହାଯ୍ୟ ପାଇଲେ ଅନେକ
କାବ୍ୟ ପାରନ୍ତେ ଲେଖି
ଛପା ଖରଚର ବଲକୁ
ବାଞ୍ଛ ପଳାନ୍ତି ଦେଖି ।
ମନେପଡ଼େ ଦିନେ ଅସ୍ୱାର
ଖେଳେ ଏହାଙ୍କୁ ଧରି
ସବୁପାଖେ ଦେଲୁଁ ଅସ୍ୱାର
ତାଙ୍କ ଶରୀରେ ଜ୍ୱର ।
ବପ୍ର ମହାଶୟ ଅଜ୍ଞାନ
ହେଲେ କୋଧରେ ଜଳ
କଥା ହେଉଥିଲେ ପିଲାଏ
କେତେ ଗୋଡ଼ାଏ ବୋଲି ।
ମନେପଡ଼େ ଦିନେ ଏସ୍ଥାନ
ଦେଖି ଥାଉ ଆପଣେ
ତାଳଚେର ନଭ ବମଳ
ଚନ୍ଦ୍ର କାବ୍ୟ ଗଗନେ ।
ମୋର ପ୍ରିୟସଖା ସର୍ବଦା
ତାଳଚେରରେ ମୁହିଁ
ତାଙ୍କସହ ସନ୍ଧ୍ୟା ସମୟ
ଆନନ୍ଦରେ କାଟଇ ।
ବୁଢ଼ା କବିରାଜ ପଣ୍ଡିତ
ପୁଣି ତର୍କ ଭୂଷଣ

ପୃଥୁଳ ଶରୀର ବେଙ୍ଗଟା
ପୁଚ୍ଛବିହୀନ ଆପଣ ।
ସ୍ଥଳର ଦାରୁ ଶିରରେ
ମୂର୍ତ୍ତି ପାତାଳବେଣ
ଗୋରକ୍ଷଣୀ ସଭ୍ୟ ମେମ୍ବର
ଧର ଭାରୁକ୍‌ବେଶ ।
ବସିଛନ୍ତି ସର୍ବେ ସଭାରେ
ଦେଖ ନାନା ଭଙ୍ଗୀରେ
କଏ ହାସ୍ୟମୁଖେ କଏବା
ଅଳ୍ପ ମଳିନ ଭବେ ।
ଦଣ୍ଡୁ ନାହିଁ ଏହି ସ୍ଥାନରେ
ଚାହିଁଗଲା ଖମାର
ଭଲ ସମୟଟେ ଦେଖିଣ
ପଡ଼ଅଛି ଖବର ।
ଅକାଳ କି ସ୍ୱପ୍ନ ଚଳହେ
ଅନ୍ୟ ସ୍ଥାନକୁ ଯିବା
ବହୁତ ଦଣ୍ଡସ୍ନ ରହିଛ
ବୁଲ୍ ବୁଲ୍ ଦେଖିବା ।
ସଚର୍ଚ୍ଚରେ ଖୁଲିଥିବଟି
ବାଟେ ଅଛିଭ କୂପ
ଅତ୍ୟନ୍ତ ଗଭୀର ଯିବାର
ପଥେ ଅତି ଦୁରୂହ ।
ଘାସିବାକୁ ଏଥି ଦନକେ
ଜଳଧରଙ୍କ ସ୍ୱଭ
ନିଦ୍ରା ଅସମ୍ଭାଳେ ଥିଲେଣି
ପଡ଼ କୂପରେ ପାଭ ।
ଯହିଁ ତହିଁ କୂପ ତାହାର
ଅବା କୋହିବ ଶଙ୍କା
ସୁଭ ସୁର ବୋଲ୍ ଏଣୁ ସେ
ଭୟେ ଛାଡଲେ ତଙ୍କା ।

ହଂସ ଡମ୍ବାକୃତ ଦଣ୍ଡକ
ଅଗେ ଓଲେନ୍ଦାର
ସ୍ୱଳ ନାବଦୁହେଁ ବସିଣ
ଏଥି ଦେବା ଚକର ।
ଲୁଚର ପାଠଣା ଉଭରେ
ପଶି ଅନେକ ଦୃଶ୍ୟ
ଦେଖାଇଦ ସଦା ସୁଲଭ
ହବେ ନ୍ତ୍ରହେ ପେ ଦୃଶ୍ୟ ।
ଏତେବୋଲି ଦୁହେଁ ଚଢିଲୁଁ
ଯାଇ ମୋଠର ଦାର
ପନ୍ଥ ଡ୍ରାଇବର ଅଠକ୍ତି
ମାଲମଣି ଫିଠାର ।
ଗ୍ରାମ ନିବାସୀ ସଙ୍ଗତା
ପିଇ ସ୍ୱରୁ ପାଣିକ
ବସିଛନ୍ତି ଗାଡ଼ି ଉପରେ
ଠେଙ୍କଦେଇ ଘଣ୍ଡକି ।
ହୁସ୍ ହୁସ୍ ଶବ୍ଦେ ମଠର
ସିଂହଦ୍ୱାରକୁ ଚେଇଁ
ଉନ୍ନତ୍ତ ବ୍ରାହ୍ମଣୀ ତଠରେ
ଶୀଘ୍ର ହୋଇଲ୍ସ ଯାଇ ।
ଦେଖାଇ ଏଥିରେ ଦକ୍ଷିଣ—
ଗାମୀ ବ୍ରାହ୍ମୀ ବାରହ୍ମ
ପୂର୍ବଗାମୀ ହୋଇଅଛନ୍ତି
ସିନା ଭଦ୍ର ଭ୍ଲୀବହ୍ମ ।
ମନୋହର ଦୃଶ୍ୟ ଷିଦତା
ଶାସ୍ତ୍ରୀ ସେ ନଷ୍ଟାମାର
ଭଳ ଭଳ ମୁକ୍ତା ମାଳର
ପର ଦଶେ ଲୁଚର ।
ଅସଂଖ୍ୟ ବୋଇତ ସ୍ୱସନ୍ତ
ସେହ୍ନ ଦମଳ ଜଳେ

ତାଙ୍କ ପ୍ରତିବିମ୍ବ ନିର୍ମଳ
ଜଳ ଭିତରେ ଫଳେ ।
ଉଚ୍ଚ ଦେବଦାରୁ ଦ୍ରୁମରେ
ରମ୍ୟ ଦକ୍ଷିଣ ତୀର ।
ନାନାସହ ସେତୁ ବାଟରେ
ଦୁହେଁ ହେଲୁଁ ବାହାର
ରାମଚନ୍ଦ୍ର ହରି ନନ୍ଦନ
ଙ୍କର କାରବାର ସ୍ଥିରୁ ।
ଚୂନରେ ଗଠିତ ସିପାହୀ
ଗୃହ ଦେଖାଇ ଦୂରୁ
କହିଲ ସ୍ୱାଇ ହେ ଏଥିର
ପୂର୍ବେ ଜେହଲଖାନା
ତୁମ୍ଭ ଜେଜେ କରିଅଛନ୍ତି
ତାକୁ ନୂଆଁ ରଚନା ।
ମାଜିଷ୍ଟ୍ରେଟ କୋଠ ସକଳ
ଏଥି ରହୁଛି ସ୍ୱାଇ
ମାତ୍ର ଏ ଉତ୍ସବ ହେତୁରୁ
ତାହା ବନ୍ଦ ଅଛଇ ।
ଏଣୁ ସିଧାଯାଇ ଘଡ଼ିଏ
ଜଗନ୍ନାଥ ଘାଟରେ
ଅଟକି ଏମନ୍ତ କହିଲ
ସ୍ୱାମୀଙ୍କର ଅଗରେ ।
ଏ ପବିତ୍ର ଘାଟ ଅଟଇ
ନଗରର ସରଣୀ
ଅତି ଚତୁର୍ଥରୁ ଉଠିଣ
ଏଥି ବସ୍ତ୍ର ରମଣୀ ।
ମନ୍ତ୍ର ସଙ୍କଳେ ତାହାଙ୍କ
ସ୍ନିଗ୍ଧଚନ୍ଦ୍ର ମୁଖରେ
ଶତ ଶଶିକଳା ଖେଳଇ
ରଙ୍ଗେ ବିମଳ ଜଳରେ ।

ପୋଡ଼ ପୋଡ଼ ହୋଇ ଉତ୍ତାପେ
ପହଁରନ୍ତ ନାହିଁଏ
ମିଶିଯାଏ ତାଙ୍କ ଶରୀର
କାନ୍ତ ଜଳେ ଗଡ଼ଏ ।
ଶୈବାଳ ପତ୍ରେ ଶ୍ୱସଇ
ମଳଦେଶ ଢଳାଇ
ସ୍ୱଚ୍ଛ ଗତ କଥା ସୁନ୍ଦରୀ—
ମାନେ କରନ୍ତ ଗଲ୍ପ ।
ବେଳେ ବେଳେ ଏଣୁ କାଳରେ
ମିଶେ ସାର ଉଛଟି
ରାଜପୁରୁ ନଜ ଘରକୁ
ଆସୁଥାନ୍ତି ଲେଉଟି ।
ବରହୁଣୀ ତାଙ୍କ ବାମାଙ୍କ
ପାଖେ ଅଧୀରେ ମିଳି
ଥର ଥର ଶୀତେ ଅନେକ
ଥର ଖାଆନ୍ତି ଗାଳି ।
ଏହା କହୁ କହୁଁ ମଠର
ହାତୀଶାଳକୁ ଲଙ୍ଘି
ସଜ୍ଜତ ପାଠଶା ମଧ୍ୟରେ
ଗଲ୍ପ ପହୁଞ୍ଚି ବେଗି ।
ନାନାସ୍ଥାନେ ତହିଁ ନାଚନ୍ତ
ସ୍ୱପ୍ନ ପ୍ରବେଶ ହୋଇ
ବହୁତ ରହସ୍ୟ ଦୃଶ୍ୟସ୍ତୁ
ମାନ ଦେଲ୍ ଦେଖାଇ ।
ଗୋଟି ଗୋଟି କରି କହିଲେ
ବଢିବ ଏ ପ୍ରସଙ୍ଗ
ମନେହୁଏ ପଛେ ହୋଇବ
ଏଥି ରହସ୍ୟ ଭଙ୍ଗ ।
ପାଠଶାଳୁ ଡେଇଁ ପବନ
ଚଣ୍ଡକୂଟ ପାଖରେ

ରୁଚର ତୋରଣ ଦେଖିଲୁଁ
ଇନ୍ଦ୍ରଧନୁ ଆକାରେ ।
ଅଗେ ଚନ୍ଦକୂଟ ଧବଳ
ସୌଧ ଓଢେ ତୋରଣ
ସାନ୍ଧ୍ୟମେଘ ରଙ୍ଗେ ଫଣନ୍ତ
ଶୁଭ୍ର ତାମ୍ର ସମାନ ।
ଜଳପୃଷ୍ଠେ ପୂର୍ଣ୍ଣ ତା ନଭ—
ଠରେ ଦୃଶ୍ୟ ସରସି
ଦେଖି ମୋର ମନେ ଉଦୟ
ହେଲା କଥାଏ ଆସି ।
ସ୍ୱବାନ୍ଧବୁ ଲକ୍ଷି କ୍ଷିପିଲେ
ନାଥ ଅଜା ! କହତ
ଏହି ବନେ କିଛି ରହସ୍ୟ
ଅଛି ନଷ୍ଟେ ନିହତ ।
କହିଲ୍ ଶ୍ୱେତାଙ୍ଗ ପ୍ରେମରେ
ଏଥି ନାଗ୍ରୀଏ ରଷି
ନିର୍ଦ୍ଦୟ ହୃଦୟେ ଅବଳା
ଘର ଭିତରେ ପଶି ।
ଶ୍ୱେତାଙ୍ଗ ଉତ୍ସାହେ ସହଜେ !
ଯେହ୍ନ ଉପେକ୍ଷି ବ୍ରୀଡ଼ା
ଦେଇଥିଲା ପରିଜନଙ୍କୁ
ହାଡ଼ ହାତେ କୋରଡ଼ା ।
ଘଣ୍ଟାକରେ ଅଣି ମାଇଲ
ଧାଏଁ ଓଜେଲ୍ କାର
ଯେବେ ରାଜ୍ୟଯାକ ଦେଖିବା
ପାଇଁ ଇଚ୍ଛା ହୁମ୍ୱର ।
ସ୍ଥଳ ଅନାୟାସେ ଦେଖାଇ
ଦେଇ ପାରିବ ମୁହିଁ
ଭଙ୍ଗିଦେ ଫିଟର ପଷ୍ଟମେ
ଗାଡ଼ିଦେଲା ଚଳାଇ ।

# ବଚସ୍ଥା

(ପୂଜା, ବନ୍ଦନା, ମଙ୍ଗଳ ଓ ହରିନାମ ଆଦି ସମୟରେ ଗାଇବାକୁ ହେବ)

ଦିନେ ଖରାବେଳେ ମିଶ୍ରେ ସମାପି ଡିଉଟି
ଅଫିସରୁ ସ୍ୱଗୃହକୁ ଆସିଲେ ଲେଉଟି ।
କ୍ଷୁଧାତୃଷ୍ଣା ବଶେ ମନେ ଯାଉଥିଲେ ଜଳି
କାର୍ଯ୍ୟ ନୀତିକର ପୁଣି ଖାଉଥିଲେ ଗାଳି ।
ଦେଖିଲେ ଗୃହରେ ଆସି ତାହାଙ୍କ ଗୃହିଣୀ
ବେଶ ହେଉଥିଲେ ବସି ଦରପଣ ଘେନି ।
ଭାଲରେ ସିନ୍ଦୂରବିନ୍ଦୁ ନୟନରେ କାଳି
କଙ୍କତିକା ଘେନି କେଶ ମଣ୍ଡୁଥିଲେ ବାଳୀ ।
ବନ୍ଧୁଗଣ କାର୍ଯ୍ୟ କରି କରି ବିପ୍ରବର
ସ୍ୱଭାବରେ ହୋଇଥିଲେ ଅବଶ ଅନ୍ତର ।
ତାଙ୍କୁ ସେତ ଦେବାଙ୍ଗନା ବେଶ ହେବା ଦେଖି
ସେକାଳେ ଅନ୍ତରେ ମିଶ୍ରେ ନହୋଇଲେ ସୁଖୀ ।
ମନୋଭାବ ଗୁପ୍ତ ରଖି ହୋଇ ହସ ହସ
ପରିହାସ ଛଳେ ଦେଲେ ଏହି ଉପଦେଶ ।
ତୁମ୍ଭେ ଜାଣ, ସେହି ପୁତ ଭୁବନ-ବିଦିତ
ଆର୍ଯ୍ୟକୁଳ କମଳିନୀ ମହିମା ମଣ୍ଡିତ
ବେଦଗାନ କରି ଉଚ୍ଚେ ସରଳ ହୃଦୟେ
ପ୍ରାଣପତିସହ ସୁଖେ ଯେ ସଦା ନିର୍ଭୟେ
ଗିରି କୁଳେଶ୍ୱର ହିମାଦ୍ରିର ନିକାଞ୍ଚନ—
କନ୍ଦରେ କନ୍ଦରେ ଭ୍ରମି ହୃଦୟ ରଞ୍ଜନ
କରୁଥିଲେ ଏକମନେ ପୂଜା ପ୍ରକୃତିର
ଗୌରୀଗୁରୁ ସମୁନ୍ନତ ବିରାଟ ମୂର୍ତ୍ତିର ।
କଟିଲଗ୍ନ ପରି ମୃଦୁ ତନ୍ତୁ-ବଲ୍କଳରେ
ଯେମାନେ ବଲ୍କଳ ଆହା ଜଡ଼ାଇ ବଧୂରେ,
ଅନନ୍ତ ସୃଷ୍ଟିରେ ତନ୍ମୟ ହୋଇ ଏକମନା
ଚିନ୍ତୁଥିଲେ ଦେବାନନ୍ଦ ବ୍ରହ୍ମପରାୟଣା

ସଗର୍ବେ ମଣି ଗୌଡ଼ ମହୀପାଙ୍କ ମଣି
ଯା ସମାଧି ବଳେ ଟଳେ ଦେବୀ ବୀଣାପାଣି,
କବି ମନସୁଖେ ତାଙ୍କ ରମ୍ୟ ରସନାରେ
ଗାଉଥିଲେ ଉଦ୍ଧୃତ ବୀଣାର ଝଙ୍କାରେ,
ସଙ୍ଗୀତ ଜ୍ୟୋତିଷ ଶିଳ୍ପ ସାହିତ୍ୟ ସୂକ୍ଷ୍ମରୁ
ଗବେଷଣାପୂର୍ଣ୍ଣ ଯାଙ୍କ ଜନମି ମଥାରୁ
ଉପଦେଶପୂର୍ଣ୍ଣ ନାନା ଶ୍ରେଷ୍ଠ ଗ୍ରନ୍ଥଗଣ
ଜଗତରେ କରୁଥିଲା ଶିକ୍ଷା ବିତରଣ
ଯାହାର ମଧୁର ରସ ଆସ୍ୱାଦନ କରି
ଆଜଯାଏ ଆର୍ଯ୍ୟଜାତି ଛନ୍ତି ଦେହ ଧରି
ଧନ୍ୟ ବଦାନ୍ୟା ସେହି ଆର୍ଯ୍ୟବାଳାଗଣେ
ତାହାଙ୍କର ସ୍ମୃତି କିଗୋ ଜାଗେ ତୁମ୍ଭ ମନେ ?
ଜାହ୍ନବୀର ଧାର ସମ ପାବନ ହୃଦୟେ
ଅଟଳ ଅଚଳ ଧୈର୍ଯ୍ୟେ ଦୁର୍ଲ୍ଲଭ ପ୍ରଣୟେ ;
ସୌଧବାସ ଛାଡ଼ି ସେହୁ କଣ୍ଟକିତ ବନେ
ବାହାରିଲେ ଗଜ ବୃନ୍ଦେ ତୁଳିକା ଶୟନେ ;
ଆଦରିଲେ କୁଶ-ଶଯ୍ୟା ସୁଖାଦ୍ୟ ସକଳ
ବଦଳେ ସେବିଲେ ବନେ କନ୍ଦମୂଳ ଫଳ
ମୃଗାଙ୍ଗନା ସଙ୍ଗେ ସୁଖେ କଲେ ସଖୀଭାବ
ଯେ ସତୀ ଜୀବନେ ସଦା ପ୍ରକାଶି ପ୍ରଭାବ,
ଯାଙ୍କ ସଂଯମକୁ ନାନା ବିଭବ ଦେଖାଇ
କୋଟି କୋଟି ପ୍ରଲୋଭନେ ନପାରି ଟଳାଇ,
ଦୁରନ୍ତ ଦାନବକୁଳ ବ୍ୟର୍ଥ ମନୋରଥେ
ଚତୁର୍ଦ୍ଦଶ ମାସ ଯାଏ ଲଗିଥିଲେ ବ୍ୟସ୍ତେ ।
ଭୈରବୀର ଲହ ଲହ ରସନାର ପରି
କରବାଳ ଚମକାଇ ମନେ ଆଣ୍ଡିକରି
ଯାଙ୍କ ମହାଧୈର୍ଯ୍ୟ ଅଟେ ପର୍ବତରୁ ବଳି
ଶତ ଶତ ତର୍ଜ୍ଜନାରେ ନ ପାରିଲେ ଟାଳି
ସେ ବୀର ; ଯାହାର ମହା ବାହୁର ବଳରେ
ଚଣ୍ଡୀଶ-ପ୍ରଚଣ୍ଡାନଳ କମ୍ପେ ଥର ଥରେ

କି ହୁଅ ତାଙ୍କର ତୁମ୍ଭେ ? ପତିର ପ୍ରତିଜ୍ଞା
ଜାତ ପାଇଁ ପୂର୍ବେ ଯେଉଁ ପତିପ୍ରାଣା ସତୀ
ସୁକୁମାର କଳେବର ଜ୍ୱଳନ୍ତ ଜ୍ୱଳନେ
ଆହୁତି ପ୍ରଦାନ କରି ପ୍ରସନ୍ନ ବଦନେ
ସେ ଅଗ୍ନି ଶିଖାରୁ ଧନ୍ୟ ସତୀତ୍ୱ ଗୌରବେ
ଶତଗୁଣ କାନ୍ତି ଲଭି ମୁକ୍ତ ହୋଇ ଲବେ
ସୁବର୍ଣ୍ଣ ପ୍ରତିମା ପ୍ରାଏ ହୋଇଥିଲେ ଉଭ
ସର୍ବ ସମକ୍ଷରେ ସାଧ୍ୱୀ ସୀମନ୍ତିନୀ ଗଣ ।
ପାଶୋରିଲ ତାଙ୍କୁ କିଗୋ, ଯେବେ ଘୋରବନେ
ଘୋର ନିଶୀଥରେ ଦମ୍ଭେ ଭୟଶୂନ୍ୟ ମନେ,
ମୃତପ୍ରାଣେଶଙ୍କୁ କୋଳେ ବିଷାଦରେ ଧରି
ଯମର ଶ୍ୟାମଭ୍ରୂକୁଟୀ ଭଙ୍ଗୀକି ନ ଡରି
କୌଶଳରେ ଯୁକ୍ତି କରି ମୃତ୍ୟୁକୁ ଭୁଲାଇ
ସେ ସାଧବୀ ଆଣିଥିଲେ ସ୍ୱାମୀଙ୍କି ଛଡାଇ
ତୁମ୍ଭ ଧମନୀରେ ଆଜି ବହୁଅଛି ପରା
ସେହି ବୀର ଲଲନାର ତପ୍ତ ରକ୍ତଧାରା
ଶୂନ୍ୟଆଶ୍ରମରୁ ଯାଙ୍କୁ ମୂଢ଼ ଜୟଦ୍ରଥ
ଦଳେ ଘେନିଯିବା ପାଇଁ ଦେଖାଇ ବୀରତ୍ୱ,
ଅଣୁଆ ଗୋଇଠା ବାଧା ଲଭି ଲଜ୍ଜାଭରେ
ପଳାଇଲା ମନଦୁଃଖେ ମ୍ଳାନମୁଖେ ଘରେ
କୁରୁ କୁଳାଙ୍ଗାର ଦୁଷ୍ଟ ଦୁଃଶାସନ ହସ୍ତ
ଯାମ କରେ ବଦରାଇ ଯେଉଁ ମଞ୍ଜୁମସ୍ତ,
ଉତ୍ପାଟିତ ବାହୁଶାଖା ରୁଧିର ବୃଷ୍ଟିରେ
ବାନ୍ଧିଥିଲେ ଚିର ମୁକ୍ତ କୁନ୍ତଳ ରୁଚିରେ ।
ରମଣୀ ଲଲାମଭୂତା କ୍ଷତ୍ରିୟ କୁମାରୀ
କାହିଁ ସେ ପଦ୍ମିନୀ ସତୀ ମହାସୁକୁମାରୀ,
ଚିତୋରର ମହାରାଣୀ ଆଲ୍ଲାଉଦ୍ଦୀନର
ପ୍ରଲୋଭନେ ନୋହି ବଶ ଅତ୍ୟନ୍ତ କଠୋର-
ଜହର ବ୍ରତରେ ରଙ୍ଗେ ଭୀମସିଂହ ପ୍ରିୟା
ଆନନ୍ଦରେ ବିସର୍ଜ୍ଜନ କଲେ ନିଜ ହିଆ ।

କାହିଁ ସେହୁ କାହିଁ ତୁମ୍ଭେ ଅଟଗୋ ଲଳନା
ନାରିକେଳ ସହ ଲିମ୍ବ ନ ହୁଏ ତୁଳନା ।
ପିଞ୍ଜରର ପକ୍ଷୀ ତୁମ୍ଭେ, ପିଞ୍ଜରା ଭିତରେ
ବସି ସେ ପକ୍ଷୀକା ଯଥା ଚିନ୍ତଇ ମନରେ
ପିଞ୍ଜରା ଖଣ୍ଡିକୁ ସର୍ବ ଭୂମଣ୍ଡଳ ବୋଲି
ଗୃହ ପ୍ରାଙ୍ଗଣରେ ତୁମ୍ଭେ ତେଢେଙ୍କେ ବୁଲ୍‌ବୁଲ୍
ବହିର୍ଜଗତର ଖବର ନବୁଝିଲ କିଛି
ଦାଣେ ଗପ କରି ଦିନ କାଟୁଅଛ ଛି ଛି ।
ଗୃହକୋଣେ ସଭୁଦିନେ କଂସାଲେଠା ସମ
ପଡ଼ିଥିବ କେତେଦିନ ହୋଇଣ ଅକ୍ଷମ ।
ମହା ମନସ୍ୱିନୀ ଦକ୍ଷ ସକଳ କାମରେ
ତୁମ୍ଭ ପୂର୍ବ ଜନନୀଙ୍କ ପବିତ୍ର ନାମରେ
ବୋଳ ଦେଉଥିବ ଏହି କଳଙ୍କ କାଳିମା
ଘରେବସି କାହୁଁ କହ ବଢ଼ିବ ବଡ଼ିମା ।
ଅଳଙ୍କାରେ ମଣ୍ଡିହୋଇ ସ୍ୱାମୀମନ ମୋହି
ଏକାପୁତ୍ର ଜନ୍ମଦେଇ ଧନଗର୍ବ ଶୋଇ ।
ସ୍ୱାମୀମୃତ୍ୟେ ଦିଅ ଗୃହ ଦାସିତ୍ୱର ଭର
କତିବଂ କର୍ତ୍ତବ୍ୟ ଏହା ଲଳନା କୁଳର ?
ସରସ୍ୱତୀ ପ୍ରତି ହୋଇ ସଦା ଉଦାସୀନ
ଦ୍ୱିଗୁଣ ମୂଲ୍ୟରେ ଘରେ ବସି ମାଲ କିଣ ।
କଉଡ଼ି ଗଣ୍ଠା ଆଦି ପରିଶ୍ରମ ଶୂନ୍ୟ
ମେଦ ବର୍ଦ୍ଧକ ଖେଳେ ହୋଇଣ ନିପୁଣ
ଗ୍ରାମ୍ୟ ଅବର୍ଜ୍ଜନାପୂର୍ଣ୍ଣ ନାନାଗଳ୍ପେ ବୃଥା-
ଖାଉଅଛ ବହୁମୂଲ୍ୟ ସମୟର ମଥା ।
ପାଦ ପଡୁ ରହେ ଲଜ ପ୍ରସିଦ୍ଧ ଜଗତ
ତୁମ୍ଭଠାରେ ତାହା ହେଉଅଛି ବିପରୀତ ।
ଅଣୁପାଏ ଦଣ୍ଡୁଥାଉ ସେଥି ଲଜ୍ଜା ନାହିଁ
ସଭ୍ୟ ଜଗତରେ କର ତହିଁର ବଡ଼ାଇ ।
ମୂଲ୍ୟବାନ ମୁଦି ଝୁଲ ଝୁଣ୍ଟିଆ ପଇଁଚି
ଲୋକ ଦେଖାଇବା ପାଇଁ ଦେଇଥାଅ ଭରି

ପବନ ପ୍ରଫୁଲ୍ଲ ହାସ୍ୟ ରସରେ ଉଜ୍ଜ୍ୱଳ
କୁରୁଚ ବକାରଶୂନ୍ୟ ବଦନ କମଳ
ଆସିବାକୁ ଦଅ ସିନା ଚନ୍ଦ୍ର ଆନନକୁ
ଚାକିରଖି ଲଜ୍ଜାଭରେ ଓଢ଼ଣୀ ସ୍ତନକୁ ।
କରୁଅଛ ବସି ବସି ଗଲ୍ପ ଅବିରତ
ଆଚରୁଛ ନୂଆ ନୂଆ ତଥି ବାରବ୍ରତ ।
ଧନ ଦ୍ରବ୍ୟମାନ ନାଶ କରୁଛ କାହିଁକି
ବ୍ୟସ୍ତ ପାଇଁ ଭଲକାର୍ଯ୍ୟ ଦଶଇ ନାହିଁକି ।
"ଏହିଥିରୁ ପାଏ ଦେବେ ଆରମ୍ଭ ହିତରେ
ଦେଖିଥିଲେ ଧର୍ମ୍ମ ବ୍ୟାପୀପାତ୍ରା କୁନଅରେ ।"
ଅତିପରିଶ୍ରମୀ ପଶୁ ସକଳ କର୍ମରେ
ତୁମ୍ଭ ମାତାମହୀଗଣ ଥିଲେ ଏ ସଂସାରେ ।
ଶିରୀଷ ମୃଦୁଲା ତୁମ୍ଭେ ଲବଣ୍ୟରୁ ବଳି
ତାଙ୍କ ସୌଭାଗ୍ୟକୁ କାହୁଁ ପାଇବ ହେ କଳି,
"ସଲିଳ ଉପରେ ପଦ୍ମ କୋରକ ଯେସନ
ସଂସାର ଜଳରେ ତୁମ୍ଭେମାନେ ବାମାଗଣ
ସ୍ଥିରଭାବେ ବସି ଆହା ଦରପଣ ଠେକି
ନିଜର ରୂପର ଛାୟା ନିକେ ଦେଖି ଦେଖି
ନିଜ ମୁଖ ଦଶ ଥର କର ପରିଷ୍କାର
ଆବର୍ଜ୍ଜନାପୂର୍ଣ୍ଣ କିନ୍ତୁ ଥାଏ ଘରଦ୍ୱାର ।
କାଟୁଛ ସମୟ ସୁଖେ ସଂସାରର ଭାର
ହାତେ ସମର୍ପଣ କରି ପରିସ୍କରକାର ।
ପରିଶ୍ରମ ଅଭାବରେ ବଳଶୂନ୍ୟ ହୋଇ
ମାଣ୍ଡି ପରି ଦେହମାନ ସ୍ଥୂଳ ଦିଶଇ ।
ଭୋଗୁଛ ବିଷମ ରୋଗ ତାହାର କୁ ଫଳ
ଭୋଗୁଛନ୍ତି କ୍ଷୀଣଜୀବୀ ସନ୍ତାନ ସକଳ ।
ନପାର ବାଳକଙ୍କର ସ୍ୱାସ୍ଥ୍ୟ ରକ୍ଷା କରି
ଯେତେବେଳେ ଯାହା ପାଅ ଦିଅ ମୁଖେ ଭରି
ସୁଖେ ଶଯ୍ୟାପରେ ଅର୍ଦ୍ଧଶାୟିତ ହୋଇଣ
ମୂର୍ଖ ସଖୀ ସଙ୍ଗ କରି ସମୟ ଯାପନ ।

ତୁମ୍ଭର ସ୍ତନରେ ଦେଖ ଈଶ୍ୱର ପ୍ରଦତ୍ତ
ପୂର୍ଣ୍ଣ ଦୁଗ୍ଧ ଥାଇଁ ଥାଇଁ ଅବଶ୍ୟକ ମତ ।
ଧାତ୍ରୀ ହୋଲେ ସନ୍ତାନଙ୍କୁ ସମର୍ପି ନବୀନା
ଗୁରୁପାକ ଗବ୍ୟ ଦୁଗ୍ଧ ପିଆଉଛ ସିନା ।
ନିଜ ଶିଶୁ ପ୍ରତି ସ୍ନେହ ଦେଖାଅ ନିରତେ
ଅନ୍ୟ ତନୟଙ୍କୁ ଦିଅ ଆଣ୍ଟେ ଗୋଠାକେତେ,
ଦେଖୁଛୁଁ ସର୍ବଦା ତୁମ୍ଭ ନବୋଧ ବେଶ୍ୱର
ବୁଝାଇଲେ ମଧ୍ୟ ବୁଝ ନାହିଁ ବାରବାର
କର ନିତନିତ କେତେ କଳହ ଅନ୍ୟାୟ
ଶାସିଲେ ସ୍ୱାମୀ ଦେଖାଅ ଆତ୍ମହତ୍ୟାଭୟ ।
ଦେଖୁଁ ବେଳେ ବେଳେ ଯେଉଁ ଭୟଙ୍କର ମୂର୍ତ୍ତି
ସମ୍ଭାଳି ପାରିବ କିଏ ଦୂରେ ଧରି ଧୃତି ।
ଟିକିକ କଥାକୁ ବେଶ ବଢାଇ ବିସ୍ତର
ଆଲୁଲିତ କେଶେ କାତ୍ୟାୟିନୀ ରୂପଧର ।
ଗୁରୁ ଗୁରୁଜନ ଦାସ ଦାସୀ ଅଗ୍ରକର
ଗୃହସ୍ଥ ମୂରଛ ବାକି ନ ରହେ କାହାର ।
ଲାଜ ସଙ୍କୋଚକୁ ତେଜି ଅଶ୍ଳୀଳ ଭାଷାକୁ
ଉଦ୍ଗିରଣ କର ଛଳେ ନିରର୍ଥ କଷ୍ଟାକୁ ।
ପୁଣି ମୁଖେ ଖାଇପିଇ ରହିଣ ଅକ୍ଲେଶେ
ପୁତ୍ରଘର ଭାଙ୍ଗିଦେବା କୁଟିଳ ଉଦ୍ଦେଶ୍ୟେ
ଅଯଥାରେ କଳିଗୋଳ ଭିଆଇ ସତ୍ୱର
ପରସ୍ପର ସ୍ନେହ ସୁଖ ଶାନ୍ତି ନଷ୍ଟକର ।
ନଜାଣ ନବୁଝ ଏହି ଅନିତ୍ୟ ସଂସାର
କାହିଁପାଇଁ ଏତେ ସ୍ୱାର୍ଥ ବୁଦ୍ଧିକୁ ଆଚର
ମର୍ଯ୍ୟାଦା ଲଙ୍ଘନ କରି କର ଆକ୍ରମଣ
ମାନ୍ୟାମାନ୍ୟ ଲଙ୍ଘି ପୁଣି କ୍ରୋଧାନ୍ଧ ହୋଇଣ
ଏହି କିଗୋ କୁଳବତୀ ନାରୀ ବ୍ୟବହାର
ଶିଖିବେ ସନ୍ତାନେ ସିନା ଏ ରୀତି ତୁମ୍ଭର ।
ଖେଳରେ ପିଲାଙ୍କ ମଧ୍ୟେ ହେଲେ ମାଡପିଟା
ତୁମ୍ଭେ ତହିଁରେ ବାହାର ପୁନଶ୍ଚ ଓଲଟା

ଅନ୍ୟ ପିଲା ମାତା ସଙ୍ଗେ ହୁଅ କେତେ ଭଳ
କ୍ରୋଧାନ୍ଧ ହୋଇଣ ଘରେ ଯାଉଥାଅ ଜଳ
ପିଲାଙ୍କ ମଧ୍ୟରେ ଏହୁ ଆତ୍ମପର ଭାବ
ଧରିବା ଉଚିତ କିଗୋ ଟିକିଏ ନ ଭାବ ।
ସଦା କାମାନଳ ଜଳେ ତୁମ୍ଭ ହୃଦବନେ
ନିବାରି ନ ହୁଏ ଯାହା ସାମାନ୍ୟ ବର୍ଷଣେ
ପୁରୁଷର ମନମୃଗ ବାନ୍ଧି ରଖ ବଳେ
ସୁଯୋଗ ପାଇଲେ ପୁଣି ଉପେକ୍ଷ ଚପଳେ
ତୁମ୍ଭ ବଶୀଭୂତ ହୋଇ କେତେ ଏହୁପରି
ସର୍ବସ୍ୱ ହରାଇ ହେଲେ ପଥର ଭିକାରୀ ।
ତୁମ୍ଭରେ ବିଶ୍ୱାସ ଯାଇ ହୋଇଛନ୍ତି ଘାଣି
ଧରାଇ ଦେଇ ତୁମ୍ଭଙ୍କୁ ନିଜ ତଣ୍ଟି, ପାଣି ।
ବିଶ୍ୱାସ ଆଶ୍ୱାସ ମୂଲ୍ୟ ନଜାଣ କିଞ୍ଚିତ
ଶୁଣିଛ କାହାରି ଯଦି ଗୁପତ ଚରିତ ।
ବଳେ ବଳେ ଦଶ ପାଖେ ନ କହିବା ଯାଏ
ପେଟରେ କ୍ଷେକ ଅଙ୍ଗିରେ ନିଦତ ନ ଥାଏ ।
“ବିଶ୍ୱାସୋହି ନ କର୍ତ୍ତବ୍ୟ” ଏହେତୁ ସ୍ମରଣୀୟ
ମୁକ୍ତକଣ୍ଠେ କହିଛନ୍ତି ଋଷି ଶ୍ଳୋକ ବାକ୍ୟ ।
ବିସ୍ମରିଲ କିଗୋ ତୁମ୍ଭ ମାତାମହୀଗଣେ
ପଠାଉଥିଲେ ସନ୍ତାନେ ସମର ପ୍ରାଙ୍ଗଣେ ।
ଅସ୍ତ୍ରଶସ୍ତ୍ର ତରବାରୀ ସ୍ୱହସ୍ତେ ବନ୍ଧାଇ
ଦେଉଥିଲେ ସମାଦରେ ଗୌରବ ଦେଖାଇ ।
ସେହି ମନସ୍ୱିନୀଙ୍କର ହୋଇ ବଂଶଧର
ପିଲାଙ୍କୁ ନ ଛାଡ ପାଖୁଁ ଏଡ଼େ ତୁମ୍ଭ ଡର ।
କେତେ ଯେ ସନ୍ତାନ ଏବେ ଜନନୀ ଦୋଷରୁ
ଷଣ୍ଢାସ୍ତ୍ରୀ ସ୍ନେହବଶେ ନ ବାହାରି ଘରୁ ।
ଥିଲେହେଁ ଉଚ୍ଚ ବାସନା ଉଚ୍ଚଶିକ୍ଷା ମନ
କରି ନ ପାରିଣ ନିଜ ଅଭୀଷ୍ଟ ସାଧନ ।
ମୂର୍ଖ ହୋଇ କୂଅବେଙ୍ଗ ପରି ଆଜୀବନ
ମହାକ୍ଳେଶେ କରନ୍ତି ସେ ଜୀବନ ଯାପନ ।

ପରମ ପାତକ ମିଥ୍ୟା ଏହା ଶୁଣି ଜାଣି
ବ୍ୟବସା କରିଛ କହିବାକୁ ମିଥ୍ୟାବାଣୀ ।
କେତେ ମିଥ୍ୟା ଅଘଟଣ କରଣ ସର୍ଜନା
ଅକୁଣ୍ଠିତଚିତ୍ତେ କର ଅନ୍ୟରେ ରଚନା ।
ପ୍ରକାଶ ବେଳରେ ତାହା ଅନ୍ୟ ନାମେ ଦେଇ
ସୁକୃତ ନିଷ୍ଣମ କର ପୁଅ ମୁଣ୍ଡ ଛୁଇଁ ।
ଜଗତେ ଅତିଥି ସେବା ଶ୍ରେଷ୍ଠଧର୍ମ ସାର
କିନ୍ତୁ ତୁମ୍ଭଠାରେ ଅତି ତୁଚ୍ଛ ଅନାଦର ।
ନାହିଁ ତୁମ୍ଭମାନଙ୍କର ହିତାହିତ ଜ୍ଞାନ
ଯେତେବେଳେ ଯାହା ଇଚ୍ଛା କର ଆଚରଣ ।
ଆମ୍ଭେମାନେ ସଦା ତୁମ୍ଭ ପ୍ରତି ଅନୁରାଗୀ
ନିରନ୍ତରେ ଘାଣ୍ଟି ହେଉଥାଉ ତୁମ୍ଭଲାଗି
ତୁମ୍ଭେ ଘରେ ବସିଅଛ ସୁଖେ ଅନୁକ୍ଷଣେ
ଆମ୍ଭ ଖାଦ୍ୟପାନ ପ୍ରତି ଚିନ୍ତା ନାହିଁ ମନେ ।
ଈଶ୍ୱର କଥାକୁ ଯାଇ ସୁଦୃଢ଼ ବିଶ୍ୱାସ
ପ୍ରାଣପ୍ରିୟେ ପଦେପ୍ରତି କର ଅବିଶ୍ୱାସ ।
ଶାଶୁ ଶ୍ୱଶୁର ଦେବର ସ୍ୱକର ସଙ୍ଗତେ
ସାମାନ୍ୟ କଥାରେ କଳି ଲଗାଅ ହଠାତେ
ନାହିଁ ପର ଉପକାର ହୃଦେ ଲେଶମାତ୍ର
ପରହିଂସାବୃତ୍ତି ଚିନ୍ତାକର ଅହୋରାତ୍ର ।
ପରଘରଭଙ୍ଗା କଉଶଳ ଜାଣ ଭଲେ
ତା ଦେଖି ତୁମ୍ଭ ହୃଦୟ ନାଚଇ ପ୍ରଫୁଲ୍ଲେ
ନିଜର ସ୍ୱଜନଗଣ ମମତା ଉପେକ୍ଷି
ଇଚ୍ଛା କର ସ୍ୱାମୀସହ ରହିବ ଏକାକୀ ।
ଏକାକୀ ରହିବ ସଦା ଏକା ଚଳିବାର
ସ୍ୱରଗ ବୈକୁଣ୍ଠଠାରୁ ଶ୍ରେଷ୍ଠ ଜ୍ଞାନକର ।
କାହିଁପାଇଁ ଏତେ ସ୍ୱାର୍ଥପରତା ତୁମ୍ଭର
ନ ଜାଣକି ଏହା କ୍ଷଣଭଙ୍ଗୁର ସଂସାର
ଶୁଣିଛତ ଏ ଉତ୍କଳେ ଇତିହାସ ବାଣୀ
ଗଜପତି ଶ୍ରୀ ମୁକୁନ୍ଦଦେବ ପାଟରାଣୀ ।

ଭଙ୍ଗିଥିଲ ସଂଗର ଗାରମା ପଠାଣ
ସୁବର୍ଣ୍ଣ ଥାଳୀରେ ନିଜେ ପରଶିଲେ ଅନ୍ନ
ତେବେ ତୁମ୍ଭମାନଙ୍କର ହୁଏ ନାହିଁ ଶିକ୍ଷା
କହୁଅଛ ସବୁବେଳେ ରଗହଂସା ଦୀକ୍ଷା ।
ଛାଡ ଛାଡ ଏବେ ମନ୍ତ୍ର ଏସବୁ କୁସ୍ୱନ୍ତ
ହେବ ଯଦି ଦେଶ ଜାତି ଘରର ଉନ୍ନତି ।
ନଭଭୂଷା ଯେସନେ ଚନ୍ଦ୍ର ସରର କମଳ
ଧରଣୀର ଭୂଷା ରଜା ଯୋଦ୍ଧାଭୂଷା ବଳ
ତେସନ ଗୃହର ଭୂଷା ଅଟ ତୁମ୍ଭେମାନେ
ସେ ଗୃହକୁ ନିଜେ ନିଜେ କୁଶିକ୍ଷା ଶାସନେ
ନାନାରୂପ ଆବର୍ଜନା ପରିପୂର୍ଣ୍ଣ କରି
ବିଷମ ଯାତନାଦାୟୀ କାରାଗାର ପରି
ଘୃଣିତ କଲଣି ଆଣି ହିନ୍ଦୁଙ୍କ ସଂସାର
ଛାଡ ଛାଡ ରମଣୀଏ ଏ ହୀନ ବେଭାର । ୧୨୬ ।

---

ମିଶ୍ରଙ୍କର ଏହି ଶ୍ଳେଷ କାହାଣୀକୁ ଶୁଣି
ଧଡ଼ପଡ଼େ ଉଠି ହସି କହିଲେ ମିଶ୍ରାଣୀ ।
ତୁମ୍ଭେ କହେ ଅଟ ସେହି ଆର୍ଯ୍ୟ ବଂଶଧର
ଯାହାଙ୍କ ଯଶରେ ପୂର୍ଣ୍ଣ ହୋଇଛି ସଂସାର ।
ଋଷିସିନ୍ଧୁସମ ଋଚ ମହାବେଦ ଗ୍ରନ୍ଥ
ଥିଲା ଯାହାଙ୍କର ସଦା କାଳରେ ମୁଖସ୍ଥ ।
ତୁଷାର ଧବଳ ଯେଉଁ ଆର୍ଯ୍ୟେ ହେ ଗୋସାଇଁ
ଅତୁଳ ସାହସେ ଶୌର୍ଯ୍ୟେ ବିଶ୍ୱ ଚମକାଇ ।
ପ୍ରିୟତମ ପୁତ୍ରସମ ପାଳୁଥିଲେ ଧରା
ତାହାଙ୍କର ଯୋଗ୍ୟସୁତ ତୁମ୍ଭେମାନେ ପରା ?
ମହାଘୋର ତପସ୍ୟାରେ ଆଶୁତୋଷ କରି
ବିଶ୍ୱକୁ ସ୍ତମ୍ଭିତ କରି ହ୍ରଦଶ ତଠେଣା
ଗଙ୍ଗାକୁ ସ୍ୱର୍ଗରୁ ଟାଣି ଆଣି ସଙ୍ଗେ ସଙ୍ଗେ
ଅବହେଳେ ପ୍ରବେଶି ଯେ ପାତାଳ ଉତ୍ସଙ୍ଗେ

କପିଳଙ୍କ ଶାପେ ଭସ୍ମ ସ୍ୱଇମାନଙ୍କର
ଉଦ୍ଧାର ସାଧନ କରିଥିଲେ ଶୂରବର ।
ଇନ୍ଦ୍ରତ୍ୱ ଲଭିବା ପାଇଁ ଯେଉଁ ବୀରଗଣ
ଶତ ଅଶ୍ୱମେଧ ହେଲେ କଲେ ସମାପନ
ଥିଲା ଯାଙ୍କ ବାଣମାନ ଗଗନେ ସଞ୍ଚର
ଅଶ୍ୱଶ୍ୱେର ବାସବର ଗତି ରୋଧ କରି ।
ଯାହାଙ୍କ ଶରୀର ତେଜେ ହୋଇ ଶକ୍ତିହୀନ
ଗିରିଭେଦକାରି ବଜ୍ର ହେଲା ନିବାରଣ
ଉତ୍ତାଳ ତରଙ୍ଗମୟ ଅତ୍ୟନ୍ତ ଗଭୀର
ଅନନ୍ତ ଅଜେୟ ଏହି ବିଶାଳ ସାଗର-
ଜଳେ ବୁଡ଼ିବଲେ ଯେହ୍ନୁ ଉଠାଇ ପଥର
ନିର୍ମାଣି କୌଶଳେ ସେତୁ ହୋଇଥିଲେ ପାର ।
ତାଙ୍କର ସନ୍ତାନ ତୁମ୍ଭେ ଅଟ କହେ ବୀରେ
ପାଣିରେ ନପଶ କେବେ କୁମ୍ଭୀର ଭୟରେ ।
ତୁମ୍ଭର ପୂର୍ବ ପୁରୁଷେ କେତେ ଦାମ୍ଭିକରେ
ବୋଇତ ଚଳାଇ ସେହି ସମୁଦ୍ର ବକ୍ଷରେ
ଦେଶଦେଶାନ୍ତରୁ ନାନାରତ୍ନ ଆହରଣ
ଏଦେଶକୁ କରୁଥିଲେ ଧନରତ୍ନେ ପୂର୍ଣ୍ଣ ।
ତୁମ୍ଭେମାନେ ତାହାଙ୍କର ହୋଇ ବଂଶଧର
ସେ ସ୍ୱାଧୀନ ବୃତ୍ତି ଛାଡ଼ି ନଉକରି କର ।
ଗୋଲାମୀ ଗାଡ଼ରେ ଯୋଚି ଦର୍ପାରୂପ ହତା
ବହୁଅଛ ହାକିମଙ୍କ ହୁକୁମଣି ଛଡ଼ା ।
ପିତାଙ୍କ ସନ୍ତୋଷ ନିତ୍ୟ ପରିତୃପ୍ତି ଆଶେ
ଆଜୀବନ ବ୍ରହ୍ମଚର୍ଯ୍ୟ ଧରି ଅବଶେଷେ
ଦଶଦିନ ଯୁଝି ଦଶ ସହସ୍ର ସେନାଙ୍କ
ନାଶି ସ୍ୱପକ୍ଷଙ୍କ ରକ୍ଷାକରି ବୀରମଣି ।
ତୁଷ୍ଟମନେ ବସିଥିଲେ ଶରଶଯ୍ୟା ପରେ
ଜଗତ ବିଖ୍ୟାତ ମହାଭାରତ ସମରେ ।
ତୁମ୍ଭେପରି ତାହାଙ୍କର ଯୋଗ୍ୟ ବଂଶଧର
ବଣ୍ଡା ଫୋଡ଼ ହେଲେ ପାଦେ ମଲ୍ ମଲ୍ କର

ନିଜ ପୂର୍ବପୁରୁଷର ଗୁଣମାନ ହୃତ
ବଡବଡ ନିଜେ ବୋଲି କରୁଥାଅ ରଡ଼ି
କାହିଁ ସେ ଅତୀତ ଠେକ କାହିଁ ସେହି ବଂଶ
ବାଟଘାଟ ବିପଥରେ ପଡ଼ି ହେଲ ଧ୍ୱଂସ ।
ତୁମ୍ଭେ ପୁଣି ଅଟ ସତ୍ୟ ତାଙ୍କ ବଂଶଧର
ନାହିଁ ତ ସୁଗୁଣ ମାତ୍ର ଦୁର୍ଗୁଣ ଭଣ୍ଡାର ।
"ମାତୃରୂପା ପରଦାର" ଏ ମହାବଚନ
ହେଲାଣି ତୁମ୍ଭ ପକ୍ଷରେ ସାଗୁ ବାଇଗଣ
ବାଟେ ପରଯୁବତୀର ଉଡ଼ୁଥାଅ ଚାନ
ଜାଣ ନାହିଁ ହେବ ସତ୍ୟ ତାର ମାନହାନି
ଦେଖିଲେ ରୂପସୀ ବାମା ଲଜ୍ଜ୍ୟା ନତମୁଖ
ବାଙ୍କ ନେତ୍ରେ ଚାହିଁ ଲଭୁଥାଅ କେଉଁ ସୁଖ
ସ୍ନାନେ ବିବସନା ଥିଲେ ଲଜ୍ଜାଶୀଳା କେହି
ତାର ପାଶେ କିମ୍ପା ଯାଅ ଚୁହାଇ ଚୁହାଇ
ଇନ୍ଦ୍ରିୟ ଲଳନା ପାଇଁ ସେବିଣ ମଦିରା
ଭୁଲିଯାଅ ହିତାହିତ ହୋଇ ଆତ୍ମହରା
ଏ ବିଷୟରେ ଲଭି ଦୋଷ ଭୁଲି ନିଜତତ୍ତ୍ୱ
ମନୁଷ୍ୟ ହୋଇଣ ପୁଣି ବରିଛ ପଶୁତ୍ୱ ।
ଲଜ୍ଜାହୀନ ପଶୁ ତୁମ୍ଭେ କରିଅଛ ସାର
କଥାରେ ଜଳନ୍ତା ନିଆଁ ହୃଦରେ ଅଙ୍ଗାର ।
ସବୁଗୁଣ ପାଶୋରିଲ ଛଡ଼ି ନୀତିଶିକ୍ଷା
ଆଦରରେ ଆଚରିଲ ବିପରୀତ ଦୀକ୍ଷା ।
ତୁମ୍ଭର ପାଷଣ୍ଡ ପ୍ରାଣ ପାଷାଣରୁ ଟାଣ
ଘୃଣ୍ୟ ତାର ପରିଚ୍ଛଦ ନାହିଁ ଦମ୍ଭମାନ ।
ନାରୀରୂପେ ହୋଇ ବାଇ ଛାଡ ମାନ୍ୟାମାନ୍ୟ
ଦର୍ଶାଅ ସଂସାରେ କେତେ ଘୃଣ୍ୟ ଦୃଶ୍ୟମାନ ।
ନାରୀରଙ୍କ ଅହର୍ନିଶ ଭଜ ନାରୀ ଅଙ୍କ
ପରିଣାମ ପାଇଁ ମନେ ନରଖି ଆତଙ୍କ ।
ପରନାରୀ ଅନ୍ୱେଷଣ କରିଛ ଜୀବିକା
ପରଦାରେ ଯେଣୁ ସଦା ହୃଦ ତବ ବିକା ।

ରୂପବତୀ ସଧର୍ମ୍ମିଣୀ ଥାଉଁ ଥାଉଁ କନ୍ତ
ଅପର ଅଧରାମୃତ ପାନେ ଥାଅ ମାତ୍ତ ।
କଥାରେ କଥାରେ କହ ପୁରୁଷ ଭ୍ରମର
ବୁଲି ବୁଲି ଖୋଜେ ମଧୁ ଏ ପିନା ସୁନ୍ଦର ।
ଏହୁ କହେ ଉଦାଦର୍ଶ ତୁମ୍ଭମାନଙ୍କର
ଗ୍ରହିବାକୁ ଅନ୍ତରତେ ଅଭିଶ୍ଳା ପତର ।
ନାରୀଜାତି ବଳଦମ୍ଭ ଥିଲେହେଁ ଅମାପ
ଦେଖିଛନ୍ତି ତୁମ୍ଭ ପରି ତାଙ୍କୁ କେତେ ପାପ ।
ଦୋଷ ଛିଦ୍ର ଘୋଡ଼ାଇବ ବୋଲିଇ ସୁଜନ
ଏଥିପାଇଁ କର ନନ୍ତ ପତ୍ରୀ ଦେବାର୍ଚ୍ଚନ ।
କହଦେଖି କେଉଁ ଦଶଁ ଏପରି ପାମର
ତୁମ୍ଭ ପରି ଦୁର୍ବୃତ୍ତଙ୍କୁ ଦେବେ ଭଲ ବର ।
କାଳପରି ସର୍ବଗ୍ରାସୀ ବୃତ୍ତି ଆଚରଣ
କରଣ ନାଶିଲ ନାରୀ ସତୀତ୍ୱ ସୁଗୁଣ ।
ସ୍ୱବ ତୁମ୍ଭେ କର ଯାହା ଆନେ ଅଗୋଚର
ବୁଝ ନାହିଁ କାଳ ଅଟେ ଗ୍ଲେରଙ୍କର ଗ୍ଲେର ।
ଅଙ୍ଗଶର ପରିଣାମ ମେହ ଉପଦଂଶ
ଉପହାର ଦଏ କରି ଆଦର ବିଶେଷ ।
ପାଇ ତୁମ୍ଭେ ତାହାଠାରୁ ସେହୁ ଦବ୍ୟ ଭେଟି
ବଣ ମାରି ଦେଖୁଥାଅ ଦଶନ ନକୁଟି ।
ଏପରି ଖଳପ୍ରକୃତି ଅଟେ ତୁମ୍ଭ ଜାତି
ନାରୀରତ୍ନ ହେଲେହେଁ ସେ ଦୁଃଖ ପାଏ ଅତି ।
ପରିଣେୟୁ ପ୍ରଣୟର ମଧୁର ଭୂମିକା
କଥାରେ ଶୁଣଇ ନାରୀ ମନ କରି ଫିକା ।
ଅନ୍ତରରେ ସବୁବେଳେ ହେଉଥାଏ ଘାରି
ଜୀବନରେ ପତି ତାର ଅଟଇ ଭିଗାରୀ ।
ପତି ପିନା ନାରୀଙ୍କର କଟେ ମହା ଧନ
ସେ ଯଦି ଦୁଃଅଇ ମନ ରହେ କି ତା ମାନ ।
ତୁମ୍ଭ ସବୁ ଗୁଣମାନ ନାରୀହୃଦ ଶୈଳ
ନ ଦେଖିବ ନାରୀ ତାଙ୍କେ ମୁଖେ ତେଣୁ ଚେଳ ।

ଆବଶ୍ୟକ ବେଳେ ଯେହୁ ଗଗନକୁ ଉଠି
କୁବେରଙ୍କୁ ଜିଣି ଧନ କରୁଥିଲେ ଲୁଟି ।
ଯାହାଙ୍କର ବାଣଭୟେ ପାତାଳ ପ୍ଲାବନୀ
ଫୁଆରି ପରିଏ ଉଠୁଥିଲେ ମନ୍ଦାକିନୀ ।
ଯାହାଙ୍କର ମହାଘୋର ଗଦାଦଡାସରେ
ଉଡୁଥିଲେ ଗଜରାଜ ଅସଂଖ୍ୟ ଶୂନ୍ୟରେ ।
ତୁମ୍ଭେ ତାଙ୍କ ସୁତପରି ବାଉଁଶ ଲାଠିକି
ଧରିଣ ବୀରତ୍ୱେ ଚାଲ ଫୁଲାଇ ଛାତିକି ।
ବିଜ୍ଞାନ ଦର୍ଶନ ଅଙ୍କଶାସ୍ତ୍ର ଅଗଣନ
ବିରଚି ସାହିତ୍ୟଗ୍ରନ୍ଥମାନ ପଣପଣ ।
ସରସ୍ୱତୀ ଭଣ୍ଡାରକୁ ଭରି ବାରବାର
ଏସ୍ୱବତେ କରୁଥିଲେ ଯେମାନେ ବିହାର ।
ଜଗତ ପ୍ରସିଦ୍ଧ ଯାହାଙ୍କର କୀର୍ତ୍ତିମାଳା
ହୋଇଅଛି ଧରଣୀର କଟୀରେ ମେଖଳା ।
ତାହାଙ୍କ ତନୟ ହୋଇ ହେଲ ଏତେ ରଦ
ତୁମ୍ଭର ଉନ୍ନତିସୀମା ନିଜ ସ୍ୱାର୍ଥସିଦ୍ଧି ।
ଘୋର ତପସ୍ୟାରେ ବ୍ରାହ୍ମଣତ୍ୱ କରି ଲାଭ
ନିଜଟେକ ରକ୍ଷାପାଇଁ ଜଗତ ଦୁର୍ଲ୍ଲଭ ।
ପ୍ରାଣୀ ପରିପୂର୍ଣ୍ଣ ଏହି ପୃଥିବୀ ସମାନ
ଅନ୍ୟଏକ ସୃଷ୍ଟି କରୁଥିଲେ ଯେ ନିର୍ମାଣ ।
ଯାହାଙ୍କ ମହା ତପସ୍ୟା ବଳରେ ଦଉଡ଼ି
ପାପିଷ୍ଠ ତ୍ରିଶଙ୍କୁ ବଳେ ବସୁଥିଲ୍ଲ ମାଡ ।
ଶିଳ୍ପୀ ବିଶ୍ୱକର୍ମା ଯୋଗେ ନିର୍ମିତ ଯତନେ
ସ୍ୱର୍ଗେ ଦେବରାଜଙ୍କର ରତ୍ନସିଂହାସନେ ।
ତୁମ୍ଭେ ପରି ଅଟ ଏହି ଦୃଢବ୍ରତଙ୍କର
ଉତ୍ତରାଧିକାରୀ ଏଣୁ ସିନା ଥର ଥର ।
ମୁଗ୍ଧକଲେ ଜଗତକୁ ମହାତ୍ମା ଉତ୍ତମ
ଚୌଦିଗେ ପ୍ରଚାରି ମହା ଅଭିନବ ଧର୍ମ ।
ମୁକ୍ତକଲେ ମାନବଙ୍କୁ ସେ ପୁଣ୍ୟାଲୋକରେ
ବିତରି ସ୍ୱର୍ଗୀୟ ସୁଧା ରଶ୍ମି ଭୂଖଣ୍ଡରେ ।

ତୁମ୍ଭର ଧର୍ମ୍ମର ଦ୍ୱାର ଅଛଇ ଉଦର
ଯାହାତାହା ଭରି ସଦାବେଳେ ପୂର୍ଣ୍ଣକର ।
ଆର୍ଯ୍ୟାବର୍ତ୍ତ ଅଳଙ୍କାର ବୀରେନ୍ଦ୍ର ପ୍ରତାପ
ଯବନ ସମ୍ରାଟ ସହ ଦେଖାଇ ପ୍ରତାପ ।
ଅସଂଖ୍ୟ ସେନାନୀ ସହ ହଳଦୀ ଘାଟରେ
ବିଷମ ସଂଗ୍ରାମ କରି ଅତ୍ୟଳ୍ପ ସୈନ୍ୟରେ ।
ଦଳିଲେ ଯବନକୁଳ ଛିନ୍ନଭିନ୍ନ କରି
ଭବେ କହ କିଏ ଆଉ ହେବ ତାଙ୍କ ସରି ।
ପର୍ବତେ ପର୍ବତେ ପୁତ୍ର କନ୍ୟା ଘେନି ସ୍ତ୍ରୀୟେ
ଭ୍ରମିଲେ ପଛକେ ଆହା ବହୁବର୍ଷ ଯାଏ
ତଥାପି ଶତ୍ରୁମାନଙ୍କ ନ ନେଲେ ଆଶ୍ରୟ
ସ୍ୱାଧୀନ ଜୀବନ ଭବେ ଦୁର୍ଲ୍ଲଭ ନିଶ୍ଚୟ
"ପରାଧୀନ ସିଂହଠାରୁ ସ୍ୱାଧୀନ ହରିଣ"
ସେହି କହୁଥିଲେ ଭବେ ଶ୍ରେୟ ଶତଗୁଣ ।
ସେ ଧନ୍ୟ ଯଶସ୍ୱୀଙ୍କର ପବିତ୍ର ସ୍ମୃତିରେ
ତୁମ୍ଭ ଦେହ ମନ ଗଢ଼ା ହୋଇଛି କି ବୀରେ ?
ନିଜ ମହାପତନକୁ ନସ୍ବର କପାଁଇ
ଦୋଷୁଛ ଆମ୍ଭର କାର୍ଯ୍ୟ କଳାପ ଦେଖାଇ
ଘଟିଛି ଯା କିଛି ଅବନତି ସେଥିପାଇଁ
ସବୁରୂପେ ତୁମ୍ଭେମାନେ ଅଟ ତାର ଦାୟୀ ।
ସମାଜର ଅର୍ଦ୍ଧଅଙ୍ଗ ଅଟନ୍ତି ଯୋଷିତ
ପୁଣି ସେ ଜନନୀ ଜାତି ନୁହେ କି ଉଚିତ ।
ସମାନ ସମ୍ମାନ ତାଙ୍କୁ ଦେବା ପ୍ରଭୁପର
ତାର ବ୍ୟତିକ୍ରମ କରି ଅତି ଅସୁନ୍ଦର ।
ଆମ୍ଭ ପ୍ରତି ହେୟ ଅବିଶ୍ୱାସ ହାନମାନ
କରିବା ଦୃଷ୍ଟାନ୍ତ ଯହିଁ ତହିଁ ବିଦ୍ୟମାନ ।
ତୁମ୍ଭେ ସଦା ପ୍ରିୟ ସ୍ନେହୀଜନେ ହୋଇ ସଙ୍ଗ
କରୁଥାଅ କଉତୁକ ହାସ୍ୟରସ ରଙ୍ଗ ।
ଆମ୍ଭେ ସେ କଥାକୁ ଦୃଷ୍ଟି ନଦେଉ କିଞ୍ଚିତ
କିନ୍ତୁ ତୁମ୍ଭଠାରେ ଦେଖୁଁ ତାର ବିପରୀତ ।

ଆମ୍ଭେ ଯଦି କେତେବେଳେ ପ୍ରିୟଜନ ମେଳେ
ହସି ଖୁସି ହୋଇମିଶୁ ସ୍ନେହ ଲୁଚୁହଲେ ।
ତୁମ୍ଭର ଅସହ୍ୟ ପୁଣି ହୁଅଇ ହୃଦୟ
ସମ୍ଭାଳି ନ ପାରି ହୁଅ ରାଗ ଅତିଶୟ ।
ସଙ୍ଗି ସମାଜରେ କହ କଟୁ କଥା ବଳି
ଲଜ୍ଜାରେ ହୃଦୟ ଫାଟେ ମର୍ମଯାଏ ଜଳି ।
ତାହାର ଆଗରେ ମୁହଁ ନପାରୁ ହେ ଟେକି
ପିଲେ ବିସ୍ମୟ ହୁଅନ୍ତି ଏ ବେଶ୍ୱର ଦେଖି ।
ହରଷେ ବିଷାଦ ପୁଣି ଶାନ୍ତରେ ଅଶାନ୍ତ
ବୃଥାରେ ଘଟାଇ କର ତୁମ୍ଭମନ ତୃପ୍ତି ।
ଅଶ୍ରୁ ପୂର୍ଣ୍ଣ ହୁଏ ଶୁଣି ସଭିଙ୍କ ବଦନ
ନୀରବରେ ଦୁଃଖେ ସର୍ବେ ହୁଅନ୍ତି ମଉନ ।
ଏହି କଥେ ବାରେ ତୁମ୍ଭ ସଦବ୍ୟବହାର
ନିର୍ଲ୍ଲଜ୍ଜ ନିର୍ଦ୍ଦୟସ୍ୱଭାବେ ପୁଣି ତର୍କ କର ।
ଯମ୍ଭୁ ଆମ୍ଭେମାନେ ତୁମ୍ଭ ସମ୍ମାନ ରକ୍ଷଣେ
ପାଶୋରି ନ ପାରୁ ସେହି କଥା ଅଙ୍ଗାବନେ ।
ଲବଣୀ ଠାରୁ କୋମଳ ଅବଳା ଅନ୍ତର
ସ୍ନେହପ୍ରୀତି ବଳେବଶ ହୁଅଇ ସତ୍ୱର ।
ଭଲମନ୍ଦ ହିତାହିତ ସବୁଦିଏ ପୋଛି
ଅନ୍ତରେ ଅନ୍ତର ସ୍ନେହେ ଦେଇଥାଏ ଯୋଚି ।
ନ ବୁଝେ ପୁରୁଷ ଜାତି କେତେ ଦଗାଦାର
ଦୁର୍ବଳା ଅବଳା ପ୍ରତି କଟୁ ବ୍ୟବହାର ।
ଈଶ୍ୱରଇ ମନେ ସେହି ସମସ୍ତଙ୍କୁ ଜଡ
ନିଜକୁ ନିଜେ ମଣଇ ସବୁଠାରୁ ବଡ ।
ଭସ୍ମମିଶା ଭକ୍ତ କେବେ ନୁହଇଁ ଶ୍ରେୟ
ମୁହଁରେ ଆଦର ମାତ୍ର ଅନ୍ତରରେ ହେୟ ।
ପୁଣ୍ୟମୟୀ ଯଶସ୍ୱିନୀ ଯେ ବୀର ରମଣୀ
ସ୍ୱର୍ଣ୍ଣମୟ ପୁରେ ଥିଲେ ହୋଇଣ ବନ୍ଦିନୀ ।
ନିଜର ଅଟଳ ଧୈର୍ଯ୍ୟେ ଅତୁଟ ସାହସେ
ପଣ୍ଡସଦେ ମଣ୍ଡଦେଇ ଏକାନ୍ତ ମାନସେ ।

ବିଷମ ଯାତନା ସହି କୁସୁମ ବନରେ
ନୀରବେ 'ଚଉଦମାସ ଯାପିଲେ ଦୁଃଖରେ ।
ସମସ୍ତ ଦାକ୍ଷିଣାତ୍ୟର ପ୍ରତାପୀ ରାଜନ
ଛନପୁରେ ପରାଜିତ ମହା ବଳବାନ ।
ଦାନବେନ୍ଦ୍ର ପରି ଦୁଷ୍ଟ ଭୀଷଣ ତର୍ଜ୍ଜନ
ତହିଁରୁ ଭୀଷଣତର ଯେତେ ପ୍ରଲୋଭନ ।
ଛୁଞ୍ଚିଲେ ଅବହେଳେ ମାୟାବୀଙ୍କ ମେଳେ
କେହିତ ନ ଥିଲେ ସାହା ତହିଁ ସେତେବେଳେ ।
ହେଲେହେଁ ରାଜାର ସୁତା ଫଳ ମୂଳ ଖାଇ
ନର ମାନ ଧାନ କରି ସ୍ୱାମୀ ରୂପ ଧ୍ୟାୟି ।
ସୂର୍ଯ୍ୟ ସୋହାଗିନୀ ଧନୀ ଯଥା ସୂର୍ଯ୍ୟମୁଖୀ
ତଥା ସ୍ୱାମୀ ସୁଖେ ସୁଖୀ ସ୍ୱାମୀ ଦୁଃଖେ ଦୁଃଖୀ ।
ନାରୀକୁଳ ସାରରତ୍ନ ସତୀତ୍ୱର ବଳେ
ମହା ପାତିବ୍ରତ୍ୟ ଧର୍ମ୍ମ ପାଳନ କରିଲେ ।
ସୁଶୀଳାର ସେ କାଳରେ ମନକଷ୍ଟ ଯେତେ
ଅନ୍ତର୍ଯ୍ୟାମୀ ବିନା କିଏ ଜାଣିବ ଜଗତେ ।
ଯୁଦ୍ଧଶେଷେ ତାହାଙ୍କର ସେ ମହାତ୍ୟାଗର
ପ୍ରତି ମହାଶୟ ଭଲ ସେ ସ୍ୱାମୀ ଭକ୍ତିର ।
ଶୋକକ୍ଳିଷ୍ଟ ମନତୋଷି ମଧୁର ବଚନେ
ଆଦରେ କରନ୍ତେ କାହିଁ ପୂଜା ସସମ୍ମାନେ ।
ତାର ବଦଳରେ ନେଇ ଜ୍ୱଳନ୍ତା ଅନଳେ
ଚରିତ୍ର ପରୀକ୍ଷା ଲାଗି ପୁରାଇଲେ ବଳେ ।
ଏହା କି ସେ ପ୍ରଣୟର ଶେଷ ପୁରସ୍କାର
ଏଥିରେ ଧର୍ମ୍ମରେ ମତି ହୋଇବ କାହାର ?
ଆହା କିବା ପଢ ଭକ୍ତି ତଥାପି ସେ ସତୀ
ସ୍ୱାମୀର ସଚ୍ଛନ୍ଦ ପାଦେ ଦେଇଥିଲେ ମତି ।
କେଉଁ ଏକ ଦୁଷ୍ଟ ଦୁର୍ମ୍ମୁଖର ମୁଖୁଁ ଶୁଣି
ସତୀର ଅଖ୍ୟାତି ଭୟେ ବୀରକୁଳମଣି ।
ପ୍ରିୟାକୁ ନିର୍ଦ୍ଦୋଷୀ ବୋଲି ନିଜେ ଜାଣିଲେହେଁ
ବିସ୍ମରି ପୂର୍ବର କଥା ନିତାନ୍ତ ନିର୍ଦ୍ଦୟେ ।

ଗର୍ବଭରାଳସା ସଦାବେଳେ ଶୁଦ୍ଧା ସାଧ୍ୱୀ
ପତିବ୍ରତା ବନିତାଙ୍କୁ ପ୍ରତାରଣା କରି ।
ନେଇ ଛାଡ଼ିଦେଲେ ଘୋରଗହନରେ ହେଲେ
ଏକାକୀ ସେ ଭୟଙ୍କର ହିଂସ୍ରଜନ୍ତୁ ମେଳେ ।
ଏ ନୀଚ ବେଶ୍ୱର ସୁଦ୍ଧା ପଶୁମାନେ ଭବେ
ନକରିବେ ତାଙ୍କ ପ୍ରିୟା ପ୍ରତି କେବେ ଲବେ ।
ଏମନ୍ତ ନୃରବେଶ୍ୱର କଲେହେଁ ନିର୍ମମ
ପରଜା ରଞ୍ଜକ ବୋଲି ବାଜିଲା ଡିଣ୍ଡିମ ।
ମାତ୍ର ସଭିଙ୍କ ନୟନେ ଦୋଷୀ ସେ ଯୋଷିତା
ଧନ୍ୟ ତୁମ୍ଭ କର୍ମ ଧନ୍ୟ ଧନ୍ୟ ବିବେକିତା ।
ବିଷାଦିନୀ ସୂର୍ପଣଖା ରାବଣ ଭଗିନୀ
ଶ୍ରୀରାମ ସୁନ୍ଦର ରୂପ ବିଲୋକିଣ ଧନୀ ।
ମାଗିଲା ପ୍ରଣୟ ଭିକ୍ଷା ତାହାଙ୍କ ପୟରେ
ବିରୁଦ୍ଧ ନୁହଇ ଯାହା ନିଜ ସମାଜରେ ।
ଦୁହିଙ୍କ ପାଖକୁ ଦୁହେଁ ପଠାଇ ପଠାଇ
ଜାଣିଛ କେତେ ରହସ୍ୟ କଲେ ଦୁଇ ଭାଇ ।
ଶେଷେ ଦୁଃଖିନୀ ବାଳାର କାଟି ନାକ କାନ
କେତେ କଷ୍ଟଦେଲେ ଯେତେକଲେ ଅପମାନ ।
ଏମନ୍ତ କି ଦୋଷ କରିଥିଲା ବାଳାମଣି
ଏତେ ଗୁରୁଦଣ୍ଡ ସେହୁ ଲଭିଲା ଯା ଘେନି ।
ସ୍ୱଭାବେ ଅବଳା ଜାତି ଚିର ପରାଧୀନା
ବଳିଷ୍ଠ ପୁରୁଷେ ଆତ୍ମସୁଖ ପାଇଁ ସିନା ।
ନିଜ ମନୋମତ ଭୋଗ୍ୟ ସାମଗ୍ରୀ ପରାଏ
ଆମ୍ଭଙ୍କୁ ସଜାଇଅଛ ଗୋଡ଼ୁଁ ମୁଣ୍ଡଯାଏ ।
ତୁମ୍ଭେହେ ପୁରୁଷମାନେ ଆତ୍ମ ସୁଖ ପାଇଁ
ରହିଅଛ ସଦାବେଳେ ଆମ୍ଭଙ୍କୁ ଭୁଲାଇ ।
ତୁମ୍ଭ ସୁଖ ପାଇଁ ଲୋଡ଼ା ଅଟଇ ଯେତିକି
ଜୀବନର ଆବଶ୍ୟକ ଭବେ ରମଣୀଙ୍କି ।
ସେତିକି ଦେଇଛ ମାତ୍ର ଜୀବନ ପାଇଁ ଦିନେ
ନାରୀଙ୍କୁ ପୁରୁଷ କେବେ ଦେଇ ନାହିଁ ଦିନେ

ଅବରୋଧ ପ୍ରଥା ଯାହା ଦେଖ ମହିଳାଙ୍କ
ତୁମ୍ଭ ସ୍ୱାର୍ଥପରତାର ଅଟେ ତା କଳଙ୍କ ।
ସମାଜର ରକ୍ଷା ପାଇଁ ଦୋଷ ଗୁରୁତର
ନୁହଇ କଦାପି ବ୍ୟଭିଚାର ରମଣୀର ।
ପୁରୁଷର ପରଦାର ଦୋଷ ଅପେକ୍ଷାରୁ
ସବୁଠାରେ ପାପ ଯେଣୁ ସଦାବେଳେ ଗୁରୁ
ପୁରୁଷ ଯେବେ ହରଇ ପରର ଯୋଷିତ
ରସିକ ନାଗର ବୋଲି ହୁଏ ପରିଚିତ
ନାରୀ ଯେବେ ବ୍ୟଭିଚାରୀ କେତେବେଳେ ହୁଏ
ଚିରଦିନ ପାଇଁ ସବୁ ସୁଖପାକ ଦଏ ।
କିପାଁ ଏହି ତାରତମ୍ୟ ? ତୁମ୍ଭ ସୁଖ ପାଇ
ଆମ୍ଭର ସତୀତ୍ୱ ବ୍ରତ ରକ୍ଷା ହେବା ନୁହି ।
ସଦା ଆମ୍ଭ ପକ୍ଷପାତୀ ସମାଜର ନେତା
ବଳବାନ ତୁମ୍ଭଜାତି କାର୍ଯ୍ୟର କରତା
ଅନୁନ୍ନତ ଆମ୍ଭଜାତି ଏଣୁ ଅନାୟତ୍ତେ
ରହିଛନ୍ତି ତୁମ୍ଭ ବାହୁ ବଳର ଆୟତ୍ତେ ।
ସମାଜର ସ୍ତମ୍ଭଧରମାନେ ଶ୍ଳୋକ ବାନ୍ଧି
ସ୍ୱକାନ୍ତର ହିତେ କରିଛନ୍ତି ନାନାଫନ୍ଦି ।
ଅମଙ୍ଗଳ ଶଙ୍କା କରି ତୁମ୍ଭ ଶୁଭକର୍ମେ
ନପିବେ ବିଧବାମାନେ ବାଧିଲେହେଁ ମର୍ମେ
ଆମ୍ଭ ପକ୍ଷପାତୀ ଏହି ନିଷ୍ଠୁର ନିୟମ
ନୁହେ କି ତୁମ୍ଭ ଜାତିର କଳଙ୍କ ବିଷମ ।
ନହୁଅନ୍ତି ନାରୀମାନେ ଧନାଧିକାରିଣୀ
ସମ୍ପତ୍ତିର ଦାନକର୍ତ୍ତା ଗୃହର ସ୍ୱାମିନୀ ।
ଭଣ୍ଡ ଭକ୍ତ ଚୂଡାମଣି କାଣ୍ଡଜ୍ଞାନହୀନ
ସମାନ ଏ ଭଣ୍ଡ କେତେ ସ୍ୱାର୍ଥାନ୍ଧ ବ୍ରାହ୍ମଣ ।
ମଧ୍ୟଯୁଗେ ସ୍ୱାର୍ଥପର ନାନାଶାସ୍ତ୍ରକାର
ଏ ନିଷ୍ଠୁର ବିଧି କରି ଗ୍ରନ୍ଥର ଭିତର ।
ଗୃହରେ ପାଳିତ ହୀନ ପଶୁଠାରୁ ବଳି
କେଉଁ ଅତ୍ୟାଚାରେ ଆମ୍ଭେ ନପାଉଛୁ ଜଳି

ମଣଙ୍କ ବାଟିବାଠାରୁ ଲୁଣ୍ଡା ଦେବାଯାଏ
କରୁଅଛୁ ପଢ଼ିବାକୁ ବେଲଡ ନପାଏ ।
ସ୍ୱବଡ ମନରେ ଥରେ କେତେ ତୁମେ ପଠ
କରୁଛ ବୁକର୍ମ ଯେବେ ଦଉଡ ଦଉଡ
ସହାସେ ପଶୁଏ ବୃଦ୍ଧା ମରନ୍ତି ତୃଷାରେ
ବୈଶାଖ ମାସର ମହାପ୍ରଚଣ୍ଡ ଖରାରେ ।
ପଚେହଲକାମଯ୍ୟ ଏକାଦଶୀ ଉପବାସେ
ଝିଅ ଭଗ୍ନୀ ଜନମାନ୍ତି ମରଲେହେଁ ଶୋଷେ
ନଦଅ ନିର୍ଦ୍ଦୟମନେ ଟିକେମାତ୍ର ଜଳ
ଧନ୍ୟ ତୁମ୍ଭ ଧର୍ମ ଧନ୍ୟ ତୁମ୍ଭ ଶିକ୍ଷାଫଳ ।
ଦୟାଶୀଳ ସହୃଦୟ ଇଂରେଜ ନୃପତ
ନ ଉଠାଇ ଥିବାଯାଏ ସତୀଦାହ ଶ୍ରୀତ
ଏ ଖଣ୍ଡ ଧର୍ମରେ ମାଣ୍ଡ ବଳାତ୍କାରେ ଧର
ବାନ୍ଧି ଛନ୍ଦ ଅସହାୟା କୋମଳା କୁମାରୀ ।
ଫିଙ୍ଗି ଦେଉଥିଲ କିନା ଜ୍ୱଳନ୍ତା ଅଗ୍ନିରେ
ଉଖୁଡା ଦହ ଲଳସୀ ବ୍ରାହ୍ମଣଙ୍କ ଶିରେ ।
ମାତା ସ୍ୱତା ଭଗ୍ନୀହତ୍ୟା ଭଷମ ପାପର
କସ କୈଫିୟତ ଅଛି ଆଜ୍ଞି ଚର୍ତ୍ତାକର
ନ୍ୟାୟଦରବାରେ ବସି ଚନ୍ଦଗୁପ୍ତ ରାୟ
ମାଗିବ ମାଗବ ତାହା ମାଗିବ ନିଶ୍ଚୟ ।
ନିଜକୁ ବୁଡାଇ ପୁଣି ଆମ୍ଭଙ୍କୁ ବୁଡାଇ
କେତେମତେ ଅସମ୍ଭବ କର୍ମକାଣ୍ଡ ଧ୍ୟାୟେ
କାୟକ୍ଳେଶ ସହ କରୁ ଉପବାସବ୍ରତ
ପୁରୁଷମାନଙ୍କ ଶୁଭ ମଙ୍ଗଳ ନିମନ୍ତ ।
ଅତଏବ ଆମ୍ଭେମାନେ ଯେହେତୁ ସେଥିରେ
ତୁମ୍ଭର ମଙ୍ଗଳ ହେବ ସକଳ ପ୍ରକାରେ ।
ଯାହାଯାହା ଉପାଦେୟ ପୁଜା ଦ୍ରବ୍ୟମାନ
ଭକ୍ତିଭରେ କରୁ ଆଗେ ସ୍ୱାମୀଙ୍କୁ ପ୍ରଦାନ
ସେମାନ ଆନନ୍ଦେ ଉଦରସ୍ଥ କର ତାହା
ବୁଡଙ୍କ ବଦଳେ ପଛେ କହୁଥାନ୍ତି ଏହା ।

ନୁହେ, ତାହା ଭକ୍ତି ଆମ୍ଭ ନିଜ ସ୍ୱାର୍ଥ ବୁଦ୍ଧି
ବଳବାନ ହେଲେ ପୁଂସ ହେବ କାମ ସିଦ୍ଧି ।
କହିବାକୁ ଶୁଣିବାକୁ ଉଭୟତଃ ଲଜ
ଏପରି କୃତଘ୍ନ ତୁମ୍ଭେ ପୁରୁଷ ସମାଜ ।
ଦେଖ ଆମ୍ଭ ନାରୀ ଜାତି ମାତା ରୂପ ଧରି
ଶୈଶବରୁ ଥାଉ ତୁମ୍ଭ ପ୍ରାଣ ରକ୍ଷା କରି ।
ଯୌବନେ ବନିତା ହୋଇ ବନିତା ସ୍ୱରୂପେ
ବିଳାସ ସମ୍ଭୋଗ ତୁମ୍ଭ ମନ ଅନୁରୂପେ ।
କେତେ ସେ ଦିଅନ୍ତି, ପୁଣି ସ୍ଥବିର ବୟସେ
ଦେବତା ପରାୟେ ପୂଜୁଥାନ୍ତି ମହୋଲ୍ଲାସେ ।
ତଥାପି ତୁମ୍ଭ ପୁରୁଷ ଜାତି ଆଚରଣ
ଏପରି ନୃଶଂସ ପୁଣି ଏତେ କୃପଣ ।
ଲାଗିଅଛି ଚିରକାଳ ଆଜ ନୁହେ ନୁଆ
ସ୍ମୃତି ପୁରାଣରେ ଅଛି ଲିପିବଦ୍ଧ ତାହା ।
ଜାଣିଛ ବ୍ରଜବଧୂ ଗୋପାଙ୍ଗନା ଦଳ
ଶ୍ରୀକୃଷ୍ଣ ପ୍ରେମରସରେ ହୋଇଣ ବିହ୍ୱଳ ।
କୁଳ ମାନ ସମ୍ଭ୍ରମକୁ ତେଜି ଉଲ୍ଲସିତେ
ଘୋରବନେ ପଶି ଯାଉଥିଲେ ବିହ୍ୱଳିତେ ।
ଶେଷେ ତାଙ୍କୁ ପରିତ୍ୟାଗ କରି ଗଲେ ଚାଲି
ବ୍ରଜାଙ୍ଗନା ମଲେ ଆଜୀବନ ଜଳି ଜଳି ।
ସେ କୃଷ୍ଣ ହଟିଆ ରସଶେଖର ବୋଲାଇ
ମଥୁରା ନାରୀଙ୍କୁ ଥିଲେ ସେପରି ଭୁଲାଇ ।
ରାଧାର ବିରହ ବାଧା କେବେତ ନଗଲା
କୃଷ୍ଣ ଆଶ୍ରା କରି କେତେ ଦୁଃଖ ନ ସହିଲା ।
ବୃନ୍ଦାବତୀ ହଠହଠା ଶୁଣିଛ ଶ୍ରବଣେ
ପ୍ରଥମେ ଭୁଲାଇ ତାକୁ ପ୍ରୀତି ସମ୍ବୋଧନେ ।
ସ୍ତବେ ବହୁ ଭୁଲୁଥିଲେ ପୁଣି ଧୂର୍ତ୍ତପଣେ
ଭସ୍ଥଡ଼ି ନିଗମ ବନେ ବାନ୍ଧି ଗଲେ କ୍ଷଣେ ।
ସେହି କୃଷ୍ଣଚନ୍ଦ୍ର ପରା ପୁରୁଷ ଉତ୍ତମ
ତାଙ୍କଠାରେ ଥିଲା ପୁଣି ଏଗୁଣ ନିର୍ମ୍ମମ ।

ସେ ନର୍ମମ ପ୍ରାୟଶ୍ଚିତ୍ତ ହେଲା ଶେଷକାଳେ
ପ୍ରାଣ ବିସର୍ଜିଲେ ଈଶ୍ୱରର ଶରଜାଳେ ।
ତେବେ କରୁଅଛ କିପାଁ ଏପରି ବଡ଼ାଇ
ତୁମ୍ଭ ଏ ଦୁଷ୍କୃତ ପାଇଁ ପ୍ରାୟଶ୍ଚିତ୍ତ ନାହିଁ ।
ଦେବରାଜ ଇନ୍ଦ୍ର ଆସି ଧାଡକାରେ ପଶି
ଭୁଲାଇଲେ ମାୟାଜାଳେ ଅହଲ୍ୟା ରୂପସୀ ।
ଇନ୍ଦ୍ରଙ୍କ ବିଶେଷ କିବା ତହିଁ ହେଲା ହାନି
ଲଭିଲେ ସହସ୍ର ଚକ୍ଷୁ ଦୁଇସ୍ଥାନେ ପୁଣି ।
ନିସ୍ପୃହା ଅବଳା ଦେଖ ତାଙ୍କ ସେହି ଦୋଷେ
ଧରିଲା ପାଷାଣ ରୂପ ସହସ୍ର ବରଷେ ।
ଏହିପରି ତୁମ୍ଭେମାନେ ଅପରାଧ ଫଳ
ଭୋଗୁଥିଲେ ସିନା ଶିକ୍ଷା ହୁଅନ୍ତା ତତ୍କାଳ ।
ଜଗତ ଜନକ ପ୍ରାଣୀକୁଳ ପିତାମହ
ଚତୁର୍ବେଦ ଯା ମୁଖରେ ଉଠେ ଅହରହ ।
ତାହାଙ୍କ ଅନ୍ୟାୟ ଶୁଣ କେତେ ଅଈଶ୍ୱର
ସ୍ୱସୁତା ଉପରେ କଲେ କେତେ ଅବେଶ୍ୱର ।
ନର୍ତ୍ତିକଲେ ପୁଣି କୋଠୀ ଦେବଙ୍କ ଆଗରେ
ମାତିଗଲେ ଉର୍ବଶୀର ସଙ୍ଗେ ଧାଡକାରେ ।
ବ୍ରହ୍ମାଙ୍କୁ ଭୟରେ କେହି କଲେ ନାହିଁ ଦୋଷୀ
ଦେବତା ମଣ୍ଡଳ ତଡାହେଲେ ଉରୁବଶୀ ।
ଈଶ୍ୱରକୁ ବୃହସ୍ପତି ସଦା ନ୍ୟାୟବନ୍ତ
ଋଷି ଅନର୍ଗଳ ବାଣୀ କଲେ ଏ ସିଦ୍ଧାନ୍ତ ।
ଇନ୍ଦ୍ରାଦି ଦେବତା ଯେତେ ତହିଁ ଥିଲେ ରୁଣ୍ଡ
ଉଠାଇଲେ ଅସ୍ତ୍ର ଅସ୍ତ୍ର ଦୋହଲାଇ ମୁଣ୍ଡ ।
ଦେବତାମାନଙ୍କ ଦେଖି ଏପରି ଈଶ୍ୱର
ଆନ୍ତରିକ ଭକ୍ତିଭାବ ରହିବ କାହାର ।
ବୃଥା କରୁଅଛ ତାଙ୍କ ଆରାଧନା ସେବା
ପ୍ରକୃତ ବିପଦ ସାହା ହୁଅନ୍ତି କି କେବା ।
ଦେବତା ସମାଜେ ଘଟୁଛି ତ ଏହିପରି
ମାନବ ସମାଜେ ଚତୁର୍ଗୁଣ ବାହାଦୁରୀ ।

ସର୍ବସ୍ଥାନେ ସର୍ବକାଳେ ଅପରାଧୀ ନାରୀ
କହୁଲେହେଁ କେହୁ ତାର ନଶୁଣେ ଗୁହାରି ।
ନାରୀର କି ଗୃହ ତାର କହିଅଛି ଆବୃତ
ସଂସାର ରୁଦ୍ଧ ତାର ନାହିଁ ମୁକ୍ତିପଥ ।
ଉଦ୍‌ଯୋଗେ ସାହସ ବଳ ସବୁ ଫିଙ୍ଗି ଦୂରେ
ଅଦୃଷ୍ଟକୁ ଲକ୍ଷ୍ୟ ରଖି ଚଳେ ନିରନ୍ତରେ ।
ବସିଅଛି ପଣ୍ଡିତଙ୍କ ଖାଇ ପଦାଘାତ
ହେଲାଣି ବହୁତ ବର୍ଷ ତଥାପି ବେଖାତ ।
ଆଖିରେ ପରର ଦୋଷ ଦିଶୁଛି କେବଳ
ଅଟେ ଯାହା ତୁମ୍ଭ ସ୍ୱାର୍ଥପରତାର ଫଳ ।
ପୁଂସଙ୍କ ସହଧର୍ମିଣୀ ଅଟନ୍ତି ନାରୀଏ
ସମାଜର ଅର୍ଦ୍ଧ ଅଙ୍ଗ ଜାଣନ୍ତି ସଭିଏ ।
ସର୍ବଦେଶେ ସର୍ବରୂପେ ଶୟନେ ଭୋଜନେ
ଶୁଭକର୍ମ ଅନୁଷ୍ଠାନେ ଧର୍ମ ଉପାର୍ଜନେ ।
ସର୍ବକାର୍ଯ୍ୟେ ସଦାବେଳେ ଅଛନ୍ତି ସଙ୍ଗରେ
ଗୃହାଶ୍ରମେ ବାନପ୍ରସ୍ଥେ ରଣ ପ୍ରାଙ୍ଗଣରେ ।
ଶୁଣଶୁଭ ବିଧାୟିନୀ ପୁରୁଷ ମାନଙ୍କ
ସଂଖ୍ୟାରେ ପୁରୁଷଠାରୁ ଅଟନ୍ତି ଅଧିକ ।
ପୁରୁଷଙ୍କ ଉନ୍ନତିରେ ସମାଜ ଯେତିକି
ଉଠିବ, ନାରୀଉନ୍ନତି ଲୋଡ଼ିବ ସେତିକି ।
ଏକା ଚକ ଯୋଗେ ଯଥା ନ ଚଳଇ ଗାଡ଼
ପୁଂସ ଉନ୍ନତିରେ ଏକା ନ ହେବ ଦଉଡ଼ ।
ଯେଣୁ ଆମ୍ଭେମାନେ ସମଗ୍ର ସମାଜର
ଚନ୍ଦ୍ରଲଗି ସିନା ଶୋଭା ବଢ଼ଇ ରାଜର ।
ସମାଜ ଉନ୍ନତି ଲାଗି ଯେବେ ହେବ ଛିଡ଼ା
ଆମ୍ଭର ଉନ୍ନତି ସଙ୍ଗେ ସଙ୍ଗେ ହେବ ଲୋଡ଼ା ।
ଏକାଙ୍କୀ ପୁରୁଷ ଜାତି ସମାଜ ନୁହନ୍ତି
ନାରୀମାନେ ସଦା ତହିଁ ପାଖେ ଉଭଛନ୍ତି ।
ଉଠିବାକୁ ଏକା ଯାହା କରୁଛ ଅଭ୍ୟାସ
ନ ହେବ ସଫଳ ବୃଥା ହେବ ସେ ପ୍ରୟାସ ।

ନାହାଁନ୍ତି ସଙ୍ଗରେ ଘେନ ଏଣୁ ନରମାନେ
ଜାଗେବା ପାଇଁକ ଚେଷ୍ଟା କର ଏକମନେ ।
ଛବାନ୍ତୁ ହୋଇଲେ ତୁମ୍ଭେ ମଧୁର ଝଙ୍କାରେ
ଗୀତଗାନ କରୁଥାଅ ମୃଦୁମନ୍ଦସ୍ୱରେ ।
ଆମ୍ଭେମାନେ କିନ୍ତୁ କହ କେବଣ ଦୋଷରୁ
ବର୍ଷେ ଦୁଇ ବର୍ଷ ଯାଏ ଚ଼ୁଟୁକା ର ମାରୁ ।
ଅଣ୍ଡେ ପାଟି କରିବାକୁ ନ ହୁଏ ସାହସ
ସେଥିରେ ମୂରବିଗଣେ କରନ୍ତି ଝିଙ୍ଗାସ ।
ମୁରବି ଆସିଲେ ପୁଣି ଗୋଡ ଘସି ଘସି
ହାତରୁ କଅଁଳ ଚର୍ମ ପୂରେ ଯାଏ ଖସି ।
ପତ୍ନୀ ନାଶ ହେଲେ ତୁମ୍ଭେ କରି ବାହାଦୁରୀ
ଏକ ପରେ ଏକ ବରି ଆଣ ଅନ୍ୟ ନାରୀ ।
ମାତ୍ର ପତ୍ନୀ ମରିଗଲେ ପୁନଶ୍ଚ ବିବାହ
ଘୋର ଦୋଷାବହ କିଆଁ ଆମ୍ଭପକ୍ଷେ କହ ।
ଦେଖୁଛ ଇଂରାଜ ଜାତି କେମନ୍ତ ସ୍ୱାଧୀନ
କିପରି କରନ୍ତି ମହିଳାଙ୍କ ଆରାଧନ ।
କୋଞ୍ଚ ଭୂୟାଁ ଆଦି ଯେତେ ଆଦିମନିବାସୀ
କେମନ୍ତ ଅଛନ୍ତି ନିଜ ରମଣୀଙ୍କ ତୋଷି ।
ହଲ୍ଲୀଷକ ନୃତ୍ୟ କରି ମହିଳାଙ୍କ ମେଳେ
କେମନ୍ତ ପକାନ୍ତି ପାଦ ବାଦ୍ୟନାଦତାଳେ
ପରସ୍ପର ପରସ୍ପରେ କରନ୍ତି ସାହାଯ୍ୟ
ଆମୋଦ ପ୍ରମୋଦେ ଦୁଃଖେ ସୁଖେ ଅନିବାର୍ଯ୍ୟ ।
ଉଚ୍ଚଠାରୁ ନୀଚଯାଏ ଦେଖୁଛ ଏସ୍ୱନ୍ତ
ମଧ୍ୟସମ୍ପ୍ରଦାୟ କିପାଁ ଆଚର ଅନାନ୍ତ ।
ରଖିଛ ଆକଟେ ଅମ୍ଭେ ଡୁଙ୍ଗିଲେ ଗବାକ୍ଷେ
ତର୍ଜନା କରି ନିର୍ଦ୍ଦୟେ ତଗ୍ରତି କଠାକ୍ଷେ ।
ଏହୁ କହେ ବୀରେ ତବ ସଦବ୍ୟବହାର
ଧିକ ଧିକ ଶତଧିକ ବିବେକ ତୁମ୍ଭର ।
ଥିଲା ପୂର୍ବେ ସ୍ୱୟମ୍ବର ବିବାହ ପାଇଁକି
ନାରୀଏ ବରନ୍ତି ବର ମନୋମତ ଦେଖି ।

ସେହିବ ଉଠାଇ ଏବେ ଅନଭିମତରେ
ତୁମ୍ଭ ଇଚ୍ଛାମତ ବର ଯେଠାରେ ସେଠାରେ ।
କୋଷ୍ଠିର ମେଳକ ବଧି ନ ଥିଲା ପୂର୍ବରେ
ରହୁଥିଲେ କି ବିଧବା ଘଣଘଣ ଘରେ ।
କୋଷ୍ଠିକୁ ମେଳାଇ ଏବେ ବିଭା ହେବା ବୃଥା
ଦେଖୁଛ ଉତ୍ତମ ଫଳ ନଫଳେ ସର୍ବଥା ।
ଜନ୍ମଜନ୍ମ ତୁମ୍ଭେମାନେ ହୋଇକରି ପିତା
ସ୍ୱାର୍ଥ ଆଶେ ଅର୍ଥଲୋଭେ ବିକ ସ୍ୱ ଦୁହିତା ।
ଶୁଷ୍କଚର୍ମୀ ଜରଦ୍‌ଗବ ବୃଦ୍ଧଜନ କରେ
ସ୍ୱବ ନାହିଁ ଗଲେ ହେଲେ କନ୍ୟାକୁ ଅନ୍ତରେ
ସେ ଦୁର୍ବଳା ଦେବଯୁଗେ ତୁମ୍ଭର ଆଶ୍ରିତ
ତା ସୁଖେ ଦେବାକୁ ବାଧା ନ ହୁଅ କୁଣ୍ଠିତ
ଏହିତ ଅଟଇ ତୁମ୍ଭମାନଙ୍କ ବେଭାର
ବୃଥାରେ କାହିଁକି ଭଲ ଆମ୍ଭଙ୍କୁ ଉଆର ।
ବାଳିକା, ଯୁବତୀ, ପୌଢ଼ା, ବୃଦ୍ଧା ଘଣ ଘଣ
ସଢ଼ୁଛନ୍ତି ସମାଜରେ କରମ ଦୁର୍କେଣ ।
ଦୁର୍ଲ୍ଲଭ ମାନବ-ଜନ୍ମ-ସୁଖେ ଜଳାଞ୍ଜଳି
ଦେଉଛନ୍ତି କେତେ ଆହା ଶୋକ ଅଶ୍ରୁ ଢାଳି
ଜାଣନା କି ତୁମ୍ଭେ ସବ ଏ ସୃଷ୍ଟି ଯାବତ
ପ୍ରକୃତି ନିୟମେ ସବୁ ହୁଏ ଆତଯାତ ।
ଫୁଟେ ଫୁଲ ବୁଟେ ଅଳି ଲୁଟେ ମଧୁରାଶି
ଯାଏ ଦିନ ଆସେ ରାତ୍ର ଶଶୀ ଉଦ୍ଧ ହସି ।
ପ୍ରକୃତିକି ଏଡ଼େ ଦେବ ନାହିଁ କା ଶକତି
କପରି ଏଡ଼ିବ କହ ବିଧବା ଯୁବତୀ ।
ପ୍ରକୃତିର ଦଣ୍ଡେ ତେଣୁ ନେଇ ଅଲକ୍ଷିତେ
ପ୍ରକୃତି ଅଧୀନା ହୋଇ ପଡ଼ୁଛନ୍ତି କେତେ ।
କାଳାକାଳ ପାତ୍ରାପାତ୍ର ସମାଜ ବନ୍ଧନ
ଜାତି ବା ଅଜାତି ଭେଦ ଶେଷେ ପାଶୋରଣ
ହୁଅନ୍ତି ବିପଥ ମାନ ଧରମ ବୋହାଇ
ଦଅନ୍ତି ଖୋଜନ୍ତି ଭ୍ରୂଣ ପାତନ ଲୁଚାଇ ।

ଫଳେ ଭ୍ରୂଣହତ୍ୟା ଶିଶୁହତ୍ୟା ମହାପାପ
ସଂଘଟିତ ହେଉଅଛି ଗୋପନେ ଅମାପ ।
ନହେବେକ ପାପଭାଗୀ ସମାଜର ନେତା
ନହେବେକ ଅଂଶୀଦାର ନିୟମ ପ୍ରଣେତା
ନହେବେକ କଳୁଷିତ ସେ ବ୍ୟବସ୍ଥାପକ
ପ୍ରକୃତ ଏଡ଼ାଇ ଦେବା ଯାହାଙ୍କ ବିବେକ ।
ଅହଲ୍ୟା ଦ୍ରୌପଦୀ ଆଦି ପଞ୍ଚକନ୍ୟାଙ୍କର
ବିବାହ ସମ୍ବନ୍ଧେ ନାମ କାହିଁକି ଉଚ୍ଚାର
ତାରା ମନ୍ଦୋଦରୀ କୁନ୍ତୀ ଆଦି ପୂର୍ବକାଳେ
ସେମାନେ ତ ବହୁ ପତି ହାତ ଧରିଥିଲେ ।
ଏମାନେତ ଭୋଗ କରିଥିଲେ ବହୁ ପତି
ସମାଜେ ନୋହିଲେ କାହିଁ ପାଇକି ଅସତୀ ।
ଏବେ କିପାଁ ଅଧର୍ମତଃ ତାହା ଆଚରିଲେ
ବିଧାତା ନାରୀଙ୍କୁ ନେଇ ଅଗ୍ନିରେ ପାକିଲେ ।
ଜାଣିଥିଲେ ତୁମ୍ଭେମାନେ ସତୀତ୍ୱ ମର୍ଯ୍ୟାଦା
ନ ଦିଅନ୍ତ ଏତେ ତୀବ୍ର କଟାକ୍ଷ ସର୍ବଦା ।
ପୋଷୁ ନାହିଁ କେତେ ପାପ ଚିତ୍ତର ମାନସ
ଭେଣ୍ଟି ଆମିଷ ପରି ଚଢ଼ି ନିରାମିଷ ।
ସତୀଧର୍ମ ଲାଗି ଯାହା ଲୋଡ଼ୁଛ ଆପଣ
ସତୀଧର୍ମ ନୁହେ ସଦା ଏକରୂପ ଜାଣ ।
ଦେଶ, କାଳ, ପାତ୍ରଭେଦେ ଭିନ୍ନରୂପଧରେ
ବିଦିତ ଏ ଇତିହାସ, ପୁରାଣ, ଶାସ୍ତ୍ରରେ ।
ସତୀତ୍ୱ ଏକ ପତିତ୍ୱେ ନିହିତ ନୁହଇ
ବହୁପତିତ୍ୱେ ସତୀତ୍ୱ ଭଗ୍ନ ହୁଏ ନାହିଁ ।
ଯେତେବେଳେ ଯା'କୁ ପତି ବରଇ ଯୁବତୀ
ନିଷ୍ଠାସହ ଭଜିଲେ ସେ ନଷ୍ଟେ ମହାସତୀ ।
ବାଧ୍ୟ ଇନ୍ଦ୍ରିୟସଂଯମ ନୁହେ ସତୀଗୁଣ
କେବଳ ଅଶାନ୍ତି, ଦୁଃଖ, ରୋଗର କାରଣ ।
ପୁରୁଷ ଅସତ ଥିବ ନାରୀ ସତୀ ହେବ
ଏ ଦର ସ୍ତ୍ରୀଙ୍କ କିଏ ପସନ୍ଦ କରିବ ।

ଉଭୟ ପାର୍ଶ୍ଵକ ସମପ୍ରଥା କିପାଁ ନାହିଁ
ନସ୍ତମରେ ଏତେ ଭିନ୍ନ ଦେଖିତକ କାହିଁ ?
ଆମ୍ଭେ ବନ୍ଧ୍ୟା ହେଲେ ତୁମ୍ଭେ ନିର୍ବିକଳ୍ପ ସହି
ଆମ୍ଭକୁ ଉପେକ୍ଷି କର ଦାର ପରିଗ୍ରହି ।
କିନ୍ତୁ ତୁମ୍ଭେମାନେ କ୍ଲୀବ ଅଥବା ପତିତ
ହେଲେସୁଦ୍ଧା ଆମ୍ଭେରହୁ ତୁମ୍ଭ ଅନୁଗତ ।
ଅତ୍ୟାଚାର ଅବହେଳା ଦୋଷାଦି ଦେଖିଲେ
ପତିକୁ ଲଙ୍ଘିଲେ ଦୋଷ ହୋଇବକି ଭଲେ ।
କାଳୋଚିତ ଯୁକ୍ତିଯୁକ୍ତ କାର୍ଯ୍ୟ କଲେ ନାରୀ
କାହିଁକି ଅସତୀ ହେବ କହହେ ବିଚାରି ।
ଅନଶନ, କ୍ଷୁଧାବାଧା ସହିକି ପାରଇ ?
ସମ୍ଭାଳିଲେ ଅନିଷ୍ଟ କି ଉପୁଜଇ ନାହିଁ ।
ତୃଷାତୁର, ଶୋଷ କେତେକାଳ ସମ୍ଭାଳିବ
ନପାଇଲେ ଜଳ, ଜଳ ଅବଶ୍ୟ ଲୋଡ଼ିବ
ଜଳପାନ କଲେ ସିନା ତୃପ୍ତ ହେବ ତୃଷା
ଜଳ ବିହୁନେ ତାହାର ଉଡ଼ିଯିବ ହଂସା ।
କ୍ଷୁଧା, ତୃଷ୍ଣା, ଧୃତିବଳେ ବାରିକି ହୁଅଇ
ବାରିଲେ ପ୍ରାଣ ନତେଜ, କ୍ଲେଶମୟ ହୋଇ
କ୍ଷୁଧା ତୃଷ୍ଣାଦିର ତୃପ୍ତି ପ୍ରାକୃତିକ ଧର୍ମ
ବିରୁଦ୍ଧାଚରଣ ସିନା ଅତ୍ୟନ୍ତ ଅଧର୍ମ ।
ପତି ଅକ୍ଷମତା ସ୍ଥଳେ ନାରୀ ବାଧ୍ୟ ହୋଇ
ପ୍ରକୃତି ପ୍ରେରଣା ବଶେ ଯେ କର୍ମ କରଇ
ତାହା ଦ୍ୱାରା ଯଦି ପତି ଉଲଙ୍ଘନ ହୁଏ
ସେଥି ଦୋଷଲାଗି ଦାୟୀ ହୋଇବ ହେ କିଏ ?
ଏସବୁ ଜଘନ୍ୟ ରୀତି ହେବାକୁ ଦୂରିତ
ଜନ୍ମିଥିଲେ ଏଯୁଗରେ ଜଣେ ମାତ୍ର ସୁତ ।
ସେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ନାମ
କିଏସେ ନଜାଣେ କହ ଏ ଭାରତ ଧାମ ।
ସ୍ମୃତି ପୁରାଣରୁ ସାର କରିଣ ବାହାର
ଚଳାଇଥିଲେ ସମାଜେ ନୂତନ ସଂସ୍କାର ।

ଚଢ଼ିଥିଲେ ସେହୁ ଏକମାତ୍ର ପରମନ
ଦେଖାଇଥିଲେ ଜଗତେ ସ୍ୱଢ଼ବେଙ୍କପଣ ।
ପିତଳ ଫିଙ୍ଗି ସମ୍ପାଦିଥିଲେ ସେହୁ ସୁନା
ନିଜ ଶକ୍ତି ଶ୍ରମବଳେ ସବୁ କରି ରଚନା ।
ନିଷ୍ଠୁର ପାଶବ ନୀତି କରଣ ଅନ୍ତର
କାଳ ପାତ୍ର ବୃଦ୍ଧି କରିଥିଲେ ସେ ବର୍ବର
କାଳୋଚିତ ସ୍ୱିଷ୍ଟ ଆଚରଣ ବିନା ଧର୍ମ
ନବୁଝି ଘୃଣ୍ୟ ସମାଜ ଶାସ୍ତ୍ରର ଯା ମର୍ମ ।
ନିଜଗୋଡେ ଟିଆହେବ ବାନ୍ଧି ପୁଣି ଦମ୍ଭ
ପଲ୍ଲବ ଗ୍ରାହୀ ବୃଥାରେ ଦେଖାଅ ଆରମ୍ଭ ।
ଯୁବ ପୂରୁଷର ପାଞ୍ଜି ଧରିଛ ସାଉଣ୍ଟି
ନବୁଝି ଶାସ୍ତ୍ରର ଅର୍ଥ ବୃଥେ ଭରିଗଣ୍ଠି ।
ଦେଖାଅ ଯଦ୍ୟପି ପାର କାମ ନୂଆ ନୂଆ
ସାବାସ୍ ସାବାସ୍ ତେବେ କରିବ ଦୁନିଆ
ଜଗତ ପରିବର୍ତ୍ତନ ଶୀଳ ଏ ନିଷ୍ଟିତ
ଏପାଶବ ନୀତି ମାତ୍ର ଯତନେ ପାଳିତ ।
ପୂର୍ବେ ଥିଲା ପନ୍ଥ ହେଲେ ଭାଳ ବଦଳିତ
କେତେପତ୍ନୀ ହେଉଥିଲେ ଚିତାରେ ନିକ୍ଷିପ୍ତ ।
ଏ କୁପ୍ରଥା ଉଠାଇଲେ ଦୟାଳୁ ଇଂରାଜ
କି ଷଣ୍ଡ ହୋଇଲା କିସ କଲା ଏ ସମାଜ ।
ନଥିଲେକି ଗଣ୍ଡା ଗଣ୍ଡା ମେଣ୍ଢାସମ ଭେଣ୍ଡା
ବଳାତ୍କାର କଣାଘାତ କରିଦେଇ ଅଣ୍ଡା ।
ସେହୁପରି କେହୁ ଯଦି ନିର୍ଘାତ ଗୃହକୁ
ବସାନ୍ତା, ସ୍ୱର୍ଗନ୍ତା ଅବା ତୁମ୍ଭର ଧର୍ମ'କୁ ।
ପାଠ ଶାଠ ନାହିଁ କିଛି ଅଛି ଖାଲି ମୁହିଁ
ତେଣୁ ଏ କୁପ୍ରଥା ବିନା କରିଅଛ ମୋହ ।
ଏହୁ ସ୍ୱିଷ୍ଟ ନବୁଝିବ କନା ପାହାରରେ
ଘଅକୁ ବାହାରେ କେବେ ସିଧା ଅଙ୍କୁଳରେ ।
ଆମ୍ଭର ପ୍ରେମ ସରସେ ଅତ୍ୟନ୍ତ ନିର୍ମଳ
ପୁରି ରହୁ ଥାଉ ଥାଉ ସ୍ୱମଟ୍ଟର ଜଳ ।

ପରସ୍ପର ମିଳ କେତେ ଅପ୍ରାକୃତ ଭାଉ
ନାରୀ ଚନ୍ଦେ ତାହା ପୁଣି ଦେଉଅଛ ଭର
ଯଯାତକେଶରୀ ଭ୍ରାନ୍ତ ହୁଲ୍ଲୋଳାଦ ଗ୍ରନ୍ଥେ
ବହୁତ ଆନନ୍ଦେ ପିନା ଭରୁଛ ସମସ୍ତେ ।
ତୁମ୍ଭର ନାହିଁ ନିଜସ୍ୱ ହେ ପୁରୁଷଗଣ
ପରଠାରୁ ସବୁ କର ସଦାନୁକରଣ ।
ଆମ୍ଭ ପୂର୍ବ ସତୀମାନେ ସର୍ବଦା ସ୍ୱାଧୀନେ
ବୁଲୁଥିଲେ ଯୋଗ ଦେଉଥିଲେ ରଣାଙ୍ଗନେ
ଶେଷକାଳେ ପଠାଣଙ୍କ ପାଖେ ରହୁ ସଦା
ତାହାଙ୍କଠାରୁ ଶିଖିଲ ଏ ହୀନ ପରଦା ।
ମାନ ରହିଗଲା ତାଙ୍କ ଯେତେ ଭଲଗୁଣ
ଦେଖି କି ନପାରେ ତୁମ୍ଭ ଜଲନ୍ଧା ନୟନ ।
ନିତ ନିତ ଶତ ଶତ ପଠାଣ ନାୟିକା
ସନ୍ଧ୍ୟାରେ ବିଧବା ହୋଇ ପ୍ରାତେଃ ହୁଏ ନବା ।
କାହିଁ ସେ କଠୋର ବ୍ରତ ଜୀବନ୍ତ ମରଣ
ଏକାଦଶୀ, ଷଡ୍ ଜୟନ୍ତୀ କୃଚ୍ଛ୍ର ଚାନ୍ଦ୍ରାୟଣ
ଆମ୍ଭର ଲାଗି ଜଗତେ ତୁମ୍ଭର ବଡାଇ
ହରକୁ ଛଳିଲେ ହର ମାୟାନାରୀ ହୋଇ ।
ବହୁତ ଢୋହକର ବଜାଇ ନାଗରୀ
ତାପରେ ଲେଖୁଛ ଘରେ ଗଣ୍ଡା ଗଣ୍ଡା ଝିଅ ।
ସହୁଛୁ ସକଳ ଆମ୍ଭେ ସର୍ବଂସହା ପରି
ତଥାପି କାହିଁକି ଦୁଃଖ ନପାଏ ଆମ୍ଭରି ।
ଆମ୍ଭେ ଏବା ମିଥ୍ୟାବାଦୀ ଆମ୍ଭେ ଅବିଶ୍ୱାସୀ
ତୁମ୍ଭେମାନେ ସବୁ ସତ୍ୟ ସିନ୍ଧୁନୀରେ ଭାସି ।
ପୁରୁଷ ସମାଜ କରଅଛ ମହୋଜ୍ଜ୍ୱଳ
କାରାଗାରେ ରହିଛନ୍ତି କିଆଁ ପଲ ପଲ ।
ସନ୍ତାନ ଶିକ୍ଷାରେ ଆମ୍ଭେ ଏବା ଦେଉ ବାଧା
ତୁମ୍ଭମାନଙ୍କର ଯେବେ ଅଗାଧ ଶରଧା ।
ପଣ୍ଡିତ ଶାସ୍ତ୍ରଜ୍ଞନରୂପେ ଉଡ଼ୁଥାନ୍ତା ବାନା
ସେଥିକୁ କାହିଁକି ତୁମ୍ଭ ନମିଳୁଛି ଦାନା ।

ତାମାଡ଼ି ଯଦ୍ୟପି ଅଛୁ ନାରୀ ଜାତି ଆମ୍ଭେ
ଲଜ୍ଜାକୁ ନ ଆସେ ଏହା କହିବାକୁ ଦମ୍ଭେ ।
କେହୁ ସ୍ତ୍ରୀଲୋକ କି କେବେ ପୁରୁଷେ ଆମନ୍ତ
ପୁଂସେ ସିନା ରୂପାନଳେ ଉନ୍ମତ୍ତେ ଆସନ୍ତ ।

ଆହେ ନୀଳାଞ୍ଚଳ ସାଇଁ ଶ୍ରୀସେନ ବହାସୀ
ଶୁଣିବକି ଦୟାମୟ ଦୁଃଖିନୀ ଗୁହାରି ।
ଶୁଣିଲେ କି ହେବ, ତୁମ୍ଭେ ପୁଣି ତହୁଁ ବଳ
ଲକ୍ଷ୍ମୀଙ୍କୁ ଦେଖିଲେ ଛାଡ଼ି ଗୃହିଣୀକୁ ଚଳ ।
ବୃଥା କଷ୍ଟ ଦେଇତାଙ୍କୁ ଅର୍ଜିଲ କି ଯଶ
ତୁମ୍ଭେ ପରା ସ୍ୱରତର ଆଦର୍ଶ ପୁରୁଷ ।
ଦେବ, ଦାନବ ମାନବ ଆଦି ପୁଂସଗଣେ
ଏକ ଛାଞ୍ଚେ ଗଢ଼ା ତୁମ୍ଭେ ଏକ ଉପାଦାନେ ।
ସ୍ୱାର୍ଥାନ୍ୱେଷୀ ଖଳ ମତ ଅତିଘୃଣ୍ୟ ପଶୁ
କୁଫଳ କହିବା ସାର ବୁଝିବାର ଚକ୍ଷୁ ।
କାହାକୁ କହିବୁ ନିଜ କରମ ଆଦର
ଜନମରୁ ରହେ ନାରୀ ପୁଂସ ଆଶ୍ରା କର ।
କହୁ କହୁ ବହୁକଥା କହିମୁଁ ଦେଲଣି
ଖମିବ ପ୍ରାଣେଶ ଏବେ ନେଉଛି ମେଲଣି ।



PRINTED AT THE ORISSA MISSION PRESS, CUTTACK,
BY SRI P. K. PRADHAN.